ସଙ୍କଳନ :
ଉତ୍କଳ ଗାନ୍ଧୀ ସ୍ମାରକ ନିଧି
ବାଖରାବାଦ, କଟକ-୭୫୩୦୦୨

ପ୍ରକାଶକ :
ମାଳତୀଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ
୩୭, ବୁଦ୍ଧନଗର
ଭୁବନେଶ୍ୱର-୭୫୧୦୧୪

ପ୍ରଚ୍ଛଦପଟ ଶିଳ୍ପୀ :
ଶ୍ରୀ ଚନ୍ଦ୍ରହାସ ପଣ୍ଡା

ମୁଦ୍ରକ :
ଗ୍ରାମସେବକ ସମବାୟ ପ୍ରକାଶନ ଲିଃ,
ବାଖରାବାଦ, କଟକ-୭୫୩୦୦୨

ପ୍ରଥମ ମୁଦ୍ରଣ : ୧୯୯୮

ଛପାସଂଖ୍ୟା : ୧୧୦୦

ମୂଲ୍ୟ : ଟ ୩୦-୦୦ (ତିରିଶ ଟଙ୍କା)

# ନିବେଦନ

ସ୍ନେହମୟୀ ମାଳତୀଦେବୀ ସମସ୍ତଙ୍କର ଆଦରର ନୂମାଙ୍କର ମହାପ୍ରୟାଣ ପରେ ସାରା ଓଡ଼ିଶାର ଏବଂ ଭାରତର ବିଭିନ୍ନ ଅଞ୍ଚଳର ପତ୍ରପତ୍ରିକାମାନଙ୍କରେ ତାଙ୍କର ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରି ବହୁ ଲେଖା ପ୍ରକାଶ ପାଇଥିଲା ଓ କେତେକ ପତ୍ରପତ୍ରିକା ବିଶେଷ ସଂଖ୍ୟା ମଧ୍ୟ ପ୍ରକାଶ କରିଥିଲେ । ନୂମାଙ୍କ ସହିତ ଘନିଷ୍ଠ ଭାବେ ସଂପୃକ୍ତ ବିଭିନ୍ନ ସଂଗଠନ, ଯଥା ଉତ୍କଳ ନବଜୀବନ ମଣ୍ଡଳ, ଉତ୍କଳ ସର୍ବୋଦୟ ମଣ୍ଡଳ, ବାଜିରାଉତ ଛାତ୍ରାବାସ, ଉତ୍କଳ ଗାନ୍ଧୀ ସ୍ମାରକ ନିଧି, କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ ଓ ବନବାସୀ ସେବା ସମିତି ପ୍ରଭୃତି ଏବଂ ବହୁ ବିଶିଷ୍ଟ ବନ୍ଧୁମାନଙ୍କର ପରାମର୍ଶରେ ତାଙ୍କର ସ୍ମୃତିରେ ଏକ ପୂର୍ଣ୍ଣାଙ୍ଗ ସ୍ମରଣିକା ପ୍ରକାଶ କରିବା ପାଇଁ ସ୍ଥିର ହେଲା । ଏହି ସ୍ମରଣିକାର ସଂକଳନ ଦାୟିତ୍ୱ ଉତ୍କଳ ଗାନ୍ଧୀ ସ୍ମାରକ ନିଧି ଏବଂ ପ୍ରକାଶନ ଦାୟିତ୍ୱ ମାଳତୀଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ବହନ କଲେ । ନୂମାଙ୍କ ସହିତ ଘନିଷ୍ଠ ସଂପର୍କରେ ଆସିଥିବା ଏବଂ ତାଙ୍କ ପ୍ରତି ବିଶେଷ ଆଦର ଓ ଶ୍ରଦ୍ଧା ପୋଷଣ କରୁଥିବା ବହୁ ବିଶିଷ୍ଟ ଦେଶସେବୀ ତଥା ଲୋକଲୋଚନର ଅଗୋଚରରେ ଜନ-ସେବାରେ ନିଜକୁ ଉତ୍ସର୍ଗ କରିଥିବା କର୍ମୀ ( ଯେଉଁମାନେ ଅନ୍ୟମାନଙ୍କଠାରୁ କମ ବିଶିଷ୍ଟ ନୁହନ୍ତି ) ଏ ସମସ୍ତଙ୍କ ଲେଖା ଏହି ଗ୍ରନ୍ଥରେ ଏକତ୍ର କରାଯାଇଛି । 'ମାଳତୀଦେବୀ : ଚଉଦଟି ଚିତ୍ରପଟ' ପୁସ୍ତକର ସଂପାଦକ ଓ ପ୍ରକାଶକଙ୍କ ଅନୁମତି କ୍ରମେ ଏହି ପୁସ୍ତକରୁ କିଛି ଲେଖା ଆମେ ଏହି ଗ୍ରନ୍ଥରେ ପ୍ରକାଶ କରିଛୁ । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ନୂମାଙ୍କର କେତେକ ଲେଖା, ଭାଷଣ ଏବଂ ଚିଠିପତ୍ର ମଧ୍ୟ ସଂଗ୍ରହ କରାଯାଇ ଏଥିରେ ପ୍ରକାଶ କରାଯାଇଛି । ଏସବୁଥିରୁ ନୂମାଙ୍କର ବିଶାଳ ଓ ବହୁମୁଖୀ ବ୍ୟକ୍ତିତ୍ୱ ତଥା ଓଡ଼ିଶା ଓ ସାରା ଭାରତ ଓ ଭାରତ ବାହାରେ ଏହାର ପ୍ରତିଫଳନ ବିଷୟରେ ଏକ ସମ୍ୟକ ଧାରଣା ମିଳିବ ବୋଲି ଆମେ ଆଶା କରୁଛୁ ।

ମାଳତୀଦେବୀଙ୍କ ଜୀବନର ଘଟଣାବଳୀକୁ ନିଜର ଲେଖନୀ ମାଧ୍ୟମରେ ପ୍ରକଟ କରିଥିବା ଲେଖକବନ୍ଧୁମାନଙ୍କୁ, ନିଜ ନିଜ ପୁସ୍ତକରୁ ଲେଖା ପ୍ରକାଶ ପାଇଁ ଆମକୁ ଅନୁମତି ଦେଇଥିବା ବନ୍ଧୁ ଓ ଅନୁଷ୍ଠାନଙ୍କୁ, ସଂକଳନର ଦାୟିତ୍ୱ ସୁଚାରୁରୂପେ ତୁଲାଇଥିବାରୁ ଗାନ୍ଧୀସ୍ମାରକ ନିଧିର କର୍ମୀମାନଙ୍କୁ ତଥା ଉତ୍ତମ ମୁଦ୍ରଣ ନିମନ୍ତେ ଗ୍ରାମସେବକ ସମବାୟ ପ୍ରକାଶନର ବନ୍ଧୁମାନଙ୍କୁ ଏହି ଅବସରରେ କୃତଜ୍ଞତା ଜ୍ଞାପନ କରୁଛୁ । ପୁସ୍ତିକାଟିର ପ୍ରଚ୍ଛଦପଟ ଶିଳ୍ପୀ ଶ୍ରୀ ବନବିହାରୀ ପରିଡ଼ାଙ୍କୁ ମଧ୍ୟ ବିଶେଷ ଧନ୍ୟବାଦ ଅର୍ପଣ କରୁଛୁ ।

ଏହି ଗ୍ରନ୍ଥଟିର ପ୍ରକାଶନ ପାଇଁ ଇମ୍ପା ଶିଳ୍ପ ପ୍ରତିଷ୍ଠାନ ଆର୍ଥିକ ସାହାଯ୍ୟ ଦେଇଥିବାରୁ ଏବଂ ଉତ୍କଳ ନବଜୀବନ ମଣ୍ଡଳ, ବନବାସୀ ସେବା ସମିତି ଓ ସର୍ବୋଦୟ ସମିତି ବହି କିଣିବା ପାଇଁ ଅଗ୍ରୀମ ଟଙ୍କା ଦେଇ ସାହାଯ୍ୟ କରିଥିବାରୁ ତଥା କେତେକ ବ୍ୟବସାୟୀ ଅନୁଷ୍ଠାନ ଶ୍ରଦ୍ଧା ନିବେଦନ ସୂଚକ ବିଜ୍ଞାପନ ଦେଇଥିବାରୁ ଗ୍ରନ୍ଥ ପ୍ରକାଶନର ଆର୍ଥିକ ସମସ୍ୟା ବହୁ ପରିମାଣରେ ଲାଘବ ହୋଇଛି ଓ ତାହା ସୁଲଭ ମୂଲ୍ୟରେ ପାଠକମାନଙ୍କୁ ଯୋଗାଇ ଦେବା ସମ୍ଭବ ହୋଇଛି । ଏଥିପାଇଁ ଆମେ ଉପରୋକ୍ତ ସମସ୍ତ ବ୍ୟବସାୟୀ ସଂସ୍ଥା ଓ ସେବା ଅନୁଷ୍ଠାନମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛୁ ।

**ଜୟକୃଷ୍ଣ ମହାନ୍ତି**
ସଂପାଦକ
**ମାଳତୀଦେବୀ - ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ**

ଆମେ ଦୁଇଜଣ ସ୍ୱର୍ଗ ଖେଳନା ଗଢ଼ିବାନ ଧରଣୀରେ
ମୁଗ୍‌ଧ ଲଳିତ ଅଶ୍ରୁଗଳିତ ସ୍ୱରେ ॥

ପଞ୍ଚଶରର ବେଦନା ମାଧୁରୀ ଦେଇ
ବାସର ରାତ୍ରି ରଚିବାନ ଆମେ ସତ୍ତ

ଭାଗ୍ୟର ପାଦେ ଦୁର୍ବଳ ପ୍ରାଣେ ଭିକ୍ଷା ନ ମାଗି-ଯାଚି
ନାହିଁ କିଛୁ ଭୟ, ଜାଣେ ନିଶ୍ଚୟ ତୁମେ ଅଛ ମୁହିଁ ଅଛି ॥

ଉଡ଼ାଇ ଉର୍ଦ୍ଧ୍ୱେ ପ୍ରେମର ନିଶାଣ ଦୁର୍ଗମ ପଥ ମଧ୍ୟେ
ଦୁର୍ଦ୍ଦମ ବେଗେ ଦୁଃସହତମ ସାଧ୍ୟେ

ରୁକ୍ଷ ଦିନର ଦୁଃଖ ଯେତେ ବି ପାଉ
ଚାହୁଁନା ଶାନ୍ତି ସାନ୍ତ୍ୱନା ନାହିଁ ଚାହୁଁ

ପାଲ ହେଉ ନାଆ ମଙ୍ଗ ଭାଙ୍ଗେ ଯଦି ଛିନ୍ନ ପାଲର ରସି
ମୃତ୍ୟୁ ମୁଖରେ ପଡ଼ି ଜାଣିବୁ ଯେ ତୁମେ ଅଛ ମୁହିଁ ଅଛି ॥

ଦୁହିଁଙ୍କ ଆଖିରେ ଦେଖିଛୁ ଜଗତ ଦୁହିଁଙ୍କୁ ଦେଖିଛୁ ଦୁହେଁ
ମରୁ ପଥ-ତାପ ଯାଇଛୁ ତ ସହି ଦୁହେଁ

ଧାଇଁନୁ ମୋହନ ମରୀଚିକା ପଛେ ପଛେ
ମନ ଭୁଲାଇନୁ ମିଥ୍ୟା କଥାରେ ମିଛେ

ଏହି ଗୌରବେ ଚାଲିବା ଏ ଭବେ ଯେତେ ଦିନ ଥିବା ବଞ୍ଚି
ଏ ବାଣୀ ପ୍ରେୟସୀ ହେଉ ମହୀୟସୀ ତୁମେ ଅଛ ମୁହିଁ ଅଛି ॥

ରବୀନ୍ଦ୍ରନାଥ ଠାକୁର

ଅନୁବାଦ—କୃଷ୍ଣା ମହାନ୍ତି

ତାଙ୍କୁ "ଦେଶିକୋତ୍ତମ" ଉପାଧି ପ୍ରଦାନ ସମୟରେ ଶ୍ରୀ ମନମୋହନ ଚୌଧୁରୀ ତାଙ୍କର ସଭାପତିଙ୍କ ଅଭିଭାଷଣରେ କହିଥିଲେ ଯେ—"ମୋର ଦାଦା ଓ ଖୁଡ଼ୀ ଏକ ଅନୁପମ ଯୋଡ଼ି ଥିଲେ । ...... ମୋର ମନେ ହୁଏ ରବୀନ୍ଦ୍ରନାଥ ଠାକୁର 'ଅମରା ଦୁଜନା ସ୍ୱର୍ଗ ଖେଲନା' କବିତାଟି ଯେପରି ଏ ଦୁହିଁଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ ।"............

ସ୍ମୃତିଚାରଣ କରିଛନ୍ତି......

# ସୂଚୀ

□□□

# ଖୁଡ଼ୀଙ୍କ ସ୍ମୃତି

□ ମନମୋହନ ଚୌଧୁରୀ

ଦାଦା (ନବକୃଷ୍ଣ ଚୌଧୁରୀ) ୧୯୨୫ରେ ଶାନ୍ତିନିକେତନ ଗଲେ । ଡ. ତାରକନାଥ ଦାସ ସେତେବେଳେ ଆମେରିକାରେ ରହୁଥିବା ଜଣେ ବିଶିଷ୍ଟ ଅର୍ଥନୀତିବିଶାରଦ ଥିଲେ । ଶାନ୍ତିନିକେତନରେ ସେ ଗ୍ରାମ୍ୟଅର୍ଥନୀତି ଉପରେ କେତେଗୁଡ଼ିଏ ବକ୍ତୃତା ଦେବାର ଥିଲା । ଦାଦା ସେଇ ବର୍ଗରେ ଯୋଗଦେବାକୁ ଗଲେ ।

ସେ ବରାବର ଆମକୁ ସେଠୁ ଚିଠି ଲେଖେ । ଚୂନୀକୁ ଥରେ ସେ ଲେଖିଲେ ଯେ ସେଠି ମୋର ଜଣେ ଝିଅ ବନ୍ଧୁ ଅଛି, ତାର ନାଁ ମିନୁ । ତୋଠାରୁ ତାର ବର୍ଷ ବଡ଼ । ଚୂନୀ ବ୍ୟାପାରଟା ଚଟ୍‌କରି ବୁଝିପାରିଲା । ଦାଦା ଶାନ୍ତିନି-କେତନରୁ ଫେରି କିଛିଦିନ କଲିକତାରେ ଦ୍ରୁତଲିଖନ ଓ ଟାଇପ୍ ରାଇଟିଂଗ୍ ଶିଖିଲେ, ରୋଜଗାରକ୍ଷମ ହେବି ବୋଲି । କିଛିଦିନ ପରେ ସେ କଟକ ଫେରିଲେ । ଏଠୁ ତେଇଶ ମାଇଲ ଦୂର ଧନୀପୁରଠାରେ ଆମର ପାଞ୍ଚ ସାତ ଏକର ଜମି ଥିଲା । ସେଠି ଯାଇ ଦାଦା କୃଷିବାସ ଆରମ୍ଭ କଲେ । ଏଠାର ଡାକଘର ଦୁଇ ମାଇଲ ଖଣ୍ଡେ ଦୂର ଅଣଖିଆଠାରେ ଥିବାରୁ ଏହା ଅଣଖିଆ ଫାର୍ମ ନାମରେ ପରିଚିତ ହେଲା ।

ଇତିମଧ୍ୟରେ ମାଳତୀ ସେନଗୁପ୍ତ ଓରଫ ମିନୁଙ୍କ ସହିତ ବାହାଘର ପ୍ରସ୍ତାବ ଉଠିଲା । ମାଳତୀଙ୍କ ମା ସ୍ନେହଲତା ସେନ୍ ଶାନ୍ତିନିକେତନର ସ୍ତ୍ରୀନିବାସର ପରିଚାଳିକା ଥିଲେ । ମାଳତୀଙ୍କ ବାପା ବାରିଷ୍ଟର କୁମୁଦନାଥ ସେନ୍‌ଙ୍କର ମୃତ୍ୟୁ ପରେ ଗୁରୁଦେବ ରବୀନ୍ଦ୍ରନାଥ ସ୍ନେହଲତାଙ୍କୁ ଶାନ୍ତିନିକେତନ ଡକାଇ ନେଇଥିଲେ । ତାଙ୍କର ତିନି ପୁଅ ଓ ଦୁଇ ଝିଅ ଶାନ୍ତିନିକେତନରେ ହିଁ ପାଠପଢ଼ି ମଣିଷ ହୋଇଥିଲେ ।

ସେନଗୁପ୍ତ ପରିବାର ବ୍ରାହ୍ମ ଓ ତା' ଉପରକୁ ବଙ୍ଗାଳୀ । ସେମାନେ ଜାତିରେ ବୈଦ୍ୟ । ଏହିପରି ବିଧର୍ମୀ, ଅଜାତି ଓ ଅନ୍ୟ ଭାଷାଭାଷୀ ଝିଅକୁ ପୁଅ ବାହା ହେବାର ଆମର ବୁଢ଼ୀ ମାର ଘୋର ଆପତ୍ତି ଥିଲା । ସେ ବାହାଘର ଭଙ୍ଗେଇଦେବା ପାଇଁ ଯଥାସମ୍ଭବ ଚେଷ୍ଟା ଚଳେଇଲା । ରଘୁ ବାବୁ ବୋଲି ସେ ଯୁଗରେ ଜଣେ ପ୍ରବୀଣ ଗୃହ ଶିକ୍ଷକ ଥାନ୍ତି । ସେ ମାମୁଁ ଘରେ ଓ ଅନ୍ୟାନ୍ୟ ପରିବାର ସହିତ ରହି ପିଲାଙ୍କୁ ପାଠ ପଢ଼ାନ୍ତି । ସେମାନଙ୍କର ଯତ୍ନ ନିଅନ୍ତି । ଏହି ରଘୁମାଷ୍ଟ୍ରେ ଥିଲେ ମା'ର ହାତବାରିସୀ । ତାଙ୍କର ଦ୍ୱାରା ସେ ଆମ ଭାବୀ ଖୁଡ଼ୀଙ୍କ ମା'ଙ୍କ ପାଖକୁ ବେନାମୀ ଚିଠି ଲେଖିଥାନ୍ତି ଯେ ନବ ଅତି ଦୁଷ୍ଚରିତ୍ର । ମଦଖାଏ ଇତ୍ୟାଦି । ମା ପୁଣି ରୁଷି କରି ତିନାକେତେ ଯାଇ ପୁରୀରେ ରହିଲା ।

ମା'ର ବିରୋଧକୁ ଖାତିରି ନ କରି ବାରେ ତାର ସାନ ଭାଇ, ହରେକୃଷ୍ଣ ମହାନ୍ତି, ଆମର ହରି ଅଜା ବହୁତ ଉଦ୍ୟମ କରି, ମା'କୁ ନାନାପ୍ରକାରେ ବୁଝାଇ, ସଫଳ ହୋଇଥିଲେ । ଶେଷକୁ ସେ ବାହାଘରରେ ରାଜି ହେଲା ଓ ବୋଉ (ରମା ଦେବୀ) ଠାରୁ ଶପଥ କରାଇ ନେଲା ଯେ ସେ ନୂଆ ବୋହୂର ଛୁଆଁ ଜିନିଷ ଖାଇବ ନାହିଁ । ମାତ୍ର କରଣ ସମାଜ ଭିତରେ ଘୋର ବିରୋଧ ଥାଏ ଓ ଆମର ପି'ସା ଓ ପିଉସୀମାନେ ତଥା ଅନ୍ୟ ବନ୍ଧୁବାନ୍ଧବ ବାହାଘରରୁ ଅଲଗା ରହିଲେ । କେବଳ ମଧୁ ବଡ଼ବାପା କଲିକତା ଯାଇଥିଲେ ମନେ ଅଛି । ତେବେ ଆମର ମାମୁଁମାନେ ଏଥିରେ ସହଯୋଗ କରିଥିଲେ ଓ ମୁଣ୍ଡୁମାମୁଁ (ନିକୁଞ୍ଜ କିଶୋର ଦାସ), ଉପମାମୁଁ (ଉପେନ୍ଦ୍ର କିଶୋର ଦାସ) ନଗିମାମୁଁ (ନଗେନ୍ଦ୍ର କିଶୋର ଦାସ) ଓ ଟୁଂଙ୍କୁ ମାମୁଁ (ନିତ୍ୟାନନ୍ଦ କାନୁନଗୋ) କଲିକତାକୁ ବରଯାତ୍ରୀ ହୋଇ ଯାଇଥିଲେ । ଆଉ ଯାଇଥିଲେ ବାପାଙ୍କ ବନ୍ଧୁ ଶ୍ରୀଧର ମହାନ୍ତି ଓ ଦାଦାର ବନ୍ଧୁ ଅନ୍ନଦା ଶଙ୍କର ରାୟ, ଯେ ପରେ ବିଖ୍ୟାତ ସାହିତ୍ୟିକ ହେଲେ । ବାପା ତ ଥିଲେ । ସେ ମୂଳରୁ ଦାଦାକୁ ସମର୍ଥନ କରି ଆସିଥିଲେ । ମୁଁ ମାଲୁଣ୍ଡି ହୋଇ ଯାଇଥିଲି । ଆଉ ସବୁ ଅନ୍ୟ କିଏ ଥିଲେ ମନେପଡ଼ୁନାହିଁ ।

ଖୁଡ଼ୀଙ୍କର ଜଣେ ପିଉସୀ ଝିଅ ଭଉଣୀ ଶୋଭନା ଦାସଗୁପ୍ତ କଟକରେ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଥାନ୍ତି । ବାହାଘର ପ୍ରସ୍ତାବ ଉଠିବା ପରେ ସେ କେତେ ଥର ଆମ ଘରକୁ ଆସି ଚିହ୍ନାପରିଚୟ କରିଥାନ୍ତି । କଲିକତାରେ ବିବାହ କର୍ମର କିଛି ପୂର୍ବରୁ ସେ ଆସି ମତେ

ଟିକେ ନେଇ ବହୁ ମହିଳାଙ୍କ ଘେରରେ ସଜବାଜ ହୋଇ ବସିଥିବା ଏକ ନିପିଣ୍ଡ କାଳୀ ଝିଅ ସାମନାରେ ମତେ ଛିଡ଼ା କରି ଦେଇ କହିଲେ, "ଏଇ ତୋମାର କାକୀମା ।'' ମୁଁ ନୀରବରେ ଦେଖି ଚାଲିଆସିଲି ।

ତାହାପର ପରେ କଟକରେ ବରକନ୍ୟାଙ୍କୁ ପାର୍ଟି ନେବା ପାଇଁ ଆମର ବନ୍ଧୁବାନ୍ଧବ ବିଶେଷ କେହି ନ ଥିଲେ । ସେତେବେଳର କେନ୍ଦ୍ର ବିଧାନସଭା ବା 'କଟସଭା'ର ସଦସ୍ୟ ଭୁବନାନନ୍ଦ ଦାସଙ୍କ ସ୍ତ୍ରୀ ରୁକ୍ମିଣୀ ଦେବୀ କେବଳ ବାହାର ଲୋକଙ୍କ ଭିତରୁ ଥାନ୍ତି ।

ଖୁଡ଼ୀ ଆସିବା ପରେ ଆମ ଘରର ସାଂସ୍କୃତିକ ଅବସ୍ଥାଓ ଏକଦମ ବଦଳିଗଲା । ଖୁଡ଼ୀ ଥିଲେ ଗୁରୁଦେବ ରବୀନ୍ଦ୍ରନାଥଙ୍କର ପ୍ରିୟ ଛାତ୍ରୀ । ଶାନ୍ତିନିକେତନର ସର୍ବଶ୍ରେଷ୍ଠ ଗାୟିକା ଓ ନର୍ତ୍ତକୀ କହିଲେ ଚଳେ । ସେ କେତେବେଳେ ଘରେ,ତ କେତେବେଳେ ଖରାବେଳେ ତ ସନ୍ଧ୍ୟାସମୟରେ ଘଣ୍ଟା ଘଣ୍ଟା ବଜାଇ ରବୀନ୍ଦ୍ର ସଙ୍ଗୀତର ସୁଅ ଛୁଟାଇ ଦିଅନ୍ତି । ଆମ ଘରେ ସମସ୍ତେ ଗୀତ ଭଲ ପାଉଥିଲେ, ବେଳେବେଳେ ମାମୁଁ ଘରକୁ ଯାଇ ରେକର୍ଡ ବଜେଇ ଗ୍ରାମୋଫୋନ୍‌ରେ ଗୀତ ଶୁଣୁ । ମାତ୍ର ଘରେ ଗାୟକ ବା ଗାୟିକା କେହି ନ ଥିଲେ । ପୁଣି ଆମେ ପିଲାମାନେ ପତ୍ରପତ୍ରିକାରେ ବାହାରୁଥିବା ଫଟୋ ଭଳି ବାସ୍ତବଧର୍ମୀ ଚିତ୍ର ସବୁ ପସନ୍ଦ କରୁଥାଉ । ସେ ଆମକୁ ନନ୍ଦଲାଲ ବସୁ, ଅବନୀନ୍ଦ୍ରନାଥ ଠାକୁର, ଗଗନେନ୍ଦ୍ରନାଥ ଠାକୁର ପ୍ରଭୃତିଙ୍କର ଅଙ୍କା ଉଚ୍ଚକୋଟିର ଭାରତୀୟ ଶୈଳୀର ଚିତ୍ରର କଦର କରିବା ଶିଖାଇଲେ । ଗଣେଶ ପୂଜା, ସରସ୍ୱତୀ ପୂଜା ପୂର୍ବରୁ 'ନମୋ ନମୋ' କରି ସାରିଦିଆ ହେଉଥିଲା । ଖୁଡ଼ୀ ଆସି ସେ ସବୁ ଉପଲକ୍ଷ୍ୟରେ ଘରକୁ ଡାଳ ପତ୍ର ଫୁଲ ଦେଇ ସଜେଇ ଶୋଭାମୟ କଲେ ।

ତାଙ୍କର ତେଜସ୍ୱୀତାର ପରିଚୟ ସେଦିନ ଦେଖିବାକୁ ମିଳିଥିଲା । କଟକକୁ ନୂଆ ବୋହୂ ହୋଇ ଆସିବାର ଅଳ୍ପଦିନ ପରେ ଥରେ ସେ ଅଉ ଦାଦା ସନ୍ଧ୍ୟାବେଳେ ରାସ୍ତାରେ ଯାଉଥିଲେ । ଜଣେ କେହି ପୁଲିସ ଅଧିକାରୀ ତାଙ୍କ ଉପରକୁ ଟର୍ଚ୍ଚ ପକାଇଲା । ଏଭଳି ଅଭଦ୍ରତା ପାଇଁ ଖୁଡ଼ୀ ତାଙ୍କୁ ଏପରି ଧମକ ଦେଲେ ଯେ ସେ ବିଚରା ମୁହଁ ମରା ହୋଇ ରହିଗଲା ।

୧୯୬୮ ଜୁନ୍‌ମାସରେ ବୁବୁ—ଈଶ୍ୱର—ଜନ୍ମ ହେଲା ଓ ବୈଜ୍ଞାନିକ ଢଙ୍ଗରେ ଶିଶୁପାଳନର ଏକ ଧୂମ ଚାଲିଲା । ଠିକ ସମୟରେ ଖୁଆଇବା, ଏକୁଟିଆ ଶୁଆଇବା ଆଦିର ପ୍ରୟୋଗ ସେକାଳର ମନୋବୈଜ୍ଞାନିକମାନଙ୍କର ମତ ଅନୁସାରେ ଆରମ୍ଭ ହେଲା । ଏଥିରେ ଖାସ ବିଶେଷତ୍ୱ ହେଲା ଯେ, ଦାଦା ପିଲା ପାଳିବାର ଏସବୁ କାମ ନିଜେ ଉତ୍ସାହର ସହ କରୁଥାଏ । ସେ ଯୁଗରେ ବାପାମାନେ ପିଲାଙ୍କୁ କୋଳରେ ଧରିବା ପୁଣି ଲଜ୍ଜାର କଥା ବୋଲି ମନେ କରାଯାଉଥିଲା । ଏ ନୂଆ ପ୍ରୟୋଗରେ ଆମ ଘରେ ରହୁଥିବା ବିଶୁଦା (ବିଶ୍ୱନାଥ ପଣ୍ଡା), ବଳିଅଦା (ବଳଦେବ ଦାସ) ପ୍ରଭୃତି ଉତ୍ସାହରେ ଭାଗ ନେଉଥିଲେ ଓ କ୍ରମେ ଏ ନୂଆ ରୀତି ଦାଦାର ବନ୍ଧୁମାନଙ୍କ ଭିତରେ ବ୍ୟାପିଲା ଓ ଅନ୍ୟମାନେ ବି ତାହା ଗ୍ରହଣ କଲେ ।

ପରବର୍ତ୍ତି କାଳରେ ଅବଶ୍ୟ ମନସ୍ତତ୍ତ୍ୱବିଦ୍‌ମାନେ ମତ ଦେଲେ ଯେ ଖାଇବା ସମୟକୁ ଏତେ ଘଣ୍ଟା ମିନିଟ ଧରି କଡ଼ାକଡ଼ି କରିବା ଠିକ୍ ନୁହେଁ । ଭୋକ କଲେ ଖାଇବାକୁ ଦେବ ଓ ମା'ପାଖରେ ପିଲା ଶୋଇବା ଭଲ । ମାତ୍ର ଏ ନୂଆ ପଦ୍ଧତିର ସାର କଥା ଥିଲା ପିଲା ମଣିଷ କରିବାରେ ବାପମା ଉଭୟ ସମୟ ଦେବା ଓ ତାହା ବ୍ୟବସ୍ଥିତ ଭାବରେ କରିବା ।

କିଛିଦିନ ପରେ ଦାଦା ଓ ଖୁଡ଼ୀ ଉଭୟ ବୁବୁକୁ ନେଇ ଅଣଖିଆରେ ରହିବାକୁ ଗଲେ । ସେଠି ଗ୍ରାମବାସ କାମ ଛଡ଼ା ଗାଁମାନଙ୍କ ସହିତ ସମ୍ପର୍କ କରିବା ମଧ୍ୟ ସେମାନେ ଆରମ୍ଭ କଲେ । ସମସ୍ତଙ୍କ ପଛରେ ସବୁଦିନେ ପଡ଼ିଥିବା ଲୋକଙ୍କ ପ୍ରତି ସେମାନଙ୍କର ଦରଦ ହିଁ ସେମାନଙ୍କୁ ସଦାବେଳେ ପ୍ରେରିତ କରୁଥିଲା । ଅଣଖିଆ ଫାର୍ମରୁ କିଛି ଦୂରରେ ମଙ୍ଗଳପୁରଠାରେ ଏକ କେଳା ବସ୍ତି ଥାଏ । ଖୁଡ଼ୀ ଓ ଦାଦା ସେଠାକୁ ଯାଇ ସେମାନଙ୍କ ସହିତ ସମ୍ପର୍କ ଓ ବନ୍ଧୁତ୍ୱ ବାନ୍ଧିଲେ ଓ ସେମାନଙ୍କର ଜୀବନଶୈଳୀ ଓ ସମସ୍ୟା ସହିତ ପରିଚିତ ହେଲେ । ସେହି ସମୟରେ ସେଠୁ ଅଳ୍ପଦୂରରେ ଥିବା ବାଗଲପୁର ଗାଁରେ ହରିଜନମାନେ ସବର୍ଣ୍ଣଙ୍କର ଅସଦ୍‌ବ୍ୟବହାର ବିରୋଧରେ ଉଠି ଗାଁ'ଛାଡ଼ି ଚାଲି ଆସିଥିଲେ । ଏହା ଦାଦା ଓ ଖୁଡ଼ୀଙ୍କ ପ୍ରଭାବ ଯୋଗୁଁ ହୋଇଥିଲା । ସେତେବେଳକୁ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆରମ୍ଭ ନ ହୋଇଥିଲେ ମଧ୍ୟ ଦାଦାଖୁଡ଼ୀ ଅସ୍ପୃଶ୍ୟତା ମାନୁ ନ ଥାନ୍ତି । ଏହି ବାଗଲପୁର ଗାଁ'ରୁ ବହୁ ସ୍ୱାଧୀନତା ସଂଗ୍ରାମୀ ବାହାରିଥିଲେ । ଗୋଟିଏ ଗାଁ'ରୁ ଏତେ ମହିଳା ଓ ପୁରୁଷ ସତ୍ୟାଗ୍ରହୀ ବାହାରିବା ସାରା ଭାରତରେ ବି କମ ଦେଖା ଯାଇଥିବ ।

ଖୁଡ଼ୀଙ୍କର ଗୋଟାଏ ଗୁଣ ଥିଲା ସେ ସାଧାରଣ ଲୋକଙ୍କ ସାଙ୍ଗରେ ଅତି ସହଜରେ ମିଶିଯାଇ ପାରୁଥିଲେ । ଏହା ଯୋଗୁଁ ପରେ ସେ ଆନ୍ଦୋଳନମାନଙ୍କରେ ଲୋକଙ୍କୁ ସହଜରେ ଆକୃଷ୍ଟ କରି ପାରୁଥିଲେ । ଅଣଖିଆରେ ଥିବା ବେଳେ କେଉଁଠି ହୁଏତ ଦୁଇତିନ ମାଇଲ ଯିବାକୁ ଥିବ । ରାସ୍ତାରେ ଯାଉଯାଉ ଖୁଡ଼ୀ ଦେଖିଲେ ଯେ ଗୋଟାଏ ଖାଲି ଶଗଡ଼ ଆସୁଛି । ସେଠୁ ତାକୁ ଡାକି କହିବେ, "ଏ ଭାଇ ! ଆମକୁ ଟିକେ ଅମୁକ ଗାଁ ଯାଏ ନେଇଯା" ଓ ଖୋଲା ଶଗଡ଼ଟାରେ ଆମେସବୁ ବସି ବୁଲିବୁ ।

ସେଠି ସେ ଗାଁ ଲୋକଙ୍କ ପାଇଁ ଥରେ ଦୁଇଥର ଖେଳକୁଦର ଆୟୋଜନ ମଧ୍ୟ କରାଇଥିଲେ । ସ୍ୱଦେଶୀ ଖେଳକୁଦ, ବାଗୁଡ଼ି, ଲୁଣଚୋରି ଆଦିର । ଲଠି ବୁଲାଇବା ପ୍ରଭୃତି କୌଶଳର ପ୍ରତିଯୋଗିତା ସେଥିରେ ହେଉଥିଲା ।

୧୯୩୦ରେ ଲବଣ ସତ୍ୟାଗ୍ରହର ଦୁନ୍ଦୁଭି ବାଜିବାରୁ ଅଲକାଶ୍ରମରୁ ବାପା, ବୋଉ, ଅଣଖିଆରୁ ଦାଦା, ଖୁଡ଼ୀ ସବୁ ଛାଡ଼ିଛୁଡ଼ି ଦେଇ ଆନ୍ଦୋଳନର ନେତୃତ୍ୱ ନେଲେ । ବୋଉ ଓ ଖୁଡ଼ୀ କଟକରେ ବାନର ସେନା ଓ ମହିଳା ସତ୍ୟାଗ୍ରହୀମାନଙ୍କୁ ସଙ୍ଗଠିତ କରିବା ଓ ହିମତ ଦେବା କାମ କଲେ । ସ୍କୁଲ, କଲେଜ, ଗଞ୍ଜେଇ ଅଫିମ ଓ ମଦ ଦୋକାନ ତଥା ବିଲାତି ଲୁଗା ଦୋକାନମାନଙ୍କରେ ବାନର ସେନା ତଥା ମହିଳା ସତ୍ୟାଗ୍ରହୀମାନେ ପିକେଟିଂ କରୁଥିଲେ । ବାନର ସେନା, ଅର୍ଥାତ୍ ଅଳ୍ପ ବୟସ୍କ ବାଳକ ସତ୍ୟାଗ୍ରହୀ-ମାନଙ୍କୁ ଦଣ୍ଡ ସ୍ୱରୂପ ହାତ ପାପୁଲିରେ ଦଶରୁ କୋଡ଼ିଏ ପଚିଶ ପାହାର ଯାଏ ବେତମାଡ଼ ଦିଆଯାଉଥିଲା । ପାପୁଲି ଫାଟି ଘା ହୋଇଯାଏ । ହାତରେ କୌଣସି କାମ କରିପାରନ୍ତି ନାହିଁ । ବୋଉ ଓ ଖୁଡ଼ୀ ସେମାନଙ୍କୁ ଗାଧୋଇ ଦେବା, ଶୌଚ କରାଇବା ଠାରୁ ଖୁଆଇ ଦେବାଯାଏ ସବୁ କାମ କରିଦିଅନ୍ତି । ସେମାନେ ସୁସ୍ଥ ହେଲେ ପୁଣି ଯାଇ ପିକେଟିଂରେ ଠିଆ ହୁଅନ୍ତି ।

ମହିଳା ସତ୍ୟାଗ୍ରହୀମାନଙ୍କୁ ଦୁଇଟା ସାମ୍ନାରେ ଲଢ଼ିବାକୁ ପଡ଼ୁଥିଲା । ସେମାନେ ବାପା, ସ୍ୱାମୀ ବା ଭାଇଙ୍କ କଥା ନ ମାନି ଆନ୍ଦୋଳନରେ ଯୋଗ ଦେଉଥିଲେ ଓ ପୁଣି ଇଂରେଜ ସରକାର ସହିତ ଲଢ଼େଇ ତ ଥିଲା । ଆନ୍ଦୋଳନରେ ଯୋଗ ଦିଆଇ ନ ଦେବା ପାଇଁ ଏହି ମହିଳାମାନଙ୍କୁ ଆତ୍ମୀୟମାନେ ନାନାପ୍ରକାର ଯାତନା ଦେଉଥିଲେ । ସେଇମାନେ ଖସି ବୁଲି ଆସୁଥିଲେ ସେମାନଙ୍କୁ ଫେରାଇ ନେବା ପାଇଁ ପୁଲିସ୍‌ର ସାହାଯ୍ୟ ନେଉଥିଲେ । ଏହି ପରିସ୍ଥିତିରେ ସେମାନଙ୍କୁ ହିମତ ଦେଇ ସେମାନଙ୍କ ମନୋବଳ ବଢ଼ାଇବାରେ ବୋଉ ଓ ଖୁଡ଼ୀଙ୍କର ସ୍ନେହ ଓ ସାହସ ବହୁତ ସହାୟକ ହେଉଥିଲା ।

ଏହି ସମୟରେ ସେମାନେ ପ୍ରଚାର, କର୍ମୀ ସଂଗ୍ରହ ଓ ଅର୍ଥ ସଂଗ୍ରହ ପାଇଁ ଗାଁମାନଙ୍କରେ ଗସ୍ତ କରୁଥିଲେ ଓ ସେଥିରେ ସେମାନଙ୍କୁ କେଉଁଠି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ମିଳୁଥିଲା ତ କେଉଁଠି ପୁଲିସ ଭୟରେ କେହି ତାଙ୍କୁ ପାଖ ପୁରାଇ ଦେଉ ନ ଥିଲେ । ୧୯୩୦ରେ ଶ୍ରୀଜଙ୍ଗ ଗାଁରେ ପୁଲିସ୍ ଅତ୍ୟାଚାରର ଖବର ବୁଝିବାକୁ ଯାଇ ସେମାନଙ୍କୁ ଏହିପରି ହଇରାଣ ହେବାକୁ ପଡ଼ିଥିଲା । ସାରାଦିନ ଗଣ୍ଡିଏ ମୁଢ଼ି ଖାଇ ବର୍ଷାରେ ଚଉଦ ପନ୍ଦର ସତର ମାଇଲ ବୁଲିବାକୁ ପଡ଼ିଥିଲା ।

୧୯୩୨ର ଆନ୍ଦୋଳନରେ ଏ ଦୁହେଁ କୁଜଙ୍ଗର ରାଣୀ ଓ ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ସହଯୋଗିତାରେ କୁଜଙ୍ଗ ଅଞ୍ଚଳର ହଜାର ହଜାର ଗ୍ରାମବାସୀ ମହିଳାଙ୍କୁ ଲବଣ ଆଇନ ଭଙ୍ଗ କରିବାକୁ ପ୍ରବର୍ତ୍ତାଇ ପାରିଥିଲେ । ଗାଉଁଲି ସ୍ତ୍ରୀଲୋକମାନଙ୍କ ଭିତରେ ଏ ଅଯମ୍ଭବନୀୟ ବିଦ୍ରୋହ ଦେଖି ହାକିମ ଓ ପୁଲିସ ହତଭମ୍ବ ହୋଇଯାଇଥିଲେ । କଣ କରିବେ ବୁଝି ପାରି ନ ଥିଲେ ।

୧୯୩୩ରେ ଶେଷ ଆଡ଼କୁ ଗାନ୍ଧୀଙ୍କ ଆଇନ ଅମାନ୍ୟ ମୁଲତବି ରଖି ସତ୍ୟାଗ୍ରହୀମାନଙ୍କୁ ଗାଁକୁ ଯାଇ ବିଭିନ୍ନ ରଚନାତ୍ମକ କାମ କରିବାକୁ ପରାମର୍ଶ ଦେଲେ । ଯେତେବେଳକୁ ସାମ୍ୟବାଦୀ ଓ ସମାଜବାଦୀ ଚିନ୍ତାଧାରାର ହାଓ୍ୱା ଦେଶରେ ବହିବାକୁ ଆରମ୍ଭ କରିଥାଏ । ଏହାର ଚର୍ଚ୍ଚା ଆଲୋଚନାରେ ଦାଦା ଓ ଖୁଡ଼ୀ ଓଡ଼ିଶାରେ ଅଗ୍ରଣୀ ଥାଆନ୍ତି । ଏ ବିଷୟରେ ନାନା ଗ୍ରନ୍ଥ ଓ ପତ୍ର ପତ୍ରିକା ସଂଗ୍ରହ କରି ସେସବୁର ଅଧ୍ୟୟନ ଚାଲିଥାଏ । କଟକରେ ଆମର ବାଖରାବାଦ ଘରେ ପ୍ରତିଦିନ ଉପରଓଳି ଯୁବକମାନଙ୍କର ଆଡ୍ଡା ବସେ । ସେଥିରେ ଥାଆନ୍ତି ଅନନ୍ତ ପଟ୍ଟନାୟକ, ଭଗବତୀ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ପ୍ରଭୃତି ।

୧୯୩୪ ମସିହାରେ ଏକ ସମୟରେ ଅଣଖିଆରେ ଏକ ବୈଠକରେ ଓଡ଼ିଶା କଂଗ୍ରେସ ସମାଜବାଦୀ କର୍ମୀ ସଙ୍ଘ ଗଢ଼ା ହେଲା । ଏ ବୈଠକରେ ଦାଦା ଓ ଖୁଡ଼ୀଙ୍କ ବ୍ୟତୀତ ମୁଁ, ଗୌରଚନ୍ଦ୍ର ଦାସ, ସୁରେନ୍ଦ୍ର ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ ପ୍ରଭୃତି ଥିଲୁ । ଏ ଦଳର ନୀତି ଭିତରେ ଏ କଥା ଥିଲା ଯେ ଏହା ମହାତ୍ମା ଗାନ୍ଧୀଙ୍କର ଗତିଶୀଳ

(dynamic) ଅହିଂସାରେ ବିଶ୍ୱାସ କରେ । ପରେ ୧୯୩୪ରେ ରାଷ୍ଟ୍ର ସ୍ତରରେ କଂଗ୍ରେସ ସମାଜବାଦୀ ଦଳ ଗଢ଼ା ହେଲା । ମାତ୍ର ସେ ଦଳ ବା ଅନ୍ୟ ସମାଜବାଦୀମାନେ ଗାନ୍ଧୀଜୀଙ୍କର ଅହିଂସାକୁ ସ୍ୱୀକାର କରି ନ ଥିଲେ ।

ଏ ବୈଠକ ଶେଷରେ ଖଡ଼ୀ ରବୀନ୍ଦ୍ରନାଥଙ୍କର "ଆମାଦେର ଯାତ୍ରା ହଲୋ ଶୁରୁ" ଗୀତ ଗାଇଥିଲେ । ପ୍ରତ୍ୟେକ ଘଟଣାରେ ଏହିପରି ଭାବରେ ଆପଣାର ଭାବାବେଗ ସେ ରବୀନ୍ଦ୍ର ସଙ୍ଗୀତ ଗାଇ ପ୍ରକାଶ କରୁଥିଲେ । ୧୯୩୪ରେ ଏକ ସମୟରେ ପୁନେଠାରେ ଗାନ୍ଧୀଜୀଙ୍କର ଏକ ସଭାରେ ଏକ ବୋମା ବିସ୍ଫୋରଣ ହେଲା । ଅସ୍ପୃଶ୍ୟତା ନିବାରଣର ବିରୋଧ କରୁଥିବା କେହି କଟ୍ଟର ହିନ୍ଦୁ ଏହା ଫିଙ୍ଗିଥିଲେ । ଏ ଖବର ଆମେ କଟକରେ ପାଇବା ମାତ୍ରେ ଖଡ଼ୀ ଗାଇ ଉଠିଲେ "ତୋମାର ଆସନ ଶୂନ୍ୟ ଆଜ ହେ ବୀର ! ପୂର୍ଣ୍ଣ କରୋ"......

......ଆଜ ପ୍ରଭାତେ ଦକ୍ଷିଣ ହାତେ
ବିଜୟ ଖଡ଼୍‌ଗ ଧରୋ ।
ଧର୍ମ ତୋମାର ସହାୟ ତୋମାର
ସହାୟ ବିଶ୍ୱ ବାଣୀ
ଅମର ବୀର୍ଯ୍ୟ ସହାୟ ତୋମାର
ସହାୟ ବଜ୍ରପାଣି
ଦୁର୍ଗମ ପଥ ସଗୌରବେ
ତୋମାର ଚରଣ ଚିହ୍ନ ଲବେ
ଚିତ୍ତେ ଅଭୟ ବର୍ମ ତୋମାର
ବକ୍ଷେ ତାହାଇ ଧରୋ ।"

ଖଡ଼ୀ ତାଙ୍କର ସମସ୍ତ ଗହଣା ବିକି ୭୦୦୦ ଟଙ୍କା ସମାଜବାଦୀ ଆନ୍ଦୋଳନ ପାଇଁ ଦାନ କଲେ । ୧୯୩୪ର ଓଡ଼ିଶାରେ ଗାନ୍ଧୀଜୀଙ୍କର ହରିଜନ ଗସ୍ତ ଖାଡ଼ିମଟରରେ ହେବାର ଥାଏ, ମାତ୍ର ପୁରୀରେ ସେ ହରିଜନଙ୍କୁ ନେଇ ଜୋରକରି ଜଗନ୍ନାଥ ମନ୍ଦିରରେ ପଶିବେ ବୋଲି ଓ ତେଣୁ ପଣ୍ଡାମାନେ ଗାନ୍ଧୀଜୀଙ୍କ ଉପରେ ଆକ୍ରମଣ କରିବେ ବୋଲି ଗୁଜବ ବ୍ୟାପିଥାଏ । ପୁରୀର ଅଭ୍ୟର୍ଥନା ସମିତି ସେଥିପାଇଁ ସୁଦୃଢ଼ ସୁରକ୍ଷାର ବ୍ୟବସ୍ଥା କରିଥାନ୍ତି । ପୁରୀ ରେଲ ଷ୍ଟେସନରେ ପହଞ୍ଚି ପୁଲିସ୍ ବନ୍ଦୋବସ୍ତ ଦେଖି ଗାନ୍ଧୀଜୀ ସ୍ଥିର କଲେ ଯେ, ସେ ପୁରୀ ଠାରୁ ପଦଯାତ୍ରା କରିବେ । ତାଙ୍କର ପୂର୍ବର ସମସ୍ତ ଗସ୍ତ ବାତିଲ ହୋଇଗଲା । ଏସବୁ ବିଭିନ୍ନ ସ୍ଥାନରେ ସବୁ ଆଦର ଆୟୋଜନ କରିଥିବା କର୍ମୀ ଓ ଲୋକେ ହତାଶ ହେଲେ । ଏହି ନିଷ୍ପତ୍ତି ବିରୋଧରେ ଗାନ୍ଧୀଜୀଙ୍କ ସହିତ ଯୁକ୍ତି କରିବାକୁ ଖଡ଼ୀ ଆସି ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁର ଛାଉଣୀରେ ପହଞ୍ଚିଲେ ଓ ଗାନ୍ଧୀଜୀଙ୍କୁ ଆପଣାର ବିରୋଧ ଅତି ପ୍ରବଳଭାବରେ ଜଣାଇଲେ । ଗାନ୍ଧୀଜୀ ତାଙ୍କ ନିଷ୍ପତ୍ତିରେ ଅଟଳ ରହି ତାର ଯୌକ୍ତିକତା ଖଡ଼ୀଙ୍କୁ ବୁଝାଇ ଦେଲେ ଓ ତାଙ୍କର ତେଜସ୍ୱୀନ ସ୍ୱଭାବ ଦେଖି ତାଙ୍କର ନାମକରଣ କଲେ 'ତୋଫାନୀ' ।

ସେହି ପଦଯାତ୍ରାରେ ଗାନ୍ଧୀଜୀ ଆସି କାଠଜୋଡ଼ି ନଦୀର କଟକ ସହରର ଆରପାରି କାଜିପାଟଣାଠାରେ ସକାଳେ ପହଞ୍ଚିଲେ । ସେଠି କଟକବାସୀଙ୍କ ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ସେଠି ଖଡ଼ୀ ଭାବବିହ୍ୱଳ ହୋଇ ଗାନ୍ଧୀଜୀଙ୍କ ପାଦ ଧୋଇଦେଇ ଆପଣା ମୁଣ୍ଡବାଳରେ ପୋଛିଦେଲେ । ଯୀଶୁ ଖ୍ରୀଷ୍ଟଙ୍କ ଜଣେ ନାରୀଭକ୍ତ ତାଙ୍କର ପାଦ ଧୋଇ ଏହିପରି ଆପଣା ମୁଣ୍ଡବାଳରେ ପୋଛି ଦେଇଥିଲେ ବୋଲି ବାଇବେଲରେ ବର୍ଣ୍ଣନା ଅଛି । ଗାନ୍ଧୀଜୀଙ୍କୁ ସ୍ୱାଗତ କରି ଖଡ଼ୀ ରବୀନ୍ଦ୍ରନାଥଙ୍କର ଏକ ସଙ୍ଗୀତ ଗାଇଥିଲେ—

"ତୋମାର ଆନନ୍ଦ ଓଇ ଏଲୋ
ଦ୍ୱାରେ ଏଲୋ ଗୋ,
ଓଗୋ ପୁରବାସୀ—" ।

ସମାଜବାଦୀ ଚିନ୍ତାଧାରାରୁ ସାରା ଭାରତରେ କୃଷକ ଆନ୍ଦୋଳନ ଆରମ୍ଭ ହେଲା । ଓଡ଼ିଶାରେ ଦାଦା ଓ ଖଡ଼ୀ ସେଥିରେ ପୂର୍ଣ୍ଣ ପ୍ରାଣରେ ଲାଗିଲେ । କଟକ ଓ ପୁରୀ ଜିଲ୍ଲାରେ ଏ ଆନ୍ଦୋଳନ ବେଶ ବ୍ୟାପକ ହେଲା ଓ ଜମିଦାରମାନଙ୍କର ନାନା ପ୍ରକାର ଅତ୍ୟାଚାର ଓ ଅନ୍ୟାୟ ପାହୁଣା, ବେଠି ଆଦି ବିରୋଧରେ ଚାଷୀମାନେ ଜାଗି-ଉଠିଲେ, ଆପଣାର ଗଛର ଫଳ ଓ ପୋଖରୀର ମାଛ ଉପରେ ଆପଣା ଅଧିକାର ବିଷୟରେ ସଚେତନ ହେଲେ ଓ ଅନ୍ୟାୟ ଅତ୍ୟାଚାରର ପ୍ରାଦୁର୍ଭାବ ବହୁତ ଊଣା ହୋଇଗଲା । ୧୯୩୭ରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ କ୍ଷମତାକୁ ଆସିବା ପରେ ଚାଷୀମାନଙ୍କୁ ଗଛ ମାଛରେ ଅଧିକାର ଦେଇ ଆଇନ ମଧ୍ୟ ପ୍ରଣୟନ କରାଗଲା । ସାହୁକାରମାନେ ଋଣ ଉପରେ ନେଉଥିବା ମନଇଚ୍ଛା ସୁଧକୁ ଆଇନ ଅନୁସାରେ ଶତକଡ଼ା ୧୨·୫ ରେ ବାନ୍ଧି ଦିଆଗଲା ଓ ଋଣ ଓ ସୁଧ ମିଶି ସାହୁକାର କେବଳ ମୂଳର ଦୁଇଗୁଣ ଖାତକଠାରୁ ଆଦାୟ କରି ପାରିବ ବୋଲି ଆଇନଗତ କଟକଣା ହେଲା ।

ପୂର୍ବରୁ ବ୍ୟାପକ ଓ ଝାଞ୍ଜିଆ ଆନ୍ଦୋଳନ ହେଇ ସ୍ତ୍ରୀମାନେ ଜାଗିଉଠିଥିଲେ ବୋଲି ଏସବୁ ଆଇନ ଜାରି କରାଯାଇଥିଲା । ନହେଲେ ଅନ୍ୟ ଅନେକ ଆଇନ ଭଳି ତାହା କେବଳ ତୋରବନ୍ଧା ହେଇ ରହିଥାନ୍ତା ।

ଭାରତରେ ସେତେବେଳର ସାତଟା ପ୍ରଦେଶରେ କଂଗ୍ରେସମନ୍ତ୍ରୀମଣ୍ଡଳ ୧୯୩୭ରେ ଗଢ଼ା ହେବା ପରେ ସାରା ଭାରତରେ ଗଡ଼ଜାତମାନଙ୍କରେ ମଧ୍ୟ ପ୍ରଜାଙ୍କ ଶାସନ ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ଓଡ଼ିଶାରେ ତାର ନେତୃତ୍ୱ ଦାଦା ଓ ଖୁଡ଼ୀ ନେଲେ । ଖୁଡ଼ୀ ସେତେବେଳେ ଢେଙ୍କାନାଳରେ ବହୁତ ବୁଲି ବୁଲି କରି ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିଥିଲେ ।

ଅନୁଗୁଳକୁ ଇଂରେଜମାନେ ତାଙ୍କୁ ଚାରିପାଖରୁ ଘେରି ରହିଥିବା ଗଡ଼ଜାତମାନଙ୍କ ମଝିରେ ଏକ ଇଂରେଜ ଶାସିତ ଅଞ୍ଚଳ ରୂପେ ରଖିଥିଲେ । ସେଠି ବସି ଇଂରେଜ ଅଧିକାରୀମାନେ ଚାରିପାଖର ଗଡ଼ଜାତମାନଙ୍କୁ ସହଜରେ ନିୟନ୍ତ୍ରିତ କରୁଥିଲେ । ଏବେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଅମଳରେ ଗଡ଼ଜାତମାନଙ୍କରେ ଆନ୍ଦୋଳନ ସହିତ ଯୋଗ ସୂତ୍ର ରଖି ସେସବୁକୁ ଚାଳନା ଦେବା ପାଇଁ ଅନୁଗୁଳ ସବୁଠାରୁ ସୁବିଧା-ଜନକ ସ୍ଥାନ ହେଲା । ଦାଦା ଓ ଖୁଡ଼ୀ ଯାଇ ଅନୁଗୁଳରେ ଅସ୍ଥାନ ଜମେଇଲେ । ସେଠି ଗିରିଜାଭୂଷଣ ଦତ୍ତ ନାମକ ଜଣେ ନିର୍ଭୀକ ଓ ଦେଶପ୍ରେମୀ ସଜ୍ଜନ ଠିକାଦାରୀ କାମ କରୁଥିଲେ । ୧୯୩୪ରେ ଗାନ୍ଧୀଜୀଙ୍କର ହରିଜନ ଯାତ୍ରା ସମୟରେ ଅନୁଗୁଳର ଡେପୁଟୀ କମିଶନର୍ ଦୁର୍ଗାଚରଣ ଦାସ ସେଠାରେ ଗାନ୍ଧୀଜୀଙ୍କୁ ରହାଇ ନ ଦେବ ଓ ସଭା କରାଇ ନ ଦେବା ପାଇଁ ଯଥାସମ୍ଭବ ଉଦ୍ୟମ କରି-ଥିଲେ । ସେତେବେଳେ ଗିରିଜା ବାବୁ ହିଁ ବଡ଼ ହାକିମଙ୍କ କ୍ରୋଧକୁ ନ ଡରି ଅନୁଗୁଳରେ ଗାନ୍ଧୀଜୀ ଓ ସାଥୀମାନଙ୍କର ରହିବା ବ୍ୟବସ୍ଥା କରିଥିଲେ । ମଜାର କଥା ଯେ ଡେପୁଟୀ କମିଶନର୍ ସାହେବ ଅନୁଗୁଳର ଗାଁ ଗାଁରେ ଚୌକିଦାର-ମାନଙ୍କ ଦ୍ୱାରା ଗାନ୍ଧୀଙ୍କ ସଭାକୁ ନ ଆସିବା ପାଇଁ ଲୋକଙ୍କୁ ଧମକାଇବା ଫଳରେ ସଭାର ଭଲ ପ୍ରଚାର ହେଇଗଲା ଓ ସେଥିରେ ଅଭୂତପୂର୍ବ ଜନସମାଗମ ହେଇଥିଲା ।

ଏହି ଗିରିଜାବାବୁଙ୍କର ଅନୁଗୁଳରେ ଖଣ୍ଡେ ଜମି ଓ ସାନ ଘର ଖଣ୍ଡେ ଥିଲା । ଦାଦା ଓ ଖୁଡ଼ୀ ସେଇଠି ଯାଇଁ ଆଶ୍ରୟ ନେଲେ । ପରେ ଏଇଠି ବାଜିରାଉତ ଛାତ୍ରାବାସ ଗଢ଼ିଉଠିଲା ।

ଢେଙ୍କାନାଳ ଓ ତାଳଚେରରେ ପ୍ରଜା ଆନ୍ଦୋଳନ ଯେପରି ତେଜି ଉଠିଲା, ତାଳଚେରରୁ ହଜାର ହଜାର ଲୋକ ପିଲାଛୁଆଙ୍କ ସମେତ ରାଜ୍ୟ ତ୍ୟାଗ କରି ଆସି ଅନୁଗୁଳର ବିଭିନ୍ନ ସ୍ଥାନରେ ଆଶ୍ରୟ ନେଲେ, ସେସବୁର ବିଶଦ ବର୍ଣ୍ଣନା ପାଇଁ ଏଠି ସ୍ଥାନ ନାହିଁ । ସେସବୁ ଆନ୍ଦୋଳନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିବା ବନ୍ଧୁମାନେ ସେ ବିଷୟରେ ଲେଖିଛନ୍ତି । ଆନ୍ଦୋଳନରେ ଝାସ ଦେଇ ସବୁ ପ୍ରକାରର କଷ୍ଟକୁ ଛାତି ପତେଇଥିବା ଏସବୁ ହଜାର ହଜାର ଗ୍ରାମବାସୀଙ୍କୁ ଖୁଡ଼ୀଙ୍କର ତେଜସ୍ୱୀ ଓ ମମତାମୟୀ ମୂର୍ତ୍ତି ହିଁ ଶକ୍ତି ଓ ସାହସ ଯୋଗାଉଥିଲା ।

ସେହି ଦଶନ୍ଧିରେ ପରିସ୍ଥିତିର ନାଟକୀୟ ପରିବର୍ତ୍ତନ ଗୋଟିକ ପରେ ଗୋଟିଏ ଘଟି ଚାଲିଥାଏ । ଏଣେ ଗଡ଼ଜାତ ଆନ୍ଦୋଳନ କୌଣସି ନିଷ୍ପତ୍ତିରେ ପହଞ୍ଚୁଣୁ ନ ପହଞ୍ଚୁଣୁ ତେଣେ ଏକ ପକ୍ଷରେ ଜର୍ମାନୀ ଓ ଇଟାଲି ଓ ଅନ୍ୟ ପକ୍ଷରେ ଇଂଲଣ୍ଡ ଓ ଫ୍ରାନ୍ସ ଭିତରେ ଯୁଦ୍ଧ ଆରମ୍ଭ ହେଇଗଲା । ଭାରତବାସୀଙ୍କ ମତ ନ ନେଇ ଇଂରେଜ ସରକାର ଭାରତକୁ ନିଜ ପକ୍ଷରେ ଯୁଦ୍ଧରେ ସାମିଲ କରିଦେଇ ଥିବାରୁ ପ୍ରତିବାଦ କରି କଂଗ୍ରେସ ମନ୍ତ୍ରୀମଣ୍ଡଳମାନେ ଇସ୍ତଫା ଦେଲେ । ଇଂରେଜ ସରକାର ଏକ ସାମ୍ରାଜ୍ୟବାଦୀ ଯୁଦ୍ଧରେ ପଶିଥିବା ବେଳେ ତାହା ବିରୋଧରେ ଏକ ବିପ୍ଳବ କରିବାର ପ୍ରକୃଷ୍ଟ ବେଳ ଆସିଛି ବୋଲି ସମାଜବାଦୀ ମହଲରେ ମସୁଧା ଚାଲିଲା । ପୂର୍ଣ୍ଣ ସ୍ୱଶାସନର ଅଧିକାର ଭାରତକୁ ନ ମିଳିଲେ କଂଗ୍ରେସ ଯୁଦ୍ଧରେ ସହଯୋଗ କରିବ ନାହିଁ ବୋଲି ପ୍ରସ୍ତାବ କଲା । ବାଣୀ ସ୍ୱାଧୀନତା ଉପରେ ସରକାର କଟକଣା ଜାରି କରିବାରୁ ଗାନ୍ଧୀଜୀ ତାହା ବିରୋଧରେ ବ୍ୟକ୍ତିଗତ ସତ୍ୟାଗ୍ରହ ୧୯୪୦ରେ ଆରମ୍ଭ କଲେ । ପ୍ରଥମ ସତ୍ୟାଗ୍ରହୀ ରୂପେ ଆଚାର୍ଯ୍ୟ ବିନୋବା, ତାହାପରେ ପଣ୍ଡିତ ଜବାହରଲାଲ୍ ଓ କ୍ରମେ ଅନ୍ୟ ସମସ୍ତ ନେତା ଓ କର୍ମୀମାନେ ଏହି କଥା ପ୍ରଚାର କରି କାରାବରଣ କଲେ ଯେ, "ଏ ଯୁଦ୍ଧରେ ଧନ ବା ଜନ ଦେଇ ସାହାଯ୍ୟ କରିବା ପାପ ଓ ହାରାମ ।" ଏଥିରେ ଓଡ଼ିଶାରେ ଅନ୍ୟ ସମସ୍ତ ନେତାଙ୍କ ଭିତରେ ଦାଦା ଓ ଖୁଡ଼ୀ ମଧ୍ୟ ସତ୍ୟାଗ୍ରହ କରି ଦଣ୍ଡିତ ହେଲେ ।

୧୯୪୧ ଡିସେମ୍ବରରେ ଜାପାନ ଜର୍ମାନୀ ପକ୍ଷରେ ଯୁଦ୍ଧରେ ଯୋଗ ଦେବାରୁ ଏକ ନୂଆ ପରିସ୍ଥିତି ଉପୁଜିଲା । କଂଗ୍ରେସ ସହିତ ମିଳାମିଶା ଉଦ୍ୟମରେ ଇଂରେଜ ସରକାର ସବୁ ରାଜବନ୍ଦୀଙ୍କୁ ଖଲାସ କରିଦେଲେ । ୧୯୪୨ ଆରମ୍ଭରେ

ସର୍ ଷ୍ଟାଫୋର୍ଡ କ୍ରିପ୍‌ସ ଏକ ପ୍ରସ୍ତାବ ନେଇ ମିଳାମିଶା ଉଦ୍ଦେଶ୍ୟରେ ବିଳାତରୁ ଆସିଲେ । ଏ କ୍ରିପ୍‌ସ ପ୍ରସ୍ତାବକୁ କଂଗ୍ରେସ ଅଗ୍ରାହ୍ୟ କଲା ଓ ଗାନ୍ଧୀଜୀ 'ଭାରତଛାଡ଼' ଆନ୍ଦୋଳନର ଆହ୍ୱାନ ଦେଲେ । ମୁମ୍ବାଇରେ ଅଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଅଗଷ୍ଟ ଆଠ ତାରିଖ ସନ୍ଧ୍ୟାରେ ଭାରତ ଛାଡ଼ ପ୍ରସ୍ତାବ ଗୃହୀତ ହେଲା ଓ ନଅ ତାରିଖ ଭୋରରେ ଗାନ୍ଧୀଜୀଙ୍କ ସମେତ ସବୁ ନେତା ଗିରଫ ହୋଇଗଲେ । ବୈଠକରେ ଯୋଗ ଦେଇ ଖୁଡ଼ୀ ଓ ସୁରେନ୍ଦ୍ର ଦ୍ୱିବେଦୀ କିପରି ପୁଲିସର ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼େଇ ଆସି ଓଡ଼ିଶାରେ ପହଞ୍ଚିଲେ ତାର ଚମତ୍କାର ବର୍ଣ୍ଣନା ଶ୍ରୀ ଦ୍ୱିବେଦୀ ତାଙ୍କ ଲେଖାରେ କରିଛନ୍ତି । ମାତ୍ର ଖୁଡ଼ୀ ଅଳ୍ପ ଦିନ ପରେ ଧରାପଡ଼ିଗଲେ ଓ ଅଟକବନ୍ଦୀ ହୋଇ ୧୯୪୫ ଯାଏ ରହିଲେ ।

ଜେଲରୁ ଖଲାସ ହୋଇ ଖୁଡ଼ୀ ଆସି ଅନୁଗୁଳରେ ବସିଲେ ଓ ସେଠି ରାଜବନ୍ଦୀମାନଙ୍କର ପିଲାମାନଙ୍କର ଯତ୍ନ ନେବା ପାଇଁ ଏକ ଛାତ୍ରାବାସ ଆରମ୍ଭ କଲେ । ଏହାହିଁ ବିଖ୍ୟାତ ବାଜିରାଉତ ଛାତ୍ରାବାସର ଜନ୍ମର କାହାଣୀ । ଏହି କାମରେ ତାଙ୍କୁ ଖାସ୍ କରି କିରଣ ସାହାଯ୍ୟ କରୁଥିଲା । ସେ ବରି ସେବାଘରେ ବଢ଼ିଥିଲା, ଖୁଡ଼ୀଙ୍କ ସାଙ୍ଗରେ ବୟାଳିଶ ମସିହାରୁ ଜେଲରେ ଥିଲା, ପରେ ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କୁ ବିବାହ କଲା ।

ଦାଦା ଓ ଖୁଡ଼ୀଙ୍କର ବଡ଼ ଝିଅ ଉତ୍ତରା ଓରଫ ବୁବୁ ମଧ୍ୟ ଭାରତ ଛାଡ଼ ଆନ୍ଦୋଳନରେ ବନ୍ଦୀ ହୋଇ ଜେଲରେ ଥିଲା । ଜେଲରୁ ବାହାରି ସେ ଯାଇ ସେବାଗ୍ରାମରେ ଆର୍ଯ୍ୟନାୟକମଙ୍କ ଓ ଆଶା ଦେବୀଙ୍କ ପାଖରେ ରହିଲା । ଏ ଦମ୍ପତି ଗାନ୍ଧୀଜୀଙ୍କର ମୌଳିକ ଶିକ୍ଷା କାର୍ଯ୍ୟକ୍ରମର ଦାୟିତ୍ୱରେ ଥିଲେ । ସେବାଗ୍ରାମରେ ଗାନ୍ଧୀଜୀଙ୍କର ସଚିବ ମହାଦେବ ଦେସାଇଙ୍କର ଏକମାତ୍ର ପୁତ୍ର ନାରାୟଣ ସହିତ ବୁବୁର ପରିଚୟ ହେଲା ଓ ଉଭୟ ପରସ୍ପରକୁ ପସନ୍ଦ କରି ବିବାହ କରିବାକୁ ସ୍ଥିର କଲେ । ୧୯୪୭ରେ, ଦାଦା ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଥିବା ବେଳେ, ଏ ବିବାହ କଟକରେ ନିରାଡ଼ମ୍ବର ଭାବରେ ସମ୍ପନ୍ନ ହେଲା । ଏ ବାହାଘରର ବିଶେଷତ୍ୱ ହେଉଛି ଯେ ଉତ୍ତରା କନ୍ୟା ସମ୍ପ୍ରଦାନ ବିଧିର ବିରୋଧ କରିଥିଲା । ସେ କହିଲା ଯେ, ସେ କାହାରି ସମ୍ପତ୍ତି ନୁହେଁ ଯେ ଜଣେ ଆଉ ଜଣକୁ ଦାନ କରିବ । ଦାଦା ଓ ଖୁଡ଼ୀଙ୍କର ମତ ବି ଏହା ହିଁ ଥିଲା । ତେଣୁ ଏ ବିଧି ବାଦ ଦିଆଗଲା ।

ଖୁଡ଼ୀଙ୍କର ଶୌର୍ଯ୍ୟର ଅନେକ କାହାଣୀ ଅଛି । ତାହା ଭିତରୁ ଗୋଟିଏ ହେଲା ଯେ, ସ୍ୱାଧୀନତା ପରେ ଯେତେବେଳେ ଗଡ଼ଜାତ ମିଶ୍ରଣ ଆରମ୍ଭ ହେଲା ସେତେବେଳେ ଓଡ଼ିଶାର ମୟୂରଭଞ୍ଜ ଓ ନୀଳଗିରି ଓ ଅନ୍ୟ କେତେ କେତେ ରାଜାମାନେ ମିଶ୍ରଣ ବିରୋଧରେ ରହିଲେ । ନୀଳଗିରିର ରାଜା ରାଜ୍ୟର ଆଦିବାସୀମାନଙ୍କୁ ମତେଇ ମିଶ୍ରଣ ବିରୋଧରେ ଏକ ବିକ୍ଷୋଭ କରାଇଲେ । ଓଡ଼ିଶା ସରକାରଙ୍କର ଅଧିକାରୀ ଓ ପୁଲିସଙ୍କୁ ରାଜ୍ୟର ସୀମା ଅତିକ୍ରମ କରିବାକୁ ଦେବେ ନାହିଁ ବୋଲି ହଜାର ହଜାର ଆଦିବାସୀ ଧନୁଶର ଧରି ଜଗି ରହିଥାନ୍ତି । ଓଡ଼ିଶାର କର୍ତ୍ତୃପକ୍ଷଙ୍କ ସହିତ ଦାଦା ଓ ଖୁଡ଼ୀ ବି ଥାନ୍ତି । ଖୁଡ଼ୀ ହଠାତ୍ ଏକୁଟିଆ ସେ ସଶସ୍ତ୍ର ଆଦିବାସୀଙ୍କ ଭିଡ଼ ଭିତରକୁ ଚାଲିଯାଇ ତାଙ୍କର ନେତାଙ୍କୁ ଖୋଜି ତାଙ୍କ ସାଙ୍ଗରେ କଥାବାର୍ତ୍ତା କରି ତାଙ୍କୁ ପ୍ରତିରୋଧରୁ ନିବର୍ତ୍ତାଇଲେ ଓ ଏହିପରି ଭାବରେ ଏକ ରକ୍ତାକ୍ତ ସଂଘର୍ଷର ସମ୍ଭାବନାର ଅବସାନ ଘଟାଇଲେ ।

୧୯୪୮ ମାର୍ଚ୍ଚ ୧୨ ତାରିଖ ଦିନ ତାଙ୍କର ଦ୍ୱିତୀୟ ସନ୍ତାନ ବିନାୟକ ଓରଫ କାଲୁ ବିଷ ଖାଇ ଆତ୍ମହତ୍ୟା କଲା । ଏହି ଘଟଣା ଅସଂଖ୍ୟ ଲୋକଙ୍କ ହୃଦୟରେ ଦାରୁଣ ଆଘାତ ଦେଇଥିଲା । କାଲୁ ଅତ୍ୟନ୍ତ ମେଳାପୀ ଓ ସେବାଭାବୀ ଥିଲା ଓ କଟକ ମେହେନ୍ତର ସଂଘ କାମରେ ସହଯୋଗ କରି କଟକର ସଫେଇ କର୍ମଚାରୀମାନଙ୍କର ଅତ୍ୟନ୍ତ ଆପଣାର ହୋଇଯାଇଥିଲା । ଏହି ବିୟୋଗରେ ଦାଦା ଓ ଖୁଡ଼ୀ ଏକାବେଳକେ ଭାଙ୍ଗି ପଡ଼ିଥିଲେ । ଦାଦା ମନ୍ତ୍ରୀପଦରୁ ଓହରି ଯାଇଥିଲେ । ସେମାନେ ତାହା ପରେ ପରେ ଯାଇ କିଛି ଦିନ ବରିରେ ବାପା ବୋଉଙ୍କ ପାଖରେ ରହିଥିଲେ । କାଳକ୍ରମେ ସେମାନେ ପୁଣି ମନର ବଳ ଫେରିପାଇଲେ ଓ ଦେଶ ସେବା କାମରେ ଲାଗି ପଡ଼ିଲେ । ୧୯୪୮ର ଆରମ୍ଭରେ ସାରଙ୍ଗଧର ଦାସ, ବାପା, ଖୁଡ଼ୀ, ଦାଦା ହେରିକା ମିଶି ଆଦିବାସୀଙ୍କର ସେବା ପାଇଁ ଉତ୍କଳ ନବଜୀବନ ମଣ୍ଡଳ ଗଠନ କରିଥିଲେ । ସେତେବେଳକୁ ଆଦିବାସୀମାନଙ୍କର ସମସ୍ୟା ଉଜାଗର ହୋଇଥାଏ ଓ ଭାରତର ନୂଆ ସ୍ୱାଧୀନ ସରକାର ଆଦିବାସୀମାନଙ୍କର ଅଭ୍ୟୁଦୟ ପାଇଁ କିଛି ଆଖିଦୃଶିଆ କାମ କରିବାକୁ ଚାହୁଁଥାନ୍ତି । ଖୁଡ଼ୀ ନବଜୀବନ ମଣ୍ଡଳ କାମରେ ପୂର୍ଣ୍ଣ ପ୍ରାଣରେ ଲାଗିପଡ଼ିଲେ । ଆଦିବାସୀ ବହୁଳ ଜିଲ୍ଲାମାନଙ୍କରେ ବୁଲି ଆଦିବାସୀମାନଙ୍କର ଦୁରବସ୍ଥା ଦେଖିଲେ । ସେତେବେଳେ ସେସବୁ ଅଞ୍ଚଳରେ ବୁଲାବୁଲି

କରିବା ସହଜ କଥା ନଥିଲା । ଅଧିକାଂଶ ସ୍ଥାନକୁ ରାସ୍ତା ହିଁ ନ ଥିଲା । ବଣ ଭିତରେ ଦେଇ, ପାହାଡ଼ ଡେଇଁ, ଚାଲି ଚାଲି ଯାଇ ଗାଁମାନଙ୍କରେ ପହଞ୍ଚିବାକୁ ହେଉଥିଲା । ଖୁଡ଼ୀ ଏସବୁକୁ ଭ୍ରୂକ୍ଷେପ ନ କରି ଅନବରତ ଘୂରି ବୁଲୁଥିଲେ । କେବଳ ବୁଲିବା ନୁହେଁ, ସେ ନିଜ ହାତରେ ଏଭଳି ଏକ ନାରୀ କର୍ମୀ ଗୋଷ୍ଠୀ ଗଢ଼ି ତୋଳିଲେ ଯାହାର ତୁଳନା ସାରା ପୃଥିବୀରେ ବିରଳ । ଅଳ୍ପ ପାଠ ପଢ଼ିଥିବା, ଘର-କୋଣରେ ରହିବାକୁ ଅଭ୍ୟସ୍ତ ସ୍ତ୍ରୀ, ପରିତ୍ୟକ୍ତା, ବିଧବା ଆଦିଙ୍କ ଭିତରେ ସେ ଅପାର ଆତ୍ମଶକ୍ତି ଜାଗ୍ରତ କରାଇପାରିଥିଲେ ଯାହା ବଳରେ ସେମାନେ ଯାଇ କୋରାପୁଟ ଅଞ୍ଚଳରେ ବାଘ, ଭାଲୁ, ହାତୀଙ୍କ ଦ୍ୱାରା ଉପଦ୍ରୁତ ଅଞ୍ଚଳରେ ରହି ସାହୁକାର, ବେପାରୀ, ସରକାରୀ କର୍ମଚାରୀ ଆଦିଙ୍କର ଶୋଷଣ ଓ ଦୌରାତ୍ମ୍ୟର ବିରୋଧରେ ଛିଡ଼ା ହେଲେ ଓ ଆଦିବାସୀମାନଙ୍କୁ ମଧ୍ୟ ସେପରି କରିବା ପାଇଁ ସାହସ ଦେଲେ । ଏହା ଫଳରେ ଗଞ୍ଜାମ ମାଳ, ଫୁଲବାଣୀ, କୋରାପୁଟ ଆଦିରେ ନବଜୀବନ ମଣ୍ଡଳ କାମ କରୁଥିବା ଅଞ୍ଚଳମାନଙ୍କରେ ଏକ ନବଜାଗରଣ ଆସିଲା ଏବଂ ଶହ ଶହ ବର୍ଷ ଧରି ଚାଲି ଆସିଥିବା ଅନ୍ୟାୟ ଓ ଉତ୍ପୀଡ଼ନର ଚେର କଟିଗଲା ।

ଯେତେବେଳେ ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ଓ ଖାସ କରି ବିନୋବାଜୀଙ୍କର ଓଡ଼ିଶାରେ ଭୂଦାନ ପଦଯାତ୍ରା ସମୟରେ ଦାଦା ଓ ଖୁଡ଼ୀ ଉଭୟେ ସେଥିରେ ପୂର୍ଣ୍ଣପ୍ରାଣରେ ଲାଗିପଡ଼ିଲେ । ସମସ୍ତ ରଚନାତ୍ମକ କର୍ମୀଙ୍କ ସହିତ ଉତ୍କଳ ନବଜୀବନ ମଣ୍ଡଳର ଓ କସ୍ତୁରବା ଟ୍ରଷ୍ଟର କର୍ମୀମାନେ ବି ଭୂଦାନ-ଗ୍ରାମଦାନ ଆନ୍ଦୋଳନରେ ଲାଗିପଡ଼ିଲେ । ଗ୍ରାମଦାନ ଗାଁମାନଙ୍କରେ ଏହି ସମସ୍ତ ନାରୀ କର୍ମୀମାନେ ମେସବୁକୁ ସଂଗଠିତ କରିବା ଓ ରଚନାତ୍ମକ କାମ କରିବାରେ ଲାଗିଲେ । ଓଡ଼ିଶାରେ ଭୂଦାନ-ଗ୍ରାମଦାନ ଆନ୍ଦୋଳନ ଓ ରଚନାତ୍ମକ କାମର କ୍ଷେତ୍ରରେ ଉତ୍କଳ ନବଜୀବନ ମଣ୍ଡଳ ଓ କସ୍ତୁରବା ସ୍ମାରକ ନିଧିର ନାରୀ କର୍ମୀମାନେ ପରସ୍ପର ସହଯୋଗରେ ଅତୁଳନୀୟ ନିଷ୍ଠା, ସାହସ ଓ ଦକ୍ଷତାର ସହିତ କାମ କରିଥିଲେ । ଏମାନଙ୍କୁ ପ୍ରେରଣା ଦେବା ଓ ଗଢ଼ି ତୋଳିବାର ଶ୍ରେୟ ଉଭୟ ବୋଉ ଓ ଖୁଡ଼ୀଙ୍କର ।

ଭୂଦାନ ଆନ୍ଦୋଳନରେ କ୍ରମେ ଭଟ୍ଟା ଆସିବାରୁ ଲୋକଙ୍କ ଭିତରେ ଜାଗରଣ ଆଣିବା ଓ ସେମାନଙ୍କର ଶକ୍ତି ବଢ଼ାଇବା ପାଇଁ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଉପରେ ଅଧିକ ଗୁରୁତ୍ୱ ଦିଆଗଲା । ଗ୍ରାମଦାନ ଗାଁମାନଙ୍କରେ ମଧ୍ୟ ପୁନର୍ଗଠନ କାମର ଆବଶ୍ୟକତା ହେଲା । ସର୍ବୋଦୟ ଆନ୍ଦୋଳନ ମୋଟାମୋଟି ଏହି ନୀତି ଗ୍ରହଣ କଲା ଯେ, ଗ୍ରାମମାନଙ୍କର ଗୋଟିଏ ଗୋଟିଏ ପୁଞ୍ଜ ଧରି ସଘନ କାମ କରିବାକୁ ହେବ । ନବଜୀବନ ମଣ୍ଡଳ ମଧ୍ୟ ଅନୁରୂପ କାମ କଲା । ଦାଦା ଓ ଖୁଡ଼ୀ ଉଭୟଙ୍କ ମାର୍ଗଦର୍ଶନରେ ଏହା ଚାଲିଲା ।

ଏହି ସମୟରେ ଗଞ୍ଜାମ ମାଳ ଓ କୋରାପୁଟର କେତେକ ଅଞ୍ଚଳରେ ନକ୍ସଲବାଦୀ ବିପ୍ଳବୀମାନଙ୍କର କାର୍ଯ୍ୟ-କଳାପ ବ୍ୟାପିଲା । ଆଦିବାସୀଙ୍କ ଉପରେ ହେଉଥିବା ଅନ୍ୟାୟର ପ୍ରତିରୋଧ ସେମାନେ ସେମାନଙ୍କ ବାଟରେ କରିବା ପାଇଁ ଚେଷ୍ଟା କଲେ । ଉଗ୍ରବାଦ ଦମନ ନାଁରେ ସରକାରଙ୍କ ପକ୍ଷରୁ ଅକଥନୀୟ ଅତ୍ୟାଚାର ଚାଲିଲା । ନିରୀହ ଆଦିବାସୀମାନେ ତାର ଶିକାର ହେଲେ । ଏହି ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଦାଦା ଓ ଖୁଡ଼ୀ ନାଗରିକ ଅଧିକାର ସୁରକ୍ଷା ସମିତି ଗଢ଼ିଥିଲେ ଓ ପୁଲିସ ଅତ୍ୟାଚାର ଦ୍ୱାରା ପୀଡ଼ିତ ଅଞ୍ଚଳରେ ବୁଲି ଲୋକମାନଙ୍କୁ ସାହସ ଦେବାକୁ ଓ ଶାନ୍ତିପୂର୍ଣ୍ଣ ଉପାୟରେ ଆପଣା ଅଧିକାର ସାବ୍ୟସ୍ତ କରିବା ଓ ଅନ୍ୟାୟର ପ୍ରତିରୋଧ କରିବା ପାଇଁ ଉତ୍ସାହିତ କରିଥିଲେ ।

ଏହି ସମୟରେ ନକ୍ସଲପନ୍ଥୀ ଓ ଅନ୍ୟ ଉଗ୍ର ବାମପନ୍ଥୀ ଗୋଷ୍ଠୀର କର୍ମୀମାନଙ୍କ ସହିତ ଦାଦା ଓ ଖୁଡ଼ୀଙ୍କର ଖୁବ୍ ଘନିଷ୍ଠ ସମ୍ପର୍କ ଥିଲା ଓ ସେମାନେ ଅନୁଗୁଳକୁ ଖୁବ୍ ଯା ଆସ କରୁଥିଲେ । ନାଗଭୂଷଣ ପଟ୍ଟନାୟକଙ୍କୁ ମୃତ୍ୟୁଦଣ୍ଡରୁ ବଞ୍ଚାଇବା ପାଇଁ ଅପ୍ରାଣ ଚେଷ୍ଟା କରି ସେମାନେ ସଫଳ ହୋଇଥିଲେ । ସେତେବେଳେ ଏକ ଧାରଣା ବ୍ୟାପିଥିଲା ଯେ, ସେମାନେ ନକସଲବାଦୀ ମତକୁ ସମର୍ଥନ ଓ ଗ୍ରହଣ କଲେଣି । ମାତ୍ର ପ୍ରକୃତରେ ଅହିଂସ ପ୍ରତିରୋଧର ପନ୍ଥାରେ ସେମାନଙ୍କର ବିଶ୍ୱାସ ଅତୁଟ ଥିଲା । ମାତ୍ର ଉତ୍ପୀଡ଼ିତ ଜନତା ପାଇଁ ନକ୍ସଲପନ୍ଥୀ ଆଦିଙ୍କର ଚିନ୍ତା ଓ ସେମାନଙ୍କର ବିପ୍ଳବ ନିଷ୍ଠାକୁ ସେମାନେ ପ୍ରଶଂସା କରୁଥିଲେ । ଗାନ୍ଧୀଜୀଙ୍କର ବିଚାର ଓ ଭାରତୀୟ ପରମ୍ପରା ପ୍ରତି ସେମାନଙ୍କର ଯେଉଁ ଅବଜ୍ଞା ବା ବିଦ୍ୱେଷ ରହିଥାଏ ତାହା ଦୂର କରିବା ପାଇଁ ଚେଷ୍ଟା କରୁଥିଲେ ।

ଇତିମଧ୍ୟରେ ସର୍ବୋଦୟର ସ୍ତରରେ ଯେଉଁ ସବୁ

ସମସ୍ୟା ଉଠୁଥାଏ ଓ କାର୍ଯ୍ୟକ୍ରମ ନିଆଯାଉଥାଏ ସେଥିରେ ମଧ୍ୟ ଦାଦା ଓ ଖୁଡ଼ୀ ସଂପୃକ୍ତ ହେଉଥାନ୍ତି । ଆସାମରେ ବଙ୍ଗାଳୀ ବିରୋଧୀ ଉପଦ୍ରବ ହେଲା ତ ସେଠି ଯାଇ ଖୁଡ଼ୀ ଓ ଦାଦା ପହଞ୍ଚିଲେ ଓ ସାରା ରାଜ୍ୟରେ ବୁଲି ଶାନ୍ତିର ବାର୍ତ୍ତା ପ୍ରଚାର କଲେ ।

୧୯୬୪ରେ ଯେତେବେଳେ ରାଉରକେଲାରେ ସାଂପ୍ରଦାୟିକ ଉତ୍ତେଜନା ସୃଷ୍ଟି ହୋଇ ତିନି ହଜାରରୁ ଊର୍ଦ୍ଧ୍ୱ ମୁସଲମାନଙ୍କୁ ହତ୍ୟା କରାଗଲା ସେତେବେଳେ ମଧ୍ୟ ଦାଦା ଓ ଖୁଡ଼ୀ ସେଠି ପହଞ୍ଚି ସର୍ବୋଦୟ କର୍ମୀ ଓ ଅନ୍ୟମାନଙ୍କ ସାହାଯ୍ୟରେ ଶାନ୍ତି ସ୍ଥାପନ କାର୍ଯ୍ୟ କଲେ ।

ଲୋକନାୟକ ଜୟପ୍ରକାଶ ନାରାୟଣ ୧୯୭୩-୭୪ରେ ସଂପୂର୍ଣ୍ଣ ବିପ୍ଳବ ପାଇଁ ଆନ୍ଦୋଳନ ଆରମ୍ଭ କରିବାରୁ ଉଭୟ ଦାଦା ଓ ଖୁଡ଼ୀ ତାଙ୍କୁ ସମର୍ଥନ କଲେ । ୧୯୭୫ରେ ଜରୁରୀକାଳୀନ ଶାସନ ଜାରି କରାଯାଇ ଜୟପ୍ରକାଶଜୀଙ୍କ ସମେତ ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ଓ ସାଧାରଣ କର୍ମୀଙ୍କୁ ମଧ୍ୟ ଗିରଫ କରାହେଲା । ଓଡ଼ିଶାରେ ଦାଦା ହେଉକା ଆମେ ସମସ୍ତେ ସର୍ବୋଦୟ କର୍ମୀ ଓ ଅନ୍ୟ ବହୁ ଲୋକ ଗିରଫ ହେଲୁ । ମାତ୍ର ବୋଉ ଓ ଖୁଡ଼ୀଙ୍କୁ ଗିରଫ କରାଯାଇ ନଥିଲା । ସେତେବେଳେ ସେମାନେ ଗାନ୍ଧୀ ଜୟନ୍ତୀ, ଅକ୍ଟୋବର ୨ ତାରିଖ (୧୯୭୫) ଦିନ କଟକରେ ଏକ ଶୋଭାଯାତ୍ରା ଓ ପ୍ରାର୍ଥନା ସଭାର ଆୟୋଜନ କରି ଲୋକଙ୍କର ଭୟ ଭାଙ୍ଗିବା ଉଦ୍ୟମ କରିଥିଲେ । ପରେ ଖୁଡ଼ୀ ବେଆଇନ ପ୍ରଚାରପତ୍ର ରଖିଥିବା ଅଭିଯୋଗରେ ଗିରଫ ହୋଇ ଅନେକ ମାସ ବିଚାରାଧୀନ କଏଦୀ ଭାବରେ କଟକ ଜେଲରେ ରହିଲେ । ତାଙ୍କୁ ତୃତୀୟ ଶ୍ରେଣୀର ସାଧାରଣ କଏଦୀଙ୍କ ସହିତ ଅତି ଅପରିଚ୍ଛନ୍ନ ଓ ଅସ୍ୱାସ୍ଥ୍ୟକର ପରିବେଶରେ ରଖାଯାଇଥିଲା । ତାଙ୍କୁ ତିନି ମାସ ସଜା ହେଲା ଓ ତାହାଠାରୁ ଅଧିକ ଦିନ ସେ ଜେଲରେ ବିଚାରାଧୀନବନ୍ଦୀ ଭାବରେ ଥିବା ଯୋଗୁଁ ଖଲାସ ହୋଇଗଲେ ।

୧୯୭୭ରେ ଯେତେବେଳେ ଇନ୍ଦିରା ଗାନ୍ଧୀ ସାଧାରଣ ନିର୍ବାଚନ କରାଇଲେ ସେତେବେଳେ ଜଗଜୀବନରାମ, ନନ୍ଦିନୀ ଶତପଥୀ ପ୍ରଭୃତି କଂଗ୍ରେସ ଛାଡ଼ି ଆସି ଜନତା ଦଳରେ ମିଶିଲେ । ପରେ ଓଡ଼ିଆ ବିଧାନ ସଭା ନିର୍ବାଚନରେ ନନ୍ଦିନୀ ଶତପଥୀଙ୍କୁ ଜନତା ଦଳ ପକ୍ଷରୁ ଢେଙ୍କାନାଳରୁ ପ୍ରାର୍ଥୀ କରାଗଲା । ନନ୍ଦିନୀ ଦେବୀ ଜରୁରୀକାଳୀନ ଶାସନ-ବେଳେ ଯେଉଁ ସବୁ ଅନ୍ୟାୟ କାର୍ଯ୍ୟ କରିଥିଲେ ସେ ଦୃଷ୍ଟିରୁ ତାଙ୍କୁ ଜନତା ଦଳ ଟିକେଟ ଦେବା ଉଚିତ ନୁହେଁ ବୋଲି କର୍ମୀ ମହଲରେ ମତ ପ୍ରକାଶ ପାଇଲା । ମାତ୍ର ଜନତା ଦଳ ସେଥିପ୍ରତି ଭ୍ରୂକ୍ଷେପ ନ କରିବାରୁ ଖୁଡ଼ୀ ଢେଙ୍କାନାଳ ନନ୍ଦିନୀ ଦେବୀଙ୍କ ବିରୋଧରେ ଠିଆ ହେବାକୁ ସ୍ଥିର କଲେ । ଜୟପ୍ରକାଶଜୀ ତାଙ୍କୁ ସମର୍ଥନ ଜଣାଇଲେ । ସାରା ରାଜ୍ୟରୁ ସର୍ବୋଦୟ କର୍ମୀମାନେ ଆସି ତାଙ୍କ ପାଇଁ ପ୍ରଚାରରେ ଲାଗିଲେ । ମାତ୍ର ସେତେବେଳେ ଦେଶରେ ଜନତା ଦଳ ସପକ୍ଷରେ ଏପରି ପ୍ରବଳ ସମର୍ଥନ ଥିଲା ଯେ, ଖୁଡ଼ୀ ନିର୍ବାଚନରେ ହାରି ଗଲେ ।

ମାତ୍ର ଏକ ଅନ୍ୟାୟ ନିଷ୍ପତ୍ତିକୁ ମାନି ନ ନେଇ ତାର ପ୍ରତିରୋଧ କରିବାର ଔଚିତ୍ୟ ଖୁଡ଼ୀ ସେତେବେଳେ ଯେ ସାବ୍ୟସ୍ତ କଲେ ତାହା ଦ୍ୱାରା ତାଙ୍କ ପ୍ରତି ଦେଶବାସୀଙ୍କର ସମ୍ମାନ ବଢ଼ିଲା ।

ସେହିପରି ତାଙ୍କୁ ନାରୀ ଓ ଶିଶୁମାନଙ୍କର ସେବା ପାଇଁ ୧୯୮୧ରେ ଜମ୍‌ନାଲାଲ ବଜାଜ ପୁରସ୍କାର ମିଳିଲା । ତାହା ତାଙ୍କୁ ସେତେବେଳର ପ୍ରଧାନମନ୍ତ୍ରୀ ତାଙ୍କୁ ପ୍ରଦାନ କରିବେ ବୋଲି ସୂଚନା ମିଳିଲା । ଜଣେ ଅବାଞ୍ଛିତ ରାଜନେତାଙ୍କ ହାତରୁ ସେ ପୁରସ୍କାର ଗ୍ରହଣ କରିବେ ନାହିଁ ବୋଲି ଖୁଡ଼ୀ ଜମନାଲାଲ ବଜାଜ ଟ୍ରଷ୍ଟର କର୍ତ୍ତୃପକ୍ଷଙ୍କୁ ଜଣାଇ ଦେଲେ ଓ ପୁରସ୍କାର ଗ୍ରହଣ ପାଇଁ ସେବାଗ୍ରାମ ଗଲେ ନାହିଁ ।

୧୯୮୩ର ଅଗଷ୍ଟ ଓ ଅକ୍ଟୋବର ମାସରେ ପର ପର ତାଙ୍କର ଦୁଇ ନାତି ତନୁ ଓ ବିଭୂତିଙ୍କ ପୁଅ ଅସୀମ ତଥା ଆମର ପୁଅ କବୀରର ଦୁର୍ଘଟଣାରେ ମୃତ୍ୟୁ ତାଙ୍କୁ ଦାରୁଣ ଆଘାତ ଦେଇଥିଲା । ବର୍ଷକ ପରେ ୧୯୮୪ ଜୁନ ମାସରେ ଦାଦାର ମୃତ୍ୟୁ ଓ ଆଉ ଚାରି ବର୍ଷ (୧୯୮୮) ପରେ ବୁଢ଼ୀର ମୃତ୍ୟୁ ତାଙ୍କର ଦୁଃଖର ଭାରକୁ ଅସହ୍ୟ କରି ଦେଇଥିଲା । ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ କ୍ରମେ ଭାଙ୍ଗି ପଡ଼ିଲା । ସେ ଆଉ ସାରା ରାଜ୍ୟରେ ତୋଫାନୀ ଗସ୍ତ କରିବା ସ୍ଥିତିରେ ରହିଲେ ନାହିଁ । ମାତ୍ର ସେଇଠି ଅନୁଗୁଳର କୁଟୀରର ବାପମୁହିଁରେ ବସି ସେ ଦୁନିଆର ଖବର ରଖୁଥାନ୍ତି । ନବଜୀବନ ମଣ୍ଡଳର ପରିଚାଳନା ଓ କାର୍ଯ୍ୟକ୍ରମ ବିଷୟରେ ପରାମର୍ଶ ଦେଉଥାନ୍ତି । ବାଜିରାଉତ ଛାତ୍ରାବାସର ପରିସରରେ ଥିବା କର୍ମୀମାନଙ୍କର ଖବର ବୁଝୁଥାନ୍ତି ଛାତ୍ରାବାସର ପିଲାମାନଙ୍କ ସହିତ ଖୁସି ଗପ କରୁଥାନ୍ତି । ଦିନେ ଦିନେ ଭୋରରୁ ଉଠି ରବୀନ୍ଦ୍ର ସଙ୍ଗୀତର ଝରଣା ତାଙ୍କ କଂଠରୁ ବାହି ପରିବେଶକୁ ଆପ୍ଲୁତ କରିଦିଏ । ଶେଷ ବେଳକୁ ତାଙ୍କର ସାନ ଝିଅ ତନୁ ଓ ଜ୍ୱାଇଁ ବିଭୂତିଭୂଷଣ ମହାନ୍ତି ଆସି ଅନୁଗୁଳରେ ତାଙ୍କ ପାଖରେ ରହିବାରୁ ତାଙ୍କୁ ବହୁ ପରିମାଣରେ ସନ୍ତୋଷ ମିଳିଥିଲା । ଏହିପରି ତାଙ୍କର ହୃଦୟର ସ୍ନେହପ୍ରୀତିର ଅପରନ୍ତ ଉତ୍ସ ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳର ପରିସରରେ ଯେଉଁ ସ୍ନିଗ୍ଧ ପରିବେଶ ସୃଷ୍ଟି କରିଥିଲା ତାହାରି ଭିତରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

---

# ସ୍ନେହ ଓ ସାହସର ସଙ୍ଗମ : ମାଳତୀ ଦେବୀ

□ ନାରାୟଣ ଦେସାଇ

ମାର୍ଚ୍ଚ ମାସର ପନ୍ଦର ତାରିଖ ଦିନ ଓଡ଼ିଶାର ଅନୁଗୁଳ ଠାରେ ନିଜ ଆଶ୍ରମ ବାଜି ରାଉତ ଛାତ୍ରାବାସରେ ଶ୍ରୀମତୀ ମାଳତୀ ଚୌଧୁରୀଙ୍କର ୯୪ ବର୍ଷ ବୟସରେ ଦେହାବସାନ ହେଲା । କହିବାକୁ ଗଲେ ବିଂଶ ଶତାବ୍ଦୀରେ ଭାରତରେ ହୋଇଥିବା ମହିଳା ଜାଗରଣର ଶେଷ ତାରାଟି ଲିଭିଗଲା ।

ନବକୃଷ୍ଣ ଚୌଧୁରୀ ପ୍ରଥମେ ମୁଖ୍ୟମନ୍ତ୍ରୀ ହେଲାବେଳେ ସେଠାକାର ଅଧିକାଂଶ ଆଦିବାସୀ ତାଙ୍କର ପରିଚୟ ଦେଉଥିଲେ ଯେ ଚୌଧୁରୀ ହେଉଛନ୍ତି ଆମ ମାଳତୀ ଦେବୀଙ୍କ ସ୍ୱାମୀ । ଆମ ଦେଶରେ ନିଜର ସେବା ଦ୍ୱାରା ମାଳତୀ ଦେବୀଙ୍କୁ ଯେପରି ଲୋକପ୍ରିୟତା ମିଳିଛି, ସେପରି ଅନ୍ୟ କୌଣସି ମହିଳାଙ୍କୁ ମିଳି ନ ଥିବ ।

ସେ ଯେତେ ସେବା କରିଛନ୍ତି, ଆଦିବାସୀମାନଙ୍କୁ ନ୍ୟାୟ ଦେବାଲାଗି ସେତିକି ସଂଘର୍ଷ ମଧ୍ୟ କରିଛନ୍ତି । ପୁଣି ଦରକାର ବେଳେ ସଂଘର୍ଷ ଭିତ୍ତି ସମାଧାନ ମଧ୍ୟ କରିବା ସେ ଜାଣିଥିଲେ । ଥରେ ଓଡ଼ିଶା ସରକାରଙ୍କର କୌଣସି ଏକ ନିଷ୍ପତ୍ତି ଯୋଗୁଁ ଆଦିବାସୀମାନେ ଏପରି ଉତ୍ତ୍ୟକ୍ତ ହୋଇ ଯାଇଥିଲେ ଯେ ପ୍ରାୟ ତିନିହଜାର ଖଣ୍ଡେ ଆଦିବାସୀ ଧନୁଶର ଧରି ସରକାରୀ ଲୋକଙ୍କ ସାମନାରେ ଛିଡ଼ା ହୋଇଗଲେ । ନବବାବୁ ମାଳତୀ ଦେବୀଙ୍କୁ ସାଙ୍ଗରେ ନେଇ ସେଠି ପହଞ୍ଚିଗଲେ । ଧନୁଶରଧାରୀଙ୍କ ସାମନାରେ ବନ୍ଧୁକଧାରୀଙ୍କର ଏ ଦୃଶ୍ୟ କୁରୁକ୍ଷେତ୍ର ଯୁଦ୍ଧକୁ ସ୍ମରଣ କରାଉଥିଲା ।

ମାଳତୀ ତତ୍‌କ୍ଷଣାତ୍ ନିଷ୍ପତ୍ତି ନେଇନେଲେ । ସେ କହିଲେ, 'ମୁଁ ଏମାନଙ୍କ ଭିତରକୁ ଯିବି । ତମର କୌଣସି ବାହନ ବା ସିପାହୀ ମୋର ଲୋଡ଼ା ନାହିଁ ।' ଜୀପ୍‌ରୁ ଓହ୍ଲାଇ ପଡ଼ିଲେ । ସରକାରୀ ଲସ୍କରମାନେ ସ୍ତମ୍ଭୀଭୂତ ହୋଇଗଲେ । ଗୁଣ ଚଢ଼ା ଶର ସାମନାରେ ମାଳତୀ ଦେବୀ ଏକା ଆଗେଇ ଚାଲିଲେ । ଏ କ୍ଷେତ୍ର ତାଙ୍କର ନିଜ କାର୍ଯ୍ୟକ୍ଷେତ୍ର ନଥିଲା । ହେଲେ କ'ଣ ହେଲା, ମାଳତୀ ଦେବୀ ଅର୍ଥାତ୍ ସାହସ ଓ ପ୍ରେମର ଅବତାର । ଆଦିବାସୀମାନେ ଏକୁଟିଆ ଜଣେ ସ୍ତ୍ରୀଲୋକଙ୍କୁ ଏପରି ଭାବରେ ଆସିବାର ଦେଖି ସ୍ତବ୍ଧ ରହିଲେ । ଏଣେ ଧନୁରେ ଶର ଚଢ଼ିଥାଏ । ଏକ ଅନ୍ୟର ଚେହେରା ଦେଖି ପାରିଲା ଭଳି ଦୂରତ୍ୱକୁ ଆସିଯିବା ମାତ୍ରେ ତିନି ହଜାରରୁ ଜଣେ ପାଟି କରି ଉଠିଲା—'ଆରେ, ସେ ତ ଆମ ମା' !' ମାଳତୀ ଦେବୀ ତାଙ୍କ ଗ୍ରହଣୀ ପାଖରେ ପହଞ୍ଚିଲା ବେଳକୁ ତିନି ହଜାର ଶର ତାଙ୍କର ଚରଣ ବନ୍ଦନା କରୁଥିଲେ । ତା'ପରେ ମାଳତୀ ଦେବୀ ଆଦିବାସୀଙ୍କ କଥା ବୁଝି, ସରକାରଙ୍କ ସହ ଚର୍ଚ୍ଚା ଆଲୋଚନା କରି ସମାଧାନ କରାଇଥିଲେ ।

ଗାନ୍ଧୀଜୀ ଓଡ଼ିଶାରେ ତାଙ୍କର ହରିଜନ ଯାତ୍ରା ସମୟରେ ମାଳତୀ ଦେବୀଙ୍କ ନାଁ ଦେଇଥିଲେ— 'ତୋଫାନୀ' । କେତେବେଳେ କେମିତ "ସାଇକ୍ଲୋନ୍" ବୋଲି ବି କହିଦେଉଥିଲେ । ମାଳତୀ ଦେବୀଙ୍କର ପ୍ରତ୍ୟେକ କାମରେ ଯେ ସ୍ନେହ ଓ ସାହସର ଝଞ୍ଜାବାତ ବହୁଥିଲା ।

ଗାନ୍ଧୀଜୀଙ୍କର ନୂଆଖାଲି—ଯାତ୍ରା ସମୟରେ ମାଳତୀ ଦେବୀ ସେଠାରେ ପହଞ୍ଚି ଯାଇଥିଲେ । ସେତେବେଳକୁ ଗାନ୍ଧୀଜୀ ତାଙ୍କର ଆଖପାଖର କର୍ମୀମାନଙ୍କୁ ଯୋଡ଼-ଯୋଡ଼ କରି ବାଣ୍ଟି ଦେଇଥିଲେ । ସାଧାରଣତଃ ଏଇ ଯୋଡ଼ିରେ ଜଣେ ବଙ୍ଗଳା ଜାଣିଥିବାଲା ଓ ଅନ୍ୟ ଜଣକ ଅବଙ୍ଗାଳୀ ଥାଏ । ମାଳତୀ ଦେବୀଙ୍କୁ ଦେଖି କହିଲେ, "ତମେ ତ ତୋଫାନୀ ଆଉ ବଙ୍ଗଳା କହିପାର, ତେବେ ଏକା ବୁଲି ପାରିବ ନାହିଁ କି ?"—ଆଉ ଏଇ ଭୟାକ୍ରାନ୍ତ, ହିଂସାଗ୍ରସ୍ତ କ୍ଷେତ୍ରରେ ୪୬ ବର୍ଷର ଜଣେ ମହିଳା ଅନେକ ଗାଁରେ ଏକା ଏକା ବୁଲିଲେ ।

ଏହିଭଳି ସ୍ୱାଧୀନତାର ଅନେକ ବର୍ଷ ବିତିଯିବା ପରେ ରାଉରକେଲାର ସାମ୍ପ୍ରଦାୟିକ ଦଙ୍ଗା ସମୟରେ ମାଳତୀ ଦେବୀ ଓ ନବବାବୁ ଦୁହେଁ ସେଠାରେ ରହି ଶାନ୍ତିସେନା କାମ କରିଥିଲେ । ବହୁ ଲୋକଙ୍କର ଘର-ଦ୍ୱାର ଜାଳି ପୋଡ଼ି ଧ୍ୱଂସ କରି ଦିଆଯାଇଥିଲା । ଏମାନେ ନିଅାଁ ଲଗାଇ ଥିବା ଲୋକଙ୍କ ଦ୍ୱାରା ଜଳିଯାଇଥିବା ଘର ଗୁଡ଼ିକୁ ବସାଇବା କାମ କଲେ ।

ମାଳତୀ ଦେବୀ ଓଡ଼ିଶାର ଗଡ଼ଜାତର ରାଜତନ୍ତ୍ର ବିରୋଧରେ ପ୍ରଜା ଆନ୍ଦୋଳନ ଚଳାଇଥିଲେ । ସେଥି ପ୍ରକାଶେ ଜେଲ ଗଲାବେଳେ ଭାତ ଧରି ଯାଉଥିବା ସାନ ଝିଅକୁ ସାଙ୍ଗରେ ନେଇ ଜେଲଦଣ୍ଡ ଭୋଗିଥିଲେ । ୧୯୪୨ରେ ଜେଲ ଯିବାବେଳେ ବଡ଼ ଝିଅ ଉତ୍ତରା ମଧ୍ୟ ସାଙ୍ଗରେ ଥିଲା । ଉତ୍ତରାକୁ ଗୁପ୍ତ ପ୍ରଚାରପତ୍ର ବାହାର କରିବାର ସନ୍ଦେହରେ ଧରା ହୋଇଥିଲା । ପୁଣି ଅଢ଼େଇବର୍ଷ ମା-ଝିଅ ସାଙ୍ଗ ହୋଇ କାରବାସ ଭୋଗ କଲେ । ଉତ୍ତରା ଏହି କାରାବାସ ସମୟରେ ଉଚ୍ଚ ଶିକ୍ଷା ପାଇଥିଲା ।

ପୁଅ ଦିନାସ୍ୱକ ୧୭ ବର୍ଷ ବୟସରେ ଆତ୍ମଘାତୀ ହେଲା । ଏହାର କାରଣ ଆଜିଯାଏ ଜଣା ଯାଇ ନାହିଁ । ପାଠରେ ସେ କାହାରିଠାରୁ ପଛରେ ନଥିଲା । କୌଣସି ପ୍ରେମ ପ୍ରସଙ୍ଗ କଥା ଜଣା ନାହିଁ । ଗାନ୍ଧୀଜୀଙ୍କ ହତ୍ୟାପରେ ତାଙ୍କର ଶାନ୍ତ ମୃତଭାବର ବର୍ଣ୍ଣନା ଆକାଶବାଣୀରୁ ସତତ ଶୁଣିଥିଲା । ସେଥିରୁ ମୃତ୍ୟୁ ବିଷୟରେ ଏକ ଅଦ୍ଭୁତ ଭାବନା ଜନ୍ମ ହୋଇଥିଲା । ତାର ନୋଟବୁକ୍‌ରେ ମରଣ ବିଷୟରେ ତା' ଭାବନାକୁ ରୂପ ଦେଇ ଦିନାସ୍ୱକ ଏକ ଲେଖା ମଧ୍ୟ ଲେଖିଥିଲା । ମାଳତୀ ଦେବୀ ଏକମାତ୍ର ପୁତ୍ରର ଅକାଳ ମୃତ୍ୟୁକୁ ସହ୍ୟ କଲେ ସତତ ରବୀନ୍ଦ୍ର ସଙ୍ଗୀତ ଗାଇ ଗାଇ—

"ତୋମାର ଇଚ୍ଛା ହଉକ ପୂର୍ଣ୍ଣ
 କରୁଣାମୟ ସ୍ୱାମୀ
ଆନନ୍ଦମୟ ତୋମାର ବିଶ୍ୱ
 ଶୋକ, ସୁଖ ପୂର୍ଣ୍ଣ
ଆମି ଆପନ ଦୋଷେ ଦୁଃଖ ପାଇ
 ବାସନା ଅନୁଗାମୀ
ଓହେ କରୁଣାମୟ ସ୍ୱାମୀ"—

ମୁଁ ଜଗତର ଆଉ କୌଣସି ମାଆକୁ ଭକ୍ତି ସଙ୍ଗୀତ ଦ୍ୱାରା ପୁତ୍ର-ବିୟୋଗକୁ ଏପରି ଭାବରେ ଧୋଇ ଦେଇ ପାରିବା ଦେଖି ନାହିଁ କି ଜାଣି ନାହିଁ ।

ତାଙ୍କୁ ରବୀନ୍ଦ୍ର ସଙ୍ଗୀତର ଦୀକ୍ଷା ପିଲାଦିନୁଁ ମିଳିଥିଲା । ଜନ୍ମ ପାଟନାରେ ହୋଇଥିଲା । ମାତ୍ର ଶାନ୍ତିନିକେତନର ପ୍ରଥମ ଦଳର ବିଦ୍ୟାର୍ଥିନୀମାନଙ୍କ ଭିତରୁ ମାଳତୀ ଦେବୀ ଜଣେ । ଗୁରୁଦେବଙ୍କର ବିଶେଷ ସ୍ନେହର ପାତ୍ରୀ । କୌଣସି ନୂଆ ଗୀତର ରଚନା ପରେ ପରେ ଡାକ ପଠାନ୍ତି— "ମିନୁକୁ ଡାକ । ମୁଁ ଏ ଗୀତର ସ୍ୱର ଭୁଲିଯିବା ପୂର୍ବରୁ ତାକୁ ଶିଖେଇ ଦିଏ ।" ଶାନ୍ତିନିକେତନରେ ହିଁ ଆଚାର୍ଯ୍ୟ କ୍ଷିତି ମୋହନ ସେନ, ନନ୍ଦଲାଲ ବୋଷ ଓ ବୀଣା ବାଦକ ଶାସ୍ତ୍ରୀଜୀଙ୍କ ଭଳି ଗୁରୁମାନଙ୍କଠାରୁ ସେ ତାଲିମ ପାଇଥିଲେ । ସେହିଠାରେ ନବବାବୁଙ୍କ ସହ ତାଙ୍କର ପ୍ରଥମ ପରିଚୟ ହୋଇଥିଲା ଏବଂ ଏହି ପରିଚୟ ମଧ୍ୟ ମାଳତୀ ଦେବୀଙ୍କ ଦ୍ୱାରା ବିଶେଷ ଢଙ୍ଗରେ । କେହିଜଣେ ଯୁବଛାତ୍ର ଶାନ୍ତିନିକେତନକୁ ପଢ଼ିବାକୁ ଆସିଛି ବୋଲି ଶୁଣିବା ପରେ ନିଜ ସାଙ୍ଗମାନଙ୍କୁ କହିଲେ, –"ଚାଲ ତାକୁ ଟିକିଏ ପରୀକ୍ଷା କରି ଦେଖିବା ।" ନବବାବୁ ପିଣ୍ଡାରେ ଠିଆ ହୋଇଥିବାବେଳେ ଉପର ଛାତକୁ ଯାଇ ପିଣ୍ଡାର ଆସ୍‌ବେଷ୍ଟସ୍ ଛାତକୁ ଢିଆଁମାରି ଦେଖିବାକୁ ଚାହିଁଲେ ଶବ୍ଦ ପିଲାଟା ଡରୁଛି କି ନାହିଁ ! ଉପରୁ କୁଦାମାରି ଛାତ ଫୁଟାଇ ସିଧା ଆସି ତଳେ କଚାଡ଼ି ହୋଇ ପଡ଼ିଲେ କ୍ଷତ ବିକ୍ଷତ ଅବସ୍ଥାରେ ।

ନବବାବୁ ଶାନ୍ତିନିକେତନରୁ ଫେରିଯିବା ପରେ ପତ୍ରାଳାପ ଦ୍ୱାରା ଘନିଷ୍ଠତା ବଢ଼ିଲା । ନବବାବୁଙ୍କ ମା' କଠୋର ସନାତନୀ ଥିଲେ । ନୂଆ ବୋହୂ ହାତରେ ସେପେଇ ମଧ୍ୟ ଖାଇବାକୁ ପ୍ରସ୍ତୁତ ନଥିଲେ । କିନ୍ତୁ ମାଳତୀ ଦେବୀ କେବଳ ସେବାଯତ୍ନ ଦ୍ୱାରା ତାଙ୍କର ହୃଦୟ ଜିଣି ନେଇଥିଲେ ।

ବାହାହେବା ପରେ କିଛିବର୍ଷ କଟକ ଜିଲ୍ଲାର ଅଣଖିଆ ନାମକ ଏକ ଗାଁରେ ଯାଇ ରହିଲେ । ଚାଷ କଲେ, ଗୋପାଳନ କଲେ ଏବଂ ବାକୀ ସମସ୍ତ ସମାଜ ସେବା କଲେ । ଅଳ୍ପ ଦିନରେ ମାଳତୀ ଦେବୀ ଓଡ଼ିଆଭାଷା ଶିଖିଗଲେ ଏବଂ ଓଡ଼ିଆ ଭାଷାରେ ଲେଖିକା ମଧ୍ୟ ହୋଇଗଲେ । 'ନ' ଓ 'ଣ' କୁ 'ଲ' ଓ 'ନ' ଉଚ୍ଚାରଣ କରିବା ବ୍ୟତୀତ ଅନ୍ୟ କେଉଁଥିରେ କେହି କହିବ ନାହିଁ ଯେ ସେ ଭିନ୍ନଭାଷୀ ବୋଲି ।

ଦଳିତ, ପୀଡ଼ିତ ଏବଂ ଆଦିବାସୀମାନଙ୍କ ଉପରେ ଯେ କୌଣସି ସ୍ଥାନରେ ଶୋଷଣ ବା ଅନ୍ୟାୟ ହେଉଛି ଶୁଣିବା ମାତ୍ରେ ମାଳତୀ ଦେବୀ ତାର ପ୍ରତିକାର ପାଇଁ ନିଶ୍ଚିତ ଭାବରେ ଠିଆ ହୋଇଯିବେ । ନବବାବୁ ବିଚାର ବୁଦ୍ଧି ଓ ପ୍ରଶାସନିକ କ୍ଷେତ୍ରରେ ଅଗ୍ରଭାଗରେ ତ ମାଳତୀ ଦେବୀ ଭାବନା ଓ ସେବାକ୍ଷେତ୍ରରେ ସେତିକି ଆଗରେ । ନବବାବୁଙ୍କ ପ୍ରେରଣାରେ ଓଡ଼ିଶାର ଅନେକ ଯୁବକ ସମାଜବାଦର ଦୀକ୍ଷା ନେଇଥିଲେ ଏବଂ ମାଳତୀ ଦେବୀଙ୍କର ସର୍ଜନା - 'ଉତ୍କଳ ନବଜୀବନ ମଣ୍ଡଳ'ର ସେବକମାନେ ଓଡ଼ିଶାର ପ୍ରତିକୋଣରେ ଆଜି ମଧ୍ୟ ସେବାର ଧୂପ ଜଳାଇ ବସିଛନ୍ତି । ଦୈନନ୍ଦିନର ରଚନାତ୍ମକ କାମ କହିଲେ ବାଜିରାଉତ ଛାତ୍ରାବାସ, ଯାହାକୁ ଆଖପାଖରେ ଲୋକେ ମାଳତୀ ଆଶ୍ରମ ଭାବରେ ଜାଣନ୍ତି ।

ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବରେ ଆମ ଦେଶର ସମ୍ବିଧାନ ସଭାର ସଭ୍ୟ ନିର୍ବାଚିତ ହୋଇ ମାଳତୀ ଦେବୀଙ୍କୁ ଦିଲ୍ଲୀ ଯିବାକୁ ପଡ଼ୁଥିଲା । କିନ୍ତୁ ଦୁଇ ଥରଅଥର

ଯୋଗ ଦେବା ପରେ ଦଳୀ ଲୋକଙ୍କର ବିଶେଷ କରି ସାଥୀ ସଭ୍ୟମାନଙ୍କର ଜୀବନ ଯାପନ ପ୍ରଣାଳୀ ତାଙ୍କୁ ଭଲ ଲାଗିଲା ନାହିଁ—ଫଳରେ ଇସ୍ତଫା ଦେଇ ବାହାରି ଆସିଲେ ।

ବଜାଜ ଆୱାର୍ଡ ରାଜୀବ ଗାନ୍ଧୀଙ୍କ ହାତରୁ ମିଳିବ ବୋଲି ଶୁଣିବା ପରେ ସେ ତାଙ୍କ ହାତରୁ ଗ୍ରହଣ କରିବେ ନାହିଁ ବୋଲି ମନା କରି ଦେଇଥିଲେ । ଶେଷରେ ବଜାଜ ଫାଉଣ୍ଡେସନର ଲୋକେ ଓଡ଼ିଶା ଆସି ପୁରସ୍କାର ଦେଇଗଲେ । ଶାନ୍ତିନିକେତନର 'ଦେଶୀକୋତ୍ତମ' ପଦବୀ ମଧ୍ୟ ଅନୁଗୁଳରେ ଆସି ଦିଆଗଲା, ଅବଶ୍ୟ ବାର୍ଦ୍ଧକ୍ୟର ଭଗ୍ନସ୍ୱାସ୍ଥ୍ୟ ଏହାର କାରଣ ଥିଲା ।

ସେ ଅନ୍ଧବିଶ୍ୱାସର କଠୋର ବିରୋଧୀ ଥିଲେ । ଅନୁଗୁଳ ପାଖରେ ରନ୍ତଲେଇ ବୋଲି ଏକ ଗାଁରେ ନେପାଳୀ ବାବା ନାଁରେ ଏକ ବାଳକକୁ ବାବାଜୀ ଭାବରେ ଛିଡ଼ା କରାଇ ସେ ଅସାଧ୍ୟ ରୋଗ ଭଲ କରି ଦେଉଛି ବୋଲି ଗୁଜବ ପ୍ରଚାର କରାହେଲା । ତାଙ୍କ ଖ୍ୟାତି ଏତେ ପ୍ରସାରିତ ହେଲା ଯେ ମାନ୍ଦ୍ରାଜରୁ ମଧ୍ୟ ସ୍ପେଶିଆଲ ଟ୍ରେନ୍‌ରେ ଲୋକେ ଆସିବାକୁ ଲାଗିଲେ । ସେଠି ଲୋକଙ୍କ ଲାଗି ରହିବାର ବା ଶୌଚାଦି ପାଇଁ କୌଣସି ବ୍ୟବସ୍ଥା ନଥିଲା । ଫଳରେ ମହାମାରୀ ରୋଗ ଆରମ୍ଭ ହୋଇଗଲା । ସେତେବେଳକୁ ନବବାବୁ ମୁଖ୍ୟମନ୍ତ୍ରୀ ଥିଲେ । ସେ ଯାତାୟାତ ଉପରେ କଟକଣା ଜାରି କଲେ । ମାତ୍ର ମାଳତୀ ଦେବୀଙ୍କର ଏତେ ଧୈର୍ଯ୍ୟ ନଥିଲା । ସେ ସିଧା ନେପାଳୀ ବାବା ପାଖରେ ପହଞ୍ଚି ତାକୁ ଦୁଇ ଚାପୁଡ଼ା ଲଗାଇଦେଲେ । ଲୋକେ କହିବାକୁ ଲାଗିଲେ ତୁମ ପରିବାରରେ ନିଶ୍ଚୟ କିଛି ବିପଦ ପଡ଼ିବ । କିନ୍ତୁ ଦେଖୁ ଦେଖୁ ନେପାଳୀ ବାବା ସେ ଜାଗାରୁ ଉଡ଼ନ୍ତୁ ହୋଇଗଲେ ।

ପରବର୍ତ୍ତୀକାଳରେ ନବବାବୁ ଓ ମାଳତୀ ଦେବୀ ଉଭୟ ନକ୍ସଲବାଦୀ ବୋଲାଉଥିବା ତଥା ଗରିବ ଜନତାର ହିତ ଚାହୁଁଥିବା ଲୋକମାନଙ୍କୁ ବୌଦ୍ଧିକ ଓ ହାର୍ଦ୍ଦିକ ସହଯୋଗ ଦେଉଥିଲେ ।

ଦେଖିବାକୁ ଗଲେ ପୁରା ଚୌଧୁରୀ ପରିବାର ସେବାର ବ୍ରତଧାରୀ । ମାଳତୀ ଦେବୀଙ୍କ ଦେଢ଼ଶୁର ଗୋପବନ୍ଧୁ ଚୌଧୁରୀ ଓଡ଼ିଶାର ସବୁଠାରୁ ପ୍ରଖ୍ୟାତ ଗାନ୍ଧୀବାଦୀ, କଲେକ୍ଟର ଚାକିରି ଛାଡ଼ି ଗାନ୍ଧୀଆନ୍ଦୋଳନରେ ଯୋଗଦେଲେ । କଂଗ୍ରେସ ଓ୍ୱାର୍କିଙ୍ଗ୍ କମିଟିର ମଧ୍ୟ ସଭ୍ୟ ଥିଲେ । ପରବର୍ତ୍ତୀ ସମୟରେ ସର୍ବ ସେବା ସଂଘର ନେତୃତ୍ୱ ନେଲେ । ବଡ଼ ଯାଆ ରମାଦେବୀ ମଧ୍ୟ ସମସ୍ତ ଜୀବନ ସେବାକାର୍ଯ୍ୟ ସକାଶେ ଅର୍ପଣ କରିଥିଲେ । ତାଙ୍କ ପୁଅ ମନମୋହନ ବର୍ତ୍ତମାନ ସର୍ବସେବା ସଂଘର ବରିଷ୍ଠ ସାଥୀ । ଝିଅ ଅନ୍ନପୂର୍ଣ୍ଣା ଓ ଜ୍ୱାଇଁ ଶରତଚନ୍ଦ୍ର ମହାରଣା ଉଭୟ ଗାନ୍ଧୀ-ବିନୋବା ସାହିତ୍ୟର ଭକ୍ତ ଏବଂ ମୌଳିକ ଶିକ୍ଷାର ସେବକ । ମାଳତୀ ଦେବୀଙ୍କ ସାନଝିଅ କୃଷ୍ଣା ଓ ଜ୍ୱାଇଁ ବିଭୂତି ଭୂଷଣ ମହାନ୍ତି ଏବେ ବାଜିରାଉତ ଛାତ୍ରାବାସର ଦାୟିତ୍ୱ ନେଇଛନ୍ତି । ବଡ଼ ଝିଅ ଉତ୍ତରା ଓ ଜ୍ୱାଇଁ (ଏ ଲେଖାର ଲେଖକ) ଉଭୟ ସାରା ଜୀବନ ବିନୋବା, ଜୟପ୍ରକାଶଙ୍କ କାର୍ଯ୍ୟରେ ପ୍ରବୃତ୍ତ ରହିଲେ । ଭୂଦାନ ଯଜ୍ଞରେ କାମ କରିବା ପାଇଁ ନବବାବୁ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଲେ । ନବବାବୁ ଓ ମାଳତୀ ଦେବୀ ଉଭୟ ଜରୁରୀକାଳୀନ ପରିସ୍ଥିତିରେ ବିରୋଧ କରି ଜେଲ ଭୋଗିଥିଲେ । ବିଧାନ ସଭାରେ ଲୋକପ୍ରତିନିଧି ଲାଗି ମାଳତୀ ଦେବୀ ଥରେ ନିର୍ବାଚନ ମଧ୍ୟ ଲଢ଼ିଲେ । ତାଙ୍କର କନ୍ୟାପ୍ରତିମା ନନ୍ଦିନୀ ଶତପଥୀଙ୍କ ବିରୋଧରେ ଛିଡ଼ା ହୋଇ ନିଜେ ହାରିଗଲେ ।

ନବବାବୁ ତିନିଥର କଂଗ୍ରେସ ଟିକଟରେ ନିର୍ବାଚନ ଲଢ଼ିଥିଲେ । ପ୍ରଦେଶର ନେତା ଭାବରେ ଅନ୍ୟ ପାଇଁ ପ୍ରଚାର କରିବାକୁ ଗଲେ ଜୀପ୍ ବ୍ୟବହାର କରନ୍ତି । ମାତ୍ର ନିଜର ନିର୍ବାଚନ ମଣ୍ଡଳୀରେ କେତେବେଳେ ସାଇକେଲରେ ତ କେତେବେଳେ ପାଦରେ ଚାଲି ବୁଲନ୍ତି । ପ୍ରତ୍ୟେକ ଥର ବିରୋଧୀମାନେ ଅମାନତ ହରାଇଥିଲେ । ଶେଷରେ ତାଙ୍କର ରାଜନୀତିରୁ ମନ ଛାଡ଼ିଗଲା । ଜୀବନର ଶେଷ କେତେବର୍ଷ ତାଙ୍କର ମଧ୍ୟ ବାଜିରାଉତ ଛାତ୍ରାବାସରେ କଟିଲା । ସାରା ଦିନ କେତେବେଳେ ବା ଯୁବକମାନଙ୍କ ସହ ରାଜନୀତିର ସିଦ୍ଧାନ୍ତକୁ ନେଇ ଚର୍ଚ୍ଚା ତ କେତେବେଳେ ଗୋସେବା କରି ସମୟ କଟାଉଥିଲେ ।

ଏକଦମ ଶେଷ ଦିନଗୁଡ଼ିକରେ ମାଳତୀ ଦେବୀଙ୍କର ସ୍ମୃତିଭ୍ରଂଶ ହୋଇଥିଲା । କିନ୍ତୁ ରବୀନ୍ଦ୍ରନାଥଙ୍କର ଯେ କୌଣସି କାବ୍ୟରୁ ପଦେ କହିବାମାତ୍ରେ ସେ ବାକି ପଦ କହି ଯାଉଥିଲେ । ଗାନ୍ଧୀଜୀଙ୍କ ପରେ ସେ ସବୁଠାରୁ ଅଧିକ ପ୍ରେରଣା ରବୀନ୍ଦ୍ରନାଥଙ୍କ ଠାରୁ ପାଇଛନ୍ତି । କିନ୍ତୁ ତାଙ୍କ ଚାଳ ଛପରର ମାଟି ଘରେ ଖାନ୍ ଅବ୍ଦୁଲ୍ ଗଫାର ଖାନ୍, ଠକ୍କର ବାପା, ଲେନିନ୍ ଏବଂ ହୋଚିମିନ୍‌ଙ୍କ ଛବିମାନ ଟଙ୍ଗା ହୋଇଥିବାର ଦେଖାଏ ।

ମାଳତୀ ଦେବୀଙ୍କ ବିୟୋଗରେ ଦେଶ ସରୋଜିନୀ ନାଇଡୁ, କମଳା ଦେବୀ ଚଟ୍ଟୋପାଧ୍ୟାୟ, ମୃଦୁଳା ସାରାଭାଇ ବା ମୀରାବେନ୍‌ଙ୍କ ପାହ୍ୟାର ଜଣେ ମହିଳା ନେତ୍ରୀଙ୍କୁ ହରାଇଲା ।

(ଶ୍ରୀ ନାରାୟଣ ଦେସାଇଙ୍କର ଏହି ଲେଖାଟି, 'ଭୂମିପତ୍ର' ୧। ୫। ୯୮ ସଂଖ୍ୟା ଗୁଜରାଟୀ ପତ୍ରିକାରେ ବାହାରିଥିଲା ।)

ଅନୁବାଦ—କୃଷ୍ଣା ମହାନ୍ତି

# କୁସୁମ କଳିକା ପରି କୋମଳ ବଜ୍ର ପରି କଠୋର

□ ଶରତ ଚନ୍ଦ୍ର ମହାରଣା

ଶ୍ରୀଯୁକ୍ତା ମାଳତୀ ଚୌଧୁରୀଙ୍କ ସଂସ୍ପର୍ଶରେ ମୁଁ ବହୁ କାଳପୂର୍ବରେ ଆସିଲି । ପୁରୀ ଜିଲ୍ଲା ସ୍କୁଲରେ ୫ମ ଶ୍ରେଣୀରେ ୧୯୧୯ ମସିହାରେ ମୋର ସହପାଠୀ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ ଗଢ଼ଜାତ ଆନ୍ଦୋଳନରେ ଶ୍ରୀଯୁକ୍ତା ମାଳତୀ ଚୌଧୁରୀ ଓ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଆଦିଙ୍କ ସହ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିଥିଲେ ୧୯୩୮-୩୯ରେ । ସେତେବେଳେ ମୁଁ କଟକରେ ଥିଲି, ବାଙ୍ଗାଲୀବାଡ଼ରେ ଥିବା ଚୌଧୁରୀ ଘରଙ୍କର କୋଠାର ଫାଟକ ପର୍ଯ୍ୟନ୍ତ ଯାଇଥିଲି, ମାତ୍ର ଭିତରକୁ ପଶିବାକୁ ସାହସ କରି ନ ଥିଲି । ··· ··

୧୯୪୭ ମସିହାରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ରାଜସ୍ୱ ବିଭାଗର ମନ୍ତ୍ରୀ ହେଲେ, ସେତେବେଳେ ମୁଁ ବାରିରେ ରହୁଥିଲି । ନୂମା ଓ ବାପି ଅତ୍ୟନ୍ତ ସ୍ନେହୀ ଓ ଶୁଭଚିନ୍ତୀ-ବତ୍ସଳ ଥିଲେ । ଏଥିପାଇଁ (ବାରି) ରାମଚନ୍ଦ୍ରପୁରରେ ରହୁଥିବା ମୌଳିକ ଶିକ୍ଷାର ଛାତ୍ରବାସର ଓ କସ୍ତୁରବା ଗାନ୍ଧୀ ଟ୍ରେନିଂର ଶିକ୍ଷାର୍ଥୀମାନଙ୍କ ପାଇଁ ମୋ ସହ ଦୁଇ ଝୁଡ଼ି ପାଚିଲା ଦକ୍ଷିଣୀ ଆମ୍ବ ପଠାଇଲେ ।

ଜାନୁଆରୀ ୧୯୪୮ରେ ମୁଁ ଘୋର ସ୍ନାୟୁଦୁର୍ବଳତାରେ ପୀଡ଼ିତ ହୋଇ ବାରିରେ ଶଯ୍ୟାଶାୟୀ ଥିବା ପ୍ରାୟ ପ୍ରତି ରାତିରେ ମୁଁ ବହୁତ କ୍ଳାନ୍ତିରେ ସ୍ୱପ୍ନ ଦେଖୁଥିଲି । ଥରେ ସ୍ୱପ୍ନ ଦେଖିଲି ଯେ ମାଳତୀ ଦେବୀ ଅତି ବିଷଣ୍ଣ ବଦନରେ ଗୋଟାଏ ଗଛ ମୂଳରେ ଠିଆ ହୋଇଛନ୍ତି ଓ ମୁଁ ଅତି ମଇଳା ଲୁଗା ପିନ୍ଧିଛି ଏବଂ କଟକର କ୍ୟାଣ୍ଟନମେଣ୍ଟ ରୋଡ଼ର ୮ ନମ୍ବର କ୍ୱାର୍ଟରରୁ—ନବକୃଷ୍ଣ ଚୌଧୁରୀଙ୍କର ବାସଭବନରୁ—ଗୋଟିଏ ଅମୂଲ୍ୟ ବସ୍ତୁ ଚାଲିଯାଉଛି । ସ୍ୱପ୍ନ ଭାଙ୍ଗିଲା ମାତ୍ରେ ମୁଁ ଶ୍ରୀମତୀ ନୂମା ଦେବୀଙ୍କୁ କହିଲି—"ତୁମେ ଦାଦାଙ୍କୁ ଶୀଘ୍ର ଜଣାଅ । ସେ ଗୋଟିଏ କୁକୁର ପାଳନ୍ତୁ । ତାହା କଲେ ସେହି ଅମୂଲ୍ୟ ବସ୍ତୁ ରହିଯିବ ।" ତାହାର ଦୁଇଦିନ ପରେ କାଲୁ (ବିନାୟକ ଚୌଧୁରୀ)ର ଅକାଳରେ କାଳ ହୋଇଗଲା । .... । ଶ୍ରୀଯୁକ୍ତ ନବବାବୁ ରାଜସ୍ୱ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । କାଲୁର ଜାମା, ପ୍ୟାଣ୍ଟ ପିନ୍ଧିଲେ । ବାରିକୁ ଗଲେ—

ହିନ୍ଦୁସ୍ତାନ ଟାଇମ୍ସ ପତ୍ରର ସମ୍ପାଦକ ଶ୍ରୀଯୁକ୍ତ ଇ. ଡବ୍ଲ୍ୟୁ ଆର୍ଯ୍ୟ ନାୟକମ୍ ଓ ତାଙ୍କର ସହଧର୍ମିଣୀ ଶ୍ରୀଯୁକ୍ତା ଆର୍ଯ୍ୟନାୟକମ୍ ବାପିଙ୍କର ମନକୁ କୌଣସି ଗଠନମୂଳକ କାମରେ ଲଗାଇବା ଉଦ୍ଦେଶ୍ୟରେ (divert କରିବା ପାଇଁ) ଓଡ଼ିଶାର ମୌଳିକ ଶିକ୍ଷା ପ୍ରୟୋଗର ସଂଗଠକ (Organiser)ଭାବରେ ତାଙ୍କୁ ରଖିବାକୁ ପଣ୍ଡିତ ଲିଙ୍ଗରାଜ ମିଶ୍ର (ଶିକ୍ଷାମନ୍ତ୍ରୀ)ଙ୍କ ସହ ପରାମର୍ଶ କଲେ ଏବଂ ବାପିଙ୍କୁ ରାଜି କରାଇଲେ । ସେହି ପଦବୀ (post) class I ଥିଲା ଓ ସେଥିରେ ପୂର୍ବତନ ଅର୍ଗାନାଇଜର ଶ୍ରୀଯୁକ୍ତ ହରିହର ମିଶ୍ର ପ୍ରାୟ ଟ ୧୨୦୦-୦୦ ମାସିକ ବେତନ ପାଉଥିଲେ । ଶ୍ରୀଯୁକ୍ତ ନବକୃଷ୍ଣ ବାବୁ ମାତ୍ର ଟ ୨୫୦-୦୦ ମାସିକ ଭତ୍ତାରେ କାର୍ଯ୍ୟ କରିବା ପାଇଁ ରାଜି ହେଲେ । ତହିଁପରଦିନ ଶ୍ରୀ ବୀରେନ୍ ମିତ୍ର ଆସି ବାପିଙ୍କୁ କହିଲେ, "ନବଦା ! ଶେଷରେ ସରକାରୀ ଚାକିରି କଲ !" ବାପି ହସି ହସି କହିଲେ—"ଏ ବାସନାଟା ଅତୃପ୍ତ ଥିଲା । ଏଥିରେ ବାସନା ମେଣ୍ଟିଯିବ ।"

ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କୁ କେନ୍ଦ୍ରରେ ମନ୍ତ୍ରୀ ଭାବରେ ୧୯୫୦ରେ ଓଡ଼ିଶାରୁ ନେଇଯିବା ସ୍ଥିର କଲେ । ଅନୁଗୁଳରେ ଦ୍ୱିତୀୟ ଅଖିଳ ଭାରତୀୟ ସର୍ବୋଦୟ ସମ୍ମିଳନୀର ଠିକ୍ ପରବର୍ତ୍ତୀ ଘଟଣା । ସେତେବେଳେ ବାପି ମୌଳିକ ଶିକ୍ଷାର ଅର୍ଗାନାଇଜର ଥାଆନ୍ତି ଓ ତାଙ୍କର ଅଫିସ ଅନୁଗୁଳରେ ଥିଲା । ସର୍ବଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ, ପବିତ୍ରମୋହନ ପ୍ରଧାନ ଆଦି—ମହତାବବାବୁଙ୍କର କୌଶଳପୂର୍ଣ୍ଣ ଅନୁରୋଧରେ—ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କଠାକୁ ବାରମ୍ବାର ଆସିଲେ । ମୁଁ ଅବୈତନିକ ସହକାରୀ ପରିଦର୍ଶକ ଭାବରେ ଅର୍ଗାନାଇଜର ମହାଶୟଙ୍କୁ ସେତେବେଳେ ସାହାଯ୍ୟ କରୁଥିଲି । ଅର୍ଗାନାଇଜରଙ୍କ ଅଫିସରୁ ପ୍ରାୟ ସାଢ଼େ ବାରଟାବେଳେ ମୁଁ ଆଶ୍ରମକୁ ଫେରି ଦେଖିଲି ଯେ ନୂମା ମୋତେ ଅପେକ୍ଷା କରିଛନ୍ତି । ପୂଜାହାରୀ ଶ୍ରୀମାନ୍

କୃତ୍ତିବାସ ଆମ ଉଭୟଙ୍କ ପାଇଁ ଭାତ, ଡାଲି ଥାଳି ବାଢ଼ିଦେଲେ । ମୋର ତ ପ୍ରବଳ ଭୋକ । ମାତ୍ର ଖୁଡ଼ୀ ଆଗେ ଖାଇବା ଆରମ୍ଭ ନ କଲେ, ମୁଁ ଖାଇବି କିପରି ? ଖୁଡ଼ୀ ମାତ୍ର ଦୁଇ-ପାଞ୍ଚଗୁଣ୍ଡା ଖାଇ, ହାତ ଟେକି ବସି ରହିଲେ । ପ୍ରଳାପ କରିବା ଭଳି କହୁଥାନ୍ତି—"ମୁଁ ପାଗଳହୁଡ଼ାକୁ ଯିବି, ବଣାଇକୁ ଯିବି, ଜଙ୍ଗଲରେ ରହିବି ।" ତାହା ପରେ ଉଠିଗଲେ । ପରେ ପରିଶବାବୁ ଶ୍ରୀ ଦିବାକର ପ୍ରଧାନ ଓ ବାବାଜୀ ଭାଇ (ବଳଭଦ୍ର ମିଶ୍ର) ମୋତେ କହିଲେ, "ବାପି ମୁଖ୍ୟମନ୍ତ୍ରୀ ହେବା ପାଇଁ ଗଲେ । ନୂମା ଏଥିରେ ସୋଉ ଭାବରେ ଅସନ୍ତୁଷ୍ଟ, ପାଗଳ ପରି ଗପୁଛନ୍ତି ।" ଖୁଡ଼ୀଙ୍କର ସ୍ନେହ ଯେପରି ପ୍ରଗାଢ଼, ମାତ୍ର ସେହିପରି କଠୋର, ସିଦ୍ଧାନ୍ତ ଅତୁଟ, ଉଦ୍ ସେହିପରି ଅକ୍ଷର ! କୁସୁମ ପରି କୋମଳ, ପୁଣି ଲୌହ ପରି କଠିନ ଓ କର୍କଶ । ୧୯୫୫ ମସିହାରେ ପୁରୀଠାରେ ସର୍ବୋଦୟ ସମ୍ମିଳନୀରେ ଏହା ଅନେକେ ଅନୁଭବ କରିଥିବେ । ମୁଁ ମଧ୍ୟ ଅଳ୍ପ କିଛି ଅନୁଭବ କରିଛି ।

— —

ଆମେ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀର ଭଉଣୀମାନେ ବା ଧନୀକ ଶ୍ରେଣୀର ଭଉଣୀମାନେ ସଙ୍ଘସମିତି କରି ଏବଂ ଶୃଙ୍ଖଳ ଦାବିମାନ ଉତ୍ଥାପନ କରି ସମଗ୍ର ନାରୀ ସମାଜର କଲ୍ୟାଣ ସାଧନ କରିପାରିବା ଏହା ଭାବିବା ଭୁଲ । ଆମକୁ ଦରିଦ୍ର ଶ୍ରମିକ ଭଉଣୀମାନଙ୍କ ପାଖକୁ ଯିବାକୁ ପଡ଼ିବ । ସେମାନଙ୍କ ପାଖରୁ ବହୁତ କଥା ଆମର ଶିଖିବାର ଅଛି । ତାହା ଗ୍ରହଣ କରିବାକୁ ପଡ଼ିବ ଏବଂ ଆମର ବହିପଢ଼ା ଲବ୍ଧ ଜ୍ଞାନର ଅଂଶ ସେମାନଙ୍କୁ ଦେବାକୁ ପଡ଼ିବ । ନିଜର ଅହମ୍‌ଭାବ ଧରି ତାଙ୍କ ପାଖକୁ ଗଲେ ତାଙ୍କଠାରୁ ଯାହା ଗ୍ରହଣ କରିବା କଥା କରି ହେବ ନାହିଁ ବା ତାଙ୍କୁ କିଛି ଦେବା ଏହି ଉଭୟ ଦିଆନିଆ କାମ ପଣ୍ଡ ହୋଇଯିବାର ଆଶଙ୍କା ରହିବ ।

—ମାଳତୀ ଦେବୀ

# ମୋ ଆଖିରେ ନୂମା

□ ପ୍ରଫେସର ବିଭୂତି ଭୂଷଣ ମହାନ୍ତି

(ମାଲତୀ ଦେବୀଙ୍କର ୯୦ତମ ଜନ୍ମଦିନ ଉପଲକ୍ଷ୍ୟରେ ଲିଖିତ )

ନୂମାଙ୍କ ସାଙ୍ଗରେ ମୋର ପ୍ରଥମେ ଦେଖାହୁଏ ୧୯୪୭ ମସିହାରେ । ତାଙ୍କ ପୁଅ ବିନାୟକ (ଜାଲୁ) ମୋର ସାଙ୍ଗ ଥିଲା । ସେ ରେଭେନ୍ସା କଲେଜରେ ଆଇ. ଏସ୍. ସି. ପଢୁଥିଲା ଓ ମୁଁ ପଢୁଥିଲି ଷ୍ଟୁଆର୍ଟ କଲେଜରେ । ସେତେବେଳେ ସେ ରହୁଥିଲା କଟକର 'କେନ୍ଦୁଝର କୋଠି'ରେ ଓ ମୁଁ ରହୁଥିଲି ପାଖରେ ମାନସିଂହ ପାଟଣାରେ । ଫଟୋଗ୍ରାଫି ଥିଲା ଆମ ଦୁହିଁଙ୍କର ନିଶା । ତେଣୁ ବିନାୟକ ଘରକୁ ମୁଁ ସମୟେ ସମୟେ ଆସୁଥିଲି । ତା' ବିଷୟରେ ଆଉ ବେଶୀ ଲେଖି ବସିଲେ କଲମ ସୁଲିବ ନାହିଁ । ଗତ ଜୁନ ମାସ ୧୬ ତାରିଖରେ ମୋର ଓ ବିନାୟକର ବନ୍ଧୁ ପ୍ରଫେସର ହୃଦାନନ୍ଦ ରାୟ ଢେଙ୍କାନାଳ ଆଇନ୍ କଲେଜର ଗୋଟିଏ ସଭାକୁ ଆସିଥିଲେ । ମୁଁ ମଧ୍ୟ ସେଠି ଥିଲି । ଦୁଃଖସୁଖ ହେଲାବେଳେ ପଛ କଥା ସବୁ ମନେପକାଇ, ବିଶେଷତଃ ବିନାୟକ ବିଷୟରେ କହୁ କହୁ, କାନ୍ଦି ପକାଇଲେ ।

ଅତଃପରେ ନୂମାଙ୍କ ସାଙ୍ଗରେ ଦେଖାହୋଇଥିଲା ୧୯୫୫ ମସିହାରେ ତାମିଲନାଡୁର ଗାନ୍ଧୀଗ୍ରାମଠାରେ । ମୁଁ ସେତେବେଳେ ମୁଖ୍ୟ ସାମାଜିକ ଶିକ୍ଷା ସଙ୍ଗଠକ ହିସାବରେ ଗାନ୍ଧୀଗ୍ରାମରେ ତାଲିମ ନେଉଥାଏ । ନୂମାଙ୍କର ଶାନ୍ତିନିକେତନର ସହପାଠୀ ଡକ୍ଟର ଗୋବିନ୍ଦନ୍ ରାମଚନ୍ଦ୍ରନ୍ ସେତେବେଳେ ଥାଆନ୍ତି ଗାନ୍ଧୀଗ୍ରାମର ଡିରେକ୍ଟର । ମୁଁ ଥିଲି ତାଙ୍କର ଅତି ପ୍ରିୟ ଛାତ୍ରଙ୍କ ମଧ୍ୟରୁ ଜଣେ । ନବକୃଷ୍ଣ ଚୌଧୁରୀ (ବାପି) ସେତେବେଳେ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ବାପି ମଧ୍ୟ ଶାନ୍ତିନିକେତନରେ ରାମଚନ୍ଦ୍ରନଙ୍କର ସହପାଠୀ ଥିଲେ । ବାପି ଓ ନୂମାଙ୍କର ଗାନ୍ଧୀଗ୍ରାମ ଆସିବାର ଥାଏ । ରାମଚନ୍ଦ୍ରନ୍‌ଜୀଙ୍କ ଛାତ୍ର କୁଣ୍ଢେମୋଟ । ନାନା ରକମର ପ୍ରସ୍ତୁତି ଚାଲିଥାଏ । ବାପି ଓ ନୂମା ଆସିଲେ । ଗାନ୍ଧୀଗ୍ରାମର ଅନ୍ନପୂର୍ଣ୍ଣା ପେଣ୍ଡାଲ୍‌ରେ ସାମୂହିକ ସନ୍ଧ୍ୟା ପ୍ରାର୍ଥନାରେ ଯୋଗଦେଲେ । ରାମଚନ୍ଦ୍ରନ୍‌ଜୀଙ୍କ ଠାରୁ ଆଗରୁ ବାପି-ନୂମାଙ୍କ ବିଷୟରେ ଶୁଣିଥିଲି । କିନ୍ତୁ ସେଦିନ ସନ୍ଧ୍ୟାରେ ପ୍ରାର୍ଥନା ଶେଷ ହେବାପରେ ମାମା (ରାମଚନ୍ଦ୍ରନ୍‌ଜୀ) ଦୁହିଁଙ୍କର ପରିଚୟ ଦେବାକୁ ଯାଇ କହିଲେ ଯେ ଜଣକୁ ଛାଡ଼ି ଅନ୍ୟଜଣଙ୍କର ପରିଚୟ ଦେଇ ହେବନାହିଁ । ଉଭୟ ପରସ୍ପରର ପରିପୂରକ । ମାମା କହୁ କହୁ ବହୁତ କଥା କହିଲେ—ଶାନ୍ତିନିକେତନରେ ଦୁହିଁଙ୍କର ଦେଖା ସାକ୍ଷାତ, ତାପରେ ବାହାଘର, ରାଜନୈତିକ ଜୀବନର ଆରମ୍ଭ, ଜଣେ ରାଜନୀତି ଭିତରେ ଓ ଅନ୍ୟଜଣେ ବାହାରେ ଇତ୍ୟାଦି ଇତ୍ୟାଦି । ସେଦିନ ପ୍ରାର୍ଥନା ସଭାରେ ନୂମା କିଛି କହିନଥିଲେ । ବାପି ଅଳ୍ପ କିଛି କହିଥିଲେ ସମଗ୍ର ଗ୍ରାମସେବା ବିଷୟରେ ।

ତାପର ଦିନ ସକାଳେ ଶାନ୍ତିସେନା ପ୍ୟାରେଡ୍ । ପ୍ୟାରେଡ୍‌ରେ ଗାନ୍ଧୀଗ୍ରାମର ସମସ୍ତ ଶିକ୍ଷାର୍ଥିନୀ ଓ ଶିକ୍ଷାର୍ଥୀ ଭାଗନେଇଥାନ୍ତି । ଶାନ୍ତିସେନାର କମାଣ୍ଡର ଥିଲେ କୁମାରୀ ଏନ୍. ଶ୍ୟାମଳା (ବର୍ତ୍ତମାନ ପ୍ରସିଦ୍ଧ ସଙ୍ଗୀତଜ୍ଞ ଡକ୍ଟର ଶ୍ୟାମଳା ବାଲକୃଷ୍ଣନ୍) । ସେଦିନ ଶରତ ଋତୁର ସକାଳ । ସିରୁମଲାଇ ପାହାଡ଼ର ଦୃଶ୍ୟଥିଲା ଅତି ମନୋରମ । ଚକ୍‌ଚକ୍ ଖରା ପଡ଼ିଥାଏ । ଥଣ୍ଡାପବନ ଯୋଗୁ କାନ ଘୋଡ଼ାଇବା ଶୀତ ହେଉଥାଏ । ମୁଖ୍ୟ ଅତିଥି ହୋଇଥିଲେ ନୂମା । ଶ୍ୟାମଳାଙ୍କ ନେତୃତ୍ୱରେ ସାଲ୍ୟୁଟ ଦିଆଗଲା । ତା ପରେ ନୂମା ଭାଷଣ ଦେଇଥିଲେ ହିନ୍ଦୀରେ । ଚମତ୍କାର ଭାଷା । ଦେଶରେ ଶାନ୍ତିସେନାର ଭୂମିକା ବିଷୟରେ କହିଲେ । ପୁଣି ଆସ୍ୱାଦ ଦେଲେ ଶାନ୍ତିନିକେତନ ଜୀବନର କିଛି ଝଲକ । ତାପରେ ପୁଣି ଫେରିଆସିଲେ ଓଡ଼ିଶାକୁ । ଉତ୍କଳ ନବଜୀବନ ମଣ୍ଡଳ ଓ ବାଜି ରାଉତ ଛାତ୍ରାବାସ ବିଷୟରେ ମଧ୍ୟ କହିଲେ । ଓଡ଼ିଶାରୁ ଆମେ ୧୬ ଜଣ ଶିକ୍ଷାର୍ଥୀ ଥିଲୁ । ଆମ ସାଙ୍ଗରେ ଟିକ୍କା ପରିଚୟ ହେଲା । ସେଇଠି ମୋର ଇଚ୍ଛା ହୋଇଥିଲା ନୂମାଙ୍କ ବିଷୟରେ ଆହୁରି ବେଶି ଜାଣିବାକୁ । ପରେ ସେ ଇଚ୍ଛା ପୂରଣ ହେଲା ।

ଗାନ୍ଧୀଗ୍ରାମରେ ତାଲିମ ଶେଷକରି ମୁଁ ଫେରି ଆସିଲି କଳାହାଣ୍ଡି ଜିଲ୍ଲାର ଜୁନାଗଡ଼ କମ୍ୟୁନିଟି ପ୍ରୋଜେକ୍ଟକୁ ।

୧୯୫୭ ମସିହା ଜାନୁଆରୀ ମାସରେ ମୋର ବଦଳି ହୁଏ ଅନୁଗୁଳକୁ, ଢେଙ୍କାନାଳ ଓ ଫୁଲବାଣି ଜିଲ୍ଲାର ଜିଲ୍ଲା ସାମାଜିକ ଶିକ୍ଷା ସଂଗଠକ ହିସାବରେ । ହେଡ଼୍‌କ୍ୱାର୍ଟରସ୍ ହୋଇଥାଏ ଅନୁଗୁଳ । ବେସିକ୍ ଟ୍ରେନିଂ କଲେଜରେ ମୋର ଅଫିସ୍ ହୋଇଥାଏ । କଲେଜ୍‌ର ପ୍ରିନ୍‌ସିପାଲ୍ ଥାଆନ୍ତି ପ୍ରଫେସର ଶତ୍ରୁଘ୍ନ ନାଥ । ସେତେବେଳର ଡି. ପି. ଆଇ ଡକ୍ଟର ନୀଳଭଦ୍ର ପ୍ରସାଦଙ୍କର ଇଚ୍ଛାଥାଏ ଯେ ମୁଁ ଅନୁଗୁଳରେ ରହିଲେ ଜନତା କଲେଜର ଗୋଟିଏ ଯୋଜନା ତିଆରି କରି ପାରିବି ଓ ଏହାର ପ୍ରତିଷ୍ଠାର ଭାର ନେବି । କିନ୍ତୁ ତାହା ହୋଇ ପାରିଲା ନାହିଁ । ସେ ଏକ ଲମ୍ବା କାହାଣୀ । ବାଜି ରାଉତ ଛାତ୍ରାବାସ ପାଖରେ ଗୋଟିଏ ଘର ଭଡ଼ାନେଇ ରହିଲି । ସେ ଘରଟିର ମାଲିକ ପ୍ରଫେସର ରାଜକିଶୋର ମିଶ୍ରଙ୍କ ସାନଭାଇ । ସେତେବେଳେ ପ୍ରତି ସନ୍ଧ୍ୟାରେ ବାଜିରାଉତ ଛାତ୍ରାବାସର ସାମୂହିକ ପ୍ରାର୍ଥନା ଅତି ପ୍ରାଣସ୍ପର୍ଶୀ ହେଉଥିଲା । ଗାନ୍ଧୀଗ୍ରାମରୁ ଫେରିବା ପରେ ମୋର ଯେଉଁ ବଡ଼ ଅଭାବ ରହିଥିଲା ତାହା ପୂରଣ ହେଲା । ସବୁ ସନ୍ଧ୍ୟାରେ ମୁଁ ପ୍ରାର୍ଥନାରେ ଯୋଗ ଦେଲି । ନୁମାଙ୍କୁ ଅତି ପାଖରେ ଦେଖିବାର ସୁଯୋଗ ପାଇଲି । ତାଙ୍କ କଣ୍ଠରୁ ରବୀନ୍ଦ୍ର ସଙ୍ଗୀତର ସ୍ୱର ଶୁଣିବାର ସୌଭାଗ୍ୟ ଲାଭକଲି ।

୧୯୫୮ ମସିହାରେ ବାଜିରାଉତ ଛାତ୍ରାବାସରେ ବସନ୍ତ ଉତ୍ସବ ପାଳିତ ହୋଇଥିଲା । କବିଗୁରୁ ରବୀନ୍ଦ୍ରନାଥଙ୍କ ବସନ୍ତ ଋତୁ ଉପରେ ରଚିତ କେତେଗୁଡ଼ିଏ ଗୀତର ଅବଲମ୍ବନରେ ନୃତ୍ୟ ରଚନା କରିଥିଲେ ନୁମା ଓ ତାଙ୍କ ସାନ ଝିଅ କୃଷ୍ଣା (ତନୁ) । ପରିଚାଳନା କରିଥିଲେ ନୁମା । ସେତେବେଳେ ବାଜିରାଉତ ଛାତ୍ରାବାସର ସାଂସ୍କୃତିକ ବାୟୁମଣ୍ଡଳ ସରଗରମ ଥିଲା । ୧୯୫୮ ମସିହା ଜୁଲାଇ ୧୪ ତାରିଖରେ ମୁଁ ଚୌଧୁରୀ ପରିବାରର ଜଣେ ହୋଇଗଲି । ତାପରେ ନୁମା ଓ ବାପି ଦୁଇଜଣଙ୍କୁ ଆହୁରି ପାଖରେ ଦେଖିଲି । ପୁଅ ଯେପରି ବାପ ମାଙ୍କୁ ଦେଖେ ।

## ମିନୁରୁ ନୁମା

ଖୋକନ୍ ଦା (ଜ୍ୟୋତିରିନ୍ଦ୍ର ମୋହନ୍ ଜୋଆରଦାର୍) ନୁମାଙ୍କ ବିଷୟରେ ଲେଖିଛନ୍ତି ଯେ "ପ୍ରକୃତରେ ତାଙ୍କର ବା ତାଙ୍କ ପିତା ସ୍ୱର୍ଗୀୟ କୁମୁଦନାଥ ସେନଗୁପ୍ତଙ୍କର ଆଦିନିବାସ ଥିଲା ପୂର୍ବବଙ୍ଗ (ବର୍ତ୍ତମାନ ବାଂଲାଦେଶ) । କୁମୁଦନାଥ ଥିଲେ ବାରିଷ୍ଟର । ପ୍ରଥମେ ପାଟନା ହାଇକୋର୍ଟରେ ଓ ପରେ କଲିକତା ହାଇକୋର୍ଟରେ ସେ ଆଇନ ବ୍ୟବସାୟ କରୁଥିଲେ । ମାଳତୀ (ମିନୁ) ସେନ୍ ଥିଲେ ତାଙ୍କର କନିଷ୍ଠ ସନ୍ତାନ । ଅଗ୍ରଜ ଦୁଇଭାଇଙ୍କର ଆଦରର ସାନ ଭଉଣୀ । ତାଙ୍କର ପିତାମାତା ଉଭୟ ଥିଲେ ବ୍ରାହ୍ମଧର୍ମାବଲମ୍ବୀ । ଜନ୍ମ ତାଙ୍କର ୨୭ ଜୁଲାଇ ୧୯୦୪ ସାଲରେ । ତାଙ୍କ ମାତା ସ୍ନେହଲତା ଓରଫ ଲଟିଙ୍କର ଶିକ୍ଷାଦୀକ୍ଷା ହୋଇଥିଲା କଲିକତାର ଲରେଟୋ ସ୍କୁଲ ଓ କଲେଜରେ । ସେଠି ବୋର୍ଡ଼ିଂର ଛାତ୍ରୀମାନଙ୍କୁ ଖାଇବା ଟେବୁଲ୍‌ରେ ବସି ଖାଦ୍ୟ ଖୁଣ୍ଟା ମଗାଇବାକୁ ପଡ଼ୁଥିଲା ଫରାସୀ ଭାଷାରେ । ସ୍ନେହଲତାଙ୍କର ପିତା ବିହାରୀଲାଲ୍ ଗୁପ୍ତ, ଆଇ. ସି. ଏସ୍. ଥିଲେ କଟକରେ ଡିଷ୍ଟ୍ରିକ୍ଟ ଓ ସେସନ୍‌ସ ଜଜ୍, ଊନବିଂଶ ଶତକର ଶେଷ ଦଶକ ବେଳକୁ ।"

ନୁମାଙ୍କୁ ଯେତେବେଳେ ମାତ୍ର ତିନି ବର୍ଷ, ସେତେବେଳେ ତାଙ୍କ ବାପା କୁମୁଦନାଥଙ୍କର ଅକାଳ ବିୟୋଗ ଘଟିଲା । ମା' ପିଲାମାନଙ୍କୁ ମଣିଷ କରିବାରେ ଲାଗିପଡ଼ିଲେ । ନୁମା କଲିକତାର ବେଥୁନ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କରିଥିଲେ । କିନ୍ତୁ ବେଥୁନ୍ କଲେଜରେ ପଢ଼ିବାକୁ ଅମଙ୍ଗ ହେଲେ । ସେ ବାଛିଲେ ଶାନ୍ତିନିକେତନରେ ପଢ଼ିବାକୁ ଓ ପଢ଼ିଲେ । କବିଗୁରୁ ରବୀନ୍ଦ୍ରନାଥଙ୍କ ଛଡ଼ା ଅନ୍ୟ ଯେଉଁ ଅଧ୍ୟାପକମାନେ ନୁମାଙ୍କୁ ପଢ଼ାଇଥିଲେ ସେମାନଙ୍କ ମଧ୍ୟରେ ଥିଲେ କ୍ଷିତିମୋହନ ସେନ୍, ଜଗଦାନନ୍ଦ ରାୟ, ରେଭରେଣ୍ଡ୍ ସି. ଏଫ୍. ଆଣ୍ଡ୍ରୁଜ୍ ଏବଂ ଡବ୍ଲ୍ୟୁ. ଡବ୍ଲ୍ୟୁ. ପିୟରସନ୍ । ନୁମା ରବୀନ୍ଦ୍ର ସଙ୍ଗୀତ ଶିଖୁଥିଲେ ଦିନେନ୍ଦ୍ରନାଥ ବା ଦିନୁ ଠାକୁରଙ୍କ ଠାରୁ ।

ଶାନ୍ତିନିକେତନରେ ନୁମା ପ୍ରାୟ ଚାରି ବା ପାଞ୍ଚ ବର୍ଷ ଥିଲେ । ୧୯୨୫ ମସିହାରେ ୬/୭ ମାସ ପାଇଁ ବାପି ଶାନ୍ତିନିକେତନରେ ପଢ଼ିବାକୁ ଆସିଥିଲେ । ଗାନ୍ଧୀଜୀ ତାଙ୍କୁ ସାବରମତୀ ଆଶ୍ରମରୁ ସେଠାକୁ ପଠାଇଥିଲେ । ଶାନ୍ତିନିକେତନରେ ତାଙ୍କର ସହପାଠୀ ଥିଲେ ସୈୟଦ ମୁଜ୍‌ତାବା ଅଲ୍ଲୀ, ବି. ଗୋପାଳ ରେଡ୍ଡୀ ଓ ଜି. ରାମଚନ୍ଦ୍ରନ୍ । ସେଇଠି ତାଙ୍କର ନୁମାଙ୍କ ସହ ପରିଚୟ ହୁଏ । ତାଙ୍କର ବାହାଘର ହେଲା ୧୯୨୭ ମସିହାରେ । ବୁଲୁଭାଇ (ମନମୋହନ ଚୌଧୁରୀ) କହନ୍ତି, "ଝିଅଟି ବାହାହୋଇ ଆମ ଘରକୁ ୧୯୨୭ରେ ଆସିଲେ । ସେତେବେଳକୁ ବାପା ଓ ଦାଦା ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସାରିଲେଣି । ଦାଦା ବର୍ତ୍ତେଖଣ୍ଡେ ଆଗରୁହେବ କଟକ ଠାରୁ ବାଇଶି ମାଇଲ ଦୂର ଜଗତସିଂହପୁର ରାସ୍ତା ପାଖରେ ଅଳଖିଆ-ଠାରେ ଥିବା ଆମର କିଛି ଜମି ଉପରେ କୃଷି ଆରମ୍ଭ କରିଥାଏ । ସେ ସେତେବେଳେ 'ଫାରମ ଅଣ୍ଟୁ' ବୁଝେ

ପ୍ରସିଦ୍ଧ ଉନ୍ନତ ଧରଣର ଆଖୁଚାଷ ସେଠି ଆରମ୍ଭ କରିଥାଏ । ଅନ୍ୟ ଫସଲ ବି କରୁଥାଏ । ଝିଅମାନେ ଶିଳ୍ପକର୍ମ ଶିଖନ୍ତି, ନୂଆ ଭାଷା ମଧ୍ୟ ଶିଖନ୍ତି । ଖୁଡ଼ୀ ଆସିବାର ଅଳ୍ପଦିନରେ ସେଇ ଅଣଷ୍ଟିଆରେ ଯାଇ ରହିଲେ ।'' ସେଠି ନୂମା ଓ ବାପି ଆଖପାଖ ଗାଁମାନଙ୍କ ସହ ସମ୍ପର୍କ ସ୍ଥାପନ କରି ଲୋକମାନଙ୍କୁ ଦେଶ ସେବା ଓ ସମାଜ ସେବା ଦିଗରେ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ଛୁଆଁଛୁଇଁ ବିରୋଧରେ ବି କାମ କରୁଥିଲେ । ନୂମା ଆରମ୍ଭ କରିଥିଲେ କୈଶ୍ୟ ବିଦ୍ୟାଳୟ ।

ଖୋକନଦା କହନ୍ତି, ''ବିଦେଶୀ ସରକାର ପ୍ରତି ବିଦ୍ରୋହଭାବ ଯେ ମାଳତୀ ଦେବୀଙ୍କର କେବଳ ଲୋକ ଦେଖାଣିଆ ଫେସନ୍ ନ ଥିଲା, ତାର ଏକ ଦୃଷ୍ଟାନ୍ତ ମିଳେ ଅମିତା ସେନ୍ ବର୍ଣ୍ଣିତ ଆଉ ଏକ ଘଟଣାରୁ । ସେତେବେଳେ ବୟସ୍କାଉଟ୍ ଓ ଗାର୍ଲଗାଇଡ୍ ସଙ୍ଗଠନ ପ୍ରତି ସବୁ ସ୍କୁଲ କଲେଜର ଛାତ୍ରଛାତ୍ରୀମାନେ ଗୋଟିଏ ନୂତନ ଆଗ୍ରହ ଓ ଉତ୍ସାହ ଅନୁଭବ କରୁଥାଆନ୍ତି । ବିଶେଷକରି ଶାନ୍ତିନିକେତନ ପରି ଗ୍ରାମ୍ୟ ମନ୍ଥର ଜୀବନଯାତ୍ରା ଭିତରୁ ଶାନ୍ତିନିକେତନରେ ଗାର୍ଲଗାଇଡ୍‌ର ଏକ ଶାଖା ଖୋଲିବା ପାଇଁ ସ୍ଥିରକରା ହୋଇଥିଲା । ରବୀନ୍ଦ୍ରନାଥ ସେଥିପାଇଁ ଗୀତ ମଧ୍ୟ ରଚନା କରିସାରିଥିଲେ । କିନ୍ତୁ ପରେ ଦେଖାଗଲା ଯେ, ସେଥିରେ ଯୋଗଦେବାକୁ ହେଲେ ଯେଉଁ ଶପଥ ନେବାକୁ ହୁଏ, ସେଥିରେ ରହିଛି ରାଜାନୁଗତ୍ୟର କଥା । ମିନୁଦି ଓ ମଞ୍ଜୁଦି (ମଞ୍ଜୁଶ୍ରୀ ଠାକୁର) ଥିଲେ ଝିଅଙ୍କ ଭିତରେ ବଡ଼ । ସେମାନେ ଏହି ଶପଥ ନେବାକୁ ଘୋର ଆପତ୍ତି କଲେ । କବି ଆଶ୍ରମ ବାହାରକୁ ଯାଇଥାଆନ୍ତି । ଏ ଦୁଇଜଣ ଆପତ୍ତି ଜଣାଇଲେ ଦୀନବନ୍ଧୁ ଆଣ୍ଡ୍ରୁଜ୍ ସାହେବଙ୍କୁ । ସେ ଏ ଦୁହିଁଙ୍କୁ ସମର୍ଥନ କଲେ । ସେଥିରେ ଆଉ ଯୋଗଦେବା ହୋଇନି । ପରେ ଏହାଶୁଣି ରବୀନ୍ଦ୍ରନାଥ କହିଲେ— ''ଆଣ୍ଡ୍ରୁଜ୍ ସାହେବ ତାଙ୍କୁ ଠିକ୍ ବାଟରେ ପରିଚାଳିତ କରିଛନ୍ତି ।''

୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେବା ସଙ୍ଗେ ସଙ୍ଗେ ନୂମା ସକ୍ରିୟ ରାଜନୀତି କ୍ଷେତ୍ରରେ ପ୍ରବେଶ କଲେ । ସାଙ୍ଗରେ ଥିଲେ ବଡ଼ ଯାଆ ଶ୍ରୀମତୀ ରମାଦେବୀ । 'ସ୍ମୃତିର ସୁରଭି' ବହିରେ ଲେଖକ ବଇଭାଇ (ବୈକୁଣ୍ଠନାଥ ମହାନ୍ତି) ଗୋଟିଏ ମଜାକଥା ଲେଖିଛନ୍ତି ।''ଆଉଥରେ ମାଧବ ମିଶ୍ରେ ଘୋଡ଼ାରେ ଯାଉଥିଲେ । ମାଳତୀ ଦେବୀ ଓ ଆଉ କେତେଜଣ ସ୍ୱେଚ୍ଛାସେବକ ଆସୁଥିଲେ । ମାଧବ ମିଶ୍ରେ ମାଳତୀ ଦେବୀଙ୍କୁ ଅଶ୍ଳୀଳ ଭାଷାରେ କିଛି ପଦେ କହିଲେ । ମାଳତୀ ଦେବୀ ତାଙ୍କ ଘୋଡ଼ାର ଲଗାମ ଧରି କହିଲେ, 'ଆଉ ଥରେ ଯଦି ତୁମେ ଏପରି ଭଦ୍ର ସ୍ତ୍ରୀଲୋକମାନଙ୍କ ପ୍ରତି ବ୍ୟବହାର କର, ଦେଖିବ ତୁମ ଅବସ୍ଥା କ'ଣ ହେବ ।' ମାଧ ମିଶ୍ରେ ଅବଶ୍ୟ ମାଳତୀ ଦେବୀଙ୍କୁ ସେଥିଲାଗି କ୍ଷମା ମାଗିଥିଲେ । କିନ୍ତୁ ଏକଥା ନବବାବୁଙ୍କ କାନରେ ପଡ଼ିଲା । ସେକି ଆଉ ଥୟ ଧରି ରୁହେ ? ଶୁଣିଲି ମାଧ ମିଶ୍ରେ ଗୋଟିଏ ବାଟରେ ଗୁଜରି ଫେରିବେ । ଆମ ସମସ୍ତଙ୍କ ହାତରେ ପୂର୍ବରୁ ଗୋଟିଏ ଗୋଟିଏ ପତାକା ଧରାଇ ଦେଲେ । ଗୋଟିଏ ପୋଲ ଉପରେ ଆମେ ଲୁଚି ରହିଲୁ । ମୁଁ ଆଗରୁ କହିଛି ମାଧ ମିଶ୍ରେଙ୍କ ଘୋଡ଼ାଟା ଖାଲି ଡୁବୁଡ଼ା । ଚୌକିଆ ୪/୬ଟା ଆଗରେ ଦୌଡ଼ୁଥାନ୍ତି । ଘୋଡ଼ା ପଛରେ ଆସୁଥାଏ । ଯେମିତି ଚୌକିଆମାନେ ଆଗକୁ ଚାଲି ଯାଇଛନ୍ତି, ସେମିତି ଆମେ ହଠାତ୍ ଘୋଡ଼ା ଆଗକୁ ବାହାରି ପଡ଼ି କହିଲୁ, 'ବୋଲେ ଭାଇ ମହାତ୍ମା ଗାନ୍ଧୀଙ୍କ ଜୟ । ସ୍ୱାଧୀନ ଭାରତ କି ଜୟ ।' ଯେମିତି କହିଛୁ ଘୋଡ଼ା ଚମକି ଉଠି ବିଲ ଭିତରକୁ ପଶିଯାଇ ବିଲ ଭିତରେ ମାଧ ମିଶ୍ରଙ୍କୁ ଛୁଞ୍ଚାଡ଼ି ଦେଲା । ମିଶ୍ରେ ସେହି କାଦୁଅ ଜମି ମଧ୍ୟରେ ନାଥ କରି ପଡ଼ିଗଲେ × × × କିନ୍ତୁ ମାଳତୀ ଦେବୀ ଆମ ଉପରେ ଓ ନବବାବୁଙ୍କ ଉପରେ ରାଗିଯିବେ । କହିଲେ—'ଏସବୁ କଥା କରିବାକୁ ମୁଁ ତୁମକୁ କହିଥିଲି ? ସେ ସରକାରୀ କର୍ମଚାରୀ । ସେ ତାଙ୍କ କର୍ତ୍ତବ୍ୟ କରୁଛନ୍ତି । ନବବାବୁ କହିଲେ— ତାଙ୍କ କର୍ତ୍ତବ୍ୟ କ'ଣ ଆପଣଙ୍କୁ ଶୋଧିବା ?' ମାଳତୀ ଦେବୀ କହିଲେ—'ସେ ତ ଗାଳି ଦେଇଥିଲା । କ୍ଷମା ମାଗିଲା ।' ଆମେ ସମସ୍ତେ ନୂମାଙ୍କ କଥା ଶୁଣି ନୀରବ ରହିଲୁ ।''

ଇମରଜେନ୍‌ସି ବେଳ କଥା ମନେପଡ଼େ । ବାପିଙ୍କୁ ନେଇ ବାରିପଦା ଜେଲ୍‌ରେ ଗୋଟିଏ ସେଲ୍ ଭିତରେ ରଖିଥାନ୍ତି । ଅଳ୍ପଦିନ ମଧ୍ୟରେ ବାପିଙ୍କ ବାମପାଖ ପାରାଲିସିସ୍ ହୋଇଗଲା । ପ୍ୟାରୋଲ୍‌ରେ ଖଲାସ କରି ଦିଆଗଲା । କଟକରେ ଆସି ତାଙ୍କର ବାଖରାବାଦ ଘରେ ଚିକିତ୍ସିତ ହେଲେ । ପରିବାରର ସମସ୍ତେ ବାପିଙ୍କ ସ୍ୱାସ୍ଥ୍ୟ ନେଇ ଚିନ୍ତିତ ଥିଲେ । ନୂମା ମଧ୍ୟ କିଛି କମ୍ ଚିନ୍ତିତ ନ ଥିଲେ । କିନ୍ତୁ ତାଙ୍କର ସଂଗ୍ରାମ ଚାଲୁ ରହିଥିଲା । ସେ 'ସଂଗ୍ରାମ' ନାମକ ଗୋଟିଏ ବୁଲେଟିନ୍ ନିୟମିତ ବାହାର କରୁଥିଲେ । ସେହି ବାଖରାବାଦ ଘରୁ । ପରିବାରର ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ, କିନ୍ତୁ ନୂମା

ଝାଙ୍କି ପଡ଼ି ନଥିଲେ । କହୁଥିଲେ—ଆହତ ସୈନିକଙ୍କୁ ଚିକିତ୍ସା ଦିଆଯିବା ସଙ୍ଗେ ସଙ୍ଗେ ସଂଗ୍ରାମ ଚାଲୁ ରହିବ । ଅଳ୍ପଦିନ ପରେ ନୁମା ମଧ୍ୟ ଧରାହେଲେ ଓ କଟକ ଜେଲ୍‌ରେ ରହିଲେ । ଅଦମ୍ୟ ସାହସ ଓ ପ୍ରତିଜ୍ଞାବଦ୍ଧତାର ପରିଚୟ ।

ଗାନ୍ଧୀଜୀଙ୍କ ନୋଆଖାଲି ପଦଯାତ୍ରାରେ ଯୋଗଦେବାରେ ନୁମାଙ୍କର ଯେତିକି ଆଗ୍ରହ, ଓଡ଼ିଶାରେ ବିନୋବାଙ୍କ ପଦଯାତ୍ରାରେ ଯୋଗଦେବାରେ ମଧ୍ୟ ସେତିକି ଆଗ୍ରହ । ଓଡ଼ିଶାର ଗାଁଗଣ୍ଡାରେ, ବିଶେଷତଃ ଢେଙ୍କାନାଳ ଓ ଅନୁଗୁଳ ଜିଲ୍ଲା ଦୁଇଟିର ପ୍ରାୟ ସବୁ ଗାଁଆରେ ଆଦିବାସୀ ଅଞ୍ଚଳ, ବିଶେଷକରି କୋରାପୁଟ ଓ ଗଞ୍ଜାମ ମାଳ ଅଞ୍ଚଳରେ, ନୁମା ବୁଲିବୁଲି ବୁଲିଛନ୍ତି । ସାଙ୍ଗରେ ଉତ୍କଳ ନବଜୀବନ ମଣ୍ଡଳର କେତେଜଣ 'ଅପା' । ଗାଁ ଗହଳର, ବିଶେଷତଃ ଆଦିବାସୀ ଭାଇ ଭଉଣୀମାନଙ୍କର ସମସ୍ୟା ସବୁକୁ ବୁଝି ତାର ସମାଧାନ କରିବାରେ ସେ ସାରାଜୀବନ ସମସ୍ତ ଶକ୍ତି ଲଗାଇ ଆସିଛନ୍ତି । ଏଥିରେ ସେ ଓଡ଼ିଶାରେ ଅଦ୍ୱିତୀୟା ।

ବର୍ତ୍ତମାନ ବୟସ ହୋଇଗଲାଣି । ଡାଏବେଟିସ୍ ରୋଗ ବହୁତ ଦିନରୁ । ମଝିରେ ମଝିରେ ପାଟି ସୁଆଦ କରିବାକୁ ଯାଇ କିଛି ଟିକିଏ ଭଜାଭଜି ବା ସରୁଆ ଜଳଖିଆ ଖାଇଦେଲେ ବେମାର ପଡ଼ନ୍ତି । ସ୍ମରଣ ଶକ୍ତି କମି ଆସିଲାଣି । ତଥାପି ପୁରୁଣା କଥା ସବୁ ବେଶ ମନେପଡ଼ିଯାଏ । ଶାନ୍ତିନିକେତନରେ 'ବଲାକା' ପଢ଼ାଇଲା ବେଳେ ଗୁରୁଦେବ କିପରି ଗୀତ ଗାଇଥିଲେ ତାହା ସ୍ପଷ୍ଟଭାବେ ମନର ପରଦାକୁ ଆସିଯାଏ । ତା'ପରେ ଗୀତ ନିଜେ ଗାଇବାକୁ ଆରମ୍ଭ କରନ୍ତି । ବାଜିରାଉତ ଛାତ୍ରାବାସରେ ନୁମାଙ୍କର ଯେଉଁ ଘର, ତାର ବାଘମୁହଁରେ ତାଙ୍କର ଶୋଇବା, ବସିବା, ରହିବା ଓ ଅତିଥି ସତ୍କାର ସବୁ ହୁଏ । ସକାଳୁ ନିଦ ଭାଙ୍ଗିଲେ ସୂର୍ଯ୍ୟୋଦୟ ଦେଖିବେ ନିଶ୍ଚୟ ।

୧୯୪୮ରେ ଚାଲିଗଲା ବିନାୟକ, ୧୯୮୩ରେ ଅସୀମ (ନାତି) ଓ କବୀର (ନାତି) । ପୁଣି ୧୯୮୪ରେ ଚାଲିଗଲେ ବାପି ଏବଂ ୧୯୮୮ରେ ବୁବୁ ଅପା (ବଡ଼ ଝିଅ) । ଦୁଃଖକୁ ସହି ତାର କଷ୍ଟକୁ ହଜମ କରିବାରେ ଅସୀମ ଶକ୍ତି ଅଛି ନୁମାଙ୍କର । ଏସବୁ ଝଡ଼ଝଞ୍ଜା ସହିଯିବା ପରେ ମଧ୍ୟ ସେ ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳକୁ ମାର୍ଗଦର୍ଶନ ଦେଇଆସିଛନ୍ତି । ଆଜି ଯେତେବେଳେ ନୁମାଙ୍କୁ ଦେଖେ ଏ ଦୁଇଟି ଅନୁଷ୍ଠାନ ସମ୍ପର୍କରେ ମନରେ ବହୁତ ପ୍ରଶ୍ନ ଉଠେ ଓ ଚିନ୍ତା ହୁଏ ମଧ୍ୟ । ତଥାପି ଏ ଅନୁଷ୍ଠାନ ଦୁଇଟିର ପରିସର ମଧ୍ୟରେ ନୁମାଙ୍କର ଉପସ୍ଥିତି ହିଁ ସମସ୍ତଙ୍କୁ ପ୍ରେରଣା ଦିଏ ।

---

ଜୀବନରେ ତିଷ୍ଠି ରହିବାର ସଂଗ୍ରାମରେ ହିଂସା ଅହିଂସାର ଭେଦକୁ ବାଢ଼ି ବସିଲେ ଦରିଦ୍ର ଜନତାର ତିଷ୍ଠି ରହିବା ଅସମ୍ଭବ ହୋଇ ଉଠିବ । ଭାରତର ନିଷ୍ପେଷିତ ଜନତା ଯୁଗଯୁଗ ଧରି ନାନା ବାଟରେ ଆଘାତ ସହି ପଡ଼ି ରହିଛନ୍ତି । ଯେଉଁଦିନ ଆଘାତ ଆଉ ନ ସହି ଆଘାତ କରିବାର ଶକ୍ତି ଅର୍ଜନ କରିପାରିବେ, ସେହିଦିନ ସେମାନଙ୍କର ମୁକ୍ତି ହେବ, ତା' ପୂର୍ବେ ନୁହେଁ ।

—ମାଳତୀ ଦେବୀ

---

# ମାଳତୀ ଦେବୀ ଓ କଂଗ୍ରେସ ସମାଜବାଦୀ ଦଳ

□ ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଏହା ୧୯୩୪ ମସିହାର କଥା, କଂଗ୍ରେସ ସମାଜବାଦୀ ଦଳ ଗଠନ ହୋଇନଥାଏ । କେବଳ ୧୯୩୧ ମସିହା ବେଳକୁ ପାଟନାରେ ଏକ ସୋସାଲିଷ୍ଟ ଗୋଷ୍ଠୀ ପୂଜନ ଦେଓ ଗଙ୍ଗାଶରଣ ସିଂହଙ୍କ ଉଦ୍ୟମରେ ଗଠିତ ହୋଇ-ଥାଏ ।

ସତ୍ୟାଗ୍ରହ ଆନ୍ଦୋଳନ ମାନ୍ଦା ପଡ଼ିଗଲାପରେ କଂଗ୍ରେସ ଯୁବା ଶ୍ରେଣୀଙ୍କ ଭିତରେ ଏକ ଚିନ୍ତା ଏବଂ ସନ୍ଦେହ ଉପୁଜିଲା । ଦେଶସାରା ସେମାନେ ଭାବିଲେ ଯେ କଂଗ୍ରେସକୁ ଶକ୍ତିଶାଳୀ କରିବାକୁ ହେଲେ ଆଉ କିଛି ସଂଗ୍ରାମ ମୂଳକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ପଡ଼ିବ । କଂଗ୍ରେସକୁ ସାମ୍ରାଜ୍ୟ-ବାଦୀ ସଂଗ୍ରାମର ଶକ୍ତିଶାଳୀ ଓ ଅଗ୍ରଗାମୀ ସଂଗଠନ କରିବାର ଆବଶ୍ୟକତା ପଡ଼ିଲାଣି । ଏହି ଭାବନାର ବଶବର୍ତ୍ତୀ ହୋଇ ଭାରତର ବିଭିନ୍ନ ପ୍ରଦେଶରେ ସୋସାଲିଷ୍ଟ ଚିନ୍ତାଧାରାର ବ୍ୟକ୍ତିମାନେ ପାଟନାଠାରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସଭାପତିତ୍ୱରେ କଂଗ୍ରେସ ସୋସାଲିଷ୍ଟ ପାର୍ଟୀର ସ୍ଥାପନା କଲେ । ଜୟପ୍ରକାଶ ନାରାୟଣ ସେହି ନୂତନ ଦଳର ସାଙ୍ଗଠନିକ ସମ୍ପାଦକ ନିର୍ବାଚିତ ହେଲେ । କ୍ରମେ କଂଗ୍ରେସ ସୋସାଲିଷ୍ଟ ପାର୍ଟୀ ଏକ ପ୍ରବଳ ରାଜନୈତିକ ଶକ୍ତି ରୂପେ ଉଭା ହେଲା ।

୧୯୩୪ ମସିହାରେ ତା'ର ନାମ ଗନ୍ଧ ସୁଦ୍ଧା ନ ଥିଲା । କିନ୍ତୁ ଓଡ଼ିଶାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଉଦ୍ୟମ କ୍ରମେ ସୋସାଲିଷ୍ଟ ଚିନ୍ତାଧାରାର ଯୁବକ ମାନେ ଦେଶରେ ଓ କଂଗ୍ରେସ ଭିତରେ ସୋସାଲିଷ୍ଟ ଭାବ-ଧାରା ପ୍ରବର୍ତ୍ତନ ଲାଗି କଟକ ଜିଲ୍ଲାର ଅଣଖିଆଠାରେ ଏକଜୁଟ ହେଲେ । ସେଠାରେ ନବକୃଷ୍ଣ ଚୌଧୁରୀ ଏକ କୃଷି ଫାର୍ମ କରିଥାନ୍ତି ସେ ଏବଂ ମାଳତୀ ଚୌଧୁରୀ ସେଠାରେ ରହୁଥିଲେ । ସେତେବେଳେ ସୋସାଲିଷ୍ଟ ଭାବଧାରା ବୋଇଲେ ମାର୍କସବାଦ ବୁଝାଉଥିଲା ଓ ହିଂସାରେ ଅନୁସୃତ ବିପ୍ଳବକୁ ବୁଝାଉଥିଲା ।

ନବବାବୁ ଏ ସମ୍ବନ୍ଧରେ ବହୁତ ଅଧ୍ୟୟନ କରି ଜଓ୍ୱାହରଲାଲ ନେହରୁଙ୍କ ସହିତ ପତ୍ର ବିନିମୟରେ କଂଗ୍ରେସ ଭିତରେ ଏକ ସ୍ୱତନ୍ତ୍ର ବିପ୍ଳବକାମୀ କଂଗ୍ରେସ କର୍ମୀ ଗୋଷ୍ଠୀ ଗଠନର ପ୍ରସ୍ତାବ ଦେଇଥିଲେ । ଜଓ୍ୱାହରଲାଲ ନେହରୁ ପ୍ରସ୍ତାବଟିକୁ ପସନ୍ଦ କରିଥିଲେ ମାତ୍ର କୌଣସି କର୍ମୀ ଗୋଷ୍ଠୀର ଗଠନରେ ରାଜି ହୋଇ ନଥିଲେ । ତେଣୁ ନବବାବୁ, ମାଳତୀ ଦେବୀ ଓଡ଼ିଶାରେ ସୋସାଲିଷ୍ଟ ଚିନ୍ତା-ଧାରାର ବିପ୍ଳବ ସଂଗଠିତ କରିବା ନିମନ୍ତେ ଏକ କଂଗ୍ରେସ କର୍ମୀସଂଘ ଗଠନ କରାଇଲେ । ଏହାର ଲକ୍ଷ୍ୟ ହେଲା ଏକ ସୋସାଲିଷ୍ଟ ରିପବ୍ଲିକ୍ ଗଠନ ଏବଂ ଶ୍ରେଣୀ ଭିତ୍ତିରେ ବିଭିନ୍ନ କ୍ଷେତ୍ରରେ ସଂଗ୍ରାମ । ଏକ ଶୋଷଣହୀନ, ଶ୍ରେଣୀହୀନ ସାମାଜିକ ବ୍ୟବସ୍ଥା ସ୍ଥାପନା, କିନ୍ତୁ ଏଥିରେ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ଶାନ୍ତିପୂର୍ଣ୍ଣ ଉପାୟ ଗ୍ରହଣ କରାଗଲା । ଏହାର ନାମ କରଣ ହେଲା କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ ।

ଏହି କର୍ମୀ ସଂଘ ଲାଗି ଯେତେ ଜଣ ପ୍ରାଥମିକ ବୈଠକରେ ଯୋଗ ଦେଇଥିଲେ ସମସ୍ତେ ପ୍ରତିଶ୍ରୁତିବଦ୍ଧ ହେଲେ ଏବଂ କୌଣସି ବ୍ୟକ୍ତିଗତ ସମ୍ପତ୍ତି ଅର୍ଜନ କରିବା କିମ୍ବା ଠୁଳ ନ କରିବା ନିମନ୍ତେ ସ୍ଥିର କରାଗଲା । ପ୍ରଥମେ ନବବାବୁ ତାଙ୍କର ଖରିଦ କୃଷି ଫାର୍ମକୁ କର୍ମୀ ସଂଘଙ୍କ ହାତରେ ଅର୍ପଣ କରିଦେଲେ ଏବଂ ସେମାନେ ପରିଚାଳନା କରି ତା'ର ସମସ୍ତ ଆୟ ବ୍ୟୟ କରି ପାରିବେ ବୋଲି କ୍ଷମତା ଦେଲେ । ମାଳତୀ ଚୌଧୁରୀ ତାଙ୍କର ସମସ୍ତ ଗହଣା କର୍ମୀ ସଂଘ ହାତରେ ସମର୍ପି ଦେଲେ । ତା'ର ମୂଲ୍ୟ ସେକାଳରେ ଛଅ ହଜାର ଥିଲା ଯାହା ଆଜିକାଲି ମୂଲ୍ୟରେ ଛଅ ଲକ୍ଷରୁ ବେଶି ହେବ । ସେହି ଧନ ବଳରେ କର୍ମୀସଂଘ ପକ୍ଷରୁ ସାରଥୀ ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରାଗଲା । ଏହା ହେଲା ଓଡ଼ିଶାର ସୋସାଲିଜିମ୍ ପ୍ରତିଷ୍ଠା କରିବାର ପ୍ରଥମ ସାଧୁ ଉଦ୍ୟମ । ଏହି କର୍ମୀ ସଂଘର ସମାଜ ବାଦୀ ସାଥୀମାନେ ଓଡ଼ିଶାରେ ଶ୍ରମିକ ଓ କୃଷକ ଶ୍ରେଣୀର ସଙ୍ଗଠନ କରିବା ନିମନ୍ତେ ଲାଗି ପଡ଼ିଲେ ।

ଏହା ପରେ କଂଗ୍ରେସ ସୋସାଲିଷ୍ଟ ପାର୍ଟୀ ଭାରତ ବର୍ଷରେ ଗଠିତ ହେଲା ଓ କଂଗ୍ରେସ ସମାଜବାଦୀ ଦଳର ସଙ୍ଗଠକ ଭାବେ ଜୟପ୍ରକାଶ ନାରାୟଣଙ୍କ ଆହ୍ୱାନ କ୍ରମେ ଓଡ଼ିଶା କର୍ମୀମାନେ ଏକ ସମ୍ମିଳନୀରେ କଂଗ୍ରେସ ସମାଜ-ବାଦୀ ଦଳ ସହିତ ମିଶ୍ରଣ ନିମନ୍ତେ ପ୍ରସ୍ତାବ ଗ୍ରହଣ କଲେ। ବିଧିବଦ୍ଧ ଭାବରେ ଓଡ଼ିଶାରେ କଂଗ୍ରେସ ସମାଜବାଦୀ ଦଳର ସ୍ଥାପନା କରାଗଲା ଏବଂ ତହିଁରେ ନବକୃଷ୍ଣ ଚୌଧୁରୀ, ସାଧାରଣ ସମ୍ପାଦକ ଏବଂ ମାଳତୀ ଚୌଧୁରୀ କୋଷାଧ୍ୟକ୍ଷ ନିର୍ବାଚିତ ହେଲେ। ଏହା କ୍ରମେ ଓଡ଼ିଶାରେ ଏକ ପ୍ରଭାବ-ଶାଳୀ ରାଜନୈତିକ ଶକ୍ତି ରୂପେ ଉଭା ହେଲା।

ଅନ୍ୟ ବିସ୍ତୃତ ବିବରଣୀ ଦେବାର ପ୍ରୟୋଜନ ନାହିଁ, କିନ୍ତୁ ପ୍ରାଥମିକ ଅବସ୍ଥାରେ ମାଳତୀ ଚୌଧୁରୀ ଏବଂ ନବବାବୁଙ୍କ ତ୍ୟାଗ ଓ ସଙ୍ଗଠନ ଶକ୍ତି ଯୋଗୁ ଓଡ଼ିଶାର ଯେ ସମାଜବାଦୀ ଆନ୍ଦୋଳନର ଆବିର୍ଭାବ ହେଲା ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ। ଏହାର ପରବର୍ତ୍ତୀ ଇତିହାସ ଅଦ୍ଭୁତ ଚମତ୍କାର ଏବଂ ଏଥିରେ ମାଳତୀ ଚୌଧୁରୀଙ୍କ ଅବଦାନ ଚିରସ୍ମରଣୀୟ ହୋଇ ରହିବ।

ଓଡ଼ିଶାରେ ଶ୍ରମିକ ସଂଗଠନର ସେପରି କ୍ଷେତ୍ର ନଥିଲା। ସମାଜବାଦୀ ଚିନ୍ତାଧାରାର କ୍ଷେତ୍ର ପ୍ରସ୍ତୁତ କରିବାକୁ ହେଲେ କୃଷକମାନଙ୍କ ଭିତରେ ଶୋଷଣ ବିରୋଧୀ ସଂଗ୍ରାମୀ ମନୋଭାବ ସୃଷ୍ଟି କରିବାହିଁ ଥିଲା ଏକମାତ୍ର ପନ୍ଥା। ଓଡ଼ିଶା ଜମିଦାର ଓ ଗଡ଼ଜାତ ରାଜାଙ୍କ ମୁଷ୍ଟି ଅଧୀନରେ ରହିଥିଲା। ଗଡ଼ଜାତ ରଜା ଓ ଜମିଦାରଙ୍କ ଶୋଷଣ ବିରୁଦ୍ଧରେ ବିଦ୍ରୋହ କରିବା ଥିଲା ଏକମାତ୍ର ପନ୍ଥା। ମାଳତୀ ଚୌଧୁରୀ ସବୁ ସୁଖ ସମ୍ଭୋଗକୁ ଛାଡ଼ି ଏପରିକି ନିଜର ସଦ୍ୟଜାତ ସନ୍ତାନସନ୍ତତିଙ୍କର ରକ୍ଷଣାବେକ୍ଷଣକୁ ପରୁଆ ନକରି ଓଡ଼ିଶାର ଗାଁ, ଗାଁ ବୁଲି କୃଷୀ ଓ ଗଡ଼ଜାତ ପ୍ରଜାଙ୍କ ଭିତରେ ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ କଲେ। ପରବର୍ତ୍ତୀ କାଳରେ ନବକୃଷ୍ଣ ଚୌଧୁରୀ କଂଗ୍ରେସ ସରକାରର ମୁଖ୍ୟମନ୍ତ୍ରୀ ହୋଇଥିଲେ। ମାତ୍ର ମାଳତୀ ଚୌଧୁରୀ ସମାଜବାଦୀ ସଂଗଠନକୁ ବହୁକାଳ ପର୍ଯ୍ୟନ୍ତ ସାହାଯ୍ୟ ସମର୍ଥନ ଦେଇଥିଲେ ଏବଂ ସଂପୃକ୍ତ ରହିଥିଲେ। ମାଳତୀ ଚୌଧୁରୀ ଓଡ଼ିଶାରେ ସମାଜବାଦୀ ସଙ୍ଗଠନରେ ଜଣେ ଜନ୍ମଦାତା କହିଲେ ଅତ୍ୟୁକ୍ତି ହେବ ନାହିଁ।

ସେ ଯାହା କରିଛନ୍ତି ଓ କରାଇଛନ୍ତି ସମାଜବାଦୀ ଆନ୍ଦୋଳନକୁ ଶକ୍ତିଶାଳୀ କରିବା ନିମନ୍ତେ ଓ ତାହାର ଭିତ୍ତି ସ୍ଥାପନା କରିବା ନିମନ୍ତେ ତା'ର କିଛିଟା ମାତ୍ର ଏଠାରେ ଉଲ୍ଲେଖ୍ୟ କରାଯାଇଛି। ସେ ଥିଲେ ବିପ୍ଲବୀ। ତାଙ୍କର ଜୀବନୀ ଓଡ଼ିଶାରେ ବିପ୍ଳବର ଇତିହାସ। ତାଙ୍କର ବିପ୍ଳବ କାହାଣୀ ବା ଜୀବନୀ ଏଠାରେ ଆଲୋଚ୍ୟ ବିଷୟ ନୁହେଁ। କିନ୍ତୁ ଓଡ଼ିଶାରେ କଂଗ୍ରେସ ସମାଜବାଦୀ ଆନ୍ଦୋଳନ ସହିତ ତାଙ୍କର ଅବଦାନ ବିଷୟରେ ଲେଖିବା ନିମନ୍ତେ ବରାଦ କରାଯାଇଥିବାରୁ ମୁଁ ସଂକ୍ଷିପ୍ତ ଆକାରରେ ଏଠାରେ ଉଲ୍ଲେଖ୍ୟ କରୁଛି।

———

ଧନତାନ୍ତ୍ରିକ ବେଷ୍ଟନୀ ଭିତରେ ପରିପୁଷ୍ଟ ଅଜ୍ଞାନ ଏହି ମାନବ ଶିକ୍ଷିତ, ଅଶିକ୍ଷିତ, ପ୍ରତ୍ୟେକ ମଣିଷର ଚିନ୍ତାକୁ ଖର୍ବ କରିଦେବା ପାଇଁ ସବୁ ପ୍ରକାରର ଉଦ୍ୟମରେ ବ୍ୟାପୃତ। ସମ୍ବାଦପତ୍ର ଗୁଡ଼ିକ ମଧ୍ୟ ସେ ବେଷ୍ଟନୀ ଭିତରେ ପଡ଼ି ନିର୍ଭୀକ ମତବ୍ୟକ୍ତ କରିବାକୁ ଅକ୍ଷମ।

—ମାଳତୀ ଦେବୀ

———

# ଓଡ଼ିଶାରେ ଅଗଷ୍ଟ କ୍ରାନ୍ତିର କେତେକ ସ୍ମୃତି

□ ଗୋବିନ୍ଦ ଚନ୍ଦ୍ର ମହାନ୍ତି

୧୯୪୨ ଅଗଷ୍ଟ ୮ ତାରିଖ । ବମ୍ବେରେ ଅନୁଷ୍ଠିତ ଐତିହାସିକ ଏ. ଆଇ. ସି. ସି ଅଧିବେଶନର ସମାପ୍ତି ଦିବସ । ସେଠାରୁ ଝଙ୍କୃତ ହେଲା ମହାତ୍ମା ଗାନ୍ଧୀଙ୍କ 'କର ଅବା ମର' ଆହ୍ୱାନ । ଭାରତର ପରାଧୀନତାର ଶୃଙ୍ଖଳକୁ ଛିନ୍ନ କରିଦେବା ପାଇଁ ଶେଷର ସଂଗ୍ରାମର ସଙ୍କଳ୍ପ ।

ସେହି ବାର୍ତ୍ତା ଘେନି ବିପ୍ଳବୀ ମାଳତୀ ଚୌଧୁରୀ ଆତ୍ମଗୋପନ କରି ଧାଇଁଲେ ଓଡ଼ିଶା ଅଭିମୁଖେ । କେତେ ଅଙ୍କାବଙ୍କା ରେଳରାସ୍ତା ଦେଇ ଗୋପନରେ ଉତ୍କୁଳା କାଠଯୋଡ଼ି ନଦୀ ପାର ହୋଇ ପହଞ୍ଚି ପହଞ୍ଚି ସନ୍ଧାନ ପାଇଗଲା ବ୍ରିଟିଶ ପୋଲିସ ଛଞ୍ଚାଣ । ଗିରଫ ହେଲେ ମାଳତୀ ଦେବୀ । ସ୍ୱାମୀ, ଦେଢ଼ଶୁର, ଯାଆ, ପୁରୁଷ, ଝିଆରୀ ଆଉ ଆଉ ନେତାନେତ୍ରୀଙ୍କୁ ଆଗରୁ ଧରି ନିଆଯାଇଥାଏ ।

ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ, ବରଂ ସପ୍ତଦଶକ କାଳ, ବିଶ୍ୱକବି ରବୀନ୍ଦ୍ରଙ୍କ ଅନ୍ୟତମ ଶିଷ୍ୟା ବିପ୍ଳବୀ ମାଳତୀ ଚୌଧୁରୀ ଓଡ଼ିଶାକୁ ଘର କରିନେଲେ । ୧୯୩୦-୩୨ର ବିଖ୍ୟାତ ଲବଣ ସତ୍ୟାଗ୍ରହ, ଆଇନଅମାନ୍ୟ ଆନ୍ଦୋଳନରେ ସେକାଳର ଅସାଧାରଣ ଜନଉନ୍ମାଦନା ସୃଷ୍ଟିକାରୀ ଜମିଦାର ବିରୋଧୀ କୃଷୀ ଆନ୍ଦୋଳନ, ଗଡ଼ଜାତ ପ୍ରଜାମୁକ୍ତି ସଂଗ୍ରାମ, ସର୍ବୋଦୟ ଆନ୍ଦୋଳନ, ସବୁଥିରେ ରହିଛି ତାଙ୍କର ନେତୃତ୍ୱ, ସାହସିକତା, ଦୃଢ଼ତାର ଅମଳିନ ସ୍ୱାକ୍ଷର । ଯୁଗଯୁଗଧରି ଅବହେଳିତ ଆଦିବାସୀ, ହରିଜନ ଓ ଗରିବ ଘରର ପିଲାଙ୍କୁ ସ୍ୱାବଲମ୍ବୀ, ଦେଶାଭିମାନୀ ମଣିଷ କରି ଗଢ଼ିବେ ବୋଲି ପ୍ରତିଷ୍ଠିତ ବାଜିରାଉତ ଛାତ୍ରାବାସର ଅଧିଷ୍ଠାତ୍ରୀ ନୁମା ପ୍ରତିଶ୍ରୁତି ବଦ୍ଧ ଥିଲେ । ଏହି ବିପ୍ଳବୀଙ୍କ ରୂପକୁ ଦେଖିଛି ବ୍ରିଟିଶ ସରକାର । ଦେଖିଛନ୍ତି ଲକ୍ଷ କୋଟି ଜନତାର ତତ୍କାଳୀନ ଶୋଷକବର୍ଗ । ଅନ୍ୟପକ୍ଷରେ ତାଙ୍କୁ ପାଶ୍ରେଟି ନେଇଛନ୍ତି—ଓଡ଼ିଶାର ପୁରପଲ୍ଲୀର ଲକ୍ଷ ଲକ୍ଷ ଦରିଦ୍ର, ନିଷ୍ପେଷିତ, ନିର୍ଯ୍ୟାତିତ, ବଞ୍ଚିତ, ଲୁଣ୍ଠିତ, ପ୍ରବଞ୍ଚିତ ନରନାରୀ, ଯୁବକ ଯୁବତୀ ।

୧୯୯୮ ମାର୍ଚ୍ଚ ୧୫ ସନ୍ଧ୍ୟା ଅନୁଗୋଳ ସହରର ଉପକଣ୍ଠ ସିପୁଆ ଶ୍ମଶାନରେ ସ୍ୱାମୀଙ୍କ ସମାଧି ସନ୍ନିକଟ ସଜଡ଼ା ଚିତାରେ ଏହି ବିପ୍ଳବୀଙ୍କୁ ମୁଖାଗ୍ନି ଦେଉଛନ୍ତି ପୁରୁଷ, ସର୍ବୋଦୟ ନେତା ମନମୋହନ ଚୌଧୁରୀ । ଦୀର୍ଘ ଶବ ପଟୁଆରରେ ଏବଂ ଶ୍ମଶାନ ଭୂଇଁରେ ଅଗଣିତ ଶୋକାତୁର, ଶୋକାତୁରା ଶ୍ରଦ୍ଧାଳୁ । ମାନସ ଚକ୍ଷୁରେ ଭାସିଉଠିଲା ଏହି ବିପ୍ଳବୀଙ୍କ ଅତ୍ୟନ୍ତ ରୋମାଞ୍ଚକ, ଅଗଣିତ ବୈପ୍ଳବିକ ଘଟଣା । ତାଙ୍କର ୯୭ ତମ ଜନ୍ମଜୟନ୍ତୀ ଉପଲକ୍ଷେ ସ୍ମରଣିକାଟିଏ ପ୍ରକାଶ ପାଇବ । ମୋ ପାଇଁ ସର୍ବୋଦୟ ନେତା ବୁଲୁଭାଇଙ୍କ ବରାଦ, ଅଗଷ୍ଟ କ୍ରାନ୍ତିର ସଂକ୍ଷିପ୍ତ ସ୍ମୃତିଚାରଣ କରିବାକୁ । ତେଣୁ ସେଇଥିରେ ହିଁ ସୀମିତ ରହିବ ।

## ଉତ୍କଳ ଭାରତ ଭୂଇଁ

ଦେଶମାତୃକାର ମୁକ୍ତି ଓ ସ୍ୱାଧୀନତା ଲାଗି ଜାତି ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନ ଆଉ ପ୍ରବଳ-ପରାକ୍ରମୀ ବିଦେଶାଗତ ବ୍ରିଟିଶ ସରକାରଙ୍କୁ ଚରମବାଣୀ । "ଏ ଦେଶବାସୀ ଦାସତ୍ୱ ବନ୍ଧନର ଶୃଙ୍ଖଳ ଛିନ୍ନ କର କର ବା ମରର ପଣ ନେଇ । ହଟିଯା ଏ ଦେଶରୁ ।" ତାଙ୍କ ଚିରାଚରିତ ନୀତି ସତ୍ୟ ଅହିଂସାର ଆଦର୍ଶରେ ସେ ପତ୍ର ଲେଖିବେ, ଭାରତରେ ଅବସ୍ଥାପିତ ବ୍ରିଟିଶ ପ୍ରତିନିଧି ତତ୍କାଳୀନ ଭାଇସରାୟ ଲର୍ଡ ଲିନଲିଥଗୋଙ୍କୁ । ନକାରାତ୍ମକ ଉତ୍ତର ମିଳିଲେ ଭାରତବାସୀ "କର ଅବା ମର"ର ଆହ୍ୱାନକୁ କାର୍ଯ୍ୟକାରୀ କରିବେ ।

ମାତ୍ର ଶାଗୁଣା ଶବ କେଉଁଠି ପଡ଼ିଛି, ଠାବ କଲାପରି ବ୍ରିଟିଶ ସରକାର ବହୁ ଆଗରୁ ଦେଶସାରା କେଉଁଠି କ'ଣ କରିବ ଠାବ କରିସାରିଛି । ଠିକଣା କରିନେଇଛି । କଂଗ୍ରେସ ବେଆଇନ ଘୋଷିତ । ଗାନ୍ଧୀଜୀ ଗିରଫ । ଆଗାଖାଁ ପ୍ରାସାଦ ଜେଲରେ ଅନ୍ୟ ନେତାମାନଙ୍କ ଠାରୁ ବିଚ୍ଛିନ୍ନ କରି ତାଙ୍କୁ ରଖାଗଲା । କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟ ନେହେରୁ, ଆଜାଦ, ପଟେଲ, ଭୁଲାଭାଇ, ବଜାଜ୍ ମହତାବ ସମସ୍ତେ ଗିରଫ ହୋଇ ଅହମ୍ମଦନଗର ଦୁର୍ଗରେ

ବନ୍ଦୀ । ଅଗଷ୍ଟ ୮ ରାତିରେ ଚାଲିଲା ବ୍ରିଟିଶ ଶାସନର ନୃଶଂସ ବର୍ବର ଆକ୍ରମଣ ।

୧୯୪୨, ଅଗଷ୍ଟ ୯ ତାରିଖ । ସୂର୍ଯ୍ୟୋଦୟ ଆରମ୍ଭ ମାତ୍ରେ ହିମାଳୟ ଠାରୁ କୁମାରିକାଯାଏ ଭାରତର କୋଣେ ଅନୁକୋଣେ ନେତା, କର୍ମୀଙ୍କ ଗିରଫଦାରୀର ସ୍ରୋତ ଛୁଟିଲା । ସତେ ଯେପରି ସମଗ୍ର ଭାରତ ଏକ ଯୁଦ୍ଧଭୂମି । ନଗରନଗରୀ, ସହରାଞ୍ଚଳ, ଗ୍ରାମମାନଙ୍କରେ ପୁଲିସ ଓ ମିଲିଟାରୀ ପହଞ୍ଚିଗଲେ । ସବୁ କଂଗ୍ରେସ ଦପ୍ତର, ଆଶ୍ରମ, କର୍ମକେନ୍ଦ୍ରରେ ତାଲା ପଡ଼ିଗଲା ।

ବ୍ରିଟିଶ ସାମ୍ରାଜ୍ୟବାଦର ଏହି ନୃଶଂସ, ନରସଂହାରୀ ଓ ବର୍ବର ଆକ୍ରମଣର ଉତ୍ତର ଦେଲେ ଭାରତର ଲକ୍ଷଲକ୍ଷ ସ୍ୱାଧୀନତା ସଂଗ୍ରାମୀ । ଚାରିଆଡ଼େ ବିପୁଳ ଜନ ସମର୍ଥନ । ପଲ୍ଲୀ, ପ୍ରାନ୍ତର, ସହର, ଶିଳ୍ପାଞ୍ଚଳ, ଶିକ୍ଷାନୁଷ୍ଠାନଗୁଡ଼ିକରେ ପ୍ରବଳ ପ୍ରତିବାଦ, ପ୍ରତିରୋଧ, ଓ କ୍ରୋଧାଗ୍ନି । ସାରା ଦେଶ ଜଳିଲା । ପ୍ରତିବାଦର ପଟୁଆର, ପ୍ରତିବାଦ ସଭା । ନୃଶଂସ ବ୍ରିଟିଶ ପୁଲିସ, ସାମରିକ ପୁଲିସର ବର୍ବର ଆକ୍ରମଣକୁ ତୁଚ୍ଛଜ୍ଞାନ କରି ଅପରସୀମ ସାହସିକତା, ଦମ୍ଭ ଓ ଦୃଢ଼ତା ସହ ଲୋକମାନେ ସେ ଆକ୍ରମଣର କେବଳ ଯେ ମୁକାବିଲା କଲେ ସେତିକି ନୁହେଁ ଲୋକଙ୍କ ପ୍ରତିରୋଧର ଉଗ୍ରତାକୁ ଭୟ କରି ଗିରଫ, ଗୁଳିପରେ ପୁଲିସ ଓ ମିଲିଟାରୀ ପ୍ରାଣଭୟରେ ପଳାୟନ କରିଥିଲେ । ତେଣୁ ଦେଶର ବିଭିନ୍ନ ଅଞ୍ଚଳକୁ ଧରି ଦେଶବତ୍ସଳ ଜନତା ଓ ସ୍ୱାଧୀନତା ସଂଗ୍ରାମର ସୈନିକ-ମାନେ ନିଜ ନିଜ ଇଲାକାରେ ସ୍ୱାଧୀନ ସରକାର ପ୍ରତିଷ୍ଠା କରନ୍ତି । ସେ କାଳରେ ଏପରି ସ୍ୱାଧୀନ ସରକାରଗୁଡ଼ିକ ମଧ୍ୟରେ ମେଦିନୀପୁରର ତମଲୁକ, ମହାରାଷ୍ଟ୍ରର ସତାରା ଓ ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ ପ୍ରତିଷ୍ଠିତ ପଟି (ସ୍ୱାଧୀନ) ସରକାର ବ୍ରିଟିଶ ଶାସକବର୍ଗଙ୍କ ଛାତିରେ ହାଲୁକ ସୃଷ୍ଟି କରିଥିଲା ।

ଅତି ଚତୁରତା ଓ ସତର୍କତାର ସହ ବ୍ରିଟିଶ ପୁଲିସ ହାବୁଡ଼ରୁ ଏଡ଼ି ଭାରତର ଅନେକ ଯୁବନେତା ଓ କର୍ମୀ-ଆତ୍ମଗୋପନ କରି ସଂଘର୍ଷ ସଂଗ୍ରାମକୁ ନେତୃତ୍ୱ ଦେଇଥାନ୍ତି ।

ସ୍ୱାଧୀନତା ସଂଗ୍ରାମର ଦୁଇ ଶହ ବର୍ଷ ବ୍ୟାପୀ ଇତିହାସରେ ଲକ୍ଷ ଲକ୍ଷ ଭାରତୀୟ ଜାତି, ଧର୍ମ, ବର୍ଣ୍ଣ, ଭାଷା, ପ୍ରଦେଶ, ଅଞ୍ଚଳ ନିର୍ବିଶେଷରେ ବ୍ରିଟିଶ ତୋପ କମାଣ ମୁହଁରେ ପ୍ରାଣ ଦେଇଛନ୍ତି । ସହସ୍ର ସଂଖ୍ୟାରେ ଫାଶୀରେ ଝୁଲିଛନ୍ତି ହସି ହସି । ୧୯୪୨ ଅଗଷ୍ଟ ୯ରୁ ପାଳିପଡ଼ୁଛି, ସେମାନଙ୍କ ଦାୟିଦଙ୍କ ଉପରେ । ସ୍ୱାଧୀନ ଭାରତକୀ ଜୟ । ମହାତ୍ମାଗାନ୍ଧୀଙ୍କ ଜୟ, ବ୍ରିଟିଶ ଭାରତ ଛାଡ଼, କରିବୁ ଅବା ମରିବୁ, ରଣଧ୍ୱନିରେ ।

### ଆମ ଓଡ଼ିଶାରେ

ଏ ଜାତିର ମୁକ୍ତି ଓ ସ୍ୱାଧୀନତା ପାଇଁ ଏହି ମହା-ମହିମାମୟ ସଂଗ୍ରାମରେ ଆମ ପ୍ରଦେଶ ଓଡ଼ିଶା ଯଥାର୍ଥ ଭୂମିକା ନେଇଛି । ଅଗଷ୍ଟ ୯ ତାରିଖ ସକାଳୁ କଟକ ସ୍ୱରାଜ-ଆଶ୍ରମରେ ବ୍ରିଟିଶ ପୁଲିସର ତାଲା ଝୁଲିଲା । ଓଡ଼ିଶାର ବିଭିନ୍ନ ଜାଗାରେ ନେତାମାନଙ୍କ ଗିରଫଦାରୀ ଆରମ୍ଭ ହୋଇଗଲା । ନବକୃଷ୍ଣ ଚୌଧୁରୀଙ୍କୁ ଧରିନେବା ପାଇଁ ତାଙ୍କ କାଠଯୋଡ଼ି ବନ୍ଧତଟ ଘରେ ଦଳକୁ ଦଳ ପୁଲିସ ପହଞ୍ଚିଗଲେ । ଲୁଗାପଟା ପିନ୍ଧି ଜେଲ ଯିବାକୁ ସଜିଲ ହେବା ବାହାନାରେ ସେ ଖଣ୍ଡେ କାଗଜରେ ଲେଖିଗଲେ ଏକ ନିର୍ଦ୍ଦେଶାବଳୀ । କ'ଣ କରିବାକୁ ହେବ ଓ କ'ଣ କରାଯିବା ଉଚିତ ନୁହଁ । ଏପରି ଏକ ନିର୍ଦ୍ଦେଶନାମା, ତାଙ୍କର ଏହି ନିର୍ଦ୍ଦେଶାବଳୀ, କିପରି କିଏ ବହନ କଲା, କେଉଁଠି ପହଞ୍ଚିଲା, କିପରି ବିନୋଦ କାନୁନଗୋଙ୍କ ମଣ୍ଡିପୁରରେ ପ୍ରଥମ ଗୋପନ କେନ୍ଦ୍ରରୁ ନିର୍ଦ୍ଦେଶାବଳୀଗୁଡ଼ିକୁ ଲିଫଲେଟ କରି ଓଡ଼ିଶାର ବିଭିନ୍ନ ସ୍ଥାନରେ ବିତରଣ କରାଗଲା, କିପରି କଟକ ଅଲିଶାବଜାର ନନ୍ଦୀ ସାହୁଙ୍କ ଭଡ଼ାଘରେ ଏକ ଦୃଢ଼ ଗୋପନକେନ୍ଦ୍ର ଖୋଲାଗଲା ଓ ସଂଗ୍ରାମ ବ୍ୟାପିଚାଲିଲା ତାହା ହେବ ଏକ ଦୀର୍ଘ କାହାଣୀ ।

ସାରା ଭାରତବର୍ଷ ଏବଂ ଓଡ଼ିଶାର ଏପରି ଗିରଫଦାରୀ ସର୍ବତ୍ର ଚହଳ ସୃଷ୍ଟି କଲା । ଅଗଷ୍ଟ ୧୦ ତାରିଖ । ରେଭେନ୍ସା ମହାବିଦ୍ୟାଳୟର ଛାତ୍ର ସମାଜ ଆରମ୍ଭ କରିଦେଲେ ବିଦ୍ରୋହ । ସମସ୍ତ କଲେଜ ଅଫିସ ଧ୍ୱସ୍ତବିଧ୍ୱସ୍ତ । ଝାମ୍ପି ପଡ଼ିଲା ବ୍ରିଟିଶ ପୁଲିସ । ସ୍ୱାଧୀନତାକାମୀ ଛାତ୍ରନେତା, କିଏ ଗାନ୍ଧୀବାଦୀ, କିଏ ସୋସାଲିଷ୍ଟ କିଏ କଂଗ୍ରେସପ୍ରେମୀ, କିଏ ଫରଓ୍ୱାର୍ଡ ବ୍ଲକ, କିଏ କମ୍ୟୁନିଷ୍ଟ ସମସ୍ତେ ଗିରଫ ହେଲେ ।

ତେଣିକି ଚାଲିଲା ବ୍ରିଟିଶ ପୁଲିସର ଅଭିଯାନ । ଚାରିଆଡ଼େ ପ୍ରତିବାଦ, ବିକ୍ଷୋଭକୁ ନିର୍ମମଭାବରେ ଦମନ କରିବାର ଯନ୍ତ୍ରକୁ ପ୍ରୟୋଗ କରାଗଲା । ଖବର ପହଞ୍ଚେ ବାରିର ପ୍ରସିଦ୍ଧ, ସୁବିଶାଳ ଆଶ୍ରମରେ । ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ଆଚାର୍ଯ୍ୟ ହରିହର ପ୍ରମୁଖଙ୍କ ଦ୍ୱାରା ପରିଚାଳିତ ସ୍ୱାଧୀନତା ସଂଗ୍ରାମର ଏହି ପୀଠକୁ ମାଟିରେ ମିଶେଇ ଦିଆଗଲା । ଚାରିଆଡ଼େ କଂଗ୍ରେସ ଆଶ୍ରମଗୁଡ଼ିକ

ଉପରେ ଚଢ଼ାଉ ଓ ଗିରଫ ଚାଲିଲା । ବସ୍ତା ଓ ରାମଚନ୍ଦ୍ର-ପୁରର ପ୍ରସିଦ୍ଧ ଖଦୀ ଗ୍ରାମୋଦ୍ୟୋଗ କେନ୍ଦ୍ର ଉପରେ ମଧ୍ୟ ପୁଲିସ ପକ୍ଷରୁ ଚଢ଼ାଉ ହେଲା ।

ସମ୍ବଲପୁର ଠାରୁ କୋରାପୁଟ, ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ ଆଦି ଅଞ୍ଚଳକୁ ବୁଝାଯାଉଥିଲା ବ୍ରିଟିଶ ଓଡ଼ିଶା । ଯେମିତି ବ୍ରିଟିଶ ଇଣ୍ଡିଆ । ବ୍ରିଟିଶ ଇଣ୍ଡିଆ-ବାହାରେ ବ୍ରିଟିଶ ସାମ୍ରାଜ୍ୟବାଦ ପୁଷ୍ଟ ରାଜନ୍ୟ ଇଣ୍ଡିଆ । ଖାଲି ବ୍ରିଟିଶ ଓଡ଼ିଶା ବା ବ୍ରିଟିଶ ଭାରତରେ ନୁହଁ, ଓଡ଼ିଶାର ବିଭିନ୍ନ ଗଡ଼ଜାତ, ଭାରତର ବିଭିନ୍ନ କ୍ଷୁଦ୍ର ବୃହତ ଦେଶୀୟ ରାଜ୍ୟରେ, ମାତି ଉଠିଲେ ସ୍ୱାଧୀନତାକାମୀ ଜନତା । ଓଡ଼ିଶାର ଗଡ଼ଜାତଗୁଡ଼ିକରେ ମଧ୍ୟ ବିକ୍ଷୋଭ, କ୍ରୋଧ, ସରକାରୀ ଦପ୍ତର, ଥାନା, ଡାକବଙ୍ଗଳା, ପୋଷ୍ଟ ଅଫିସକୁ ଘେରାଉ, ଆକ୍ରମଣ କଲେ ବିକ୍ଷୁବ୍ଧ ଜନତା ।

୧୯୪୨ରେ ଓଡ଼ିଶାରେ ବ୍ରିଟିଶ ଗୁଳିରେ ନିହତ ଓ ବ୍ରିଟିଶ ପୁଲିସ ଦ୍ୱାରା ଗିରଫଙ୍କ ସଂଖ୍ୟା ସର୍ବଭାରତୀୟ ତୁଳନାରେ ଉଲ୍ଲେଖନୀୟ । ବ୍ରିଟିଶ ଶାସିତ ଓଡ଼ିଶା ଓ ରାଜରାଜୁଡ଼ା ପ୍ରଶାସିତ ଗଡ଼ଜାତଗୁଡ଼ିକର ସହସ୍ର ସହସ୍ର ସଂଖ୍ୟାରେ ଗିରଫଦାରୀ, ଗାଁଗୁଡ଼ିକ ଉପରେ ସମୂହ ଜୋରିମାନା, ଗୁଳି ଓ ଲୋକମାନେ ବିମାନରୁ ବୋମା ଆକ୍ରମଣର ମଧ୍ୟ ସମ୍ମୁଖୀନ ହୋଇଛନ୍ତି, ଆମ ରାଜ୍ୟବାସୀ ଜନସାଧାରଣଙ୍କ ନିକଟରେ ତାହାର ଅନେକ ଦୃଷ୍ଟାନ୍ତ ରହିଛି । ଆଖିଆଗରେ ନାଚଯାଏ । କେଉଁ ଅଞ୍ଚଳରେ, କେଉଁ ଗାଁ'ରେ, କେଉଁ ସହରରେ ଗିରଫ ଓ ଅତ୍ୟାଚାରର ଦୃଶ୍ୟ । କେଉଁ ଅଞ୍ଚଳରୁ, କେଉଁ ଗାଁ'ରୁ କେତେ ବ୍ରିଟିଶ ପୁଲିସର ମୁକାବିଲା କରି ଗିରଫ ହେବେ, ଗୁଳି ଖାଇବେ ଯେମିତି ଚାଲିଥାଏ ପ୍ରତିଯୋଗିତା । ଏମିତି କେତୋଟି ଦୃଷ୍ଟାନ୍ତ ଦେଲେ ସମଗ୍ର ଚିତ୍ରଟିକୁ ଅନୁମାନ କରିହେବ । ସମ୍ବଲପୁର ଜିଲ୍ଲା ବରପାଲି ଅଞ୍ଚଳର ପାଣିମୋରା ଗାଁ'ର ୩୨ ଜଣ ସଂଗ୍ରାମୀଙ୍କୁ ବାନ୍ଧି ନିଆଗଲା । ଏହିପରି ଆଉ ମଣିକୁଣ୍ଡଳ ଗାଁର ୬୩ ଜଣ ସଂଗ୍ରାମୀଙ୍କୁ ଓ ବସ୍ତା, ହଳଦୀବସନ୍ତ, ଧାରପୁର, ହାଟସାହି ପ୍ରଭୃତି ଏଇ ଆଖପାଖ ଗାଁର ୭୨ ଜଣଙ୍କୁ ଗିରଫ କରି ନିଆଗଲା । ସାଇହର ବାରଲପୁରରୁ ୧୮ ଜଣଙ୍କୁ ବନ୍ଦୀ କରି ନିଆଗଲା । ଧର୍ମଶାଳା, କଲ୍ୟାଣପୁର, ଉତ୍କୋଳର କେରଡାଙ୍ଗ ଏମିତି ଗୋଟିଏ ଗୋଟିଏ ଗାଁରୁ ୧୦/୧୨ ସ୍ୱାଧୀନତା ସଂଗ୍ରାମୀଙ୍କୁ ଗିରଫ କରି ନିଆଗଲା । ନାରୀ, ପୁରୁଷ, ଯୁବକଯୁବତୀ, ଆଦିବାସୀ, ହିନ୍ଦୁ, ମୁସଲମାନ ନିର୍ବିଶେଷରେ ଓଡ଼ିଶାରେ ଗିରଫଦାରୀ ଚାଲିଲା । ସବୁଠୁ ବଳିଗଲା କୋରାପୁଟର ମାଥିଲି, ପାପଡ଼ାହାଣ୍ଡି ଅଞ୍ଚଳ ।

## ରକ୍ତର ତାଣ୍ଡବ

ଓଡ଼ିଶାର ଜାଲିଆନାବାଗ ବାସୁଦେବପୁରର ଇରମ । ସେଇଠି ରକ୍ତର ସ୍ରୋତ ଛୁଟିଲା । ବାଲେଶ୍ୱରର ଇରମ ବ୍ୟତୀତ ଗୁଡ଼ଗୁଡ଼ିଆ, କଟସାହି (ଧାମନଗର) ଭଣ୍ଡାରିପୋଖରୀ, ଲୁଣିଆ, ଲକ୍ଷ୍ମଣନାଥ, କଟକ ସନ୍ନିକଟ କାଇପଡ଼ା-ହାଟସାହି, ନିମାପଡ଼ା, ଢେଙ୍କାନାଳର ମଡ଼ି, ତାଳଚେର, ଅଉ ସର୍ବୋପରି କୋରାପୁଟର ପାପଡ଼ାହାଣ୍ଡିରେ ବ୍ରିଟିଶ ଗୁଳିରେ ଆହତ ଓ ନିହତଙ୍କ ସଂଖ୍ୟା ଅନେକ ।

ଇରମ ଅଞ୍ଚଳକୁ ଅଗଷ୍ଟ ବିପ୍ଳବୀମାନେ ସ୍ୱାଧୀନ ଘୋଷଣା କରିଦେଲେ । ଜାତୀୟ କବି ବାଞ୍ଛାନିଧି ମହାନ୍ତି ନାମରେ ଶାସନର ନାମ ହେଲା ବାଞ୍ଛାନିଧି ତଡ଼ା ସ୍ୱାଧୀନ ସରକାର । ୧୯୪୨ ସେପ୍ଟେମ୍ବର ୨୮ରେ ରକ୍ତପିପାସୁ ବ୍ରିଟିଶ ପୁଲିସଙ୍କ ଚଢ଼ାଉ ଆରମ୍ଭ । ସମବେତ ସହସ୍ର ସହସ୍ର ପଟୁଆର ଓ ସଭା କରୁଥିବା ନରନାରୀ, ବୃଦ୍ଧବୃଦ୍ଧା, ଯୁବକଯୁବତୀଙ୍କୁ ଚାରିଆଡ଼ୁ ପୁଲିସ ଘେରିନେଲା, ଚାଲିଲା ଅବାରିତ ଗୁଳିବର୍ଷଣ । ୨୯ ଜଣ ବିପ୍ଳବୀଙ୍କ ପ୍ରାଣବାୟୁ ଉଡ଼ିଗଲା । ୫୮ ଜଣ ଗୁରୁତର ଭାବରେ ଆହତ ହୋଇ ମରଣାପନ୍ନ ହେଲେ । ଅଉ କେତେ ଯେ ଖଣ୍ଡିଆଖାବରା ହେଲେ, ତାର ଇୟତ୍ତା ନାହିଁ ।

ସେହି ସେପ୍ଟେମ୍ବର ୨୮ ରେ ଗୁଡ଼ଗୁଡ଼ିଆଠାରେ ଅନୁଷ୍ଠିତ ଜନସମାବେଶ ଉପରେ ଗୁଳି କରି ୯ ଜଣଙ୍କୁ ହତ୍ୟା କରାଗଲା । ସେପ୍ଟେମ୍ବର ୨୯ରେ ଧାମନଗର କଟସାହିରେ ବିକ୍ଷୁବ୍ଧ ଜନତା ଉପରେ ନିର୍ବିଚାର ଭାବରେ ଗୁଳି କରି ୮ ଜଣଙ୍କୁ ମାରି ଦିଆଗଲା । ଆହତ ହେଲେ ଅନେକ । କେଉଁଥିରୁ ୩ ଜଣ ବହୁଦିନପରେ ଆରୋଗ୍ୟ ଲାଭ କରି ବଞ୍ଚିଗଲେ । ଅଗଷ୍ଟ ୨୨ ତାରିଖରେ କାଇପଡ଼ାଠାରେ ପୁଣିଥରେ ସଭା ସମାବେଶ । ପୁଲିସ ଗୁଳି । ଅନେକ ଆହତ । ଦୁଇଜଣ ହେଲେ ବ୍ରିଟିଶ ଗୁଳିରେ ଶହୀଦ ।

ଭଦ୍ରକର ଲୁଣିଆଠାରେ ହଜାର ସଂଖ୍ୟାରେ ବିକ୍ଷୁବ୍ଧ ଜନତାର ସମାବେଶ । ସେପ୍ଟେମ୍ବର ୨୩ ସେ ଦିନ । ଗୁଳି ବର୍ଷଣରେ କେହି ମୃତ ନ ହେଲେ ବି ଅନେକ ଆହତ ହେଲେ । ସେହି ମାସରେ ଓଡ଼ିଶାର ଶେଷ ସୀମାନ୍ତ

ଲକ୍ଷ୍ମଣନାଥଠାରେ ଗୁଳିରୁ ସଶସ୍ତ୍ର ପୁଲିସ ଘେରିଯାଇ ଚଳାଇଲି ଗୁଳି—ଅନେକ ଆକ୍ରାନ୍ତ ହେଲେ ।

୧୯୪୨ ଅଗଷ୍ଟ ୨୪ରେ ଢେଙ୍କାନାଳ ମର୍ଥି ଥାନା ଉପରେ ବିପ୍ଳବୀମାନେ ଆକ୍ରମଣ କରି ପୁଲିସ ଓ ଅଫିସରଙ୍କୁ ବନ୍ଦୀ କରିଦେଲେ । ସ୍ୱରାଜ ସରକାର ଘୋଷିତ ହେଲା, ୧୦ ହଜାର ଲୋକଙ୍କ ସମ୍ମୁଖରେ । ପରେ ଗୋର୍ଖା ପୁଲିସ ବାହିନୀର ଗାଁକୁ ଗାଁ ଆକ୍ରମଣ, ବିପ୍ଳବୀଙ୍କ ମଧ୍ୟରୁ ୨ ଜଣ ନିହତ, ବିପ୍ଳବୀ ବୈଷ୍ଣବ ପଟ୍ଟନାୟକଙ୍କ ବାହୁରେ ଗୁଳି—ସେହି ଆଘାତକୁ ପରବାୟ ନକରି ସେ ଫେରାର ହେଲେ । ମୂଷା ମଳିକଙ୍କୁ ଫାଶୀଦଣ୍ଡ ଓ ଅନ୍ୟମାନଙ୍କୁ ୭ରୁ ୧୪ ବର୍ଷ ଜେଲଦଣ୍ଡ । ଜନକ୍ରୋଧକୁ ଡରି ଫାଶୀ ବିଳମ୍ବିତ ହେଲା । ସୁଯୋଗ ଯେ ସ୍ୱାଧୀନତା ଆସିଗଲା । ମୂଷା ଫାଶୀରୁ ରକ୍ଷା ପାଇଲେ ।

ତାଳଚେରରେ ବିମାନରୁ ବୋମା ପକାଇ ଅନେକ ଘରଦ୍ୱାରକୁ ଜାଳି ଦିଆଗଲା । ୪ ଜଣଙ୍କ ଜୀବନ ନାଟିକା ଧପ ହୋଇଗଲା । ନିମାପଡ଼ାରେ ଗୁଳିରେ ଜଣେ ଶହୀଦ ହେଲେ ।

ନରସିଂହାରର ସୀମା ଟପିଗଲା କୋରାପୁଟ ଜିଲ୍ଲା ମାତିଲି ଥାନାରେ ଓ ପାପଡ଼ାହାଣ୍ଡିରେ । ମାତିଲି ଥାନା ଉପରେ ବିକ୍ଷୁବ୍ଧ ଜନତାର ଆକ୍ରମଣ ଓ ପୁଲିସର ପ୍ରତି ଆକ୍ରମଣ । ସମସ୍ତ ଆଦିବାସୀ ବିକ୍ଷୁବ୍ଧ ଜନତାକୁ ଉଚିତ ଶିକ୍ଷା ଦେବା ଲାଗି ଚାଲିଲା ପୁଲିସ ସନ୍ତ୍ରାସ । ସମସ୍ତ ଆକ୍ରମଣକୁ ପ୍ରତ୍ୟକ୍ଷ କରିଥିବା, ଅଙ୍ଗେ ନିଭାଇଥିବା ସରଳ-ବିଶ୍ୱାସୀ ଆଦିବାସୀ ଜନତାଙ୍କ ଅଭିଜ୍ଞତା । ପୁଲିସ ଗୁଳିରେ ନିହତ ଶତାଧିକ ବିପ୍ଳବୀଙ୍କ ଶବକୁ ଘନ ଜଙ୍ଗଲରେ ବାଘ ସିଂହଙ୍କ ଖାଦ୍ୟ କରିଦେଲା ଏହି ନୃଶଂସତା । ସରକାରୀ ହିସାବରେ ମାତ୍ର ୭ ଜଣ ମୃତ ବୋଲି ବିଜ୍ଞପ୍ତି ପ୍ରକାଶ କରାଗଲା ।

ମାତିଲିର ବୀର ବିପ୍ଳବୀ ଲକ୍ଷ୍ମଣ ନାୟକଙ୍କ ନାମରେ ପୁଲିସ ହତ୍ୟାର ମନଗଢ଼ା ଅଭିଯୋଗ ଆଣି ଶହ ଶହ ବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରୁ ଟାଣି ନେଇ ବ୍ରହ୍ମପୁର ଜେଲରେ ୧୯୪୪ରେ ତାଙ୍କୁ ଫାଶୀରେ ଝୁଲାଇ ଦିଆଗଲା । ତାଙ୍କ କଣ୍ଠରୁ ମହାତ୍ମା ଗାନ୍ଧୀଙ୍କର ସ୍ୱାଧୀନ ଭାରତର ଜୟଧ୍ୱନି ନିନାଦିତ ହେଉଥିବାବେଳେ କଣ୍ଠରେ ଫାଶି ଦଉଡ଼ି ଚିରଦିନ ଲାଗି ପାଟି ବନ୍ଦ କରିଦେଲା । ଏପରି ହତ୍ୟା, ଅତ୍ୟାଚାରର ସାଙ୍ଗକୁ ମିଶିଲା ଆଉ ଏକ ଦଣ୍ଡ । କାହିଁକି ଗାଁ ଗାଁର ଲୋକେ ବିପ୍ଳବୀମାନଙ୍କୁ ସାହାଯ୍ୟ କରୁଛନ୍ତି, ଲୁଚାଇ ରଖୁଛନ୍ତି, ଖାଇବାକୁ ଦେଉଛନ୍ତି, ସେଥିଲାଗି ସେମାନଙ୍କୁ ଦଣ୍ଡ ଦେବାକୁ ହେବ । ତାର ନାମ ପିଟୁଣି ଟିକସ । ସାରା ଭାରତ-ବର୍ଷର ଏମୁଣ୍ଡରୁ ସେମୁଣ୍ଡ ଯାଏ ଶହ ଶହ ଗାଁ ଉପରେ ଏପରି ଟିକସ ବସାଗଲା । ଓଡ଼ିଶାରେ ଭଣ୍ଡାରିପୋଖରୀ ଅଞ୍ଚଳରେ ୧୨ଟି ଗାଁର ଚାଷୀଙ୍କ ଉପରେ ୭ ହଜାର ଟଙ୍କା (ଆଜିର ମୂଲ୍ୟରେ ପ୍ରାୟତଃ ୭ ଲକ୍ଷ ଟଙ୍କା ହେବ) ଏବଂ ଢେଙ୍କାନାଳ ମର୍ଥି ଅଞ୍ଚଳର କେତେକ ଗାଁ ଉପରେ ୭୦ ହଜାର ୫୦୦ ଟଙ୍କା ସମୂହ ଜରିମାନା ଧାର୍ଯ୍ୟ କରି ଚାଷୀଙ୍କ ଅସବାବପତ୍ର ଘରଦ୍ୱାର ନୀଳାମ କରାଯାଇଥିଲା । ଏମିତି ଆଉ ଅନେକ ରେକର୍ଡ଼ ଅଭୁକ୍ତ ଅତ୍ୟାଚାରର କାହାଣୀ ରହିଛି ।

ଏହା ବ୍ୟତୀତ ଅଗଷ୍ଟ ବିପ୍ଳବୀଙ୍କ ନାମରେ ଓଡ଼ିଶାରେ ବ୍ରିଟିଶ ସରକାରକୁ ଗାଦିଚ୍ୟୁତ କରିବା ଅଭିଯୋଗ ଆଣି ଷଡ଼ଯନ୍ତ୍ର ମକଦ୍ଦମା ଚାଲିଲା—ବିଚାର ହେଲା ସୁଦୂର କୋରା-ପୁଟରେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ହେଲେ ମୁଖ୍ୟ ଆସାମୀ । ବିଚାରର ପ୍ରହସନ କରି ଧୃତ ବନ୍ଦୀମାନଙ୍କୁ ୪ ବର୍ଷରୁ ୧୭ ବର୍ଷ ଯାଏ ଜେଲ ଦଣ୍ଡ ଦିଆଗଲା ।

ଓଡ଼ିଶାର ବ୍ରହ୍ମପୁର କେନ୍ଦ୍ର ଜେଲରେ ପାଞ୍ଚଶତାଧିକ ରାଜବନ୍ଦୀ । ଏହି ରାଜବନ୍ଦୀମାନଙ୍କୁ ଖୁଆଡ଼ରେ ଭର୍ତ୍ତି କରିବା ପାଇଁ ଏକ ନୂଆ ଜେଲ ଅଗରୁ ସଜଡ଼ା ସରିଥାଏ । ଲମ୍ବା ଲମ୍ବା ୯ ଧାଡ଼ି ଘର—ପ୍ରତ୍ୟେକ ଧାଡ଼ି କ, ଖ ଦୁଇ ଭାଗରେ ବିଭକ୍ତ । ଚାଳଘର ଚାରିଆଡ଼େ କଡ଼ା ପହରା । କେବଳ ବ୍ରହ୍ମପୁର ନୁହଁ, କୋରାପୁଟ ଜେଲରେ ଶତାଧିକ ରାଜବନ୍ଦୀ । ଅନୁଗୋଳ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଜେଲଗୁଡ଼ିକ ରାଜବନ୍ଦୀରେ ଭରପୂର । ଢେଙ୍କାନାଳ, ତାଳଚେର, ନୀଳଗିରି, ନୟାଗଡ଼, ଆଠଗଡ଼, ଦଶପଲ୍ଲା, ଏମିତି ଅନେକ ଗଡ଼ଜାତ ରାଜ୍ୟ ଜେଲରେ ଅଗଷ୍ଟ ବିପ୍ଳବୀମାନେ ବର୍ଷ ବର୍ଷ କାଳ ବନ୍ଦୀ । ଭାରତ ରକ୍ଷା ଆଇନ ନାମରେ ନାମିତ କଳାଆଇନ ଅଧୀନରେ କିଏ ଦୁଇ ବର୍ଷ ତିନି ବର୍ଷ, ଚାରିବର୍ଷ ଯାଏ ବନ୍ଦୀ ରହିଲେ ।

ନାରକୀୟ ହତ୍ୟା, ଅତ୍ୟାଚାର, ଜେଲ ଜରିମାନା, ଫାଶୀର ତାଣ୍ଡବକୁ ବ୍ରିଟିଶ ସରକାର ଅତି ନ୍ୟୂନ ସ୍ତରରେ ଦର୍ଶାଇଛି । ତଥାପି କେନ୍ଦ୍ର ଆସେମ୍ବ୍ଲିରେ ତତ୍କାଳୀନ ବ୍ରିଟିଶ ହୋମ ମେମ୍ବରଙ୍କ ବିବୃତିରେ ବିବୃତ ତଥ୍ୟ ସଂଖ୍ୟା ପରିମାଣ ଅଗଷ୍ଟ କ୍ରାନ୍ତିର ବ୍ୟାପକତାକୁ ଘୋଡ଼ାଇ ପାରି ନାହିଁ ।

ଏହି ତଥ୍ୟ ଅନୁସାରେ ସାରା ଭାରତରେ ୬୦ ହଜାର ସ୍ୱାଧୀନତା ସଂଗ୍ରାମୀଙ୍କୁ ବନ୍ଦୀ କରାଯାଇଥିଲା ଏବଂ ୧୮

ହଜାରଙ୍କୁ ଭାରତ ରକ୍ଷା ଆଇନ ବଳରେ ବର୍ଷ ବର୍ଷ ଅଟକ ରଖାଯାଇଥିଲା । ପୁଲିସ ଓ ସୈନ୍ୟଙ୍କ ଗୁଳିରେ ୯୪୦ ଜଣ ନିହତ ହୋଇଥିଲେ ଏବଂ ୧୬୩୦ ଜଣ ଗୁରୁତର ଭାବରେ ଆହତ ହୋଇଥିଲେ । ୬୦ ଟି ସ୍ଥାନରେ ସାମରିକ ବାହିନୀ ପକ୍ଷରୁ ଆକ୍ରମଣ ଏବଂ ୫୩୮ ଟି ସ୍ଥାନରେ ପୁଲିସ ପକ୍ଷରୁ ଗୁଳି ଚାଳନା କରାଯାଇଥିଲା । ଚମୂର, ମେଦିନୀପୁର, ନନ୍ଦୁରବାର, ପୁନେ ଓ ଅହମ୍ମଦାବାଦରେ ବୋମା ଓ ମେସିନଗନ ଦ୍ୱାରା ଲୋକଙ୍କ ଉପରେ ଆକ୍ରମଣ କରାଯାଇଥିଲା । ଶତ ଶତ ଗାଁ ଉପରେ ସମୂହ ଜରିମାନା ଧାର୍ଯ୍ୟ କରାଯାଇ ଡାକନିଲାମ କରି ସମ୍ପତ୍ତି ବାଜ୍ୟାପ୍ତ କରାଯାଇଥିଲା । ଏହାର ହିସାବକୁ ସରକାର ଲୁଚାଇ ରଖିଥିଲେ ।

ସେହି ବିବରଣୀରେ ଭାରତବାସୀଙ୍କ ଅଗଷ୍ଟ କ୍ରାନ୍ତି ବେଳେ ବୀରତ୍ୱକୁ ମଧ୍ୟ ନ୍ୟୁନ କରି ଦର୍ଶାଯାଇଛି । ତଥାପି ସେତିକି ତଥ୍ୟ ଦିଆଯାଇଛି ତାହା ଏହି କ୍ରାନ୍ତିର ପରିସର କେତେ ବ୍ୟାପକ ତାହା ଦର୍ଶାଇ ଦେଉଛି । ସେଥିରେ କୁହାଯାଇଛି ଦେଶରେ ମାତ୍ର ୧୫୦ଟି ଥାନା ଉପରେ ଆକ୍ରମଣ କରାଯାଇଛି । ୫୦୦ ପୋଷ୍ଟ ଅଫିସ, ୨୫୦ଟି ରେଲଷ୍ଟେସନ ଉପରେ ଆକ୍ରମଣ ହୋଇଛି । ମାତ୍ର କେତେ ସରକାରୀ ଦପ୍ତର, ଡାକବଙ୍ଗଳା, ବିକ୍ଷୁବ୍ଧ ଜନତାଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଧୂଳିସାତ୍ ହୋଇଛି ତାହାର ବିବରଣୀ ତଳେ ଦିଆଯାଇ ନାହିଁ ।

ସର୍ବ ଭାରତୀୟ ତୁଳନାରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଅଗଷ୍ଟ କ୍ରାନ୍ତିକୁ ଅବଦାନ ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅଗଷ୍ଟ କ୍ରାନ୍ତିର ସ୍ମୃତି ପଖଳାର ସୁଯୋଗ ମିଳିଥିବାରୁ ବିପ୍ଳବିଣୀ ମାଳତୀ ଦେବୀଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

---

ବିଶେଷ କରି ଛୁଆଁ ଅଛୁଆଁ ଆମକୁ ବହୁତ ପରିମାଣରେ ପଛକୁ ଟାଣୁଛି, ଏକଥା ଉପରେ ବିଶେଷ ଜୋର ଦେଇ ତାହାର ମୂଳରେ ଖୁବ୍ ଜୋରରେ ଆଘାତ କରି ସମାଜ ଭିତରେ ଏ ଅମୂଳକ, ଅପବିତ୍ର କଥାର ଚେର ଯେତେଦୂର ଯାଏ ମାଡ଼ି ବସିଛି ତାକୁ ଖଣ୍ଡ ଖଣ୍ଡ କରି କାଟିଦେବାକୁ ପଡ଼ିବ । ଏଥିପାଇଁ ସ୍ତ୍ରୀ ଶିକ୍ଷା ଅତ୍ୟନ୍ତ ଆବଶ୍ୟକ । ମା'କୋଳରେ ଯେଉଁ ମଣିଷ ବଢ଼ୁଛି, ମା' ଅଶିକ୍ଷିତା ହେଲେ ସେ ମଣିଷ ମଧ୍ୟ ଅଶିକ୍ଷିତ ।

—ମାଳତୀ ଦେବୀ

---

# ଓଡ଼ିଶାର କୃଷକ ଆନ୍ଦୋଳନରେ ମାଳତୀ ଦେବୀଙ୍କର ଭୂମିକା

□ ପ୍ରଫେସର ନିତ୍ୟାନନ୍ଦ ମିଶ୍ର

୧୯୨୭ ମସିହା । ମାଳତୀ ସେନ୍ କଲିକତାର ନିଉ ପାର୍କ ଷ୍ଟ୍ରିଟର ଦଶ ନମ୍ବର ଘରୁ ବୋହୂ ହୋଇ ଆସିଲେ ନବକୃଷ୍ଣ ଚୌଧୁରୀଙ୍କ ସହିତ ମାନ୍ଦ୍ରାଜ ମେଲ୍ ଗାଡ଼ିରେ କଟକର ବାଖରାବାଦକୁ । ମାଳତୀ ସେନ ସେଠୁ କ୍ରମଶଃ ମାଳତୀ ଦେବୀ ଏବଂ 'ନୁମା' ଭାବେ ଅବତୀର୍ଣ୍ଣ ହେଲେ ଓଡ଼ିଶାର ଜନ-ଜୀବନରେ ।

ଶାଶୁ ପଦ୍ମାବତୀ ଦେବୀ ନୂଆ ବୋହୂର ହାତରୁ ପାଣି ଛୁଇଁବେ ନାହିଁ ବୋଲି ଶପଥ କରିଥିଲେ । ମାଳତୀ ଦେବୀ ଶାଶୁଙ୍କର ଏତେ ସେବା ଯତ୍ନ କଲେ ଯେ ସେଥିରେ ସନ୍ତୁଷ୍ଟ ହୋଇ ପଦ୍ମାବତୀ ତାଙ୍କର ଶେଷ ଜୀବନରେ ବୋହୂଙ୍କର ହାତ ରନ୍ଧା ସାମଗ୍ରୀ ଖାଇ ୧୯୫୫ରେ ଇହଲୀଳା ସମ୍ବରଣ କରିଥିଲେ । ଅସମ୍ଭବକୁ ସମ୍ଭବ କରି ଦେଖେଇବା ଯେପରି ମାଳତୀ ଦେବୀଙ୍କର ଏକ ଆଦତ ହୋଇଗଲା । ମାତ୍ର କୋଡ଼ିଏ ବର୍ଷ ବ୍ୟବଧାନରେ—୧୯୨୭ ଠାରୁ ୧୯୪୭ ଯାଏଁ—ମାଳତୀ ଦେବୀ ସାରା ଭାରତରେ ଜଣେ ସ୍ୱନାମଧନ୍ୟା ନାରୀନେତ୍ରୀ ତଥା ଦରଦୀ ସମାଜସେବୀର ଆସନ ପ୍ରାପ୍ତ ହୋଇଥିଲେ । ତାଙ୍କର ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ କୃଷକ ଆନ୍ଦୋଳନ ଅନ୍ୟତମ ଥିଲା ।

୧୯୩୦ ଦଶକ ସାରା-ଭାରତରେ ଓ ଜମିଦାରମାନଙ୍କର ଶୋଷଣ ଓ ଅତ୍ୟାଚାର ବିରୋଧରେ ସଂଗଠିତ କୃଷକ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ସାମନ୍ତବାଦକୁ ବିରୋଧ କରି ବ୍ୟକ୍ତିର ସ୍ୱାଭିମାନ ଓ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବା କୃଷକ ଆନ୍ଦୋଳନର ଲକ୍ଷ୍ୟ ଥିଲା । ବ୍ରିଟିଶ ସରକାର ଜମିଦାର-ମାନଙ୍କୁ ସମର୍ଥନ କରି କୃଷୀ-ଜାଗରଣକୁ ଦମନ କରିବା ପାଇଁ ଚେଷ୍ଟା ଚଳାଇଥିଲା । ଫଳରେ ଭାରତର ସ୍ୱାଧୀନତା ଆନ୍ଦୋଳନର ଏକ ଅଭିନ୍ନ ଅଙ୍ଗ ଭାବେ କୃଷକ ଆନ୍ଦୋଳନର ଉଦୟ ହେଲା ।

କଂଗ୍ରେସ ଦଳ ଭିତରେ ଥିବା ସୋସାଲିଷ୍ଟମାନେ କୃଷୀ ଓ କୃଷକ ଆନ୍ଦୋଳନ ପ୍ରତି ସମ୍ବେଦନଶୀଳ ଥିଲେ ଓ ତାହାକୁ ସମର୍ଥନ କରୁଥିଲେ ଦୃଢ଼ ଭାବରେ । ୧୯୩୪ ମସିହା ଅକ୍ଟୋବର ମାସ ୨୧/୨୨ ତାରିଖରେ ବମ୍ବେର ଓ୍ୱାର୍ଲିଠାରେ ସର୍ବଭାରତୀୟ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ସମ୍ମିଳନୀ ବସିଥିଲା । ୧୯୩୪ ଠାରୁ ୧୯୩୭ ଯାଏ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ହିଁ ଓଡ଼ିଶା କଂଗ୍ରେସ ଥିଲା । ଏହାର କର୍ଣ୍ଣଧାର ଥିଲେ ନବକୃଷ୍ଣ ଚୌଧୁରୀ । ମାଳତୀ ଦେବୀ ଏସବୁ କାର୍ଯ୍ୟରେ ନବବାବୁଙ୍କର ସାଥୀ ଏବଂ ସାରଥି ଥିଲେ । ଭାରତ ଇତିହାସରେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ମିଶି ଏଭଳି ଭାବରେ ଦେଶର ସେବା କରିବା ଅତ୍ୟନ୍ତ ବିରଳ ।

୧୯୩୭ରେ ସ୍ୱତନ୍ତ୍ର ଓଡ଼ିଶା ପାଇଁ ଯେଉଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ସେଥିରେ କଂଗ୍ରେସ ଦଳ ୬୦ଟି ଆସନ ମଧ୍ୟରୁ ୩୭ଟି ଆସନ ପାଇ ସମୟକ୍ରମେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଢ଼ିଲା । ନବବାବୁ ଏହି ନିର୍ବାଚନରେ ବିଧାନସଭାର ସଭ୍ୟ ହୋଇଥିଲେ । ଏମନ୍ତ ଅନୁକୂଳ ପରିବେଶ ମଧ୍ୟରେ ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳରେ ବିଶାଳ କୃଷକସଭାମାନ ଅନୁଷ୍ଠିତ ହୋଇଥିଲା ।

ଓଡ଼ିଶାର ପ୍ରଥମ କୃଷକ ସମ୍ମିଳନୀ ୧୯୩୫ ମସିହା ଜୁନ ମାସ ୩୦ ତାରିଖରେ କଟକର ଟାଉନହଲଠାରେ ଅନୁଷ୍ଠିତ ହୋଇଥିଲା । ବଢ଼ି ମରୁଡ଼ି ସମୟରେ ଖଜଣା ଛାଡ଼ ତଥା କୃଷୀର ନାନାଦି ସ୍ୱାର୍ଥ ସଂରକ୍ଷଣ ପାଇଁ ଏହା ଆହୂତ ହୋଇଥିଲା । ସେହି ବର୍ଷ ଅଗଷ୍ଟ ମାସ ୧୦ ତାରିଖରେ କୃଷକସଂଘ ଗଠିତ ହେଲା । ଏହାର ସଭାପତି-ଭାବେ ହରେକୃଷ୍ଣ ମହତାବ ଏବଂ ଯୁଗ୍ମ ସଂପାଦକ ଭାବେ ମାଳତୀ ଦେବୀ ଏବଂ ସୁରେନ୍ଦ୍ର ଦ୍ୱିବେଦୀ ଦାୟିତ୍ୱ ନେଲେ । ୧୯୩୫ ମସିହା ସେପ୍‌ଟେମ୍ବର ପହିଲା ତାରିଖ ଦିନ ନିଖିଳ ଭାରତ କୃଷକ-ଦିବସ ପାଳିତ ହୋଇଥିଲା । ମାଳତୀ ଦେବୀ ଏହି ସମୟରେ କୁଜଙ୍ଗ ଅଞ୍ଚଳର ୨୧ ମୌଜା ଅଞ୍ଚଳରେ ଗ୍ରାମେ ଗ୍ରାମେ କୃଷକସଭାମାନ ଗଢ଼ିଥିଲେ ।

୧୯୩୮ ମସିହା ଜାନୁଆରୀ ୧୩ ତାରିଖ ଦିନ ଓଡ଼ିଶା

କୃଷକସଙ୍ଘ ଗଠିତ ହେଲା, ଏହି ଦଳ 'କୃଷକ' ନାମକ ଏକ ସାପ୍ତାହିକ ପତ୍ରିକାର ପ୍ରକାଶନ କଟକର ସାରସ୍ୱତ ପ୍ରେସରୁ ଆରମ୍ଭ ହେଲା । ପତ୍ରିକାର ସ୍ଥାୟୀ ପ୍ରକାଶନ ପାଇଁ ମାଳତୀ ଦେବୀଙ୍କ ଉଦ୍ୟମରେ ଅର୍ଥ ସଂଗ୍ରହ ହୋଇଥିଲା । ସେ ମଧ୍ୟ ଏହି ପତ୍ରିକାର ସମ୍ପାଦନା ମଣ୍ଡଳୀରେ ରହି କାର୍ଯ୍ୟ କରୁଥିଲେ ଓ ପରେ ଭଗବତୀ ପାଣିଗ୍ରାହୀଙ୍କ ମୃତ୍ୟୁ ପରେ ସେ ଏହାର ମୁଖ୍ୟ ସମ୍ପାଦକ ହୋଇଥିଲେ । କୃଷକ ପତ୍ରିକା କୃଷକର ନ୍ୟାଯ୍ୟ ଦାବି, ଶ୍ରମିକମାନଙ୍କ ପ୍ରତି ହେଉଥିବା ଶୋଷଣ ଏବଂ ଅତ୍ୟାଚାରର ଖବରମାନ ପ୍ରକାଶ କରି ସେତେବେଳେ ବହୁ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଗଡ଼ଜାତ ଅଞ୍ଚଳର ପ୍ରଜାମଣ୍ଡଳର ଆନ୍ଦୋଳନ ପ୍ରତି ଏହାର ବିପୁଳ ଅବଦାନ କଥା କହିଲେ ନ ସରେ ।

କୃଷକ ଆନ୍ଦୋଳନ କ୍ଷେତ୍ରରେ ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ସୁରେନ୍ଦ୍ର ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ, ଫନୀ ପାଲ ଏବଂ ଡାକ୍ତର ରବି ଘୋଷ ଆଦି ମାଳତୀ ଦେବୀଙ୍କର ଘନିଷ୍ଠ ସହକର୍ମୀ ଥିଲେ ।

ଆପଣାର ସଂସାରକୁ ପଛରେ ପକାଇ, କେତେବେଳେ ପିଲାମାନଙ୍କୁ କାଖରେ, କୋଳରେ ଧରି, କାନ୍ଧରେ ବୋହି ମାଳତୀ ଦେବୀ ଗ୍ରାମ ଗ୍ରାମାନ୍ତରରେ ପାଦରେ ଚାଲି ଚାଲି ଓଜସ୍ୱିନୀ ଭାଷାରେ ଓ ସୁଲଳିତ କଣ୍ଠରେ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ତେର ଗାଁର ବୈପ୍ଳବିକ କୃଷକ ଆନ୍ଦୋଳନରେ ବଙ୍ଗଳା ଗୀତଟିଏ ସୁଲଳିତ କଣ୍ଠରେ ଗାଇଲାବେଳେ ଚାଷୀମାନଙ୍କ ଆଖିରୁ ଅଶ୍ରୁ ବହି ଆସୁଥିଲା । ଏହି ଗୀତରୁ କିଛି ଅଂଶ ହେଲା—

"ହେଇ ସମାଲେ ହେଇ ସମାଲେ
ହେଇ ସମାଲେ ଧାନ ହୋ ।
କାସ୍ତେଟା ଦାଓ ଶାନ୍ ହୋ
ଆର ଦବୋନା, ଆର ଦବୋନା
ରକ୍ତେ ବୋନା ଧାନ ମୋଦେର ପ୍ରାଣ୍ ହୋ ।
ଚନ୍ଦ ତୋମାସ୍ୱେ ଚନ୍ଦ ଗୋ
ଜାନ ତୋମାସ୍ୱେ ଜାନ ।
"ସାଦା ହାତୀଦେର କାଲେ ମାତୁଡ଼୍ ରୁମିନା,
ଆର ଦବୋନା, ଆର ଦବୋନା,
ରକ୍ତେ ବୋନା ଧାନ ମୋ ଦେର ପ୍ରାନ୍ ଗୋ ।"

ଓଡ଼ିଆ ଶୋଭାଯାତ୍ରା ସଙ୍ଗୀତ ମଧ୍ୟ ଖୁବ୍ ସୁନ୍ଦର ଭାବରେ ମାଳତୀ ଦେବୀ ବୋଲିପାରୁଥିଲେ । ଯଥା :

"ଚାଲରେ ଚାଲରେ ଚାଲ୍
ମୂଳକ ଯାକର ମାଲିକ ଚାଷୀ ମଜୁରିଆ କୁଲି
ହେ ଉପବାସୀ,
କୋଲଧର ତୋର ପତାକା-ଆସି
ତୋହର ରକତେ ଲାଲ୍ ।
ଚାଲ୍‌ରେ ଚାଲରେ ଚାଲ୍ ।
ଆଜ ଆସିଛି ଆହ୍ୱାନ ସମରେ ଚାଲରେ କୃଷକ ଚାଲ ।

କୃଷକ ଆନ୍ଦୋଳନ ଫଳରେ ଓଡ଼ିଶା ସରକାର ସେ ସମୟରେ କେତୋଟି ପ୍ରଗତିଶୀଳ ଆଇନ ବିଧାନ ସଭାରେ ଆଗତ କରି ପ୍ରଣୟନ କରିଥିଲେ । ଏହା ଫଳରେ ସ୍ୱତ୍ୱ ସଂରକ୍ଷଣ, ଭାଗଚାଷୀର ସ୍ୱାର୍ଥରକ୍ଷା ହେବା ସଙ୍ଗେ ସଙ୍ଗେ ଜମିଦାରୀ ଶୋଷଣର ଦ୍ୱାର ବନ୍ଦ ହୋଇ ଯାଇଥିଲା ।

ଏବେବି କୃଷକର ସ୍ଥିତି ଆମ ରାଜ୍ୟରେ ସନ୍ତୋଷଜନକ ଅବସ୍ଥାକୁ ଆସିନାହିଁ । ବନ୍ୟା, ମରୁଡ଼ିରେ ଚାଷୀ କ୍ଷତିଗ୍ରସ୍ତ ହେଉଛି । ତା ବିଲକୁ ପାଣି ନାହିଁ, ଅଥଚ ସେ ଜଳକର ଦେବାକୁ ବାଧ୍ୟ ହେଉଛି । କୃଷିଋଣ ଭାରରେ ଚାଷୀର କମର ଭାଙ୍ଗିଯାଉଛି । ବିହନ, ସାର ଠିକ ସମୟରେ ଓ ଉଚିତ ଦରରେ ଚାଷୀ ପାଇ ପାରୁନାହିଁ । ତାର ଫସଲର ବିକିବଟା ପାଇଁ ମଧ୍ୟ ସୁଗମ ବ୍ୟବସ୍ଥା ନାହିଁ । ତାର ପିଲା ପାଠ ପଢ଼ି ପାରୁନାହିଁ । ପାଠ ପଢ଼ିଲେ ବି ଚାକିରି ଖଣ୍ଡେ ପାଉନାହିଁ । କୃଷକର ସମସ୍ୟାର ଅନ୍ତ ନାହିଁ । ଅଥଚ କୃଷକ ଆନ୍ଦୋଳନର ନା ଗନ୍ଧ ମଧ୍ୟ ନାହିଁ । ତାର କାରଣ କେହି ସମର୍ପିତ ସେବାବ୍ରତୀ ଅଙ୍ଗୀକୃତ ଭାବରେ ଚାଷୀର ସମସ୍ୟା ନେଇ କୃଷକ ଆନ୍ଦୋଳନ ପାଇଁ ଆଗଭର ହେଉନାହାଁନ୍ତି । ଏତିକିବେଳେ ମାଳତୀ ଦେବୀ ଏବଂ ତାଙ୍କର ସାଥୀମାନଙ୍କର ତ୍ୟାଗ ଓ ସଙ୍ଗଠନ ଶକ୍ତିସାମର୍ଥ୍ୟର କଥା ସ୍ମରଣକୁ ଆସିଯାଉଛି ।

ଢେଙ୍କାନାଳ ମହିଳା ମହାବିଦ୍ୟାଳୟ
ଢେଙ୍କାନାଳ

———

ଉପରୁ ସ୍ୱରାଜ୍ୟ ରୂପଧାରୀ କୌଣସି କଥା ଆସି ହାତ ପାଖରେ ପହଞ୍ଚି-ଗଲେ ମଧ୍ୟ ନୂଆ ଭାବରେ ଜୀବନଟାକୁ ନ ଗଢ଼ିଲେ ସ୍ୱରାଜ୍ୟ ରକ୍ଷା କରିବାର ଶକ୍ତି ମଧ୍ୟ ଆମ ପାଖରେ ନଥିବ ।

# ବାଜିରାଉତ ଛାତ୍ରାବାସ ଓ ମାଳତୀ ଦେବୀ

□ ଋଷି ବେହେରା

୧୯୪୭ ଜାନୁଆରୀ ପନ୍ଦର ମୋ ପକ୍ଷରେ ଏକ ସ୍ମରଣୀୟ ଦିବସ । ମୁଁ ସେଦିନ ୰ ଶ୍ରୀଯୁକ୍ତା ମାଳତୀ ଚୌଧୁରୀ ଓ ୰ ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କ ଡାକରା ଓ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣାଙ୍କ ସୁପାରିସକ୍ରମେ, ବରୀ ମୌଳିକ ଅନୁଷ୍ଠାନରୁ ବିଦାୟ ନେଇ ଅନୁଗୁଳ ଗଲି । ଅନୁଗୁଳରେ ଦୁଃସ୍ଥ, ଅତ୍ୟାଚାରିତ ଓ ବହୁ ବର୍ଷ ଜେଲ ଭୋଗୁଥିବା ଗଡ଼ଜାତର ପିଲାଙ୍କୁ ନେଇ ସେଠାରେ ସେମାନଙ୍କର ଅଇଥାନ ସଙ୍ଗେ ସଙ୍ଗେ କିଛି ଶିକ୍ଷାଦୀକ୍ଷାର ସୁବିଧା କରିବାକୁ ୧୯୪୨ ଆନ୍ଦୋଳନ ପରେ ଜେଲରୁ ଫେରି ସେମାନେ କଳ୍ପନା କରିଥିଲେ । ତଦନୁସାରେ ସେମାନେ ଅନୁଗୁଳ ନିକଟସ୍ଥ ସୋମନାଥପୁରରେ ୰ ଗିରିଜାଭୂଷଣ ଦତ୍ତ ମାଳତୀ ଦେବୀଙ୍କୁ ଦେଇଥିବା ଜମି ଉପରେ ଅନୁଷ୍ଠାନଟି ଆରମ୍ଭ କରିବାକୁ ସ୍ଥିର କରିଥିଲେ ।

ମୁଁ ସେଠାରେ ପହଞ୍ଚିବା ପରେ ମାଳତୀ ଦେବୀ କର୍ଣ୍ଣ ଚରଣ ମଲ୍ଲିକଙ୍କୁ ନୟାଗଡ଼, ରଣପୁର, ଢେଙ୍କାନାଳ, ତାଳଚେର ପଠାଇ ୧୭ଟି ପିଲାଙ୍କୁ ଆଣିଲେ ଓ ବାଜିରାଉତ ଛାତ୍ରାବାସ ଆରମ୍ଭ ହେଲା । ପିଲାମାନଙ୍କ ଶିକ୍ଷକ ଓ ପରିଚାଳନା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା । ସେତେବେଳେ ମାଳତୀ ଦେବୀଙ୍କ ଝିଅ ଉତ୍ତରା ଚୌଧୁରୀ, କରଣ, ପାର୍ବତୀ ଗିରି ପ୍ରଭୃତି ମୋତେ ସାହାଯ୍ୟ କରୁଥିଲେ ।

ଗାନ୍ଧିଜୀଙ୍କ ପରିକଳ୍ପିତ ଧନ୍ଦାମୂଳକ (ମୌଳିକ ଶିକ୍ଷା) ଶିକ୍ଷା ଦେବାର ଠିକ୍ କରାଯାଇ ପିଲାମାନଙ୍କୁ ସୂତାକଟା, ଲୁଗାବୁଣା, ବଢ଼େଇ କାମ ଓ କୃଷି, ଗୋଶାଳା ଇତ୍ୟାଦି କାମ ଧୀରେ ଧୀରେ ହାତକୁ ନେବାର କଳ୍ପନା କରି କାମ ଆରମ୍ଭ ହେଲା । କିନ୍ତୁ ବାଜିରାଉତ ଛାତ୍ରାବାସ ଆନୁଷ୍ଠାନିକ ଭାବେ ୧୯୪୭ ମଇ ମାସ ୧୧ ତାରିଖରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ପୌରୋହିତ୍ୟରେ ଉଦ୍‌ଘାଟନ କରାଗଲା ।

ଚାଳଘର ଓ ପିଲାଙ୍କ ରହିବା ପାଇଁ ଗୋଟିଏ ଝାଟି ମାଟି ଘର ହେଲା । ମାଳତୀ ଦେବୀ ସବୁବେଳେ ବ୍ୟସ୍ତ ହେଉଥାନ୍ତି ପିଲାମାନେ କେମିତି ଖୁସିରେ ରହିବେ । ସେଥିପାଇଁ ସେ ସବୁବେଳେ ଉଦ୍ୟମ କରିଛନ୍ତି । ବମ୍ବେରୁ କିଛି ଚାନ୍ଦା ସାରଙ୍ଗବାବୁ ଓ ମାଳତୀ ଦେବୀ କରିଥିଲେ । ସେ ଟଙ୍କା ସାରଙ୍ଗବାବୁଙ୍କ ନାମରେ ବ୍ୟାଙ୍କରେ ଜମାଥିଲା । ଦୀନବନ୍ଧୁ ତ୍ରିପାଠୀ ଦାର୍ଜିଲିଙ୍ଗ୍ ବ୍ୟାଙ୍କରେ ମ୍ୟାନେଜିଙ୍ଗ ଡାଇରେକ୍ଟର ଥିଲେ । ଦାର୍ଜିଲିଙ୍ଗ ବ୍ୟାଙ୍କ ଫେଲ୍ ମାରିଲା ଓ ସେ ଟଙ୍କାତକ ବୁଡ଼ିଲା ।

ତାପରେ ଚିନ୍ତା ହେଲା ପିଲାମାନଙ୍କୁ କିପରି ଖାଇବାକୁ ଦେବେ । ଅନୁଗୁଳ ବଜାରର କେତେକ ଉତ୍ସାହୀ ଲୋକଙ୍କୁ ଡାକି ମାଳତୀ ଦେବୀ ସବୁ କହିଲେ । ଶେଷକୁ ସ୍ଥିର ହେଲା ଯେ ସହରରୁ ମୁଷ୍ଟି ଭିକ୍ଷା କରାଯିବ । ଉଦ୍ୟମ ବହୁଦିନ ଚାଲୁ ରହିଲା । ସେଥିରୁ ଖୁବ୍ ଉତ୍ସାହଜନକ ଫଳ ମିଳିଲା । ପିଲାମାନଙ୍କର ଖାଦ୍ୟପେୟ ଖର୍ଚ୍ଚ ଖୁସିରେ ଉଠିଗଲା ।

ତାପରେ ପୂଜ୍ୟ ୰ ଠକ୍କର ବାପା ଓ ୰ ଶ୍ରୀ ରାଜକୃଷ୍ଣ ବୋଷ ସେତେବେଳେ ଆଦିବାସୀ ଗ୍ରାମମଙ୍ଗଳ ବିଭାଗ ମନ୍ତ୍ରୀଥାନ୍ତି । ସେମାନେ ମାଳତୀ ଦେବୀଙ୍କ ଅନୁରୋଧରେ ଛାତ୍ରାବାସ ପରିଦର୍ଶନ କରି ଆସିଥିଲେ । ଠକ୍କର ବାପା ସେଠାରେ ଗୋଟିଏ କନ୍ୟାଶ୍ରମ ପାଇଁ ଓ ରାଜକୃଷ୍ଣବାବୁ ଗୋଟିଏ ଆଦିବାସୀ ପିଲାଙ୍କ ପାଇଁ ହଷ୍ଟେଲ ମଞ୍ଜୁର କଲେ । ଘର ହେଲା । ନାନାଆଡ଼ୁ ପିଲା ଆସିଲେ । କାମ ଖୁବ୍ ଜୋରସୋରରେ ଚାଲିଲା ।

ମାଳତୀ ଦେବୀଙ୍କ ସହିତ ଆଲୋଚନାରୁ ମୁଁ ଯାହା ଜାଣିପାରିଲି ବାଜିରାଉତ ଛାତ୍ରାବାସଟିକୁ ସେ ଗ୍ରେଟକାଟର ଶାନ୍ତିନିକେତନ ଢାଞ୍ଚାରେ ଗଢ଼ିବାକୁ ଚାହୁଁଥିଲେ । ତଦନୁସାରେ ବିଭିନ୍ନ ପ୍ରକାର କମଳା, ଆମ୍ବ, ନଡ଼ିଆ, କଦଳୀ ଓ ପଣସ ଇତ୍ୟାଦି ଗଛ ଲଗାଇ ଗଛ

ଝରପାଖ ଝୁଦ୍ଧନ ତଳ ପିଲଙ୍କ କ୍ଲାସ ସେଠାରେ ଚାଲିଲା । ଶିକ୍ଷା ସାଙ୍ଗକୁ କଳା ଓ ସଂସ୍କୃତିର ମଧ୍ୟ ବିଶେଷ ଅଂଶ ରହୁଥିଲା । ପିଲାମାନଙ୍କୁ ଶ୍ରେଷ୍ଠ ଶ୍ରେଷ୍ଠ ନାଟକ, ନାଚ, ଗୀତ ଓ ରବୀନ୍ଦ୍ର ସଙ୍ଗୀତ ଆଦି ଶିକ୍ଷା ଦିଆଯାଉଥିଲା । ନାଚ ଶିକ୍ଷକ ହିସାବରେ ନୃତ୍ୟଗୁରୁ କେଳୁଚରଣ ପ୍ରତି ସପ୍ତାହରେ ଆସି ପିଲାମାନଙ୍କୁ ନାଚ ଶିକ୍ଷା ଦେଉଥିଲେ ।

ପିଲାଙ୍କ ସଂଖ୍ୟା ବହୁତ ବଢ଼ି ଯିବାରୁ ଖଲସୀ ପ୍ରାଇମେରୀ ସ୍କୁଲଟିକୁ ତତ୍କାଳୀନ ଶିକ୍ଷାବିଭାଗ ଇନସ୍‌ପେକ୍ଟର ଶ୍ରୀଯୁକ୍ତ ହରିହର ମିଶ୍ରଙ୍କୁ କହି ହାତକୁ ନଆଗଲା । ସେଠାରେ ହିଁ ମୌଳିକ ବିଦ୍ୟାଳୟ ଚାଲିଲା ।

ବାଜିରାଉତ ଛାତ୍ରାବାସ କହିଲେ ମାଳତୀ ଦେବୀ ଓ ମାଳତୀ ଦେବୀ କହିଲେ ଲୋକେ ବାଜିରାଉତ ଛାତ୍ରାବାସ ବୁଝୁଥିଲେ । ମାଳତୀ ଆଶ୍ରମ ସେ ଅଞ୍ଚଳରେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲା । କୃଷି, ଗୋଶାଳା, ସୂତାକଟା, ଲୁଗାବୁଣା ବଢ଼େଇ କାମ, ସାଥେ ସାଥେ ଶିକ୍ଷା ମଧ୍ୟ ପ୍ରଧାନ ଥିଲା ।

ଆଜି ମାଳତୀ ଦେବୀ ନାହାନ୍ତି । ତାଙ୍କର ବାସନା ଅନେକ ଅପୂର୍ଣ୍ଣ ରହିଛି । ଯେଉଁମାନେ ତାଙ୍କର ଉତ୍ତରାଧିକାରୀ ଭାବରେ ସେ ଅନୁଷ୍ଠାନଟିକୁ ଚଳାଉଛନ୍ତି, ତାଙ୍କର କାମନାକୁ ପୂର୍ଣ୍ଣ କରିବେ ବୋଲି ମୋର ବିଶ୍ୱାସ । ଦେଖାଯାଉ ଭବିଷ୍ୟତ ହିଁ ତାହା କହିବ ।

---

ଅଜ୍ଞାନ ଅନ୍ଧାର ନ ତୁଟିବା ଯାଏ ବଣ ଜଙ୍ଗଲ ପାହାଡ଼ ପର୍ବତରେ ଅପାମାନେ ଦୀପଲକ୍ଷ୍ମୀ ପରି ଜ୍ଞାନଦୀପ ଜାଳୁଛନ୍ତି, ଜାଳୁଥିବେ । ଝଡ଼ବତାସ, ନିନ୍ଦା ଅପମାନ, ଦୁଃଖ ତାପ ଯାହା ଆସୁ । କାରଣ—କରମ ସାଧନା ପଥେ ନିସ୍ତଣ ନାହିଁ ।

—ମାଳତୀ ଦେବୀ

---

# ଜନ ଜାଗରଣରେ ମାଳତୀ ଦେବୀଙ୍କ ଭୂମିକା

□ ଗୋଲକ ଚରଣ ପାଣ୍ଡ

ଚିର ବିପ୍ଳବିଣୀ ମାଳତୀ ଚୌଧୁରୀ ଥିଲେ ନିକଟରୁ ଜାଣିଥିବା ଓ ସାନ୍ନିଧ୍ୟରେ ଆସିଥିବା କର୍ମୀକୂଳ ଓ ଆତ୍ମୀୟ ସ୍ୱଜନଙ୍କର ଅତି ଆଦରର ଅତି ଆପଣାର "ନୁମା" । ୧୫ ମାର୍ଚ୍ଚ ୧୯୯୮ରେ ତାଙ୍କର ମହାପ୍ରୟାଣ । ଗୁହ୍ମଁ ଗୁହ୍ମଁ ପ୍ରାୟ ଗୋଟିମାସ ପୂରିଗଲା । ଜନ ମାନସରେ ତାଙ୍କର ମୂର୍ତ୍ତି ଏବେ ବି ଜୀବନ୍ତ, ଅମଳିନ ।

ଜାତି, ଧର୍ମ, ପ୍ରାଦେଶିକତା ଓ ଆଞ୍ଚଳିକତା ଆଦି ସଙ୍କୀର୍ଣ୍ଣତାରୁ ଊର୍ଦ୍ଧ୍ୱରେ ରହି ସେ ଜନ ସେବାରେ ବିଶେଷତଃ ସମାଜର ସବୁଠାରୁ ତଳେଥିବା ଗିରିଜନ, ହରିଜନ ଓ ଅନ୍ୟ ଦରିଦ୍ର ଶୋଷିତ, ଲୁଣ୍ଠିତ, ଲାଞ୍ଛିତ ଶ୍ରେଣୀର ସେବାରେ ନିଜକୁ ହଜାଇ ଦେଇଥିଲେ- ସାରା ଜୀବନ । ଉଚ୍ଚ ସମ୍ଭ୍ରାନ୍ତ ଘରର ଝିଅ ଓ ସମ୍ଭ୍ରାନ୍ତଘରର ବୋହୂ, ମାତ୍ର ବିବାହ ପରେ ପରେ ଓଡ଼ିଶା ମାଟିରେ ପାଦ ଦେବା ଦିନୁ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଦେଶର ସ୍ୱାଧୀନତା ପାଇଁ, ସମାଜର ସବୁଠାରୁ ତଳେ ପଡ଼ିଥିବା ଲୋକଙ୍କୁ ସାହସ ଓ ପ୍ରେରଣା ଦେଇ ଉପରକୁ ଉଠାଇବା ପାଇଁ, ଜଗାଇବା ପାଇଁ, ଦେଶରେ ଚାଲିଥିବା ସବୁପ୍ରକାରର ଶୋଷଣ, ପେଷଣ ଓ ଅନ୍ୟାୟ ଅତ୍ୟାଚାରର ପ୍ରତିକାର ପାଇଁ ସେ ସତତ ପ୍ରଯତ୍ନଶୀଳ ଥିଲେ । ତାଙ୍କର ପ୍ରତ୍ୟେକ କାମରେ ବିପ୍ଳବର, କ୍ରାନ୍ତିର ଝଲକ ଝଲକ ଉଠୁଥିଲା । ଜନ ଜାଗରଣରେ ତାଙ୍କର ଭୂମିକା ଥିଲା ଅତୁଳନୀୟ ।

୧୯୫୩ରେ କୋରାପୁଟ ଜିଲ୍ଲାର ଡୁଙ୍ଗୁରିଗୁଡ଼ା କେନ୍ଦ୍ରରେ ଏକ କର୍ମୀ-ଶିବିର ଅବସରରେ ତାଙ୍କ ସାନ୍ନିଧ୍ୟରେ ଆସିବାର ପ୍ରଥମ ସୁଯୋଗ ପାଇଲି । ୧୯୫୭ ମସିହା ଠାରୁ (ସେତେବେଳେ ଭୂଦାନ-ଗ୍ରାମଦାନ-ଜିଲ୍ଲାଦାନ ପରି- ପ୍ରେକ୍ଷୀରେ ସର୍ବସେବା ସଂଘ ଓ ଉତ୍କଳ ନବଜୀବନ ମଣ୍ଡଳର ମିଳିତ ଦାୟିତ୍ୱରେ କୋରାପୁଟ ଓ ଗଞ୍ଜାମ ମାଳ ଅଞ୍ଚଳରେ ଚାଲିଥିବା ନବନିର୍ମାଣ କାମରେ ପୂଜ୍ୟ ଗୋପବାବୁ, ମା, ରମାଦେବୀ, ଅନ୍ନାସାହେବ ଓ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଆଦିଙ୍କ ସହିତ ନୁମା ମଧ୍ୟ ଯଥେଷ୍ଟ ସମୟ ଦେଉଥାନ୍ତି । ) ଆଦିବାସୀ ଅଞ୍ଚଳରେ ନୂଆ ନୂଆ କେନ୍ଦ୍ର ଖୋଲିବା, କର୍ମୀ ମୁତୟନ କରିବା, କାମର ନିର୍ଦ୍ଦେଶନା ଓ ନିୟନ୍ତ୍ରଣ କରିବା, କେନ୍ଦ୍ରାଞ୍ଚଳରେ ଆଦିବାସୀଙ୍କର ଯେଉଁଠି କିଛି ସମସ୍ୟା ଦେଖାଯାଏ, ସେଠି ଝଡ଼ବେଗରେ ପହଞ୍ଚି ପ୍ରତିକାର କରିବାରେ ସେ କିପରି କର୍ମଚଞ୍ଚଳ ରହୁଥିଲେ ତାହା ଆମକୁ ଚକିତ କରୁଥିଲା । ପୁଣି ୧୯୭୬ରେ ଉତ୍କଳ ନବଜୀବନ ମଣ୍ଡଳରେ ମୁଁ ଯୋଗଦେବା ଦିନଠାରୁ ୧୫ ମାର୍ଚ୍ଚ ୧୯୯୮ ପର୍ଯ୍ୟନ୍ତ ପ୍ରାୟ ଅନେକ ସମୟ ମୋର ତାଙ୍କ ସାନ୍ନିଧ୍ୟରେ କଟିଛି । ଏହି ଲେଖାରେ ବର୍ଣ୍ଣିତ କେତେକ ବିଷୟ ମୋର ପ୍ରତ୍ୟକ୍ଷ ଅନୁଭୂତ ଓ ଆଉ କେତେକ ସହକର୍ମୀମାନଙ୍କଠାରୁ ଶୁଣିଥିବା କଥା ଏବଂ ଆଉ କେତେକ ସର୍ବଜନବିଦିତ ଘଟଣାବଳୀ—କଳ୍ପ କାହାଣୀ ନୁହେଁ ।

୧୯୫୩, ବଲାଙ୍ଗିର ଜିଲ୍ଲାରୁ ଆସି କୋରାପୁଟ ଜିଲ୍ଲାର (ଏବର ରାୟଗଡ଼ା ଜିଲ୍ଲା) ଶିଙ୍ଗାରପଦର କେନ୍ଦ୍ରରେ ମୁଁ ରହୁଥାଏ । ସେତେବେଳକୁ ପୂରାଦମ୍ରେ ଭୂଦାନ- ଗ୍ରାମଦାନର ହାୱା ବହୁଥାଏ । ଆମେମାନେ ଗୋଟିଏ ଗାଁ'ରୁ ଭୂଦାନ ସଂଗ୍ରହ କରିବା ପରେ ଗାଁର ମୁଖିଆଲୋକେ ଆମକୁ ପାଖ ଗାଁ'କୁ ବାଟେଇ ଦେବାକୁ ଯାଇ ଆପେ ଆପେ ତାଙ୍କ ବନ୍ଧୁ ଓ ଜାତି ଭାଇଙ୍କୁ ପ୍ରବର୍ତ୍ତାଉଥିଲେ ଭୂଦାନ-ଗ୍ରାମଦାନ ଦେବାପାଇଁ । ସେହି ଅବସରରେ ଆମେ ଦେଖିବାକୁ ପାଉଥିଲୁ ଅନେକ ଆଦିବାସୀ ଗାଁ'ରେ ବହୁତ ଲୋକ 'ଘ୍ୱଜ' (YAWS) ରୋଗରେ ଆକ୍ରାନ୍ତ ହୋଇ ଭୀଷଣ କଷ୍ଟ ପାଉଥାନ୍ତି । ଶୁଣିଲି ଜିଲ୍ଲାର ଅଧିକାଂଶ ଆଦିବାସୀଗ୍ରାମ 'ଘ୍ୱଜ' ରୋଗରେ ଆକ୍ରାନ୍ତ । ସର୍ବସେବା ସଂଘ ଓ ନବଜୀବନ ମଣ୍ଡଳର ମିଳିତ ଉଦ୍ୟମ-ଅଭିଯାନ ଚାଲିଲା ସାରାଜିଲ୍ଲାରୁ 'ଘ୍ୱଜ' ଉନ୍ମୂଳନ କରିବାକୁ ହେବ । ସେଥିପାଇଁ ସ୍ୱତନ୍ତ୍ରଭାବେ ଡାକ୍ତର ନିର୍ମଳ ଚନ୍ଦ୍ର ଦାସ ଆଦି କେତେଜଣଙ୍କୁ ନିଯୁକ୍ତ କରାଯାଇଥିଲା । ରାୟଗଡ଼ା ସବଡିଭିଜନର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଶ୍ରୀ ରତନ ଦାସ 'ଘ୍ୱଜ' ରୋଗୀକୁ ଚିକିତ୍ସା କରିବାରେ ଅନେକ କାମ କରିଛନ୍ତି । ମୁଁ ମଧ୍ୟ ତାଙ୍କ ସହିତ ଏ କାମରେ

ସାହାଯ୍ୟ କରୁଥିଲି । ମୁଁ ଶୁଣିଥିଲି ଏ 'ଯୁଜ' ଉନ୍ମୂଳନ ଦିଗରେ ସବୁଠାରୁ ଅଧିକ ଉଦ୍ୟମ ଓ ଅବଦାନ ଥିଲା 'ନୂମା'ଙ୍କର । ଓଡ଼ିଶାରେ ସେତେବେଳେ ଏ ରୋଗର ଇଞ୍ଜେକ୍‌ସନ ଆଦି ମିଳୁ ନ ଥିବାରୁ ସେ କଲିକତାରୁ କୌଣସି ବଦାନ୍ୟ କମ୍ପାନୀଠାରୁ ହଜାର ହଜାର ଟଙ୍କାର 'ଆର୍ସେନିକ' ( କଓ ଆର୍ସୋଫେନାମିନ ) ଇଞ୍ଜେକ୍‌ସନ ଆଣି ଯୋଗାଇ ଦେଉଥିଲେ ।

୧୯୬୨-୬୩ ବେଳକୁ ବିନୋବାଜୀଙ୍କର ଓଡ଼ିଶାରେ ଦ୍ୱିତୀୟ ଭୂଦାନ-ପଦଯାତ୍ରା ଅବସରରେ ଢେଙ୍କାନାଳ ଜିଲ୍ଲାର ରହଣିମାନଙ୍କରେ ନୂମାଙ୍କର ସାଙ୍ଗଠନିକ ଶକ୍ତି ବ୍ୟବସ୍ଥା ଓ ସର୍ବୋପରି ଜନତାଙ୍କ ଭିତରେ ଉନ୍ମାଦନା ସୃଷ୍ଟି କରିଥିଲା ଯେଉଁ ଶକ୍ତି ଲୋକଙ୍କୁ ଆକର୍ଷଣ କରିଥିଲା ତାହା ଏବେ ବି ଭୁବନ, ଗୋଡ଼ା, ମଠକରଗୋଳା, କାମାକ୍ଷାନଗର, ପରଜଙ୍ଗ ଓ ତାଳଚେର ଆଦି ଅଞ୍ଚଳର ଲୋକେ ଭୁଲି ନାହାନ୍ତି । ଦେଖାହେଲେ ଆଗ ପ୍ରଶ୍ନ "ମାଳତୀ ମାଆ କିପରି ଅଛନ୍ତି ?" କେବେ ଏଆଡ଼େ ଆସିବେ ? ଇତ୍ୟାଦି ।

୧୯୪୮ ଅକ୍ଟୋବରରେ ଉତ୍କଳ ନବଜୀବନ ମଣ୍ଡଳ ଗଠନ ପରେ ସର୍ବପ୍ରଥମେ ଗଞ୍ଜାମ, କୋରାପୁଟ ଓ ସୁନ୍ଦରଗଡ଼ (ବଣେଇ ଅଞ୍ଚଳ) ଆଦି ଜିଲ୍ଲାରେ ସେବାକେନ୍ଦ୍ର ଗୁଡ଼ିକ ଖୋଲି ହେବାପରେ ଢେଙ୍କାନାଳ ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ 'ସୌରିକ' (କାମାକ୍ଷାନଗର ଓ କଙ୍କଡ଼ାହାଡ଼ ବ୍ଲକର କିଛି କିଛି ଅଂଶକୁ ନେଇ ଗଠିତ "ସୌରିକ ବଣ" ପ୍ରତିଷ୍ଠିତ) ଅଞ୍ଚଳରେ ନୂମା ଓ ବାପି (୰-ନବକୃଷ୍ଣ ଚୌଧୁରୀ) ଯାଇ ସେବା କେନ୍ଦ୍ରମାନ ସ୍ଥାପନ କରିଥିଲେ । ସେତେବେଳେ ରାସ୍ତାଘାଟର ସୁବିଧା ନ ଥିବାରୁ ଅନେକ ସମୟରେ ପାଦରେ ଚାଲି ଓ ବେଳେ ବେଳେ ହାତୀରେ ଚଢ଼ି କେନ୍ଦ୍ରମାନଙ୍କୁ ଯାଉଥିଲେ । ତା ପୂର୍ବରୁ ଢେଙ୍କାନାଳ ଗଡ଼ଜାତର ଅତ୍ୟାଚାରଶାସନ ବିରୋଧରେ ଗଠିତ "ପ୍ରଜାମଣ୍ଡଳ"ର ପ୍ରଚାର, ସଙ୍ଗଠନ ଓ ବିଦ୍ରୋହ କାମରେ ଅନେକ ଗାଁରେ ବୁଲିବୁଲି ସେ ବୁଲିଥିଲେ । ସେ ଦୃଶ୍ୟ ଓ ଘଟଣାକୁ ସେତେବେଳେ ଜାଣିଥିବା ଓ ଦେଖିଥିବା ଲୋକଙ୍କ ଭିତରୁ ପ୍ରତ୍ୟେକ ଗାଁରେ ଅଳ୍ପ କେତେଜଣ ବଞ୍ଚିଛନ୍ତି । ଆମେ କାମ ପ୍ରସଙ୍ଗରେ ଉପରୋକ୍ତ ଗ୍ରାମମାନଙ୍କୁ ଗଲେ ଆଗ 'ନୂମା' କଥା ପଚାରି ବସନ୍ତି । ନବଜୀବନ ମଣ୍ଡଳ ତରଫରୁ କଙ୍କଡ଼ାହାଡ଼ ବ୍ଲକର ୨୦ ଖଣ୍ଡ ଗ୍ରାମକୁ ନେଇ ଚାଲିଥିବା "ଗ୍ରାମ ଉନ୍ନୟନ ପ୍ରକଳ୍ପ" କାମର ମୂଲ୍ୟାୟନ କରିବାକୁ ପ୍ରାୟ ଦେଢ଼ବର୍ଷ ତଳେ ମଣ୍ଡଳର କାର୍ଯ୍ୟକାରୀ ସଭାପତି ଶ୍ରୀମତୀ ଧୋବେନ୍ଦ୍ରୀ ମହାପାତ୍ର, ସଦସ୍ୟ ଆଡ଼ଭୋକେଟ ଶ୍ରୀ ପ୍ରଫୁଲ୍ଲ କୁମାର ମଲ୍ଲିକ ଓ ମୁଁ (ମୂଲ୍ୟାୟନ କମିଟିର ସଦସ୍ୟ ହିସାବରେ) ଆମର ସେ ଅଞ୍ଚଳର ମୁଖ୍ୟ କର୍ମୀମାନଙ୍କ ସହିତ କେତୋଟି ଗ୍ରାମକୁ ଯାଇଥିଲୁ । ସବୁଠାରେ ଲୋକେ ନୂମାଙ୍କ ବିଷୟରେ ପଚାରୁଥିଲେ । 'କଙ୍କଣା' ଓ 'ଶୀତଳବସା' ଗ୍ରାମ ଦୁଇଟିର ସ୍ତ୍ରୀ ଲୋକମାନଙ୍କୁ "ଆପଣଙ୍କ ଗ୍ରାମରେ ଆମ କର୍ମୀମାନଙ୍କ ଦ୍ୱାରା ଯେଉଁସବୁ କାମ ଚାଲିଛି ତାହା କେଉଁ ଅନୁଷ୍ଠାନ ଦ୍ୱାରା ଚାଲିଛି'' ବୋଲି ପଚାରିବାରୁ-"ମା ମାଳତୀ ଚୌଧୁରୀଙ୍କ ଦ୍ୱାରା ଚାଲିଛି" ବୋଲି ଉତ୍ତର ମିଳିଲା । ଅଥଚ ସେମାନେ ମାଳତୀ ଦେବୀଙ୍କୁ ଦେଖି ନ ଥିଲେ । 'ନବଜୀବନ ମଣ୍ଡଳ'ର ନାଁ ଓ ତାର କାମ ସେଠି ଚାଲିଥିବା କଥା ସେମାନେ ଜାଣିଥିଲେ ମଧ୍ୟ ଜନମାନସରେ ସଂସ୍ଥା ଅପେକ୍ଷା ସଂସ୍ଥାର ପ୍ରତିଷ୍ଠାତ୍ରୀଙ୍କ ରୂପ ସର୍ବୋପରି ଥିଲା । ନୂମାଙ୍କର 'ଜନ ଜାଗରଣ'ର ଚେର ଯେ କେତେ ଅତଳକୁ ଯାଇଛି, ତାର ଏହା ଏକ ଶ୍ରେଷ୍ଠ ନମୂନା ।

୧୯୩୮ରେ ଜେନାପୁରଠାରେ ହୋଇଥିବା 'କୃଷକ ସଭା' ଦେଖିନି, କେବଳ ଶୁଣିଛି—ଅନ୍ୟମାନଙ୍କଠାରୁ ଓ ନୂମାଙ୍କଠାରୁ ମଧ୍ୟ । ଶୁଣିଛି ଯେ, ଗ୍ରାମାଞ୍ଚଳର ସ୍ତ୍ରୀ-ପୁରୁଷଙ୍କର ଏଭଳି ବିରାଟ ସମାବେଶ ଓଡ଼ିଶାରେ ପୂର୍ବରୁ କେବେ ହୋଇ ନ ଥିଲା ବୋଲି । ନୂମା ଓ ବାପି ସେ ସମୟରେ କୃଷକ ସଂଗଠନ ସହିତ ସଂପୃକ୍ତ ଥିଲେ । ଉକ୍ତ ସଭାକୁ ଢେଙ୍କାନାଳ ଜିଲ୍ଲାରୁ ଅଧିକ ସଂଖ୍ୟାରେ ଲୋକେ ଯୋଗ ଦେଇଥିଲେ । ନୂମା-ବାପିଙ୍କର ପ୍ରଚାର ଓ ପ୍ରଭାବ ଯୋଗୁଁ ଏହା ଅନେକଟା ସମ୍ଭବପର ହୋଇ ପାରିଥିଲା । ଜନଜାଗରଣ ଓ ଜନଚେତନା ବିନା କଅଣ ଅତ୍ୟାଚାରୀ ଗଡ଼ଜାତ ଶାସନରେ ଲୋକେ ଏ ପ୍ରକାର ସାହସ ଦେଖାଇ ପାରିଥାନ୍ତେ !

ପରବର୍ତ୍ତୀ ସମୟରେ ଗଞ୍ଜାମ ମାଳରେ ଓ ଏଇ ଅନୁଗୁଳ ବ୍ଲକର କେତେକ ଗାଁରେ ଦେଖିଛି—ମଣ୍ଡଳର କର୍ମୀମାନେ ଡାକିଥିବା ମିଟିଂକୁ ମାଳତୀ ଦେବୀ ଆସୁଛନ୍ତି ବୋଲି ଶୁଣିଲେ ପାଖ ଆଖ ଗାଁରୁ ହଜାର ହଜାର ସ୍ତ୍ରୀ-ପୁରୁଷ ମିଟିଂରେ ଯୋଗ ଦେଉଥିଲେ । ଯେଉଁ ବାଟ ଦେଇ ସେ ଯିବେ ସେ ସବୁ ଗାଁରେ ରାସ୍ତାର ଦୁଇ-କଡ଼େ ଅଗଣିତ ମହିଳା-ପୁରୁଷ ଠିଆ ହୋଇ ଦର୍ଶନ କରୁଥିଲେ । ହୁଳହୁଳି ଦେଇ ସ୍ୱାଗତ କରୁଥିଲେ । ଲୋକଙ୍କ ଉପରେ ତାଙ୍କର ପ୍ରଭାବ-ଯାଦୁବିଦ୍ୟା ଭଳି ପ୍ରତୀତ ହେଉ-

ଥିଲା । ଲୋକେ ଜାଣିଥିଲେ ଯେ ମାଳତୀ ଦେବୀ ଯାହା କହନ୍ତି ତାହା ଅଧାରୁ ଛାଡ଼ି ଦିଅନ୍ତିନି—କରି ଦେଖାନ୍ତି ।

ଓଡ଼ିଶାରେ ଚିର ଅବହେଳିତ, ଶୋଷିତ, ଲାଞ୍ଛିତ ଆଦିବାସୀଙ୍କ ପାଇଁ ଯେଉଁମାନେ ସବୁ ପ୍ରକାର କଷ୍ଟ ବରଣ କରି ସେବା ଆରମ୍ଭ କରିଥିଲେ ସେମାନଙ୍କ ମଧ୍ୟରେ ମାଳତୀ ଦେବୀ ଓ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ (ଆଜ୍ଞା) ପ୍ରଥମ ପଂକ୍ତିର । ସ୍ୱାଧୀନତା ପ୍ରାପ୍ତି ପରେ ଆଦିବାସୀମାନଙ୍କର ସର୍ବାଙ୍ଗୀନ ଉନ୍ନତି କଳ୍ପେ ୰-ଠକ୍କରବାପାଙ୍କ ପ୍ରେରଣାରେ ଓ ୰-ଗୋବିନ୍ଦ ବଲ୍ଲଭ ପନ୍ଥ ଏବଂ ୰ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଆଦିଙ୍କ ପ୍ରଚେଷ୍ଟାରେ ସର୍ବଭାରତୀୟ ସ୍ତରରେ ଗଠିତ ଭାରତୀୟ ଆଦିମ ଜାତି ସେବକ ସଂଘ 'ନୁମା'ଙ୍କୁ ଆଜୀବନ ସଦସ୍ୟା କରିନେଲେ । ଏବେ ଆଜୀବନ ସଦସ୍ୟ ହେବା ପାଇଁ ଦରଖାସ୍ତ ଓ କେତେ ଲୋକଙ୍କର ସୁପାରିସ ଦେବାକୁ ପଡ଼ୁଛି । ସେ ଆଜୀବନ ସଦସ୍ୟା ହୋଇ ଶକ୍ତ ଥିବା ପର୍ଯ୍ୟନ୍ତ ଆଦିବାସୀ ଅଞ୍ଚଳରେ ବୁଲି ବିଭିନ୍ନ ସମସ୍ୟାର ସମାଧାନ ଦିଗରେ ଚେଷ୍ଟା କରୁଥିଲେ । ଆଦିବାସୀଙ୍କ ଭିତରେ ଜନ-ଜାଗରଣ କରିବାରେ ଅଦ୍ୱିତୀୟ ଥିଲେ ନୁମା ।

ସ୍ୱାଧୀନତା ପୂର୍ବରୁ ଯେପରି ସ୍ୱାଧୀନତା ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଆଦିରେ ନେତୃତ୍ୱ ନେଇ ସେ ଜନତାକୁ ଜାଗ୍ରତ ଓ ଉଦ୍‌ବୁଦ୍ଧ କରାଇ ପାରିଥିଲେ ଓ ମା ରମାଦେବୀ ଆଦିଙ୍କ ସହିତ ମିଶି ସେ ସମୟରେ ଗାଁ ଗହଳର କବାଟ କଣରୁ ଝିଅ ବୋହୂମାନଙ୍କୁ ପଦାକୁ ଆଣି ପ୍ରେରଣା, ପରିଣ ଓ ତାଲିମ ଦେଇ ସ୍ୱରାଜ୍ୟର ଲଢ଼ୁଆ ସୈନିକ ରୂପେ ଠିଆ କରିପାରି ଥିଲେ, ତାର ପଟାନ୍ତର ନାହିଁ । ପରବର୍ତ୍ତୀ ସମୟରେ ସେ ମହିଳାମାନଙ୍କୁ ଉପଯୁକ୍ତ ତାଲିମ ଦେଇ ବଣ ପାହାଡ଼ଘେରା ଦୁର୍ଗମ ଆଦିବାସୀ କେନ୍ଦ୍ରକୁ ସେବା କରିବାକୁ ପଠାଉଥିଲେ । ତାଙ୍କର ପ୍ରେରଣା ଓ ତାଙ୍କର ଆଦର୍ଶକୁ ପାଥେୟ କରି ଅନେକ ମହିଳା କର୍ମୀ ୩୦।୩୫ ବର୍ଷ ଲେଖାଏଁ କଟାଇଲେ ସେହିସବୁ ଅଗମ୍ୟ-ଅବହେଳିତ ଅଞ୍ଚଳରେ । ସେଇଠି ନୁମାଙ୍କ ଦିଗ୍‌ଦର୍ଶନରେ ଚାଲିଲା ଅନେକ ପ୍ରକାରର ରଚନାତ୍ମକ କାର୍ଯ୍ୟକ୍ରମ । କିନ୍ତୁ ସବୁଠାରୁ ବଡ଼ କାମ ଥିଲା ଆଦିବାସୀଙ୍କ ଭିତରେ—ସାହସ ବାନ୍ଧିବା, ମଣିଷ ପରି ବଞ୍ଚି ଶିଖିବା ଓ ଚେତନା ସୃଷ୍ଟି କରିବା ।

ନୁମାର ମହତ୍ୱ (ବ୍ୟକ୍ତିତ୍ୱ) କି ନୁମା କାମର ମହତ୍ୱ ମୋତେ ବୁଝିବାରେ କଷ୍ଟ ହେଉଥିଲା । ଅନେକ ସମୟରେ—ମାତ୍ର ସେଇ ମହତ୍ୱ ଯେ ସୁଦୂର କାନାଡ଼ା, ଜର୍ମାନୀ, ଇଂଲଣ୍ଡ ଓ ସୁଇଡ଼େନ ଆଦିରୁ କେତେ ଯୁବକଯୁବତୀଙ୍କୁ ଓଡ଼ିଶା ଭୂଇଁକୁ ଟାଣି ଆଣୁଥିଲା—ଯିଏ ଦେଖିଛି ସେ ଚକିତ ହୋଇଛି ଓ ଆନନ୍ଦିତ ମଧ୍ୟ । ମୁଁ ବି ସେ ଦର୍ଶକଙ୍କ ଭିତରୁ ଜଣେ । ସବୁବେଳେ ଏକ ଆନନ୍ଦଭରା ଚଳଚଞ୍ଚଳ ବାତାବରଣ । ବିଦେଶାଗତ ଏଠି ଖାଲି ବସନ୍ତିନି ନୁମାଙ୍କ ଅନୁଷ୍ଠାନରେ ଶିକ୍ଷା ଦିଅନ୍ତି, ନିଜେ ଶିଖନ୍ତି, ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନିଅନ୍ତି, ଦେଖନ୍ତି, ଓ ଉପଭୋଗ କରନ୍ତି । ପୁଣି ନିଜ ନିଜ ଦେଶକୁ ଫେରିଯାଇ ଭୁଲି ଯାଆନ୍ତିନି । ସବୁ ଭୁଲିଗଲେ ବି ନୁମାଙ୍କୁ ନୁହେଁ । ବରାବର ଚିଠିର ଆଦାନ-ପ୍ରଦାନ, ନବ ବର୍ଷର ଗ୍ରୀଟିଙ୍ଗ୍‌ସ କାର୍ଡ଼ରେ ସମ୍ଭାଷଣ ଆଦି ଚାଲେ । ସମସ୍ତଙ୍କ ନାଁ ତ ମନେ ପଡ଼ୁନି, ତେବେ ''ଶ୍ୟାଲି ବାମ୍ବ୍ରିଜ', "ରବର୍ଟ ଇବ୍‌ନୋଅର" ଓ ''ଜିମ୍ ଭାଇ'' ଆଦି । ମଝିରେ କେତେଥର ଆସି ବୁଲି ଯାଇଛନ୍ତି ବି । ଭାରତ ବାହାରେ ନୁମାଙ୍କ ବ୍ୟକ୍ତିତ୍ୱ ଏବଂ ଜନ-ଜାଗରଣରେ ନୁମାଙ୍କର ଯାଦୁକରୀ ଶକ୍ତି ସଂପର୍କରେ ଏମାନେ ବେଶ୍ ପ୍ରଚାର ମଧ୍ୟ କରିଛନ୍ତି ।

ଶିକ୍ଷାକୁ ଆଧାର କରି ସମାଜସେବା, ମହିଳା ତାଲିମ୍ ଓ ନଈତାଲିମ୍ ବା ମୌଳିକ ଶିକ୍ଷା କ୍ଷେତ୍ରରେ ନୁମାଙ୍କର ଯେଉଁ ଆନ୍ତରିକ ଅବଦାନ ଥିଲା ସେଥିରେ ସଂପୃକ୍ତ ଛାତ୍ରାଧ୍ୟାପିକା, କର୍ମୀ ଓ ଅନୁଷ୍ଠାନଗୁଡ଼ିକ ଯେତିକି ଲାଭବାନ ହୋଇଛନ୍ତି, ରାଜ୍ୟ ଓ ରାଜ୍ୟ ବାହାରେ, ଜନତା ଭିତରେ ବେଶ୍ କିଛି ଚେତନା ସୃଷ୍ଟି ହୋଇ ପାରିଛି । ତାଙ୍କର ଏ ଦିଗରେ ଅନୁରାଗ ଓ ଅବଦାନ ଯୋଗୁଁ ହିନ୍ଦୁସ୍ତାନୀ ତାଲିମ୍-ସଂଘର ଉଚ୍ଚ କର୍ମକର୍ତ୍ତା ୰ ଆର୍ଯ୍ୟନାୟକମ୍‌ଜୀ ଓ ୰ ଆଶାଦେବୀ ଆଦିଙ୍କ ସହିତ ତାଙ୍କର ଖୁବ୍ ସଂପ୍ରୀତି ଓ ସଦ୍‌ଭାବ ରହି ଆସିଥିଲା । ମୌଳିକ ଶିକ୍ଷା କ୍ଷେତ୍ରରେ ସଦା ଅଗ୍ରଣୀ ଗୁଜରାଟର କେତେକ ଅନୁଷ୍ଠାନ ଏଥିପାଇଁ ନୁମାଙ୍କୁ ଖୁବ୍, ଆଦର ଦୃଷ୍ଟିରେ ଦେଖୁଥିଲେ । ଏଠି ଅନୁଗୁଳରେ ଖଲ୍ଲଶୀ ଓ ଚମ୍ପତିମୁଣ୍ଡା ସମେତ ଅନେକ ମୌଳିକ ବିଦ୍ୟାଳୟ ଓ ଅନୁଗୁଳ-ପ୍ରଶିକ୍ଷଣ ମହାବିଦ୍ୟାଳୟ ପାଇଁ ତାଙ୍କର ଅବଦାନ ସେମାନେ ଭୁଲି ପାରିବେ ନାହିଁ ।

- ନୁମାଙ୍କର ବିପ୍ଳବୀ ଜୀବନ—

ସାଂପ୍ରଦାୟିକ ହିଂସା ଜର୍ଜରିତ ପୂର୍ବ ବଙ୍ଗର ନୂଆଖାଲି ଅଞ୍ଚଳକୁ ମହାତ୍ମାଜୀଙ୍କୁ ସାହାଯ୍ୟ କରିବାକୁ ଯାଇଥିଲେ ନୁମା । ସେଠା କାମ ଭିତରେ ମହାତ୍ମାଜୀ ବୋଧେ ନୁମା'ଙ୍କ

ଜୀବନରେ ଏହା ସବୁ ପ୍ରକାରର ଶକ୍ତିକୁ ପରାସ୍ତ କରି ତାଙ୍କୁ ଆଖ୍ୟା ଦେଇଥିଲେ 'ତୋଫାନ' । ଶାନ୍ତ ବା ଉପଦ୍ରବର ଶକ୍ତି ତ ଥିଲେ ତଥାପି 'ନୂମା' ନୂଆଁଣାରେ ନାମ କରିବାକୁ ସାହସ କରିପାରନ୍ତି ? ଓଡ଼ିଶାରେ ୨ଟି ସର୍ବଭାରତୀୟ ସର୍ବୋଦୟ ସମ୍ମିଳନୀର ବ୍ୟବସ୍ଥା, ଓଡ଼ିଶାରେ ଭୂଦାନ-ଗ୍ରାମଦାନ ଆନ୍ଦୋଳନର ସଞ୍ଚାଳନରେ ଅଂଶଗ୍ରହଣ ଓ ଅନ୍ୟାନ୍ୟ ସମାଜସେବା କାର୍ଯ୍ୟରେ ଯେପରି ତାଙ୍କ କାର୍ଯ୍ୟ-କଳାପରେ ଶାନ୍ତିର ଝଲକ ବାରି ହେଉଥିଲା; ସେହିପରି ୧୯୫୦ରେ ଉତ୍କଳର 'ନେପାଳୀ ବାବା'ର ପ୍ରତାରଣାର ଶିକାର ହୋଇ ହଜାରେ ଲୋକ ମାଛି ପରି ମରୁଥିବା— ପରିସ୍ଥିତିର ଅବସାନ ପାଇଁ ନେଇଥିବା ଦୃଢ଼ ପଦକ୍ଷେପ, ସ୍ୱାଧୀନତା ପ୍ରାପ୍ତି ପରେ ପରେ ଆଇଗିରିଠାରେ ହୋଇଥିବା ଆନ୍ଦୋଳନରେ ନେଇଥିବା ଦୃଢ଼ପଣ ପଦକ୍ଷେପ ଆଦି ତାଙ୍କ ଅଦ୍ଭୁତ ଜୀବନର କେତୋଟି ଉଦାହରଣ ମାତ୍ର । ସେ ଥିଲେ ଅନନ୍ୟା, ତାଙ୍କର କାର୍ଯ୍ୟାବଳୀ, ବସ୍ତୁଭଧାର ଥିଲା ଅସାମାନ୍ୟ, ଏବଂ ଶାନ୍ତିଭାସ୍ୱ । ସମାଜକୁ ପୁରା ବଦଳାଇ ନୂଆ ସୁନ୍ଦର, ସମୃଦ୍ଧ, ଅହିଂସ ସମାଜ ଗଠନ ଥିଲା ତାଙ୍କର ଉଦ୍ଦେଶ୍ୟ ।

୧୯୮୪ ଅପ୍ରେଲ ମାସର ଗୋଟିଏ ଘଟଣା ମନେପଡୁଛି । ଓଡ଼ିଶାରେ ବାସ କରୁଥିବା ଏକ ପଡ଼ୋଶୀ ରାଜ୍ୟର ପ୍ରବାସୀ ସଂସ୍ଥା ତାଙ୍କର ଏକ ଉତ୍ସବକୁ ନୂମାଙ୍କୁ ନିମନ୍ତ୍ରଣ ପଠାଇଥିଲେ —ତାଙ୍କୁ ସେଠି ସମ୍ମାନିତ କରିବା ଉଦ୍ଦେଶ୍ୟରେ । ନିମନ୍ତ୍ରଣ ପତ୍ରରେ ପ୍ରାଦେଶିକତାର ଗନ୍ଧ ଥିଲା । ଫଳରେ ନୂମା ଉତ୍ତରରେ ଲେଖିଥିଲେ—

"ଆପଣମାନେ ମୋତେ ଦୟାକରି ଏହି ଅନୁଷ୍ଠାନରେ ଉପସ୍ଥିତ ରହିବା ପାଇଁ ଆଶା କରିବେ ନାହିଁ । ମୁଁ ସମ୍ମାନ ଗ୍ରହଣ କରିବାକୁ ଉଚିତ ବୋଧ କରେ ନାହିଁ, ଏବଂ ସେ ବିଷୟରେ ଯୁକ୍ତି ଉଠାଇବାକୁ ମଧ୍ୟ ଇଚ୍ଛା କରେ ନାହିଁ । ବିଶେଷ କରି ଯେତେ ଓଡ଼ିଶାର ଜନତାପାଇଁ କିଛି କରିଥାଏ ଓଡ଼ିଶାର ଜନତା ତାର ବିଚାର କରିବେ । ଶିକ୍ଷିତ ସହର-ବାସୀଙ୍କ ପାଇଁ ମୁଁ କେବେ କିଛି କରିନାହିଁ । ବରଂ ଖୋଲା ସମାଲୋଚନା ହିଁ ମୋର କଥାବାର୍ତ୍ତା ଏବଂ ଆଚରଣରେ ଦେଖାଇ ଆସିଛି । ଅଧିକନ୍ତୁ ଓଡ଼ିଶାର ସ୍ୱାର୍ଥରେ ବସି ପରସ୍ପର ଲଢ଼ିବା ମୁଁ କାହିଁକି ପସନ୍ଦ କରିପାରେ ନାହିଁ । ଏ ଯୁଗରେ ପ୍ରାଦେଶିକତାର ଗନ୍ଧ ଯେଉଁଠାରେ ଥିଲେମାତ୍ର ସବୁ ତାକୁ ମୁଁ ଏଡ଼େଇ ଚଳିବାଟା ଉଚିତ ମନେକରେ…।

● ନିର୍ମଳ ସ୍ନେହ-ପ୍ରେମ ବିନା ଜନ ଜାଗରଣ ଅସମ୍ଭବ । କେବଳ ଓଡ଼ିଶାର ଧର୍ମୀଭୂଳ ନୁହନ୍ତି, ବହୁ ଅସହାୟ ନିରୀହ ଆଦିବାସୀ ଓ ହରିଜନ ମହିଳା ମର୍ମେ ମର୍ମେ ଅନୁଭବ କରିଛନ୍ତି । ୧୯୪୬ରୁ ତାଙ୍କଦ୍ୱାରା ପ୍ରତିଷ୍ଠିତ "ବାଳସଦନ ଛାତ୍ରାବାସ"ରୁ ଶିକ୍ଷିତ ହୋଇ ବାହାରିଥିବା ହଜାର ହଜାର ପୁଅଝିଅ ନୂମାଙ୍କର ଅମୃତ ପରଶରେ ଆସି ଯେଉଁ ଅମୃତ ବର୍ଷିଛନ୍ତି—ତାହା ସେମାନଙ୍କ ମୁହଁରୁ ମଝିରେ ମଝିରେ ଶୁଣିବାକୁ ମିଳିଥାଏ । ତାଙ୍କ ସ୍ନେହ ପ୍ରେମର ପରଶ ମିଳେ—

● ବାହାରୁ ଆସିଲା ବେଳେ ଛାତ୍ରାବାସ ପିଲାଙ୍କ ପାଇଁ ଖେଳନା, ଭାତବାଟି, କ୍ଲପ ଓ ଭଲ ଭଲ ଗପ ଓ ଚିତ୍ରବହି ଆଣି ବାଣ୍ଟିବା ।

● ଛାତ୍ରାବାସ ପିଲାଙ୍କୁ ଓ ମହିଳା ଶିବିରର ଶିକ୍ଷାର୍ଥୀଙ୍କୁ ପାଠ ପଢ଼ାଇବା । ସେଥିରେ କି ପ୍ରକାର ଅନ୍ତରଙ୍ଗ ସ୍ନେହର ପରଶ ଓ ଆନନ୍ଦ ଭରିଥାଏ ତାହା ତୁଳସୀ ଅପା (କୁ. ତୁଳସୀ ମୁଣ୍ଡା) ଭଳି ବ୍ୟକ୍ତି ହିଁ କହିପାରିବେ ।

● ଅନୁଷ୍ଠାନର ସମସ୍ତ ଅନ୍ତେବାସୀଙ୍କ ପାଇଁ ଯେଉଁଠି କିଛି ନୂଆ ଫୁଲ ଫଳର ମଞ୍ଜି ବା ବୁଦା ମିଳୁଥିଲା ଆଣୁଥିଲେ । ସେ ଦିନ ନାହାନ୍ତି ମାତ୍ର ସେ ଆଣି ଦେଇଥିବା ଅନେକ ବୁଦା ଓ ମଞ୍ଜିରୁ ଅନେକ ଗଛ ଏବେ ବି ତାଙ୍କ କୋମଳ ହୃଦୟର ସାକ୍ଷୀ ହୋଇ ଆମ ଆଶ୍ରମବାସୀଙ୍କ ସେବାରେ ଉତ୍ସର୍ଜିତ ।

ନବଜୀବନ ମଣ୍ଡଳ, ଅନୁଗୁଳ

# କୋରାପୁଟର ଅଭୁଲା ଜୀବନ (ନୁମା)

□ ବିଶ୍ୱନାଥ ପଟ୍ଟନାୟକ

ନୁମା (ମାଳତୀ ଚୌଧୁରୀ) ଭାରତ ଛାଡ଼ ଆନ୍ଦୋଳନରେ ଜେଲରୁ ଫେରି ଗଡ଼ଜାତ ଅଞ୍ଚଳର ଦୁଃସ୍ଥ ରାଜନୈତିକ କର୍ମୀଙ୍କ ପିଲାମାନଙ୍କର ଶିକ୍ଷାପାଇଁ ୧୯୪୬ରେ ଅନୁଗୁଳରେ ସହିଦ ବାଜିରାଉତଙ୍କ ସ୍ମୃତିରେ "ବାଜିରାଉତ ଛାତ୍ରାବାସ" ସ୍ଥାପନ କଲେ । ପ୍ରଥମେ ଛାତ୍ରାବାସରେ ଗଡ଼ଜାତ ଅଞ୍ଚଳର କର୍ମୀଙ୍କ ପିଲାମାନଙ୍କୁ ଗ୍ରହଣ କରାଯାଉଥିଲା । ପରେ ୧୯୪୯ରୁ ଦୁଃସ୍ଥ ଆଦିବାସୀ ଓ ହରିଜନ ପିଲାମାନଙ୍କୁ ଗ୍ରହଣ କରାଗଲା । ବିଶେଷ କୋରାପୁଟ ଜିଲ୍ଲାରୁ ଆଦିବାସୀ ପୁଅଝିଅମାନଙ୍କୁ ଆଣି ଛାତ୍ରାବାସରେ ରଖାଗଲା । ୧୯୪୮ରେ ଆଦିବାସୀଙ୍କ ମଧ୍ୟରେ ଚେତନା ଜାଗ୍ରତ କରି ସେମାନଙ୍କ ଉପରେ ହେଉଥିବା ଜୁଲମର ପ୍ରତିକାର ପାଇଁ, ପୂଜ୍ୟପାଦ ଗୋପବନ୍ଧୁ ଚୌଧୁରୀଙ୍କ ଆହ୍ୱାନରେ ତାଙ୍କର ବାଖରାବାଦସ୍ଥିତ ବାସଭବନରେ ଋଷିପ୍ରାଣ ଆଚାର୍ଯ୍ୟ ମହାଶୟ, ପୂଜ୍ୟ ସାରଙ୍ଗଧର ଦାସ, ପୂଜ୍ୟ ନବକୃଷ୍ଣ ଚୌଧୁରୀ, ମା' ରମାଦେବୀ, ନୁମା ( ମାଳତୀ ଦେବୀ), ବ୍ୟାପକ ଏବଂ ଆଦିବାସୀପ୍ରେମୀ ଓ ଆଦିବାସୀଙ୍କ ମଧ୍ୟରେ କାମ କରୁଥିବା କର୍ମୀମାନଙ୍କୁ ନେଇ ଏକ ବୈଠକ ହେଲା । ବୈଠକରେ ସ୍ଥିର ହେଲା ଯେ, ଆଦିବାସୀଙ୍କ ମଧ୍ୟରେ କାମ କରିବାପାଇଁ ଏକ ଅନୁଷ୍ଠାନ ଗଠନ କରାଯିବ । ଅନୁଷ୍ଠାନର ନାମକରଣ ସମ୍ପର୍କରେ ଚର୍ଚ୍ଚା ହେବାରେ ଆଦିବାସୀ ନାମ ଉଲ୍ଲେଖ କରି କେତେକ ପ୍ରସ୍ତାବ ଆସିଲା । ପୂଜ୍ୟ ଗୋପବାବୁ କହିଲେ, ''ଯାହାଙ୍କ ପାଇଁ କାମ ହେବ ସେମାନଙ୍କ ଭିତରେ ନୂଆଜୀବନ ଆଣିବା ପାଇଁ ''କୃଷକ'' ପତ୍ରିକାରେ ନୁମା (ମାଳତୀ ଦେବୀ) ''ନବଜୀବନ'' ନାମରେ ଯେଉଁ ଧାରାବାହିକ ଲେଖା ଲେଖୁଛି ସେହି ନାମ ରଖା ଯାଉ'' । ଏହା ସର୍ବସମ୍ମତିରେ ଗ୍ରହଣ ହୋଇ ଅନୁଷ୍ଠାନର ନାମ ଉତ୍କଳ ନବଜୀବନ ମଣ୍ଡଳ ରଖାଗଲା । ଏହାର ସଭାପତି ରହିଲେ ପୂଜ୍ୟ ସାରଙ୍ଗଧର ଦାସ । ସମ୍ପାଦକ ହେଲେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ମାଳତୀ ଦେବୀ, ଆଚାର୍ଯ୍ୟ ମହାଶୟ, ମା' ରମାଦେବୀ ଆଦି ସଦସ୍ୟ ରହିଲେ । ଏହାପରେ ପୂଜ୍ୟ ଗୋପବାବୁ ଓ ମା' ରମାଦେବୀ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପଦଯାତ୍ରା ଆରମ୍ଭ କଲେ । ସେତେବେଳେ ରାସ୍ତାଘାଟ ନ ଥିବା ଜଙ୍ଗଲ, ପାହାଡ଼ ମଧ୍ୟରେ ରୁଦ୍ଧ ଆଦିବାସୀମାନଙ୍କ ଦୟନୀୟ ଅବସ୍ଥା ଦେଖି ବ୍ୟଥିତ ହୋଇ ନୁମା (ମାଳତୀଦେବୀ)ଙ୍କୁ ଉତ୍କଳ ନବଜୀବନ ମଣ୍ଡଳର ପୂରା ଦାୟିତ୍ୱ ନେଇ ସେମାନଙ୍କ କଲ୍ୟାଣ ଓ ଚେତନା ଆଣିବା କାମରେ ଲାଗିବାକୁ କହିଲେ । ସେହିଠାରୁ ନୁମାଙ୍କ ମାର୍ଗଦର୍ଶନରେ ଉତ୍କଳ ନବଜୀବନ ମଣ୍ଡଳ ପରିଚାଳିତ ହେଲା ଓ ସେ ଜୀବନର ଶେଷ ଯାଏଁ ଏକନିଷ୍ଠ ହୋଇ ଆଦିବାସୀଙ୍କ ସେବାରେ ଲାଗି ରହିଥିଲେ ।

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ରହି କାମ କରିବାପାଇଁ ଅନୁଗୁଳରେ ମହିଳା ତାଲିମ ଶିବିର ଆରମ୍ଭ ହେଲା । ବିଭିନ୍ନ ଜିଲ୍ଲାରୁ ଝିଅମାନେ ଆସି ତାଲିମ ପାଇଲେ । ବିଧବା ଓ ପରିତ୍ୟକ୍ତାମାନେ ମଧ୍ୟ ଆସି ତାଲିମ ପାଇଲେ । ଏମାନେ ବିଶେଷ ପଢ଼ା ଲେଖା ଜାଣି ନ ଥିଲେ ମଧ୍ୟ ସେମାନଙ୍କୁ ପଢ଼ା ଲେଖା ଶିଖାଇବା ସହ ଏପରି ତାଲିମ ଦିଆଗଲା ଯେ, ଜଙ୍ଗଲ, ପାହାଡ଼ ମଧ୍ୟରେ ଥିବା ଆଦିବାସୀମାନଙ୍କ ଉପରେ ହେଉଥିବା ଅନ୍ୟାୟ, ଅତ୍ୟାଚାର ଓ ଜୁଲମ୍ କରୁଥିବା ସାହୁକାର, ରେଭିନ୍ୟୁ, ପୋଲିସ, ଓ ଜଙ୍ଗଲ କର୍ମଚାରୀ ଆଦିଙ୍କ ସମସ୍ତ ଅନ୍ୟାୟ ବିରୋଧରେ ଚେତନା ଜାଗ୍ରତ କରାଇ ତା'ର ମୁକାବିଲା କରିବା ପାଇଁ ଆଦିବାସୀଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରି, ପ୍ରତିକାର ପାଇଁ ଲଢ଼େଇ କରିବା ଶକ୍ତି ସୃଷ୍ଟି କରାଇଥିଲେ ।

ନୁମାଙ୍କୁ କୋରାପୁଟ ଆଦିବାସୀଙ୍କ ଅବସ୍ଥା ଦେଖିଯିବା ପାଇଁ ଅନୁରୋଧ କରାଗଲା । ସେ ପ୍ରଥମେ ଅବିଭକ୍ତ କୋରାପୁଟ ଜିଲ୍ଲାର ଗୁଣୁପୁର ଅଞ୍ଚଳକୁ ଆସି, ଆଦିବାସୀଙ୍କ ସାଧାସିଧା ଜୀବନ, ଚାଲିଚଳଣ, ସରଳତା, ବେଶଭୂଷା, ଅଭାବ ମଧ୍ୟରେ ସୁଖରେ ଚଳିବା, କପାଚାଷ କରି ସୂତାକାଟି, ନିଜ ହାତକଟା ସୂତାରେ ଲୁଗା ପିନ୍ଧିବା, ସଙ୍ଗୀ ସୁଦ୍ଧା ସହ

ନିଜ ଆବଶ୍ୟକ ଜିନିଷ ଘରେ ସଜାଇ ରଖିବା, ପାଣିହାଣ୍ଡି ଓ ରୋଷାଇଶାଳ ଆଦି ଦେଖି ତାଙ୍କୁ ଆଦିବାସୀ ସଂସ୍କୃତି ବିଶେଷ ଆକର୍ଷଣ କରିଥିଲା । ସେ କୋରାପୁଟ ଆସିଲେ ଆଦିବାସୀଙ୍କ ଘରେ ରହୁଥିଲେ, ଖାଉଥିଲେ ତାଙ୍କ ପିଣ୍ଡାରେ ବିଶ୍ରାମ ନେଉଥିଲେ । ଯାନିଯାତ୍ରା ସମୟରେ ଆସିଲେ ବେନ୍ତୁଣୀ ସହ ନାଚୁଥିଲେ, ବୁଲୁଥିଲେ, ଗାଉଥିଲେ । ଏହା ଦ୍ୱାରା ଆଦିବାସୀମାନେ ନିଜର ଲୋକ ମନେକରି ଖୋଲି ଖୋଲି ତାଙ୍କ ସହ ମିଶୁଥିଲେ । ମନଖୋଲା ଆଲାପ ଆଲୋଚନା କରୁଥିଲେ । ନୁମା ଓ ବାପି ଉଭୟେ ନାଚପ୍ରିୟ ଥିଲେ ।

ଆଦିବାସୀଙ୍କ ଦୁଃଖ ଯେତିକି ନୁମା ସେତିକି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବହେଳିତ ଆଦିବାସୀଙ୍କ ଅବସ୍ଥା ଦେଖିବାରେ ତାଙ୍କୁ ବ୍ୟଥିତ ଓ ମର୍ମାହତ କରୁଥିଲା । ସେ ଉତ୍କଳ ନବଜୀବନ ମଣ୍ଡଳ ତରଫରୁ ଗାଁ କେନ୍ଦ୍ରମାନ ଖୋଲି ତାଙ୍କ ମଧ୍ୟରେ ଚେତନା ଜାଗ୍ରତ ପାଇଁ ଉଦ୍ୟମ କଲେ । କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ କେନ୍ଦ୍ରମାନ ଖୋଲା ହେଲା । ଗୁଣୁପୁର, ଦୁର୍ଗୀ, ବିଷମକଟକ, ରାୟଗଡ଼ା, ଭୋଳସକଟା କୋରାପୁଟ, ତଳବଣ୍ଡା, ଉପରବଣ୍ଡା, ପଟାଙ୍ଗୀ, ସୁନାବେଡ଼ା ନବରଙ୍ଗପୁର ଆଦି ଅଞ୍ଚଳରେ କେନ୍ଦ୍ରମାନ ଖୋଲି ସେ ଅଞ୍ଚଳରେ ଅନ୍ୟାୟ ଅତ୍ୟାଚାରର ପ୍ରତିକାର ପାଇଁ କର୍ମୀମାନେ ଲାଗିଲେ । ସବୁ ଜାଗାରେ ପ୍ରାୟ ସାହୁକାର, ପୋଲିସ, ଫରେଷ୍ଟର ଆଦିଙ୍କ ବେଠି, ଭେଟି ମାମୁଲି ଆଦି ବନ୍ଦ କରାଗଲା । ଗୋତିମୁକ୍ତି ଆନ୍ଦୋଳନ ମଧ୍ୟ ଚାଲିଲା । ନୁମା ପ୍ରାୟ ସମସ୍ତ କେନ୍ଦ୍ରମାନଙ୍କୁ ଯାଉଥିଲେ । ଏହାଦ୍ୱାରା ସାହୁକାରମାନଙ୍କର ଡବଲ କଲନ୍ତର ସୁଧହାର କମିଲା । ଆଦିବାସୀମାନେ କର୍ମଚାରୀଙ୍କ ଘରେ ମାଗଣା ଖଟୁଥିବା ବନ୍ଦ ହେଲା । ଲୋକଙ୍କ ଡର ଭୟ କମିଲା । ଅନେକ ପରିମାଣରେ ସତ କହିବାରେ ସାହସ ବଢ଼ିଲା । ନୁମା କୋରାପୁଟର ଜଙ୍ଗଲ ପାହାଡ଼ ବୁଲି କାମ କରୁଥିଲେ । ଯେଉଁ ପାହାଡ଼ ଚଢ଼ିବା ବା ଓହ୍ଲାଇବା କଷ୍ଟ ହେଉଥିଲା ଲୋକେ ତାଙ୍କୁ ଆବଶ୍ୟକତା ଦୃଷ୍ଟିରୁ ଖୁସିରେ ଖଟିଆରେ ନେଇ ଯାଉଥିଲେ । ବହୁ ଦୁଃସାଧ୍ୟ ଅଞ୍ଚଳକୁ ମଧ୍ୟ ସେ ଯାଉଥିଲେ । ଗୁଣୁପୁର ଅଞ୍ଚଳରେ "ୟୁଜ୍" ରୋଗର ପ୍ରକୋପ ବେଶୀ ଥିଲା । ଲୋକେ ସେ ରୋଗରେ ବେଶୀ କଷ୍ଟ ପାଉଥିଲେ । କର୍ମୀମାନଙ୍କୁ ତାଲିମ ଦିଆଯାଇ ଡାକ୍ତରଙ୍କ ସହ କର୍ମୀମାନେ ବୁଲି ଔଷଧ, ଇଞ୍ଜେକ୍ସନ୍ ଦେଇ ସେହି ରୋଗକୁ ଲୋପ କରାଇଥିଲେ । କୁଷ୍ଠ ସେବା କାମ ମଧ୍ୟ କର୍ମୀମାନେ କରୁଥିଲେ । ଗାଁରେ ରହି କାମ କରୁଥିବା କର୍ମୀମାନେ ନିରକ୍ଷରତା ଦୂରୀକରଣ, ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଚେତନା ଜାଗରଣ ନିଶା ନିବାରଣ ଏବଂ ଆଦିବାସୀମାନଙ୍କ ମଧ୍ୟରେ ଆତ୍ମ ବିଶ୍ୱାସ ଆଣିବା କାମ ବରାବର କରୁଥିଲେ ।

୧୯୫୦ରେ ଗୁଣୁପୁରର ରାମନାଗୁଡ଼ା ଅଞ୍ଚଳରେ ଏବଂ ଚନ୍ଦ୍ରପୁର ଓ ବିଷମକଟକ ଅଞ୍ଚଳରେ ମରୁଡ଼ି ହେତୁ ଅକାଳ ପଡ଼ିଲା, କେତେକ ଖାଇବାକୁ ନପାଇ ମଲେ । ଏ ଖବର ପାଇ ମା' ରମାଦେବୀ, ମାଳତୀଦେବୀ ଉଭୟେ ଆସି ଏ ଅଞ୍ଚଳ ଦୁର୍ଦ୍ଦଶା ଦେଖି ପିଲାମାନଙ୍କ ପାଇଁ ଖାଦ୍ୟ କେନ୍ଦ୍ରମାନ ଖୋଲି, ସେମାନଙ୍କୁ ବଞ୍ଚାଇ ଥିଲେ ଏବଂ ଡାକ୍ତର ପଠାଇ ଚିକିତ୍ସାର ବ୍ୟବସ୍ଥା ମଧ୍ୟ କରିଥିଲେ । ସରକାର ଅନୁସନ୍ଧାନରେ ଖାଇବା ବିନା ମରିବା ହୃଦ୍‌ବୋଧ କରି ସରକାରୀ ସାହାଯ୍ୟ ମଧ୍ୟ ଆସିଲା । ଖାଦ୍ୟ ଜିନିଷ ନେବା ପାଇଁ ଯାନବାହନର ବ୍ୟବସ୍ଥା ନଥିବାରୁ ନୁମା ସରକାରଙ୍କୁ ଲେଖିଲେ । ଜୟପୁର ରାଜାଙ୍କର ଚାରିଗୋଟି ହାତୀ ବସି ଖାଉଛନ୍ତି । ସେମାନଙ୍କୁ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ରିଲିଫ କାର୍ଯ୍ୟରେ ଲଗାଇ ଦେଲେ ଖାଦ୍ୟ ଜିନିଷ ରିଲିଫ କେନ୍ଦ୍ରମାନଙ୍କରେ ପହଞ୍ଚାଇବାରେ ସାହାଯ୍ୟ ହୁଅନ୍ତା । ସରକାର ତାଙ୍କ ଅନୁରୋଧ ରକ୍ଷା କରି ଦୁଇଗୋଟି ହାତୀକୁ ରିଲିଫ କାମରେ ଦେଇଥିଲେ । ସେ ହାତୀମାନଙ୍କ ଦ୍ୱାରା କର୍ମୀମାନେ ରିଲିଫ ଖାଦ୍ୟ ନେଇ ଆବଶ୍ୟକ ଅନୁସାରେ ଠିକ୍ ଜାଗାରେ ପହଞ୍ଚାଇଥିଲେ ।

ସାହୁକାରମାନେ ସେତେବେଳର ଜୟପୁର ଜମିଦାରଙ୍କ ସହାୟତାରେ ଆଦିବାସୀମାନଙ୍କର ସମସ୍ତ ଜମି ନିଜ ନାମରେ କରି ଦଖଲରେ ରଖି ଆଦିବାସୀମାନଙ୍କୁ ସେହି ଜମିରେ ଖଟାଇ ଖମାରି କରିରଖିଥିଲେ । ସ୍ୱାଧୀନତା ପରେ ଏକଥା ଆଦିବାସୀମାନେ ଅନୁଭବ କରି, ୧୯୫୧ରେ ସରକାରଙ୍କୁ ନିବେଦନ କଲେ ଯେ, ଆମ ଅଜାଣତରେ ଅନ୍ୟାୟଭାବେ ହୋଇଥିବା ଆମର ପୂର୍ବାର୍ଜିତ ଜମି ଆମକୁ ଫେରସ୍ତ କରିଦିଆଯାଉ । ସରକାର ତାଙ୍କ ନିବେଦନକୁ କର୍ଣ୍ଣପାତ ନ କରିବାରୁ ସାହୁକାର ଓ ସରକାରଙ୍କୁ ଜଣାଇ ନିଜର ପୂର୍ବ ଜମି ଦଖଲ କରିବାକୁ ଠିକ୍ କଲେ । ସେହି ଆଧାରରେ "ଭୂ-ସତ୍ୟାଗ୍ରହ" ସମାଜ ଗଠନ ହେଲା । ତାଙ୍କ ନିର୍ଦ୍ଦେଶରେ ସାହୁକାର ଓ ସରକାରଙ୍କୁ ଜଣାଇ ଜମି ନିଜ ଦଖଲକୁ ଆଣିବା ପାଇଁ ସ୍ଥିରକଲେ । ଏହାଫଳରେ

ସାହୁକାରମାନେ ପୋଲିସ୍‌ଙ୍କ ସହାୟତାରେ ବହୁତ ହଇରାଣ କଲେ, ମୋକଦ୍ଦମା କଲେ । ଆଦିବାସୀମାନଙ୍କୁ ଜେଲ୍ ଦେଲେନାହିଁ, କିନ୍ତୁ ଥାନାକୁ ନେଇ ବହୁସମୟ ଥାନାରେ ବସାଇ ଗ୍ରୁଡ଼ି ଦେଉଥିଲେ । ଏପରି କେତେମାସ ଚାଲିବା ପରେ ସରକାର ଆଦିବାସୀ ନେତାଙ୍କ ସହ ବସି ସମାଧାନର ସୂତ୍ର ବାହାର କଲେ । ବିଶେଷ କ୍ଷମତା ଦେଇ ଜଣେ ସ୍ପେଶାଲ ଅଫିସରଙ୍କୁ ସାହୁକାରମାନେ ନେଇଥିବା ଜମିର ବିଚାର କରି କ୍ଷେତ୍ର ଉପରେ ଫଇସଲା କରିଦେବାକୁ ପଠାଇଲେ । ସରକାର ସ୍ପେଶାଲ ଅଫିସର ଭାବେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କୁ ସ୍ୱତନ୍ତ୍ର କ୍ଷମତାଦେଇ ପଠାଇଲେ । ଗୋପୀନାଥବାବୁଙ୍କ ବିଚାର ଅଧିକାଂଶ ଆଦିବାସୀମାନଙ୍କ ସପକ୍ଷରେ ଗଲା । ତେଣୁ ସାହୁକାରମାନେ କୋର୍ଟର ଆଶ୍ରୟ ନେଲେ । କେହି କେହି କୋର୍ଟକୁ ନଯାଇ ଆପୋସ ମିଳାମିଶା ହୋଇ ସମାଧାନ କଲେ । ସେତେବେଳେ ନୂମା (ମାଳତୀଦେବୀ) ଗୁଣୁପୁର ଅଞ୍ଚଳକୁ ଯାଇଥିଲେ । ମାଳତୀଦେବୀ ଆସିଥିବା କଥା ଶୁଣି ଗୋପୀନାଥ ବାବୁ ତାଙ୍କୁ ସାକ୍ଷାତ କରିବାକୁ ଗଲେ । ଗୋପୀନାଥ ବାବୁଙ୍କୁ ଦେଖି ନୂମା କହିଲେ, ବିଶ୍ୱନାଥ ଠାରୁ ଆଦିବାସୀଙ୍କ ପ୍ରତି ଆପଣଙ୍କର ସହୃଦୟତା ଶୁଣି ଆପଣଙ୍କ ଗୋଡ଼ତଳେ ପଡ଼ିବା ପାଇଁ ଇଚ୍ଛା ହେଉଛି । ଯେତେବେଳେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତାଙ୍କ ସ୍ତ୍ରୀ ମାଳତୀଦେବୀ ଜଣେ ଅଫିସରଙ୍କୁ ଏଭଳି କହିବା ଆଦିବାସୀଙ୍କ ପ୍ରତି ନୂମା (ମାଳତୀ ଦେବୀ)ଙ୍କର କେତେ ଆନୁଗତ୍ୟ ଥିଲା ଏଥିରୁ ଜଣାପଡ଼େ । ନୂମା ଓ ବାପିଙ୍କର ବିଚାର ଓ ଦୃଷ୍ଟିକୋଣ ବିପ୍ଳବାତ୍ମକ ଥିଲା । ସେମାନେ ଅନ୍ୟାୟ ଓ ଅସତ୍ୟର ବିରୋଧ କରୁଥିଲେ । ଅନ୍ୟର ଦୁଃଖରେ ସେ ବିଚଳିତ ହୋଇ ମର୍ମାହତ ହେଉଥିଲେ । ସର୍ବହରା ଅବହେଳିତ ଆଦିବାସୀ ଓ ହରିଜନମାନଙ୍କ ପାଇଁ, ନିର୍ଯାତିତ ଶୋଷିତଙ୍କ ପାଇଁ ତାଙ୍କ ପ୍ରାଣ ସବୁବେଳେ କାନ୍ଦୁଥିଲା । ସେମାନଙ୍କୁ ସାହସ ଦେଇ ସେମାନଙ୍କ ଉତ୍‌ଥାନ ପାଇଁ ଯେଉଁମାନେ, କାମରେ ଲାଗିଥାନ୍ତି, ସେମାନଙ୍କ ପ୍ରତି ତାଙ୍କର ସ୍ନେହ ସହାନୁଭୂତି ବରାବର ରହୁଥିଲା । ଅବହେଳିତମାନଙ୍କର ଦୁଃଖ କଥା ଶୁଣିଲେ ସେ ଥୟ ଧରି ରହିପାରୁ ନଥିଲେ । ନୂମା ଓ ବାପୀ ନିଜକୁ କଷ୍ଟ ଦେଇ ଉଭୟ ସେହି କାମରେ ଲାଗି ଯାଉଥିଲେ ।

ନକ୍ସଲପନ୍ଥୀମାନେ ସର୍ବହରାମାନଙ୍କ ପାଇଁ କାମ କରୁଛନ୍ତି ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ତେଣୁ ନକ୍ସଲପନ୍ଥୀ କର୍ମୀଙ୍କ ପରିବାରର ଲୋକମାନଙ୍କ ଦୁଃଖ କଥା ଶୁଣିଲେ ତାଙ୍କ ପାଖରେ ପହଞ୍ଚି ସେମାନଙ୍କୁ ସାନ୍ତ୍ୱନା ଦେଉଥିଲେ । କୋରାପୁଟ ଜିଲ୍ଲା ମାଲକାନ୍‌ଗିରି ସବ୍‌ଡିଭିଜନ୍ କୋରୁକଣ୍ଡା ବ୍ଲକର ନିପଟ ଜଙ୍ଗଲ ପାହାଡ଼ ମଧ୍ୟରେ ଥିବା ନକ୍ସଲପନ୍ଥୀ କର୍ମୀ ରାମଚନ୍ଦ୍ର ମାଡ଼କାମୀ ଜେଲ୍‌ରେ ଥିବା-ବେଳେ ତାଙ୍କ ପରିବାରଙ୍କୁ ପୋଲିସ ହଇରାଣ କରୁଥିବା ଶୁଣି ସେହି ଜଙ୍ଗଲ ମଧ୍ୟରେ ବୁଲି ବୁଲି ମାଡ଼କାମୀର ଘର ଠାବ ପାଇଲେ । ତା'ର ଦୁଇ ସ୍ତ୍ରୀ । ଘରେ ଖାଇବାକୁ ନାହିଁ । ଦୁଇ ଜଣ ଚୁଅ ସହ ଦୁହେଁ କନା ଖଣ୍ଡେ ଖଣ୍ଡେ ପିନ୍ଧିଛନ୍ତି ଆଉ କନା ଖଣ୍ଡେ ଉପରେ ପକାଉଛନ୍ତି । ଖୋଲା ଦେହ, ବହୁ ଦୟନୀୟ ଅବସ୍ଥାରେ ଅଛନ୍ତି ଦେଖି ନୂମା ଓ ବାପୀ କାନ୍ଦି ପକାଇଥିଲେ । ସେମାନଙ୍କ ସହ କଥାବାର୍ତ୍ତା କରି ସାନ୍ତ୍ୱନା ଦେଇ ଫେରିଲେ । ସେପରି ନନ୍ଦପୁର ଅଞ୍ଚଳର ନକ୍ସଲପନ୍ଥୀ ନେତା ପୁରୁଷୋତ୍ତମ ପାଲ୍ଲୀ ଆତ୍ମଗୋପନ କରି ଆନ୍ଧ୍ର ଅଞ୍ଚଳ ଜଙ୍ଗଲ ମଧ୍ୟରେ ରହି କାମ କରୁଥାନ୍ତି । ତାଙ୍କ ସ୍ତ୍ରୀଙ୍କୁ ପୋଲିସ ହଇରାଣ କରୁଥିବା କଥାଶୁଣି ନନ୍ଦପୁର ଗ୍ରାମର ପାଲ୍ଲି ଘରକୁ ଯାଇ ତାଙ୍କ ସ୍ତ୍ରୀ ଓ ଦୁଇ ଝିଅଙ୍କୁ ଦେଖାକରି, ତାଙ୍କ ପ୍ରତି ହେଉଥିବା ଅତ୍ୟାଚାର କାହାଣୀ ଶୁଣି ବ୍ୟସ୍ତ ହୋଇପଡ଼ିଲେ । ସେମାନଙ୍କୁ ସାନ୍ତ୍ୱନା ଦେଇ ଫେରିଲେ ।

ନକ୍ସଲପନ୍ଥୀ ନେତା ନାଗଭୂଷଣ ପଟ୍ଟନାୟକଙ୍କୁ ଫାଶୀ ହୁକୁମ ହେଲା । ଏ ଖବର ପାଇ ନୂମା ଓ ବାପୀ ବ୍ୟଥିତ ହୋଇପଡ଼ିଲେ । ତାଙ୍କୁ ଫାଶୀରୁ ଉଦ୍ଧାର କରିବା ପାଇଁ ବହୁ ଉଦ୍ୟମ କଲେ ।

ଲୋକଙ୍କଠାରୁ ସହାନୁଭୂତି ଦସ୍ତଖତ ସଂଗ୍ରହ କରି ରାଷ୍ଟ୍ରପତି ଭି. ଭି ଗିରିଙ୍କୁ ମାଫ୍ ପିଟିସନ୍ ଦେଲେ ଏବଂ ବ୍ୟକ୍ତିଗତ ଚିଠି, ନିବେଦନ ଆଦି ଉଦ୍ୟମ ଦ୍ୱାରା ନାଗଭୂଷଣ ପଟ୍ଟନାୟକ ଫାଶୀମୁକ୍ତ ହେଲେ କିନ୍ତୁ ଜେଲ୍ ରହିଗଲେ । ନାଗଭୂଷଣ ପଟ୍ଟନାୟକ "ରାଜ୍ ମହେନ୍ଦ୍ରୀ" ଜେଲ୍‌ରେ ଥିବା-ବେଳେ ବେମାର ପଡ଼ିଲେ । ନାଗଭୂଷଣ ପଟ୍ଟନାୟକ ବେମାରରୁ ମୁକ୍ତ ହେବାଯାଏ ନୂମା ଓ ବାପୀ ରାଜମହେନ୍ଦ୍ରୀ ଜେଲ୍‌କୁ ଯାଇ ତାଙ୍କର ସୁ-ଚିକିତ୍ସା ପାଇଁ ସେତେବେଳର ଆନ୍ଧ୍ର ମୁଖ୍ୟମନ୍ତ୍ରୀ ପି.ଭି. ନରସିଂହ ରାଓଙ୍କ ସହ ବାରମ୍ବାର ସାକ୍ଷାତ କରି ଚିକିତ୍ସା ବ୍ୟବସ୍ଥା କରିଥିଲେ । ସେହିପରି ଗୁଣୁପୁର ଅଞ୍ଚଳର ଗରଣ୍ଡା ଆଦିବାସୀଙ୍କୁ ନକସଲାଇଟ୍ କହି ନିରୀହ ଆଦିବାସୀଙ୍କ ଉପରେ ପୋଲିସର ଅତ୍ୟାଚାର ତାଙ୍କୁ ଅସହ୍ୟ କରିଥିଲା । ନୂମା ଓ ନବବାବୁ କର୍ମୀଙ୍କୁ ନେଇ

ଗରଣ୍ଡା ଗାଁରେ ଛଅମାସ ରହିଲେ ଓ ସେ ଅଞ୍ଚଳ ବୁଲି ଲୋକଙ୍କୁ ସାହସ ଦେଉଥିଲେ । କର୍ମୀ ବୈକୁଣ୍ଠ ପାତ୍ରଙ୍କ ଉପରେ ପୋଲିସ ଡି.ଏସ୍.ପି. ନନ୍ଦଙ୍କ ଅତ୍ୟାଚାର ଏବଂ ସୁଲୁଣବରଣୀକୁ ନିଆଁ ଖୁଣ୍ଟାରେ ଚେଙ୍ଗି ତା'ର ଘରେ ସଂଗୃହୀତ ଥିବା ଖାଦ୍ୟଶସ୍ୟ, କୁକୁଡ଼ା, ଛେଳି ଜୋର୍-ଜବରଦସ୍ତ ନେଇଯିବା ଆଦି ଘଟଣା ସେ ଲୋକଲୋଚନକୁ ଆଣିଥିଲେ । ଏଇସବୁ ଦେଖି ସେ ମର୍ମାହତ ହୋଇ ଗାଁ ଗାଁ ବୁଲି ଲୋକମାନଙ୍କୁ ସାହସ ଦେଲେ । କିନ୍ତୁ ସେ ନକ୍ସଲପନ୍ଥୀଙ୍କ ସବୁ କାମକୁ ପସନ୍ଦ କରୁ ନ ଥିଲେ । ଯେଉଁ କାମ କରିବାର ନୁହେଁ ତାହା ଦେଖି ନିନ୍ଦା ମଧ୍ୟ କରୁଥିଲେ । ଗରଣ୍ଡା ଅଞ୍ଚଳରେ ବୁଲିଲାବେଳେ ରାମନାଗୁଡ଼ା ବ୍ଲକ୍ "ବଡ଼ମୂଲ ଗାଁ"ର ଶ୍ରୀ ଦୀନବନ୍ଧୁ ସାହୁକାରଙ୍କୁ ନକ୍ସଲପନ୍ଥୀମାନେ ରାତିରେ ଶୋଇଥିବା ଅବସ୍ଥାରେ ବାଉଁଶ ତାଟି କବାଟ ଭାଙ୍ଗି ତା'ର ସ୍ତ୍ରୀ ଆଗରେ ତାକୁ ହାଣି ଦେଇଥିଲେ । ସେ ଜଣେ ମଧ୍ୟବିତ୍ତ ଗରିବ ଲୋକ । ଛୋଟ ଚାଳିଆ ଘର ବାଉଁଶ ତାଟିର କବାଟ ଘରେ ଅଳ୍ପକିଛି ଶସ୍ୟମାତ୍ର ! ଏହିଦୃଶ୍ୟ ଦେଖି ନୁମା ଓ ବାପୀଙ୍କ ଆଖି ଛଳଛଳ ହୋଇ ଯାଇଥିଲା । ଦୀନବନ୍ଧୁଙ୍କ ସ୍ତ୍ରୀ ସହ କଥା ହୋଇ ବ୍ୟସ୍ତ ହୋଇ କହିଲେ—ଏଭଳି କାମ ଯଦି ନକ୍ସଲପନ୍ଥୀମାନେ କରନ୍ତି, ତା'ହେଲେ ସହାନୁଭୂତି ହରାଇବେ ।

ଆଉ ଏକ ଘଟଣା, ରାୟଗଡ଼ା ତେଲବାଲି ନିକଟ ବାଲିଖମାର ଓ ସଙ୍କଳପଦର ଗ୍ରାମର ଆଦିବାସୀମାନଙ୍କର ଜମି ପାଇକପଡ଼ା ଗ୍ରାମର ସାହୁକାର ହରିହର ମିଶ୍ର ଅନ୍ୟାୟ ଭାବେ, ଅପହରଣ କରି ନେଇଥିବାରୁ ଆଦିବାସୀ-ମାନେ ମୋକଦ୍ଦମା କଲେ । ସାହୁକାର ତାଙ୍କୁ ତଳ-ଉପର କୋର୍ଟ କରାଇ ହଇରାଣ କରିବାରୁ ସେଥିରେ ସେ କୃତକାର୍ଯ୍ୟ ହୋଇ ନପାରି ନିରୁପାୟ ହୋଇ ତାଙ୍କର ଅପହୃତ ଜମି ଦଖଲ କରି ଚାଷ କଲେ । ଆଦିବାସୀମାନେ ଚାଷ କରୁଥିବା ସମୟରେ ସାହୁକାର ହରିମିଶ୍ର ଓ ତାଙ୍କ ପୁତ୍ର ବିଶ୍ୱନାଥ ମିଶ୍ର ପହଞ୍ଚି ଜୁଲୁମ୍ ସହ ବାଧା ଦେବାରୁ, ସେ ଦୁଇଜଣଙ୍କୁ ଚାଷ କରୁଥିବା ଜମି ଉପରେ ଜୀବନରେ ମାରିଦେଲେ । ଏଥିରେ ବୟାଳିଶ୍ ଜଣ ଆଦିବାସୀ ଗିରଫ୍ ହେଲେ । ମକଦ୍ଦମା ଚାଲିଲା, ଶେଷରେ ବୟାଳିଶ ଜଣ ଆଦିବାସୀଙ୍କୁ ଆଜୀବନ କାରାଦଣ୍ଡ ହେଲା । ନୁମା ଓ ବାପୀ ଆଦିବାସୀମାନଙ୍କୁ ଜେଲ୍‌ରୁ ମୁକ୍ତ କରିବା ପାଇଁ ସେ ଅଞ୍ଚଳର ବରିଷ୍ଠ କର୍ମୀ ଶ୍ରୀ ରତନ ଦାସଙ୍କ ସହାୟତାରେ ତଥ୍ୟ ଆଦି ସଂଗ୍ରହ କରି ଏବଂ ଆଲୋଚନା କରି ଆଦିବାସୀ-ମାନଙ୍କୁ ଜେଲ୍‌ରୁ ମୁକ୍ତ କରିବା ଲାଗି ଛଅବର୍ଷ ଧରି ଉଦ୍ୟମ କଲେ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର । ନବବାବୁଙ୍କ ଅନୁରୋଧରେ ମୁଖ୍ୟମନ୍ତ୍ରୀ ଆଦିବାସୀମାନଙ୍କୁ ମୁକ୍ତ ଦେବାପାଇଁ ରାଷ୍ଟ୍ରପତିଙ୍କୁ ସୁପାରିସ କଲେ । ବହୁ ଉଦ୍ୟମ ପରେ ଆଦିବାସୀମାନେ ଜେଲ୍‌ରେ ଛଅବର୍ଷ ରହିବାପରେ ଆଜୀବନ କାରାଦଣ୍ଡରୁ ମୁକ୍ତ ହେଲେ । ଜେଲ୍ ଭୋଗୁଥିବା ବୟାଳିଶ ଜଣଙ୍କ ମଧ୍ୟରୁ ସାତଜଣ ଜେଲ୍ ଭିତରେ ମରି ଯାଇଥିଲେ । ବଞ୍ଚି ରହିଥିବା ପଇଁତିରିଶ୍ ଜଣଙ୍କ ମଧ୍ୟରୁ ସଙ୍କଳପଦର ଗ୍ରାମର ସାତଜଣ ଓ ବାଲିଖମାର ଗ୍ରାମର ଅଠେଇଶ ଜଣ ଆଦିବାସୀ କାରାମୁକ୍ତ ହେଲେ । ଆଦିବାସୀମାନେ ନିଜର ନ୍ୟାଯ୍ୟ ଜମିପାଇଁ ଲଢ଼ି ଦୁଃଖ ପାଉଥିବାରୁ ନୁମା ଓ ବାପୀ ସେମାନଙ୍କୁ ସବୁମତେ ସାହାଯ୍ୟ କରିଥିଲେ ।

ସେପରି ମଞ୍ଜୁଷାର ସୁବାରାଓ ପାଣିଗ୍ରାହୀ ମହେନ୍ଦ୍ର-ତନୟାପର୍ବତମାଳା ଅଞ୍ଚଳରେ ଅବହେଳିତ ଆଦିବାସୀଙ୍କ ମଧ୍ୟରେ କାମ କରୁଥିଲେ । ପୋଲିସ୍ ତାଙ୍କୁ ନକ୍ସଲ୍‌ପନ୍ଥୀ କହି ଗୁଳିକରି ମାରିଦେଲେ । ଅନେକ ଆଦିବାସୀ ଗାଁ'କୁ ନିଆଁ ଲଗାଇ ପୋଡ଼ି ଦେଲେ । ଆଦିବାସୀ ଲୋକେ ଜଙ୍ଗଲ ମଧ୍ୟରେ ଏଣେତେଣେ ହୋଇ ଲୁଚି କରି ରହିଲେ । ପୋଲିସ୍‌ର ଦୌରାତ୍ମ୍ୟ ଖବର ପାଇ 'ନୁମା' ସେତେବେଳର ଏମ୍. ଏଲ୍. ଏ. ବିରଜା ପ୍ରସାଦ ରାୟଙ୍କୁ ଅନୁସନ୍ଧାନ ପାଇଁ ପଠାଇଲେ । ବିରଜା ବାବୁଙ୍କ ସହ ମୁଁ ମହେନ୍ଦ୍ରତନୟା ପର୍ବତମାଳା ଅଞ୍ଚଳରେ ବୁଲି ଅବସ୍ଥା ଦେଖି ତଥ୍ୟ ସଂଗ୍ରହ କରି ଆସିଲୁ । ମହେନ୍ଦ୍ରତନୟା ଅଞ୍ଚଳର ଅନେକ ଆଦିବାସୀ, ପୋଲିସ୍ ଭୟରେ ଲୁଚିଛପି ବୁଲୁଥିଲେ । କେତେକଙ୍କ ସହ ଆଲୋଚନା ହେଲା । ବିରଜାବାବୁ ନୁମାଙ୍କ ପାଖକୁ ଏକ ତଥ୍ୟପୂର୍ଣ୍ଣ ରିପୋର୍ଟ ଦେଇଥିଲେ ।

କୋରାପୁଟ ଜିଲ୍ଲାର ବଣ୍ଡା ଆଦିବାସୀ ହେଉଛନ୍ତି ସବୁଠାରୁ ପଛୁଆ ଓ ଅବହେଳିତ । ବଣ୍ଡା ଅଞ୍ଚଳରେ ନବଜୀବନ ମଣ୍ଡଳର କେନ୍ଦ୍ର ଗାଁ ସ୍ଥିର କରିବା ପାଇଁ ଦୁଇ ଦିନ ନୁମା ଓ ବାପୀଙ୍କ ସହ ବୁଲିବା ପରେ ତଳବଣ୍ଡା କଦମଗୁଡ଼ା ଗ୍ରାମରେ କେନ୍ଦ୍ର କରିବା ଠିକ୍ ହେଲା । ପ୍ରଥମେ କର୍ମୀ ରାଧାମଣି ଅପା, ସୀତା ଓ ଶାନ୍ତିଲତା ଶତପଥୀ କେନ୍ଦ୍ରରେ ରହିଲେ । କିଛି ମାସପରେ କର୍ମୀମାନେ

ପୋଲିସ୍ ଅତ୍ୟାଚାରର ସମ୍ମୁଖୀନ ହେଲେ । କଦମଗୁଡ଼ା ପାଖ ଖୁଣ୍ଟଗୁଡ଼ା ଗ୍ରାମରୁ ମୁଦୁଲିପଡ଼ା ଫାଣ୍ଡିରୁ ଦୁଇଜଣ ଜମାନ ଯାଇ ପିଣ୍ଡାରେ ଶୋଇଥିବା ଗୁରୁ ଶିସାକୁ ସଲପ ଗଛରୁ ମଦହାଣ୍ଡି ଓହ୍ଲାଇ ଆଣି ଖାଇବାକୁ ଦେବାକୁ କହିଲେ । ସେ ବେମାରଥିବାରୁ ଗଛରେ ଚଢ଼ିବାକୁ ମନାକଲା । ପୋଲିସ୍‌ମାନେ ତା' ପାଖରେ ଥିବା ଧନୁଶରକୁ ଟାଣିଆଣି ତା କାନମୂଳରେ ଭୁସିଦେଲେ । ଖୁଣ୍ଟଗୁଡ଼ା ଗ୍ରାମର ସୁନାଧର ଶିସା ଓ ସମାଜିଷ୍ଠାନ କନ୍ଦମୁଗୁଡ଼ା ଗ୍ରାମର ଅପାଙ୍କ ପାଖକୁ ଏ ଖବର କହିବାକୁ ଆସିଲେ । ଅପାମାନେ ସେ ଗାଁ'କୁ ଯାଇ ପୋଲିସ୍ ଅତ୍ୟାଚାରର ବିରୋଧ କରିବାରୁ, ପୋଲିସ୍ ସମସ୍ତଙ୍କ ନାମରେ କେସ୍ ଦେଲା । ଏହାର ଜୁଡ଼ିସିଆଲ୍ ଇନ୍‌କ୍ୱାଏରୀ ମଧ୍ୟ ହେଲା । ମୁଁ ତ ସବୁ ତାରିଖରେ ଯାଏ । ସେତେବେଳର ଏମ୍.ପି ଝିଙ୍ଗି-ସାଙ୍ଗନା ଓ ରତନବାବୁ ମଧ୍ୟ କେତେଥର ମକଦ୍ଦମାର ଶୁଣାଣିବେଳେ ଯାଉଥିଲେ । ନୁମା ଓ ବାପୀ ମଧ୍ୟ ଥରେ ଯାଇଥିଲେ । ଜୁଡ଼ିସିଆଲ୍ ମକଦ୍ଦମା ରାୟରେ, କାଲିଆ ଜମାନ ଓ ପାଣ୍ଡବ ଜମାନ ସସ୍‌ପେଣ୍ଡ୍ ହେଲେ । ନୁମା ଓ ବାପୀ ନିଜ ଜୀବନରେ ଏପରି ଅନେକ ଘଟଣାର ସମ୍ମୁଖୀନ ହୋଇଛନ୍ତି । ସେମାନଙ୍କ ଅନ୍ତରରେ ସ୍ନେହ, ପ୍ରେମ କରୁଣା, ଅବିରତ ବହୁଥିବାରୁ ସେମାନେ କୌଣସି-ପ୍ରକାରର ଅନ୍ୟାୟ ଦେଖି ସହିପାରୁ ନଥିଲେ । ସେମାନେ କରୁଣା ପ୍ରେରିତ ବିପ୍ଲବୀ ଥିଲେ । ମୁଁ ନୁମାଙ୍କୁ ବହୁତ କଷ୍ଟ ଦେଇଛି । ବଣ, ଜଙ୍ଗଲ, ପାହାଡ଼, ମଧ୍ୟରେ ଥିବା ଆଦିବାସୀମାନଙ୍କ ଉପରେ ଅନ୍ୟାୟ, ଅତ୍ୟାଚାର ହେଲେ ତାଙ୍କୁ ଖବର ଦେବାମାତ୍ରେ ସେ ପହଞ୍ଚି ଯାଉଥିଲେ ।

ମୋତେ କେବଳ କୋରାପୁଟରେ ମାଲତୀ ଚୌଧୁରୀଙ୍କର ପ୍ରତ୍ୟକ୍ଷ କାମ ସମ୍ପର୍କରେ ଲେଖିବାକୁ କୁହାଯାଇଥିଲେ ମଧ୍ୟ ଫୁଲବାଣୀ ଓ ଗଞ୍ଜାମ ମାଳଅଞ୍ଚଳରେ ମଧ୍ୟ ତାଙ୍କର ଆଦିବାସୀଙ୍କ ମଧ୍ୟରେ ଅନେକ ସ୍ମରଣୀୟ କାର୍ଯ୍ୟର ଘଟଣାବଳୀ ରହିଛି । ଫୁଲବାଣୀର କୋଟଗଡ଼ ଅଞ୍ଚଳରେ ସାହୁକାରମାନେ ପୋଲିସ୍ ସହାୟତାରେ ସର୍ବୋଦୟ କର୍ମୀଙ୍କୁ ଗିରଫ କରି ଜେଲ୍‌ରେ ରଖିଥିବାର ଖବର ପାଇ ସେ ଅଟ୍ଟନକ ପହଞ୍ଚି ତା'ର ବିରୋଧ କରିଥିଲେ ଏବଂ ବୁବୁଲ୍‌ବାବୁ ମଣ୍ଡଳ କେନ୍ଦ୍ର କର୍ମୀ ରାଧାମଣି ସାହୁ ସେ ଅଞ୍ଚଳର ଆଦିବାସୀଙ୍କ ଠାରୁ ପୋଲିସ୍ ନେଇଥିବା ଟଙ୍କା ଓ ସୁନା ଫେରସ୍ତ ଦେବାପାଇଁ ଥାନା ଆଗରେ ଆଦିବାସୀମାନଙ୍କୁ ନେଇ ଦାବି କରିବାରୁ ପୋଲିସ୍ ଟଙ୍କା ଓ ସୁନା ଫେରାଇ ଦେଲେ କିନ୍ତୁ କେତେ-ଦିନପରେ ରାଧାମଣି ସାହୁଙ୍କୁ କେନ୍ଦ୍ର ଘରଭିତରୁ ଟାଣିଆଣି ହାତକଡ଼ି ପକାଇ ବାଲିଗୁଡ଼ା ଥାନାକୁ ଆଣିଲେ । ସେ ସମୟର ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟଙ୍କ ହସ୍ତକ୍ଷେପରେ ରାଧାମଣି ସାହୁଙ୍କୁ ଜାମିନ୍‌ରେ ଛଡାଗଲା । ଏଥିରେ ନୁମାଙ୍କର ଭୂମିକା ଏବଂ ଗଞ୍ଜାମମାଳର ଘଟଣାବଳୀ ଅନେକ ରହିଛି ।

ନୁମାଙ୍କର ସ୍ନେହ ଭୁଲିବାର ନୁହେଁ । ସେ ଶେଷ-ଜୀବନଯାଏ କୋରାପୁଟର ଆଦିବାସୀଙ୍କ କଥା ଭାବୁଥିଲେ । ଅସୁସ୍ଥ ଅବସ୍ଥାରେ ଦେଖିବାକୁ ଗଲେ ମଧ୍ୟ କହୁଥିଲେ ମୋତେ କୋରାପୁଟ ଆଉ ନେଲ ନାହିଁ । ଜଙ୍ଗଲ, ପାହାଡ଼ ମଧ୍ୟରେ ଥିବା ତାଙ୍କ କୁଡ଼ିଆ ମଧ୍ୟରେ ରହିବା ସୁଯୋଗ ଆଉ ପାଇଲି ନାହିଁ ବୋଲି ଆବେଗପୂର୍ଣ୍ଣ କରୁଣସ୍ୱରରେ କହୁଥିଲେ । ଈଶ୍ୱର ସବୁଦିନ ପାଇଁ ତାଙ୍କୁ କୋଳକୁ ନେଇଗଲେ । ସେହି ମହାନ୍ ଅବିସ୍ମରଣୀୟ ବ୍ୟକ୍ତିତ୍ୱର ଅଭୁଲା ଜୀବନର ପାଦତଳେ ସଭକ୍ତିପୂର୍ଣ୍ଣ ପ୍ରଣାମ ସହ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ବନବାସୀ ସେବାସମିତି
ବାଲିଗୁଡ଼ା, କନ୍ଧମାଳ

———

# ଫୁଲବାଣୀର ଆଦିବାସୀ ଓ ମାଳତୀଦେବୀ

□ ଧୀରେନ୍ଦ୍ର ମହାପାତ୍ର

ଫୁଲବାଣୀ ଜିଲ୍ଲାର ବାଲିଗୁଡ଼ା ସବଡିଭିଜନର ଋମୁଣ୍ଡିବନ୍ଧ ଅନ୍ତର୍ଗତ ବଣ ଜଙ୍ଗଲଘେରା ଦୁର୍ଗମ ବେଲଘର ଅଞ୍ଚଳରେ ଶାସିତ, ଶୋଷିତ, ନିର୍ଯ୍ୟାତିତ, ନିରୀହ, ସରଳ ଓ ଅନୁନ୍ନତ କୁଟିଆକନ୍ଧ ଆଦିବାସୀମାନେ କେଉଁ ଆଦିମ-ଯୁଗରୁ ବସବାସ କରି ଆସୁଛନ୍ତି । ଏହି ଦୁର୍ଗମ ଓ ଅନ୍ଧକାର ଅଞ୍ଚଳକୁ ଉତ୍କଳ ନବଜୀବନ ମଣ୍ଡଳ (ଶ୍ରୀଯୁକ୍ତା ମାଳତୀ-ଦେବୀ)ଙ୍କ ପ୍ରବେଶ କରିବା ପୂର୍ବରୁ ଅନ୍ୟ କେହି ପ୍ରବେଶ କରି ନ ଥିଲେ । ଉକ୍ତ ବେଲଘର ଅଞ୍ଚଳରେ ୧୯୫୯-୬୦ ମସିହାରେ ସର୍ବପ୍ରଥମ ଶ୍ରୀଯୁକ୍ତ ମାଳତୀ ଚୌଧୁରୀ ପଦାର୍ପଣ କରିଥିଲେ ଏବଂ ଏହି ଅଞ୍ଚଳ ପାଇଁ ତାଙ୍କର ଯେଉଁ ମହାନ ଅବଦାନ ଥିଲା ତାହା ମଧ୍ୟରୁ କିଛି ଅଂଶ ସଂକ୍ଷିପ୍ତରେ ପ୍ରକାଶ କରୁଛି ।

ବେଲଘର ଅଞ୍ଚଳର ରଙ୍ଗାପାରୁ ଗ୍ରାମ ଓ ଅନ୍ୟାନ୍ୟ ଆଖପାଖ ଗ୍ରାମଗୁଡ଼ିକରେ ପ୍ରତିଷେଧକ ଔଷଧ ପତ୍ର ନପାଇ କୁଷ୍ଠ ରୋଗୀମାନଙ୍କ ସଂଖ୍ୟା ବହୁ ପରିମାଣରେ ବ୍ୟାପି ଥାଏ ଏବଂ ସରକାରଙ୍କ ତରଫରୁ କୁଷ୍ଠରୋଗୀଙ୍କ ପାଇଁ ଚିକିତ୍ସାର କୌଣସି ବ୍ୟବସ୍ଥା ହୋଇ ନ ଥିଲା । ରୋଗୀମାନେ ଅତି ଦୟନୀୟ ଅବସ୍ଥାରେ ପଡ଼ିଥିବା ଦେଖି ବେଲଘରଠାରେ ଗୋଟିଏ କୁଷ୍ଠରୋଗୀ ଚିକିତ୍ସା କେନ୍ଦ୍ର ଖୋଲିବା ପାଇଁ ଆଦିବାସୀ ଗ୍ରାମମଙ୍ଗଳ ବିଭାଗର ଅଧିକାରୀ ଶ୍ରୀଯୁକ୍ତା ଚୌଧୁରୀଙ୍କୁ ଅନୁରୋଧ କରି ପତ୍ର ଲେଖିଥିଲେ । ଶ୍ରୀଯୁକ୍ତା ଚୌଧୁରୀ ପତ୍ର ପାଇବା ମାତ୍ରକେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କୁ ସାଙ୍ଗରେ ଆଣି ଏହି ଅଗମ୍ୟ ଅଞ୍ଚଳରେ ପ୍ରବେଶ କରିଥିଲେ ଏବଂ କୁଷ୍ଠରୋଗ ବ୍ୟାପିଥିବା ରଙ୍ଗାପାରୁ ଓ ଅନ୍ୟାନ୍ୟ ଗ୍ରାମକୁ ଯାଇ ରୋଗୀମାନଙ୍କର ସାଙ୍ଘାତିକ ଅବସ୍ଥା ନିଜ ସ୍ୱଚକ୍ଷୁରେ ଦେଖି ଖୁବ୍ ବିଚଳିତ ହୋଇ ପଡ଼ିଥିଲେ ।

ଏହାର ବିହିତ ପ୍ରତିକାର ପାଇଁ ସମ୍ବଲପୁର ହାଟବାଡ଼ିର ସ୍ୱର୍ଗତ ଡାକ୍ତର ଆଇଜାକ୍ ସାହାଙ୍କ ନିକଟରେ କୁଷ୍ଠରୋଗ ଚିକିତ୍ସାରେ ତାଲିମ ପାଇଥିବା ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନଙ୍କୁ ବେଲଘର ପଠାଇ ପ୍ରଥମ କୁଷ୍ଠରୋଗୀ ଚିକିତ୍ସା କାମ ଆରମ୍ଭ କରିଥିଲେ । ମାଳତୀ ଦେବୀଙ୍କ ତରଫରୁ ଦୀର୍ଘ ଛଅ-ସାତବର୍ଷ ରୋଗୀ ଚିକିତ୍ସା କାର୍ଯ୍ୟକ୍ରମ ଚାଲିବାପରେ ସରକାରଙ୍କ ତରଫରୁ କୁଷ୍ଠ ଚିକିତ୍ସାର ବ୍ୟବସ୍ଥା ହେବାରୁ ଶ୍ରୀଯୁକ୍ତା ମାଳତୀ ଚୌଧୁରୀ (ନୁମା) ତାଙ୍କ ତରଫରୁ ଚାଲିଥିବା କୁଷ୍ଠରୋଗୀ ଚିକିତ୍ସା କେନ୍ଦ୍ର ବନ୍ଦ କରିଦେଲେ । ତେଣୁ ନୁମା କୁଷ୍ଠରୋଗୀ ଚିକିତ୍ସା କାର୍ଯ୍ୟକ୍ରମରେ ସଫଳତା ଅର୍ଜନ କଲାପରେ ବେଲଘର, ଗୁମା, ଝିରପାଣି, ଲଙ୍କାଗଡ଼ ଇତ୍ୟାଦି ଅଞ୍ଚଳର କୁଟିଆକନ୍ଧ ଆଦିବାସୀଙ୍କ ଅଶିକ୍ଷା ଦାରିଦ୍ର୍ୟ, ସେମାନଙ୍କ ଉପରେ ଚାଲିଥିବା ଶୋଷଣ, ଜୁଲୁମ ଓ ଅତ୍ୟାଚାରର ଉପଯୁକ୍ତ ପ୍ରତିକାର ପାଇଁ ବେଲଘର ନିକଟବର୍ତ୍ତୀ ବୁଲୁବାରୁ ଓ ଗୁମା ଅଞ୍ଚଳର ତୁପି ଗ୍ରାମରେ ଦୁଇଟି ସମାଜସେବା କେନ୍ଦ୍ର ସ୍ଥାପନ କରି ଉତ୍କଳ ନବଜୀବନ ମଣ୍ଡଳର ତାଲିମପ୍ରାପ୍ତ ଟାଣୁଆ ସଂଗ୍ରାମୀ କର୍ମୀମାନଙ୍କୁ ଆଣି ଉପରୋକ୍ତ ଦୁଇଟି କେନ୍ଦ୍ରରେ ନିଯୁକ୍ତି ଦେଲେ ।

ଉପରୋକ୍ତ କେନ୍ଦ୍ରର କର୍ମୀମାନେ ଆଦିବାସୀମାନଙ୍କୁ ଏକଜୁଟ କରାଇ ପ୍ରତ୍ୟେକ ଗ୍ରାମରେ ଗ୍ରାମ ସଭା, ଶାନ୍ତି ସେନା ମଣ୍ଡଳ, ଆଦିବାସୀ ଓ ହରିଜନ ଯୁବମଣ୍ଡଳ, ସ୍ୱାଧୀନତା ବଞ୍ଚାଅ ଓ ନିଶାମୁକ୍ତ ଆନ୍ଦୋଳନ ସମିତି ଓ କସ୍ତୁରବା ନାରୀସଂଘ ଇତ୍ୟାଦି ସଂଗଠନ ଗଠନ କରିବା ପରେ— ଚାଲିଲା ଅନ୍ୟାୟ ବିରୋଧରେ ସଂଗ୍ରାମ । ପ୍ରଥମ କାମ ହେଲା; ଆଦିବାସୀଙ୍କ ବନ୍ଧକ ଜମି, ସୁନା, ଗୋରୁଗାଈ ଓ ଅନ୍ୟାନ୍ୟ ଜିନିଷ ଉଦ୍ଧାର କରି ସାହୁକାରଙ୍କ ଶୋଷଣରୁ ମୁକ୍ତ କରିବା; ପୋଲିସ ଆଦିବାସୀଙ୍କଠାରୁ ନେଇଥିବା ଟଙ୍କା ବେଲଘର ଥାନା ଘେରାଉ କରି ଫେରସ୍ତ ଆଣିବା, ପୋଲିସ, ଫରେଷ୍ଟ, ରେଭିନ୍ୟୁ ଓ ଅବକାରୀ ବିଭାଗର କର୍ମଚାରୀମାନଙ୍କ ଅନ୍ୟାୟ, ଅତ୍ୟାଚାର, ଅନୀତି, ଶୋଷଣ ବିରୋଧରେ ଗଣ ଆନ୍ଦୋଳନ କରିବା ଓ ତାହାର ଉପଯୁକ୍ତ ପ୍ରତିକାର ପାଇଁ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ

କରି ଉପରୋକ୍ତ କର୍ମସ୍ୱୀଙ୍କୁ ଦୋଷୀ ସାବ୍ୟସ୍ତ କରି ସେମାନଙ୍କୁ ବଦଳି ସସ୍‌ପେଣ୍ଡ ଓ ବହିଷ୍କାର ଇତ୍ୟାଦି ଦଣ୍ଡ-ଦେବା ଦିଗରେ ନୁମାଙ୍କର ମୁଖ୍ୟ ଭୂମିକା ଥିଲା । ଏହିସବୁ ଘଟଣାକୁ କେନ୍ଦ୍ର କରି ପୋଲିସମାନେ ଅକ୍ରୋଶ ମନୋଭାବ ରଖି କର୍ମୀମାନଙ୍କ ବିରୋଧରେ ମିଥ୍ୟା କେଶ୍ କରି କୋର୍ଟକୁ ବାରମ୍ବାର ଦୌଡ଼ାଇ ହଇରାଣ ହରକତ କରୁଥିଲେ । ଏପରି କି ସ୍ୱର୍ଗୀୟା ରାଧାମଣି ଅପାଙ୍କୁ ପୋଲିସମାନେ ରାତି ଅର୍ଦ୍ଧରେ ୱାରେଣ୍ଟ ବିନା ଆରେଷ୍ଟ କରିଥିଲେ । ଏହି ଖବର ପାଇ ନୁମା ଆସି ପ୍ରାୟ ଦୁଇ ତିନି ହଜାର ଆଦିବାସୀ ଓ ହରିଜନମାନଙ୍କୁ ନେଇ ବେଲଘର ଥାନା ହତା ଭିତରେ ପଶି ଏକ ପ୍ରତିବାଦ ସଭା କରିଥିଲେ । ଥାନା ଭିତରେ ପ୍ରତିବାଦ ସଭା କରିବା ସମୟରେ ପୋଲିସ-ମାନେ ଭୟରେ ଘର କବାଟ ଓ ଝରକା ଇତ୍ୟାଦି ବନ୍ଦ କରି ଲୁଚିରହିଥିଲେ ଏବଂ ରାଧାମଣି ଅପାଙ୍କୁ ନିର୍ଦ୍ଦୋଷରେ ଖଲାସ କରିଥିଲେ । ନୁମା ଉକ୍ତ ଅଞ୍ଚଳର ସାଧାରଣ ଜନତାଙ୍କୁ ଡର, ଭୟ ଛାଡ଼ିବା ଓ ଶିକ୍ଷା ଦିଗରେ ସେମାନଙ୍କର ଆଗ୍ରହ ବଢ଼ାଇବା ପାଇଁ ବାରମ୍ବାର ପ୍ରେରଣା ଦେଉଥିଲେ ।

୧୯୭୪ ମସିହା କଥା । ଫୁଲବାଣୀ ଜିଲ୍ଲାର କୋଟଗଡ଼ ବ୍ଲକ୍ ଗ୍ରାଲିଗୁଡ଼ା, କେଶ୍ରାଗୁଡ଼ା ଓ ଯୁଡ଼ାବାଲି ଗ୍ରାମ ତଥା ଆଖପାଖ ଗ୍ରାମମାନଙ୍କରେ କୁମୁଟି ସାହୁକାର ଓ ଡମ୍ବ (ହରିଜନ) ଆଦି ଗ୍ରାମବାସୀମାନଙ୍କୁ ଗୋଟିଏ ଦୁମ୍ବର, ଛେଳି, ଦୋକାନରୁ କିଛି ନାସ ଓ କିଛି ଖୁଚୁରା ଏପରିକି ଗୋଟିଏ ବୋତଲ ପାଇଁ ମଧ୍ୟ ଖଣ୍ଡେ ଲେଖାଏଁ ଜମି ଆଦିବାସୀମାନଙ୍କ ଠାରୁ ବନ୍ଧା ନେଇ ଜମି ଦଖଲ କରି ଆସୁଥିଲେ ।

କୌଣସି ପ୍ରକାରେ ଏହି ଖବର ଫୁଲବାଣୀ ଜିଲ୍ଲା ସର୍ବୋଦୟ ମଣ୍ଡଳ ପାଇଲେ ଓ ସର୍ବୋଦୟ ମଣ୍ଡଳ ତରଫରୁ ଶ୍ରୀ ସାବୀ ପ୍ରଧାନ, ପୀତବାସ କହଁର ଓ ମୁକ୍ତେଶ୍ୱର ପ୍ରଧାନଙ୍କୁ ଏହାର ସତ୍ୟାସତ୍ୟ ଖବର ସଂଗ୍ରହ ପାଇଁ କୋଟଗଡ଼ ପଠାଗଲା । କିନ୍ତୁ ସାହୁକାର ଓ ଡମ୍ବମାନେ ଏକଥା ଜାଣି ପାରି ପୋଲିସମାନଙ୍କୁ କହି ମିଛ ବାଟରୁ ଏ ତିନି ଜଣ କର୍ମୀଙ୍କୁ ଗିରଫ କରାଯାଇ ଥିଲା ।

ଏମାନେ ଗିରଫ ହେବାର ଖବର ପାଇ ଜିଲ୍ଲା ସର୍ବୋଦୟ ମଣ୍ଡଳ ପକ୍ଷରୁ ପ୍ରାଦେଶିକ ସର୍ବୋଦୟ ମଣ୍ଡଳକୁ ଖବର ପଠାଗଲା । ପ୍ରାଦେଶିକ ସର୍ବୋଦୟ ମଣ୍ଡଳ ଖବର ପାଇଲା ପରେ ନୁମା ବାଲିଗୁଡ଼ା ଆସି ଗିରଫ ହୋଇଥିବା ତିନି ଜଣ କର୍ମୀଙ୍କୁ ପୋଲିସ କବଳରୁ ଉଦ୍ଧାର କରି କୋଟଗଡ଼ ଅଞ୍ଚଳକୁ ଯାଇ ଦୁଇ ତିନି ଦିନ ରହିଥିଲେ । ସେଠାକାର ଆଦିବାସୀମାନଙ୍କୁ ଯେଉଁ ସାହୁକାରମାନେ ଶୋଷଣ କରୁଥିଲେ ସେମାନଙ୍କ ବିରୋଧରେ ପ୍ରତିବାଦ ସଭା କରି ସାହୁକାର ଓ ଡମ୍ବମାନେ ବନ୍ଧକ କରିଥିବା ଆଦିବାସୀ-ମାନଙ୍କ ଜମି ଉଦ୍ଧାର କରି ଆଦିବାସୀମାନଙ୍କୁ ସେ ଜମି ଫେରସ୍ତ ଦିଆଗଲା । ସର୍ବୋଦୟ କର୍ମୀମାନଙ୍କୁ ଯେଉଁ ପୋଲିସ କର୍ମଚାରୀମାନେ ଗିରଫ କରିଥିଲେ, ସେମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ବହିଷ୍କାର ଓ କେତେ ଜଣଙ୍କୁ କୋଟଗଡ଼ ଥାନାରୁ ଅନ୍ୟତ୍ର ବଦଳି କରାଇଥିଲେ ।

ଏହା ବ୍ୟତୀତ ଆଦିବାସୀ ଅଞ୍ଚଳର ଜମିଜମା ଓ ଜଙ୍ଗଲ ସମସ୍ୟା ସମାଧାନ କରିବା ଦିଗରେ ସରକାରଙ୍କ ପାଖରେ ବହୁ ମୂଲ୍ୟବାନ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ଯଥା—ସାହୁକାରମାନେ ଅଧିକ ସୁଧରେ ଆଦିବାସୀମାନଙ୍କୁ କରଜ ଦେଇଥାନ୍ତି ଓ କରଜ ପରିଶୋଧ କରି ନ ପାରିଲେ ଆଦିବାସୀଙ୍କ ଜମି ନେଇଥାନ୍ତି । ବାକି ଜମିଗୁଡ଼ିକ ଫରେଷ୍ଟ ରିଜର୍ଭ ଭିତରେ ରହି ଯାଉଛି । ଯାହା ଫଳରେ ଜଙ୍ଗଲ ବିଭାଗ କର୍ମଚାରୀମାନେ ଜମି ଛାଡ଼ନ୍ତି ନାହାନ୍ତି । କେତେକ ଜମି ବନ୍ଦୋବସ୍ତ ହୋଇ ନାହିଁ । ଏଥିପାଇଁ ନୁମା ବହୁ ବର୍ଷ ପୂର୍ବରୁ ସରକାରଙ୍କ ନିକଟରେ ଦାବି କରି ଆସୁଥିଲେ ଯେ, ଜଙ୍ଗଲ ଅଞ୍ଚଳର ଆଦିବାସୀ ଗ୍ରାମଠାରୁ ଏକ ମାଇଲ ଦୂରକୁ ରିଜର୍ଭ ଜଙ୍ଗଲ ଘୁଞ୍ଚାଇ ଦିଆଯାଉ ଏବଂ ରିଜର୍ଭ ମଧ୍ୟରେ ଚାଷ ଉପଯୋଗୀ ଜମି ଭୂମିହୀନ ଓ ଅଳ୍ପ ଜମି ଥିବା ଆଦିବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଉ । ଯାହା ଫଳରେ ଆଦିବାସୀମାନଙ୍କର ଜମିଜମା ସମସ୍ୟା ଦୂର ହୋଇଯିବ । ସେମାନେ ପୋଡୁ-ଚାଷରୁ ନିବୃତ୍ତ ରହିବେ । ଉପରୋକ୍ତ ପ୍ରସ୍ତାବଟି ପ୍ରଚାରପତ୍ର ମାଧ୍ୟମରେ ଫୁଲବାଣୀ ଅଞ୍ଚଳରେ ବଣ୍ଟନ କରାଯାଇ ଲୋକଙ୍କୁ ସଚେତନ କରାଯାଇଥିଲେ ମଧ୍ୟ ସରକାର ଉପରୋକ୍ତ ପ୍ରସ୍ତାବଟି ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରି ନାହାନ୍ତି । ଉକ୍ତ ଅଞ୍ଚଳର ଆଦିବାସୀମାନେ ପ୍ରସ୍ତାବଟିକୁ ସମର୍ଥନ କରିଛନ୍ତି ଏବଂ ପ୍ରସ୍ତାବଟି କାର୍ଯ୍ୟକାରୀ କରାଯାଉ ବୋଲି ସରକାରଙ୍କ ନିକଟରେ ଦୃଢ଼ ଦାବି କରି ଆସୁଛନ୍ତି । ବହୁକାଳରୁ ଶୋଷିତ ଓ ଅତ୍ୟାଚାରିତ ନିରୀହ ଆଦିବାସୀଙ୍କ ମନ-ମସ୍ତିଷ୍କରେ ସେମାନଙ୍କର ମୂଳ ଅଧିକାରକୁ ଜଗାଇବା ସହ ସେ ଅଧିକାର ପାଇବା ପାଇଁ ଧାରାବାହିକ ଲଢ଼େଇର ଚେତନା ହେଉଛି ନୁମାଙ୍କର ମହାନ୍ ଅବଦାନ । ଏଥିଯୋଗୁ ସ୍ୱର୍ଗୀୟ ମାଳତୀ ଚୌଧୁରୀ (ନୁମା)ଙ୍କର କେବଳ ଫୁଲବାଣୀ ଅଞ୍ଚଳ ପାଇଁ ନୁହେଁ ସାରା ଓଡ଼ିଶାର ଆଦିବାସୀ-ମାନଙ୍କ ପାଇଁ ତାଙ୍କର ଯାହା ସବୁ ଅବଦାନ ରହିଛି, ତାହା ଜନମାନସରେ ଚିର ସ୍ମରଣୀୟ ହୋଇ ରହିଛି ଏବଂ ରହିଥିବ ମଧ୍ୟ ।

ଉତ୍କଳ ନବଜୀବନ ମଣ୍ଡଳ ସେବା କେନ୍ଦ୍ର
ଡୁମ୍ବି, କନ୍ଧମାଳ (ଫୁଲବାଣୀ)

—

# ନୁମା ପାଇଁ କାହିଁକି ?

□ ଅରୁନ୍ଧତୀ ପାତ୍ର

ନୁମା ଚାଲିଗଲା—କଥାଟା ପ୍ରଥମେ ବିଶ୍ୱାସ କରି ହେଉ ନାହିଁ । ସତେ ଯେମିତି ସେ ଅମର ଫଳ ଖାଇଥିଲା ଓ ସବୁଦିନେ ବଞ୍ଚିଥାନ୍ତା । ଭାବନାଟା ଭାରି ପିଲାଳିଆ । କିନ୍ତୁ ନୁମାର ପରିଚିତ ସମସ୍ତଙ୍କ ମନରେ ଏ ଭାବନା ଖେଳୁଥିଲା । ମାତ୍ର ସେ ଏକରକମ ଚଳତ୍‌ଶକ୍ତିହୀନ ହୋଇ ରହିଥିଲେ । ତଥାପି ଚଉରାନବେ ବର୍ଷ ବଞ୍ଚିଲେ ଓ ଶେଷରେ ଡାକ୍ତରମାନଙ୍କ ସମସ୍ତ ଚେଷ୍ଟାକୁ ବ୍ୟର୍ଥ କରି ନେଇ ଚାଲିଗଲେ । ଏ କଥାଟା ବିଶ୍ୱାସ କରିବାକୁ ଯେତେବେଳେ ମନ ବାଧ୍ୟ ହେଲା ତାପରେ ଲାଗିଲା ଯେମିତି ସବୁ କିଛି ଶୂନ୍ୟ ହୋଇ ଯାଉଛି । ପଚାଶ ବର୍ଷରୁ ଅଧିକ କାଳ ଯୋଉଁ ମଣିଷଟା ବାଜିରାଉତ ଛାତ୍ରାବାସ ଓ ନବଜୀବନ ମଣ୍ଡଳ ପରିସର ଭିତରେ ଘୂରି ବୁଲୁଥିଲା ପାଟିତୁଣ୍ଡ କରୁଥିଲା, ପୁଣି ନିଜ କୁଡ଼ିଆର ବାଟ ମୁହଁରେ ବସି ସମସ୍ତଙ୍କ ସୁବିଧା ଅସୁବିଧା ତଦାରଖ କରୁଥିଲା, ସେ ମଣିଷଟିକୁ ତାର ସେଇ ଚିର ପରିଚିତ ଜାଗାରେ ଆଉ ଦେଖିବାକୁ ମିଳିବ ନାହିଁ କି ତା ପାଖକୁ ଗଲେ 'କି ଖାଇଚୁ ?' ପଦଟି ପାଞ୍ଚମିନିଟରେ ଦଶଥର ଶୁଣିବାକୁ ମଧ୍ୟ ମିଳିବ ନାହିଁ—ଏ ଭାବନା ମନକୁ ଶୂନ୍ୟ କରି ଦେଉଛି । ତେବେ ଏତେ ରାଗୀ ମଣିଷଟା ତାର ସବୁ ପରିଚିତଙ୍କ ମନକୁ ଏମିତି ବାନ୍ଧିଥିଲା କେମିତି ? କାହିଁକି ତାର ଅନୁପସ୍ଥିତି ସମସ୍ତଙ୍କ ମନକୁ ଶୂନ୍ୟ କରି ଦେଉଛି ?

ସେ ଖୁବ୍ ବଡ଼ ଘରର ଝିଅ ଥିଲା, ବୋହୂ ଥିଲା ବୋଲି ନା ମୁଖ୍ୟମନ୍ତ୍ରୀଙ୍କ ପତ୍ନୀ ଥିଲା ବୋଲି ତା ପାଇଁ ଏ ସମ୍ମାନ ଓ ଦୁଃଖ ? ତା ସ୍ତବଗାନ କଲେ ଚାକିରିଟିଏ ମିଳିଯିବ, ଠିକାଦାରୀ ମିଳିପାରେ, ଅତି କମ୍‌ରେ ଆସନ୍ତା ଥରକୁ ଏମ.ଏଲ.ଏ., ଚେୟାରମେନ ବା ସରପଞ୍ଚ ପଦ ପାଇଁ ପ୍ରାର୍ଥୀହେବାର ଟିକଟ ଟିଏ ମିଳିଯିବ କି ? ନା—ଏସବୁ କିଛି ବି ତାଙ୍କ ପାଖରୁ ମିଳିବାର ନଥିଲା । ତା ପାଖରେ ରହିଲେ ସବୁ ପାଇଁ ଖଟିବାକୁ ପଡ଼ୁଥିଲା, ଟିକିଏ ତ୍ରୁଟିବିଚ୍ୟୁତିରେ ବେଶ୍ ଗାଳି ବି ଶୁଣିବାକୁ ମିଳୁଥିଲା । ତେବେ ହଜାର ହଜାର ଲୋକଙ୍କୁ ସେ ମଣି କରିଥିଲା କେମିତି ? ନେତା-ନେତ୍ରୀ ତ ଓଡ଼ିଶାରେ ଅନେକ, ତେବେ ନୁମା ପାଇଁ କାହିଁକି ସମସ୍ତଙ୍କ ଆଖିରେ ଲୁହ ?

ପଦପଦବୀର ଯେଉଁ ଉଚ୍ଚତାକୁ ଯିବା ପରେ ମଣିଷ 'ବଡ଼' ହୋଇଯାଏ, 'ମାନ୍ୟ' ହୋଇଏ ଓ ସାଧାରଣ ଲୋକଟିର ହାତ ସେଠିକି ପାଏ ନାହିଁ, ସମ୍ମାନ ଓ ସମ୍ଭ୍ରମତା ସହକାରେ ଧୂଳିଆ ମଣିଷଟି ତା ଫାଟକ ବାହାରେ ରହି ତାକୁ ଚାହିଁଥାଏ, ସେ ଗାଡ଼ିରେ ବସି ଚାଲିଗଲାବେଳେ ମଥା ପାତି ପ୍ରଣାମ କରେ ଏବଂ ସେଇ ବଡ଼ମଣିଷଟି ଯଦି ଟିକିଏ ଚାହିଁ ମୁଣ୍ଡ ହଲାଇଦିଏ ତେବେ ଧୂଳିଆ ମଣିଷଗୁଡ଼ିକ କୃତକୃତ୍ୟ ହୋଇ ଉଠନ୍ତି—ସେଇ ଉଚ୍ଚତାକୁ ଯାଇ ମଧ୍ୟ ନୁମା ସେସବୁକୁ ପାଦରେ ଆଡ଼େଇ ଦେଲା । ସେ ଧୂଳିଆ ମଣିଷଙ୍କ ପାଖକୁ ଓହ୍ଲାଇ ଆସିଲା ଓ ତାଙ୍କର ହୋଇ ରହିଗଲା । ସେ 'ବଡ଼' ହୋଇ ପାରିଲା ନାହିଁ, କେବଳ 'ମଣିଷ' ହୋଇ ରହିଲା । ମଣିଷର ଆର୍ତ୍ତନାଦ ତାକୁ ଟାଣିଲା ନୂଆଖାଲିକୁ, ଢେଙ୍କାନାଳକୁ, କୋରାପୁଟକୁ । ମଣିଷ ପଣିଆଟା ତା ପାଖରେ ଏତେ ବେଶୀ ଥିଲା ଯେ ଦୁଃଖୀ ମଣିଷର ଦୁଃଖ ତାକୁ କେବଳ ବିହ୍ୱଳ କରୁ ନ ଥିଲା । ତାକୁ ତତାଇ ପକାଉଥିଲା । ତେଣୁ ଢେଙ୍କାନାଳ ରାଜାଙ୍କ ଅତ୍ୟାଚାର ତାକୁ କୋଠାଘରେ ବାନ୍ଧି ପାରିଲା ନାହିଁ, ନୂଆଖାଲିର ଆର୍ତ୍ତନାଦ ତାକୁ ଯୋଜନା କମିଶନର ସଭ୍ୟା ପଦରୁ ଇସ୍ତଫା ଦେବାକୁ ବାଧ୍ୟ କଲା । କୋରାପୁଟର ଆଦିବାସୀଙ୍କ ଅତ୍ୟଧିକ ସରଳତା ଯୋଗୁଁ ସାହୁକାର ଓ ଶିକ୍ଷିତଙ୍କର ସେମାନଙ୍କ ପ୍ରତି କରାଯାଇଥିବା ଅନ୍ୟାୟ ଶୋଷଣ ତାକୁ ମୁଖ୍ୟମନ୍ତ୍ରୀଙ୍କ ପତ୍ନୀର ସୁବିଧା ସୁଯୋଗ ଉପଭୋଗ କରିବାକୁ ନ ଦେଇ ପାଦରେ ଚାଲି ଚାଲି ପାହାଡ଼ ଚଢ଼ିବାକୁ ବାଧ୍ୟ କଲା ।

ତା ପାଖରେ ରହୁଥିବା ଲୋକେ କେବଳ ତାଠାରୁ ଗାଳି ଶୁଣନ୍ତି ନାହିଁ ; ତାକୁ ବି ତା ମୁହଁରେ ଗାଳିଦେଇ ପାରନ୍ତି, ଏଇ ଥିଲା ତାର ବିଶେଷତ୍ୱ । ଗତ ୨/୩ ବର୍ଷ ହେଲାଣି ନୁମା ସବୁ ଭୁଲି ଯାଇଥିଲା । କିନ୍ତୁ ତିଆନାନ୍‌ମେନ୍ ଛକରେ ନିରୀହ ଛାତ୍ରଙ୍କ ମୃତ୍ୟୁକୁ ଭୁଲିପାରୁ ନ ଥିଲା । ନାଲ୍‌କୋ ଆନ୍ଦୋଳନରେ ଯୋଗ ଦେଇ ନପାରିବାର ଦୁଃଖ ତାର ସବୁଦିନ ପାଇଁ ରହିଗଲା । ଅନ୍ୟର ସୁଖ ପାଇଁ ଚିନ୍ତା କରିବାର ଭାବନା ତାକୁ ଏମିତି ଗ୍ରାସ କରିଥିଲା ଯେ ସମସ୍ତ ବିସ୍ମୃତି ସତ୍ତ୍ୱେ ସେ ଅନ୍ୟର ଖାଇବା କଥା ପଚାରିବାକୁ ଭୁଲୁ ନ ଥିଲା—ତାର ସ୍ନେହ ଓ ଆନ୍ତରିକତାରେ ଟିକିଏ ହେଲେ ଖାଦ ନ ଥିଲା—ଥିଲା କେବଳ ନିର୍ମଳ ସ୍ନେହ—ଖାଣ୍ଟି ଭଲପାଇବା । ସେଇଥିପାଇଁ ନୁମା 'ବଡ଼ଲୋକ' ହୋଇପାରିଲା ନାହିଁ ମାତ୍ର କୁଡ଼ିଆଘରେ ରହି ସେ ଏତେ ମଣିଷଙ୍କ ମନକୁ ଦଖଲ କରି ନେଲା । ସେଇଥିପାଇଁ ଆଜି ତାକୁ ତା ଚଉକିରେ ନଦେଖି ମନ ଶୂନ୍ୟ ହୋଇ ଯାଉଛି । ପରମ ଆତ୍ମୀୟକୁ ହରାଇବାର ଭାବ ମନକୁ ବିହ୍ୱଳ କରି ଦେଉଛି ।

———

ସମ୍ବଲପୁର

# ମାଳତୀ ଚୌଧୁରୀ : ଏକ ଝଲକ
## (ଆମ ଜୀବନରେ ନୁମାଙ୍କ ପ୍ରଭାବ)

□ ସର୍ବେଶ୍ୱର ନାୟକ

୧୯୫୦ ମସିହା ମଝାମଝି ହେବ । ଅନ୍ୟୂନ ୩ ବର୍ଷ ସରକାରୀ ସ୍ୱୀକୃତ କରିବା ପାଇଁ ଚୁକ୍ତିବଦ୍ଧ ନହୋଇ ତତ୍କାଳୀନ ମୌଳିକ ଶିକ୍ଷା ସଙ୍ଗଠକ ଶ୍ରୀ ନବକୃଷ୍ଣ ଚୌଧୁରୀ (ବାପୀ)ଙ୍କ ଆଦେଶକ୍ରମେ ସେବାଗ୍ରାମ (ଓ୍ୱାର୍ଦ୍ଧା) ତାଲିମ କେନ୍ଦ୍ରରୁ ଫେରିଆସି ବ୍ରଜରାଜନଗରର କାଗଜକଳ ହାଇସ୍କୁଲରେ ଶିକ୍ଷକତା କରୁଥାଏ । ତାଙ୍କର ଏଭଳି ଆଦେଶ ଯୋଗୁ ମୋର ଗୋଟିଏ ବର୍ଷ ନଷ୍ଟ ହୋଇଥିବାରୁ କ୍ଷତିପୂରଣ ଦାବି କରିବାରେ ସହକାରୀ ସ୍କୁଲ ସବ୍‌ଇନ୍‌ସ-ପେକ୍ଟର ଅଥବା ମୌଳିକ ସ୍କୁଲରେ ସହକାରୀ ଶିକ୍ଷକ ଭାବେ ନିଯୁକ୍ତିକୁ ସେହି ସରକାରୀ ସ୍ୱୀକୃତ ବୋଲି ପୁଣି ପ୍ରତ୍ୟାଖ୍ୟାନ କରିଥିଲି । କାଗଜକଳ ହାଇସ୍କୁଲରେ ଥିବାବେଳେ ପ୍ରାୟ ଜୁଲାଇ ମାସ ଆରମ୍ଭରେ ଦିନେ ମାଳତୀ-ଦେବୀ (ନୁମା) ସମ୍ବଲପୁର ଠାରୁ ମିଲ୍ ସେକ୍ରେଟେରୀ ବିଶ୍ୱନାଥବାବୁଙ୍କୁ ଫୋନ୍ କରି ମୋ ସହିତ କଥା ହେବାକୁ ଜଣାଇଲେ ଓ ବାଜିରାଉତ ଛାତ୍ରାବାସରେ ପ୍ରଧାନଶିକ୍ଷକ ଭାବେ ଯୋଗ ଦେବାକୁ କହିଲେ । ଏହା ସରକାରୀ ସ୍ୱୀକୃତ ନୁହେଁ ବୋଲି ପ୍ରତିଶ୍ରୁତି ମଧ୍ୟ ଦେଲେ । ପୂର୍ବରୁ ବାପୀଙ୍କ ଠାରୁ ସେ ମୋର ସ୍ୱୀକୃତ ସର୍ତ୍ତକଥା ବୁଝିଥିଲେ । ମୁଁ ସେହିବର୍ଷ ଅଗଷ୍ଟ ୧୬ ତାରିଖଦିନ ଶଲ୍ୟରୀ ଉଚ୍ଚ ମୌଳିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଭାବେ ବାଜିରାଉତ ଛାତ୍ରାବାସରେ ଯୋଗଦେଲି ।

ଋତନ୍ତ୍ରରେ ପ୍ରଜାମଣ୍ଡଳ କରିଥିବା ମାଳତୀ ଚୌଧୁରୀ ଯେ ତାଙ୍କ ସ୍କୁଲପାଇଁ ଜଣେ ଶିକ୍ଷକ ଖୋଜି ଖୋଜି ଏତେ ସର୍ତ୍ତ ଆରୋପ କରୁଥିବା ମୋ'ଭଳି ଏକ ଗୋଠଖଣ୍ଡିଆ ପାଖରେ ପହଞ୍ଚି ପାରିଲେ; ତାହାହିଁ ମୋତେ ପ୍ରଥମେ ଆଶ୍ଚର୍ଯ୍ୟ କରିଥିଲା । ଗୋଠଖଣ୍ଡିଆ ଏଇଥିପାଇଁ ଯେ ଶିକ୍ଷକତା କରିବି, ତାହା ପୁଣି ବେସରକାରୀ ହୋଇଥିବ । ସେ ପାଇଁ କଲେଜ ପାଠପଢ଼ାରେ ସହାୟକ ହୋଇଥିବା D. P. I. ଅଫିସ କରାଣି ସ୍ୱୀକୃତ ଛାଡ଼ିଥିଲି । ଠିକ୍ ସେହିଦିନ ବି. ଏ. ପରୀକ୍ଷାଫଳ ବାହାରିଲା । ପାରମ୍ପରିକ ଶିକ୍ଷାପାଇଁ ତାଲିମ୍ ନ ନେଇ ମୌଳିକ ଶିକ୍ଷା ପାଇଁ ମନ-ବଳାଇ ସେବାଗ୍ରାମ ଯାଇଥିଲି । ବାପୀ ସଙ୍ଗଠକ ଥିବା ବେଳେ ଏଥିପାଇଁ ମୋତେ ବାଛିଥିଲେ । ସେଠୁ ଅଧାବାଟରୁ ଫେରିବା କଥା କହୁଛି । ସବୁ ମୌଳିକ ବିଦ୍ୟାଳୟ ସରକାରୀ ବୋଲି ଧାରଣାଥିବାରୁ ଶେଷରେ କାଗଜକଳ ହାଇସ୍କୁଲରେ ଯୋଗ ଦେଇଥିଲି । "ଅନ୍ଧଚନ୍ଦ୍ରା ଚମତ୍କାରିଃ" ଥିଲି ।

ନୁମାଙ୍କ ପ୍ରତିଶ୍ରୁତି ପ୍ରତି ଆସ୍ଥାବାନ ହୋଇ ଏକ ଘରୋଇ ମୌଳିକ ବିଦ୍ୟାଳୟରେ ଶିକ୍ଷକତାର ଅଗ୍ରହ ନେଇ ଆସିଲି । ଆଜି ନୁମାଙ୍କ ଦେହାନ୍ତ ପରେ ମଧ୍ୟ ସେ ଆସ୍ଥା ମୋ ଭିତରେ ସେହିଭଳି ଅସ୍ଥାନ ଜମାଇ ରହିଛି । ତାଙ୍କର ମୋପ୍ରତି ଥିବା ଆସ୍ଥାର ସ୍ୱଜନ ହୋଇ ପାରିଛି ବୋଲି ମୁଁ ବିଶ୍ୱାସ କରେ । ଯଦିଓ ଶିକ୍ଷକତାର ଶେଷ ପର୍ଯ୍ୟନ୍ତ ମୁଁ ତାଙ୍କ ପାଖରେ ରହି ପାରିନଥିଲି । ଏହା ମୋ ଭିତରେ ତାଙ୍କ ପ୍ରତି ବା ତାଙ୍କର ମୋ ପ୍ରତି ଆସ୍ଥାର ଅଭାବ ଯୋଗୁ ହୋଇନାହିଁ । ବରଂ ଚମ୍ପତିମୁଣ୍ଡା ପୋଷ୍ଟବେସିକ୍ ସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକଙ୍କର ଅପ୍ରତ୍ୟାଶିତ ବିଦାୟ ପରେ ମୋତେ ତାହାର ଦାୟିତ୍ୱ ବହନ କରିବାକୁ ନୁମାଙ୍କର ଏକାନ୍ତ ଆଗ୍ରହଜନିତ ଚାପ ଏଡ଼େଇବା ହିଁ ତାହାର ମୂଳ କାରଣ ଥିଲା । ନୁମାଙ୍କ କଥା ମାନି ଦାୟିତ୍ୱ ନେଇଥିଲେ ସେତେବେଳର ଦ୍ୱନ୍ଦ୍ୱରେ ମୁଁ ଅକାରଣ ପର୍ଯ୍ୟୁଦସ୍ତ ହୋଇ ଯିବାର ଆଶଙ୍କା ଥିଲା । ଏବେ ଭାବୁଛି ନୁମାଙ୍କ ବିଚାର ବୁଝିବା ନିର୍ଭୁଲ ଥିଲା । ତାହା ଗ୍ରହଣ କରିଥିଲେ ଚମ୍ପତିମୁଣ୍ଡାର ପରିବେଶ ଓ ପରିସ୍ଥିତି ନିଶ୍ଚୟ ଆମ ପାଇଁ ନୈରାଶ୍ୟଜନକ ହୋଇ ନଥାନ୍ତା । ଘଟଣାଚକ୍ରରେ ଆମ ଗାଁରେ ଗଠିତ ହେଉଥିବା ହାଇସ୍କୁଲରେ ଯୋଗଦେବାକୁ ଗାଁଲୋକଙ୍କର ଆଗ୍ରହ ଓ ମୋତେ ନେବାକୁ ନୁମାଙ୍କ ପାଖରେ ସେମାନଙ୍କର ନିବେଦନ ହେତୁ ସେ ବାଧ୍ୟ ହୋଇ ମୋତେ କିଛି ଦିନ

ପାଇଁ ଗ୍ରୁଡ଼ଦେଇଥିଲେ ମଧ୍ୟ ମୁଁ ଶିକ୍ଷକତାରୁ ଅବସର ନେବାଯାଏ ଆଉ ଅନୁଗୋଳ ଫେରି ପାରି ନଥିଲି । ଯଦିଓ ପ୍ରାୟ ୨୫ ବର୍ଷର ଏହି ବ୍ୟବଧାନ ଭିତରେ ବି ମୁଁ ବାଜିରାଉତ ଛାତ୍ରାବାସର ପରିଚାଳନା ସହ ସର୍ବଦା ସଂପୃକ୍ତ ରହିଥିଲି ।

ଏତେ କଥା ଅବତାରଣା କରିବାର ଅଭିପ୍ରାୟ ହେଉଛି ଯେ ବାସ୍ତବତାକୁ ଅନ୍ତରଙ୍ଗତା ସହ ବୁଝିବା ଓ ସେ ଅନୁଯାୟୀ କାର୍ଯ୍ୟ କରିବାରେ ବୋଧହୁଏ ନୂମାଙ୍କ ଭଳି ବ୍ୟକ୍ତିତ୍ୱ ଖୁବ୍ କମ୍ ମିଳିବେ । ମିଳିବେ ନାହିଁ କହିଲେ ବି ଅତ୍ୟୁକ୍ତି ହେବ ନାହିଁ । ସାଧାରଣ ଜୀବନରେ ସେ ଯେତେବେଳେ ଯେଉଁ ନିଷ୍ପତ୍ତି ନେଇଛନ୍ତି ତାହା ତାଙ୍କ ପାଇଁ ଶେଷ ଏବଂ ଅପରିବର୍ତ୍ତନୀୟ । ପଛକୁ ଅନେଇବାକୁ ଯେପରି ଆଉ ତର ନାହିଁ । ଏହା ଉପରେ ଅନେକ କଥା ମନେ ପଡ଼େ । ଗୋଟି ଗୋଟି ଲେଖିବା ସହଜ ଜଣା ପଡ଼ୁଥିଲେ ବି ସମ୍ଭବ ନୁହେଁ । ତାଙ୍କ ଜୀବନ ଏକ ଖୋଲା ବହି ପରି ଯାହାର ପୃଷ୍ଠା ସବୁ ସର୍ବସାଧାରଣ ଯେକୌଣସି ମୁହୂର୍ତ୍ତରେ ବି ଦେଖିବାକୁ ପାଉଥିଲେ । ରାଜନୈତିକ ନିଷ୍ପତ୍ତିଠାରୁ ଆରମ୍ଭ କରି ସାମାଜିକ ବିପ୍ଲବ ପର୍ଯ୍ୟନ୍ତ ସବୁଥିରେ ତାଙ୍କର ନିଷ୍ପତ୍ତି ଅଭ୍ରାନ୍ତ ଥିଲି । ଓଡ଼ିଶା ପ୍ରଦେଶ କଂଗ୍ରେସର ସଭାନେତ୍ରୀ ପଦରୁ ଇସ୍ତଫା ଦେଲେ ଯେ ଆଉ ରାଜନୀତିକୁ ଫେରି ନାହାନ୍ତି । ଜରୁରି ପରିସ୍ଥିତି ପରେ ୧୯୭୭ର ନିର୍ବାଚନରେ ରାଜ୍ୟ ବିଧାନସଭା ପାଇଁ ଯେଉଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ତାହା ସଂପୂର୍ଣ୍ଣ ନୀତିଗତ ଥିଲି । ହାରିଯିବା ଜାଣି ମଧ୍ୟ ସେ ଠିଆ ହୋଇଥିଲେ । କ୍ଷମତା ରାଜନୀତିକୁ ଫେରିବାର ଉଦ୍ଦେଶ୍ୟ ତହିଁରେ ନ ଥିଲି ।

ଯେକୌଣସି ସେବାକ୍ଷେତ୍ରରେ ସେ ଏଭଳି ଆଗୁଆ ହୋଇ କାମ କରୁଥିଲେ ଯେ ତାଙ୍କର ସହକର୍ମୀ ଓ ଅନୁଗାମୀମାନେ ବହୁ ପଛରେ ପଡ଼ିଯାଉଥିଲେ । ଏପାଇଁ ଗାନ୍ଧିଜୀ ତାଙ୍କୁ ତୋଫାନୀ କହୁଥିଲେ । ଇଂରାଜୀରେ ଯାହାକୁ ଫାୟାର ବ୍ରାଣ୍ଡ୍ ବୋଲି ବୁଝାଯାଉଥିଲି । ସେ କେବଳ ପ୍ରଗତିବାଦୀ ବା Progressive ନ ଥିଲେ । ବରଂ ଝଡ଼ଝଞ୍ଜା ଭଳି ଆଗକୁ ମାଡ଼ି ଚାଲିବାରେ ଅଭ୍ୟସ୍ତ ଥିଲେ । ଯାହାକୁ Aggressive ବୁଝାଯାଇପାରେ । ଅନୁଗୋଳର ଉନ୍ନତି ଘଟଣାରେ ଏହା ଅତ୍ୟନ୍ତ ସ୍ପଷ୍ଟ ଥିଲି । ଏହି ଅନ୍ଧବିଶ୍ୱାସଜନିତ ଘଟଣା ବା ଦୁର୍ଘଟଣାକୁ ବିରୋଧ କରିବାରେ ତାଙ୍କର ସ୍ପଷ୍ଟ- ଦୃଢ଼ ଦୃଷ୍ଟିଭଙ୍ଗୀ ବା strong conviction ଥିଲି । ସେପାଇଁ ଶାସକଙ୍କୁ ସେ "ମାଇଚିଆ" ଓ ଶାସକମାନଙ୍କୁ ଡରୁଆ, ଛେରୁଆ ପର୍ଯ୍ୟନ୍ତ କହିବାକୁ ପଛେଇ ନାହାନ୍ତି । ସେତେବେଳେ ବାପୀ ନନ୍ଦେ ମୁଖ୍ୟମନ୍ତ୍ରୀ ଥିଲେ । ଏପରିକି ସେତେବେଳର ମଧ୍ୟପ୍ରଦେଶ (Central Province)ର ମୁଖ୍ୟମନ୍ତ୍ରୀ ରବିଶଙ୍କର ଶୁକ୍ଲଙ୍କ ଭଳି ସମ୍ମାନାସ୍ପଦ ବ୍ୟକ୍ତି ଉନ୍ନତିଲେଇ ହୁକୁମରେ ବସିଥାଇ ନୂମାଙ୍କୁ ଦେଖା କରିବା ବେଳେ କଠୋର ସମାଲୋଚନାର ପାତ୍ର ହୋଇଥିଲେ । ସେ ସଂପୂର୍ଣ୍ଣ ମ୍ରିୟମାଣ ହୋଇ ଫେରିବାବେଳେ ଆମେ ଯୁବକମାନେ ବୁଝାବୁଝି ହେଲୁ । "ମୁହଁ କୁମ୍ଭୁଣ୍ଡା କରି ଫେରିଲେ ।" ନୂମାଙ୍କ ଦୃଢ଼ତା ଯୋଗୁ ଅନ୍ଧବିଶ୍ୱାସକୁ ଏଭଳି ଏକ ଶକ୍ତ ପ୍ରହାର ମିଳିଛି ଯେ ଓଡ଼ିଶାରେ ଆଉ ସହଜରେ ମୁଣ୍ଡ ଟେକି ପାରିବ ନାହିଁ । ସାରା ସରକାର, ସାରା ଶାସନତନ୍ତ୍ର ଚୂପ୍‌ଚାପ୍ ତାଙ୍କ କଥା ମାନିଲା ପରି ଦେଖାଗଲା ।

ସେହିଭଳି, ଆଦିବାସୀ ସେବାକ୍ଷେତ୍ରରେ ପଶିଲେ ଯେ କୋରାପୁଟ, ଗଞ୍ଜାମ, ଫୁଲବାଣୀଠାରୁ ଆରମ୍ଭ କରି କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ସୁନ୍ଦରଗଡ଼, କେନ୍ଦୁଝର, ମୟୂରଭଞ୍ଜ ଓ ଢେଙ୍କାନାଳ ପର୍ଯ୍ୟନ୍ତ ସବୁ ଆଦିବାସୀ ବହୁଳ ଜିଲ୍ଲାର ଅଗମ୍ୟ ବଣ ପାହାଡ଼ ଡେଇଁ ଅବହେଳିତ, ନିର୍ଯ୍ୟାତିତ ଓ ନିଷ୍ପେସିତମାନଙ୍କୁ କେବଳ ଯେ ଅଭୟ ପ୍ରଦାନ କଲେ ସେତିକି ନୁହେଁ, ସେମାନଙ୍କର ଅଭ୍ୟୁଥାନ ଓ ଉନ୍ନତି ପାଇଁ ନିରବଚ୍ଛିନ୍ନ, ନିଷ୍କପଟ ଉଦ୍ୟମ କରି ଇତିହାସ ସୃଷ୍ଟି କରିଅଛନ୍ତି । ଉତ୍କଳ ନବଜୀବନ ମଣ୍ଡଳ ଓ ବାଜିରାଉତ ଛାତ୍ରାବାସ କେବଳ ଏହାର ଜୀବନ୍ତ ସାକ୍ଷୀ ନୁହଁନ୍ତି, ତାଙ୍କର ଅଦମ୍ୟ ଉତ୍ସାହ, ଉଦ୍ଦୀପନା ଓ ତ୍ୟାଗର ଚିର ପ୍ରବହମାନ ପବିତ୍ର ଫଲ୍‌ଗୁଧାରା ସ୍ୱରୂପ ବିଦ୍ୟମାନ ।

ବ୍ୟକ୍ତିଗତ ସଂପର୍କ କ୍ଷେତ୍ରରେ ତାଙ୍କର ସ୍ନେହ, ସହାନୁଭୂତି ଓ ଉଦାରତା ଅତୁଳନୀୟ ଅଟେ । ଆଧ୍ୟାତ୍ମବାଦୀଙ୍କ ପାଇଁ ଭଗବାନ ସର୍ବତ୍ର ବିଦ୍ୟମାନ (Omnipresent) ଭଳି ଆମମାନଙ୍କ ପାଇଁ ନୂମା ସର୍ବତ୍ର ହାଜର ଥିଲେ । କାହାର କେଉଁ ଅସୁବିଧାରେ ସେ ସାହାଯ୍ୟ କରୁ ନ ଥିଲେ ତାହା କହିହେବ ନାହିଁ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କର ସେ ମାଆ ଥିଲେ । ଜର ଶର୍ଦ୍ଦିଠାରୁ ଆରମ୍ଭ କରି ଡାକ୍ତରଖାନାରେ ଧାରାବାହିକ ଚିକିତ୍ସିତ ହେବା ପର୍ଯ୍ୟନ୍ତ ସବୁଠି ସେ ଉପସ୍ଥିତ ଥିଲେ । ତାଙ୍କର ଉପସ୍ଥିତି ହିଁ ଯଥେଷ୍ଟ

ଥିଲା । ଆବଶ୍ୟକ ସାହାଯ୍ୟ କେଉଁଠୁ କେଉଁଠୁ ଆସିଯାଉ ଥିଲା, ଶୂନ୍ୟରୁ କୋଟିବସ୍ତୁ ସଦୃଶ । ତାଙ୍କର ଆଦର ଓ ସ୍ନେହଶ୍ରଦ୍ଧା ହିଁ ସବୁ ରୋଗ-ଯନ୍ତ୍ରଣା ଉପଶମର ମହୌଷଧି ଥିଲା । ସେ ଦୃଷ୍ଟିରୁ ତାଙ୍କ ସଂସ୍ପର୍ଶରେ ଆସିଥିବା କିଏ ବା ଉପକୃତ ନ ହୋଇଛି ? କଟକ ବଡ ଡାକ୍ତରଖାନାରେ ଏକାଧିକବାର ଦୀର୍ଘକାଳ ଧରି ନିଜର ଚିକିତ୍ସା କଥା ମନେ-ପଡ଼େ । ନୁମାଙ୍କ ଦେହାନ୍ତର ମାତ୍ର କେତେ ମାସ ପୂର୍ବେ ଢେଙ୍କାନାଳରେ ବୁଲୁଥିବାବେଳେ ମୋର ସେହି ବେଳର କଥା ଦିନେ ପ୍ରସଙ୍ଗକ୍ରମେ ସ୍ମରଣ କରାଇ ଦେବାରେ ସେ କହିଲେ, "ଏଇଟା କଅଣ ଏଭଳି ଗୋଟେ ମନେରଖିବା କଥା ? ମୁଁ କେବଳ ପହଞ୍ଚି ଯାଉଥିଲି ସିନା ।" ମାତ୍ର ତାଙ୍କର ଏହି ପହଞ୍ଚିବା ସେ ଡାକ୍ତରର ଚିକିତ୍ସା ଠାରୁ ଅଧିକ କାମ କରିଛି, ସେ କାହିଁକି ତାହା ହିସାବ କରିବେ ? ଆତ୍ମିକ ଉଦାରତାର ଏହାଠାରୁ ବଡ଼ ଉଦାହରଣ ଆଉ କଅଣ ହୋଇପାରେ ?

କର୍ମୀର କାମକୁ ପସନ୍ଦ କରିବା ଓ ତାକୁ ଉତ୍ସାହିତ କରିବାରେ ନୁମା ଏବଂ ବାପୀ ତାଙ୍କ ସମସାମୟିକମାନଙ୍କ ଠାରୁ ବହୁ ଆଗୁଆ ଥିଲେ । ଏ ଦୁହିଁଙ୍କ ଭିତରେ ଦୃଷ୍ଟି-କୋଣର ଫରକ୍ ଏତିକି ଥିଲା ଯେ ବାପୀ ମଣିଷର ଦୁର୍ବଳ-ତାକୁ ମାନବିକ ସ୍ୱାଭାବିକତା ଦୃଷ୍ଟିରୁ ବିଚାର କଲାବେଳେ ନୁମା ତାହାକୁ ସାମାଜିକ ଲାଭକ୍ଷତିର ତରାଜୁରେ ତଉଲି-ବାରେ ବେଳେ ବେଳେ ଅସହିଷ୍ଣୁ ହୋଇ ପଡ଼ନ୍ତି । ଯାହାକୁ କେତେକ ତାଙ୍କର ଏକଛତ୍ର ମନୋଭାବର ପରିଚୟ ବୋଲି ବିଚାରି ତାଙ୍କ ପ୍ରତି ସମସ୍ତ ଶ୍ରଦ୍ଧା ସତ୍ତ୍ୱେ ତାଙ୍କ ଠାରୁ ଦୂରେଇ ଯାଇଛନ୍ତି । ମାତ୍ର ମୁଁ କେବେ ଏହାକୁ ଏକଛତ୍ରପଣିଆ ବୋଲି ବିଚାରି ନାହିଁ । କର୍ମୀ ଭିତରେ ଲେଶମାତ୍ର ଦୁର୍ବଳତା ରହିବା ଉଚିତ ନୁହେଁ ବୋଲି ତାଙ୍କ ନିଜସ୍ୱ ବିଚାରର ଏହା ପରିପ୍ରକାଶ ମାତ୍ର । ତାଙ୍କ ଠାରୁ କୌଣସି କାରଣରୁ ଦୂରେଇ ଯାଇଥିବା ଅଧିକାଂଶ ଅନୁତାପ କରିଥିବା ମୁଁ ଜାଣେ । ତାଙ୍କର କଠୋରତା ବ୍ୟକ୍ତିଗତ ଓ ଆକ୍ରୋଶଶୂନ୍ୟ ଥିଲା । ମାନବସେବା ପାଇଁ କର୍ମୀ ଗଢ଼ିବା ତାଙ୍କ ପାଇଁ ଖାଲି ଏକ କଳା ନଥିଲା, ବିଜ୍ଞାନ ମଧ୍ୟ ଥିଲା । କଠୋରତା ବା ବାସ୍ତବତାକୁ ଛାଡ଼ି ବିଜ୍ଞାନ ସମ୍ଭବ ନୁହେଁ । ହିସାବ କିତାବ ଓ ମାପଚୂପର କଥା ।

ନୁମାଙ୍କର ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ ଆମ ପାଇଁ କେବଳ ଅନୁଧ୍ୟେୟ ନୁହେଁ, ଗବେଷଣାର ବିଷୟ ମଧ୍ୟ । ଭୁଶୁଡ଼ି ପଡ଼ିଥିବା ବା ପଡ଼ୁଥିବା ମଣିଷ ଜୀବନକୁ ସଜାଡ଼ିବାର ବ୍ୟାକୁଳତା ନେଇ ସେ ନିଜେ ଏବଂ ଅନ୍ୟ ସମସ୍ତେ ସୁସ୍ଥ ରହିବା ଉପରେ ସର୍ବପ୍ରଥମ ଗୁରୁତ୍ୱ ଦେଉଥିଲେ । ସୁସ୍ଥ ରହିବା କେବଳ ଏକ ବ୍ୟକ୍ତିଗତ ଆବଶ୍ୟକତା ନୁହେଁ, ପରନ୍ତୁ ସାମାଜିକ ଆବଶ୍ୟକତା ବୋଲି ଭାବୁଥିବାରେ ନୁମାଙ୍କର ଦୃଷ୍ଟିକୋଣ ସେ ଏକାନ୍ତ ଦାୟୀ । ମୁଁ ଏହା ସ୍ୱୀକାର କରେ ଏବଂ ଯେଉଁଠି ସୁଯୋଗ ପାଏ ଏଭଳି ବୁଝାଇଥାଏ । ଗୋଟିଏ ଉଦାହରଣ ଦେବି । ୧୯୫୦ରେ ମୁଁ ବାଜିରାଉତ ଛାତ୍ରାବାସ ଆସିଲି ବେଳେ ତାଙ୍କର ପିଇବା ପାଣି ନେଇ ଯେଉଁ ଅଭ୍ୟାସ ଦେଖିଥିଲି, ଜୀବନର ଶେଷ ପର୍ଯ୍ୟନ୍ତ ତାହା ଅପରିବର୍ତ୍ତିତ ରହିଥିଲା । ଗତ ବହୁ ବର୍ଷ ଧରି ସେ ଫୁଟା ପାଣି ପିଉଥିଲେ ଏବଂ ଢାଙ୍କୁଣୀ ସହ ସେହି ଗୋଟିଏ ଷ୍ଟିଲ ଗ୍ଲାସ ହିଁ ବରାବର ପାଖରେ ରହୁଥିଲା । ଅନ୍ୟ କୌଣସି ଗ୍ଲାସରେ ସେ କେବେ ପାଣି ପିଇଥିବା ଆମେ ଦେଖି ନାହୁଁ । ସ୍ୱାସ୍ଥ୍ୟ ସଚେତନତାରେ ସବୁଠୁ ଆଗୁଆ ଥିଲେ । ମଧୁମେହ (Diabetes) ପିଲାଦିନରୁ ତାଙ୍କର ଏକମାତ୍ର ଦୁରାରୋଗ୍ୟ ବ୍ୟାଧି ଥିଲା, ଯାହା ସହିତ ବଞ୍ଚିବାକୁ ସେ ଶିଖିଥିଲେ । ବେଳେବେଳେ ସେ ତାକୁ ଖାତିର କରୁ ନଥିଲେ । ମିଠା ନ ଖାଇବାକୁ ଡାକ୍ତରଙ୍କ ପରାମର୍ଶକୁ ସେ ହସି ଉଡ଼ାଇ ଦେଉଥିଲେ । କହୁଥିଲେ "ଡାକ୍ତରମାନେ ତ ମିଠା ନ ଖୁଆଇ ମଧୁମେହ ରୋଗୀଙ୍କୁ ଅମର କରି ରଖିଛନ୍ତି !"

ଆମ ଜୀବନ ଉପରେ ନୁମାଙ୍କର ପ୍ରଭାବ ନେଇ ଭିନ୍ନ ଭିନ୍ନ ଗ୍ରନ୍ଥ ଲେଖା ଯାଇପାରେ । ମାତ୍ର ଗୁଣ୍ଡୁଚି ମୂଷା ସେ ସେତୁବନ୍ଧ ପାଇଁ କଅଣ ପଥର ବୋହି ପାରିବ ?

ସାଧାରଣ ସମ୍ପାଦକ,
ଉତ୍କଳ ନବଜୀବନ ମଣ୍ଡଳ,
ଅନୁଗୋଳ

———

# ମନେ ପଡ଼େ !

□ ଜ୍ୟୋତିରିନ୍ଦ୍ର ମୋହନ ଜୋଆର୍ଦ୍ଦାର

ମନେପଡ଼େ ସେହିଦିନ କଥା—ସତେ କି ଏଇ ସେ ଦିନ—ବୋଧହୁଏ ତେଷଠି କି ଚଉଷଠି ବର୍ଷ ତଳେ କଟକରେ ମୋର 'ମିନୁଦି' (ମାଳତୀ ଦେବୀ) ସହିତ ଦିନେ ଦୁପର ବେଳା । ଏକ ପ୍ରକାର ଲକ୍ଷ୍ୟହୀନ ଭାବରେ ବୁଲି ବୁଲି ଯାଇ ପହଞ୍ଚିଲୁ ଶ୍ରୀରାମଚନ୍ଦ୍ର ଭବନ ପାଖରେ । ମୁଁ ସେତେବେଳେ କଲେଜରୁ ପାସ କରି ବାହାରି ସେ ପର୍ଯ୍ୟନ୍ତ ଚାକିରି-ବାକିରି ପାଇ ନ ଥାଏ—ଯଦିଓ ଏକାବେଳକେ ବେକାର ନ ଥାଏ । ମିନୁଦି ସେତେବେଳକୁ ଦୁଇଟି ସନ୍ତାନର ମା—ଉତ୍ତରା ଓ ବିନାୟକ—ଆଉ ତେଣେ ଅତି ସକ୍ରିୟ ସ୍ୱାଧୀନତା ସଂଗ୍ରାମୀ, ଦୁଇଥର ଜେଲ ଖଟି ସାରିଥାନ୍ତି । ମୋର ମାଆଙ୍କ ସହିତ ତାଙ୍କର ଅଶେଷ ହୃଦ୍ୟତା ଥାଏ, ଦିଦି ବୋଲି ଡାକନ୍ତି, ମୋର ମା ତାଙ୍କୁ ଡାକନ୍ତି 'ମିନୁ' । କିନ୍ତୁ ମୁଁ ତାଙ୍କୁ ମାଉସୀ ବା ମୋର ପିଲାଦିନ ସାଙ୍ଗ ବୁଲୁ (ମନମୋହନ ଚୌଧୁରୀ) ପରି ଖୁଡ଼ୀ (ବା କାକିମା) ବୋଲି ଡାକିବାକୁ ପ୍ରସ୍ତୁତ ନ ଥାଏ । ସେ କେବଳ ମୋର 'ମିନୁଦି' ।

ଶ୍ରୀରାମଚନ୍ଦ୍ର ଭବନରେ ସେଦିନ ହଠାତ୍ ଜନସମାଗମ ଦେଖି 'କଅଣ ହେଉଛି' ବୋଲି ଆମେ ଭିତରକୁ ଗଲୁ । ଦେଖିଲୁ ଲକ୍ଷ୍ମୀକାନ୍ତବାବୁଙ୍କର (ପ୍ରଫେସର ଲକ୍ଷ୍ମୀକାନ୍ତ ଚୌଧୁରୀ) ଉତ୍କଳ ସଙ୍ଗୀତ ସମାଜ ତରଫରୁ ଉତ୍କଳ ସଙ୍ଗୀତ ସମ୍ମିଳନୀ ହେଉଛି । ଓଡ଼ିଶା ଓ ଓଡ଼ିଶା ବାହାରୁ ମଧ୍ୟ ଗୋଟିଏ ଦୁଇଟି ସ୍ଥାନରୁ—ନିମନ୍ତ୍ରିତ ହୋଇ ଆସିଥିବା ସଙ୍ଗୀତ ଓସ୍ତାଦ୍-ମାନଙ୍କର ଗାୟନ ବାଦନ ଓ ସଙ୍ଗୀତ ଆଲୋଚନା—ଅର୍ଥାତ୍ ପ୍ରକୃତ ସଙ୍ଗୀତ ସମ୍ମିଳନୀ—ଆରମ୍ଭ ହେବା ପୂର୍ବରୁ ତିନି ଚାରି ଦିନ କେବଳ ଶିକ୍ଷାର୍ଥୀମାନଙ୍କର ସଙ୍ଗୀତ ପ୍ରତିଯୋଗିତା ସେତେବେଳକୁ ହେଉଥାଏ । ସେଇଦିନ ଚାଲିଥାଏ 'ଧ୍ରୁପଦ' ଓ 'ଖିଆଲ୍' ଗାୟନର ପ୍ରତିଯୋଗିତା । ଅପ୍ରତ୍ୟାଶିତ ଭାବରେ ଏମିତି ଏକ ସଙ୍ଗୀତ ମେଳାରେ ପହଞ୍ଚି ଯାଇ 'ମିନୁଦି'ଙ୍କ ମନ ନାଚିଉଠିଲା । ସେ ତ ଶାନ୍ତିନିକେତନର ଛାତ୍ରୀ ଥିଲେ । ସେଠି ସେ ଯେ କେବଳ ରବୀନ୍ଦ୍ର ସଙ୍ଗୀତ ଶିଖିଥିଲେ ରବୀନ୍ଦ୍ରନାଥଙ୍କ "ଆମାର ସୁରେର ଭଣ୍ଡାରୀ" ଦିନ୍-ଦା'ଙ୍କ (ଦିନେନ୍ଦ୍ର ନାଥ ରବୀନ୍ଦ୍ରନାଥଙ୍କ ବଡ଼-ଭାଇଙ୍କର ପୌତ୍ର) ପାଖରୁ ସେତିକି ନୁହେଁ, ସେଠି ମହାରାଷ୍ଟ୍ରୀୟ ଆଚାର୍ଯ୍ୟ ଭୀମରାଓ ଶାସ୍ତ୍ରୀଙ୍କ ଶାସ୍ତ୍ରୀୟ ସଙ୍ଗୀତର କ୍ଲାସ୍ ଓ ପିଠାପୁରମ୍ ମହାରାଜାଙ୍କର ସଭାବାଦକ ଆଚାର୍ଯ୍ୟ ସଙ୍ଗମେଶ୍ୱର ଶାସ୍ତ୍ରୀଙ୍କ ଦକ୍ଷିଣୀ ବୀଣାର (ସରସ୍ୱତୀ ବୀଣା) କ୍ଲାସ୍‌କୁ ମଧ୍ୟ ଯାଉଥିଲେ । ସେ ପାଠ ଲାଗି ତାଙ୍କର ଅବଲମ୍ବନ ଥିଲା ଭାରତୀୟ ସଙ୍ଗୀତ ତତ୍ତ୍ୱର ଅବିସ୍ମରଣୀୟ ପୁନରୁଦ୍ଧାରକ ସ୍ୱର୍ଗୀୟ ପଣ୍ଡିତ ବିଷ୍ଣୁନାରାୟଣ ଭାତଖଣ୍ଡେଙ୍କ ଦୁଇଟି ସଂସ୍କୃତ ପୁସ୍ତକ 'ଶ୍ରୀମଲ୍ଲକ୍ଷ୍ୟସଂଗୀତମ୍' ଓ 'ଅଭିନବ ରାଗମଞ୍ଜରୀ' । ଶାନ୍ତିନିକେତନରେ ବୀଣାବାଦନରତା ଏକ ଅନାମିକାଙ୍କର ତନ୍ମୟ ମୂର୍ତ୍ତି ତାଙ୍କ ଅଜାଣତରେ ବନ୍ଦୀ ହୋଇ ରହି ଯାଇଛି ବିଦେଶୀ ପର୍ଯ୍ୟଟକ ମାର୍ଟିନ୍ ହର୍ଲିମାନ୍‌ଙ୍କ (Martin Hurlimann) ବୃହତ୍ ଫୋଟୋଚିତ୍ର-ଗ୍ରନ୍ଥ Picturesque India ଭିତରେ । ତା ପୁଣି ପରେ ଦେଖା ଯାଇଥିଲା (ଅଧୁନା ଲୁପ୍ତ)—The Illustrated Weekly of Indiaର ପ୍ରଚ୍ଛଦପଟରେ, ଅନେକେ ଦେଖି ଚିହ୍ନିଥିବେ ତା ମାଳତୀ ଦେବୀଙ୍କର ବୋଲି ।

ଏପରି ମଣିଷର ମନ ସେ ସଙ୍ଗୀତ ଉତ୍ସବରେ କଣ ଅସ୍ଥିର ଧରି ରହି ପାରିବ ! ଆଉ କିଏ ହୋଇଥିଲେ ବା ସଙ୍କୋଚ କରନ୍ତା, ଇତସ୍ତତଃ ହୁଅନ୍ତା । କିନ୍ତୁ ମାଳତୀ ଦେବୀ ତ ମାଳତୀ ଦେବୀ । ସେ ସିଧା ସଳଖ ଯାଇ ପ୍ରତିଯୋଗିତା-ବିଚାରକମାନଙ୍କ ପାଖରେ ଅନୁରୋଧ ଜଣାଇଲେ, ସେମାନଙ୍କର ଅନୁମତି ହେଲେ ସେ ଏଠି କିଛି ଶାସ୍ତ୍ରୀୟ ସଙ୍ଗୀତ ଗାନ କରନ୍ତେ । ତାଙ୍କର ଅକୃତ୍ରିମ ଆଗ୍ରହରେ ମୁଗ୍ଧ ବିଚାରକମାନେ ରାଜି ହୋଇଗଲେ ତାଙ୍କ ଲାଗି ସମ୍ମିଳନୀର କିଛି ସମୟ ବ୍ୟୟ କରିବା ପାଇଁ । ସେ ସେଠୁ ବସି ପଡ଼ି ସାଙ୍ଗେ ସାଙ୍ଗେ ଆରମ୍ଭ କଲେ ଚୌତାଲର ହିନ୍ଦୀ ଧ୍ରୁପଦ, ଇମନ୍ ରାଗର ଲକ୍ଷଣଗୀତ 'ସବ ଗୁଣିଜନ ଇମନ ଗାବତ । ଗୌବର ସୁର କରତ ସାଥ' । ମୋତେ କହିଲେ ହାରମୋନିୟମରେ ସଙ୍ଗତ କରିବାକୁ । ତାଙ୍କର ସରଳ ସାନନ୍ଦ ତନ୍ମୟତା ଯେପରି ନିମିଷକ ମଧ୍ୟରେ ସଞ୍ଚାରିତ ହେଲା ଶ୍ରୋତାମାନଙ୍କ ମଧ୍ୟରେ ।

ଭୁବନେଶ୍ୱର

# ଏକ ସଂଗ୍ରାମମୟ ଜୀବନ

□ ସୁଷମା ପାଣିଗ୍ରାହୀ

ଭାରତ ଇତିହାସରେ ଯେଉଁ ମହିଳାମାନଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି କିମ୍ବା ଭବିଷ୍ୟତରେ ରହିବ, ସେମାନଙ୍କ ମଧ୍ୟରେ ଓଡ଼ିଶାର ଅଳ୍ପ କେତେକଙ୍କ ନାମ ଉଲ୍ଲେଖନୀୟ । ତଥାପି ସେମାନଙ୍କ ଜୀବନୀ ଉପରେ ସେପରି ଆଖିଦୃଶିଆ ଆଲୋଚନା କିମ୍ବା ଆଲୋକପାତ ଏ ପର୍ଯ୍ୟନ୍ତ କରାଯାଇ ପାରି ନାହିଁ । ଏହାର କାରଣ ଓଡ଼ିଶାରେ ପୂଜ୍ୟ ପୂଜାରେ ଆନ୍ତରିକତାର ଅଭାବ ।

ଏ ବର୍ଷ ଭାରତ ତା'ର ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ ଯାଉଛି । ଏହି ଅବସରରେ ବହୁ ଆଡ଼ମ୍ବରପୂର୍ଣ୍ଣ ଜାକଜମକର ଆୟୋଜନ କରାଯାଇ ଏହି ଉତ୍ସବକୁ ପାଳନ କରାଯିବାର ଯୋଜନା ହେଉଛି । ଏହି ପରିପ୍ରେକ୍ଷୀରେ ସେଇମାନଙ୍କ ନାମ ପ୍ରଥମେ ନେବା ଆବଶ୍ୟକ ଯେଉଁମାନଙ୍କ ତ୍ୟାଗପୂତ ଜୀବନ ଆମ-ମାନଙ୍କ ଆଜି ଏହି ଆନନ୍ଦ ଆଣିଦେବାରେ ସାହାଯ୍ୟ କରିଛି । ବିଶେଷ କରି ସେହି ମହୀୟସୀ ମହିଳାମାନେ, ଯେଉଁମାନେ ଅସୀମ ତ୍ୟାଗ ଓ ନିଜର ସର୍ବସ୍ୱ ବଳିଦାନ ଦେଇ ଯାଇଛନ୍ତି ସ୍ୱାଧୀନତା ସଂଗ୍ରାମର ଯଜ୍ଞ ବେଦୀରେ, ସମଗ୍ର ଜୀବନ ହିଁ ଅର୍ପିତ ହୋଇଛି, ସେମାନଙ୍କର ଦେଶର ଅଗଣିତ ଦଳିତ ପତିତ ଓ ନିଃସହାୟ ମଣିଷର ସେବାରେ, ଆଜି ଯଦି ସେମାନଙ୍କ ନାମ ସ୍ମରଣ ନ କରାଯାଏ, ତେବେ ଭବିଷ୍ୟତ ଆମକୁ କଦାପି କ୍ଷମା ଦେବ ନାହିଁ ।

ଏହି ମହୀୟସୀ ମହିଳାମାନଙ୍କ ମଧ୍ୟରେ ସ୍ୱର୍ଗତ ମାଳତୀ ଦେବୀ ଚୌଧୁରୀ—ଯେ ଥିଲେ ଓଡ଼ିଶାର ବିଖ୍ୟାତ ଚୌଧୁରୀ ବଂଶର କୁଳବଧୂ । ବିଂଶ ଶତାବ୍ଦୀର ମଧ୍ୟବର୍ତ୍ତୀ ସମୟରେ ଘୋର ରକ୍ଷଣଶୀଳ ଜମିଦାର ପରିବାରର କନିଷ୍ଠ ପୁତ୍ରବଧୂ ରୂପେ ମାଳତୀ ଦେବୀ ପଦାର୍ପଣ କଲେ ଓଡ଼ିଶାର ଏକ ଗ୍ରେଟିଆ ପଲ୍ଲୀ ଅଞ୍ଚଳରେ । ସେତେବେଳର ସମାଜ ଓ ପାରିବାରିକ ଶୃଙ୍ଖଳା କଡ଼ାକଡ଼ି ଭାବେ ପାଳନ କରା-ଯାଉଥିଲା, ମାଳତୀ ଦେବୀ ବିବାହ କରିଥିଲେ, ସେତେ-ବେଳର ଯୁବ ବିପ୍ଳବୀ ନେତା ନବକୃଷ୍ଣ ଚୌଧୁରୀଙ୍କୁ । ସମାଜର ସମସ୍ତ କୁସଂସ୍କାର ବିରୋଧରେ ସ୍ୱର ଉଠାଇ ତାକୁ ଭାଙ୍ଗି ଦେବାକୁ ବ୍ରତୀ ହୋଇଥିବା ଜଣେ ଯୁବକ, ପ୍ରଚଣ୍ଡ ଭାବେ ଦେଶକୁ ଭଲ ପାଉଥିବା ସ୍ୱାଧୀନତା ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କର ଧର୍ମପତ୍ନୀ ଭାବେ, ମାଳତୀ ଦେବୀ ଦୃଢ଼ ଭାବରେ ଜୀବନ ରଙ୍ଗମଞ୍ଚରେ ନିଜର ଭୂମିକା ଉପସ୍ଥାପିତ କରି-ଥିଲେ, ଅବଶ୍ୟ ଏଥିପାଇଁ ସେ ପରୋକ୍ଷଭାବେ ନିଜର ବଡ଼ ଜାଆ ତଥା ଭଗିନୀ ସଦୃଶ ମା' ରମା ଦେବୀ ଓ ଦେଢ଼ଶୁର ଗୋପବନ୍ଧୁ ଚୌଧୁରୀଙ୍କଠାରୁ ସମର୍ଥନ ଓ ସହଯୋଗ ଲାଭ କରିଥିଲେ । ବିବାହ ପୂର୍ବରୁ ନିଜକୁ ସେ ପ୍ରସ୍ତୁତ କରି ନେଇ-ଥିଲେ । ଓଡ଼ିଆ ଘରର ବୋହୂ ହିସାବରେ ସେ ଜଣେ ସୁଗୃହିଣୀର କର୍ତ୍ତବ୍ୟ କରିବା ସଙ୍ଗେ ସଙ୍ଗେ ନବବାବୁଙ୍କ ପରି ରାଜନୀତିଜ୍ଞଙ୍କର ସହଧର୍ମିଣୀଙ୍କ ଦାୟିତ୍ୱ ମଧ୍ୟ ଗ୍ରହଣ କରିବା । ସେ ସମୟର ରାଜନୀତି ଓ ଆଜିର ରାଜନୀତି ଭିତରେ ଆକାଶ ପାତାଳ ପ୍ରଭେଦ ଥିଲା । ନବକୃଷ୍ଣ ଚୌଧୁରୀ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଦେଶ ପାଇଁ ସର୍ବସ୍ୱ ତ୍ୟାଗ କରି ତ୍ୟାଗମୟ ଜୀବନକୁ ଆଦରି ନେଇଥିଲେ ।

ଶାନ୍ତିନିକେତନରେ ନିଜର ବାଲ୍ୟଶିକ୍ଷା ଲାଭ କରିଥିବା ମିନୁ ସେନ୍ କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କର ପାଦତଳେ ବସି ରବୀନ୍ଦ୍ର ସଙ୍ଗୀତ ଗାନ କରିବାରେ ପରମ ଶାନ୍ତି ଲାଭ କରୁଥିଲେ । ଶାନ୍ତିନିକେତନର ଶାନ୍ତ ବାତାବରଣ ଓ ଆମ୍ର କୁଞ୍ଜ ଭିତରେ ଏହି କୋକିଳ କଣ୍ଠୀ ମିନୁ ସେନ୍ ପରେ ଏକ ସଂଗ୍ରାମୀ ଜୀବନ ଭିତରକୁ ପାଦ ବଢ଼ାଇ ଥିଲେ । ଅନ୍ତର ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ବହ୍ନି ଦକ୍ ଦକ୍ ହୋଇ ଜଳୁଥିଲା । ଅନୁକୂଳ ବାତାବରଣ ମିଳିଗଲା—ଚୌଧୁରୀ ବଂଶରେ ଏକ ସଂଗ୍ରାମମୟ ଜୀବନ-ଯାତ୍ରା ମଧ୍ୟରେ ନିଜକୁ ସାମିଲ୍ କରି ।

ସତ୍ୟ ପଥ ପିଚ୍ଛିଳ ହେଲେ ମଧ୍ୟ ମଙ୍ଗଳକର, ତାର ଜୀବନରେ ସାର୍ଥକତା ଓ ସଫଳତା ଆଣିଦିଏ ଶେଷରେ । ଲକ୍ଷ୍ୟ ହାସଲ ଦିଗରେ ବଜ୍ର ଶପଥ ନେଇଥିବା ଏହି ତରୁଣୀ ଆସ୍ତେ ଆସ୍ତେ ସମସ୍ତ ସାଂସାରିକ ସୁଖ, ଅସୁବିଧା, ସଂଗ୍ରାମ ଓ

ପ୍ରଥମାର୍ଦ୍ଧରେ ସମସ୍ତ ସୁଖ ସ୍ୱପ୍ନକୁ ପାଣୋଠ ଦେଇ ଅଗେଇ ଯାଇଥିଲେ ଆଗକୁ । ଦୃଷ୍ଟି ଥିଲା ଲକ୍ଷ୍ୟ ହାସଲ କରିବା । ପୁଷ୍ପିତ ଚଲାପଥକୁ ଛାଡ଼ି, କଣ୍ଟକିତ ପଥ, ଦୁଃଖ, ବିପଦ, କ୍ଲେଶ ଓ କଷ୍ଟକୁ ହସି ହସି ବରଣ କରି ନେବା ଥିଲା ତାଙ୍କର ଆନନ୍ଦ, ସେଇଥିରୁ ସୁଖର ସନ୍ଧାନ କରିବା ଥିଲା ତାଙ୍କର ପସନ୍ଦ ।

ସ୍ୱାମୀଙ୍କ ସହ ସହଗାମିନୀ ମାଳତୀ ଦେବୀଙ୍କର ସଂଘର୍ଷମୟ ଜୀବନଯାତ୍ରାରେ ଅନ୍ତର କେତେ ସ୍ୱପ୍ନୀ, ଯୋଦ୍ଧା ସଂଗ୍ରାମୀ ମିଳିଗଲେ । କାରଣ ଲକ୍ଷ୍ୟ ଥିଲା ଗୋଟିଏ—ନିଜ ମାତୃଭୂମିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା—ସ୍ୱରାଜ ଆଣିବା । ଧନୀ, ଦରିଦ୍ର କିମ୍ବା ପଣ୍ଡିତ ମୂର୍ଖ—କିଛି ବାଛ ବିଚାର ନ ଥିଲା । ସମସ୍ତେ ଏକ ସ୍ୱରରେ ଏକ ମନରେ ଲାଗି ପଡ଼ିଥିଲେ—ସ୍ୱାଧୀନତା ପାଇଁ । ପ୍ରଥମେ କଂଗ୍ରେସ ସହ ସମାଜବାଦୀ ଚିନ୍ତାଧାରାର ଏକତ୍ର ମିଳିମିଶି ରାଜନୀତିରେ ଯୋଗ ଦେଇଥିବା ନବଯୁବକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ଭଗବତୀ ଚରଣ ପାଣିଗ୍ରାହୀ । ଯାହାଙ୍କର ଚିନ୍ତାଧାରା ସହ ଖାପ ଖାଉଥିଲା ନବକୃଷ୍ଣ ଚୌଧୁରୀଙ୍କର ଭାବନା ଓ ଲକ୍ଷ୍ୟ । ପରେ ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନରେ ବିଶ୍ୱାସୀ ନବବାବୁ କଂଗ୍ରେସର ନେତୃତ୍ୱ ନେଇ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ହେଲେ । ଭଗବତୀବାବୁ ସମାଜବାଦ ଚିନ୍ତାଧାରାକୁ ନେଇ ଏକ ନୂଆ ଦଳ ଗଢ଼ି ଭାରତବର୍ଷରେ କମ୍ୟୁନିଷ୍ଟ ପାର୍ଟିକୁ ସମର୍ଥନ କରିବା ସହ ଓଡ଼ିଶାରେ ଏହାର ଭିତ୍ତି ପ୍ରସ୍ତର ସ୍ଥାପନ କଲେ । କିନ୍ତୁ ଏଥିରେ ମନୋମାଳିନ୍ୟର ପ୍ରଶ୍ନ ହିଁ ନ ଥିଲା । କାରଣ ନବକୃଷ୍ଣ ଚୌଧୁରୀ ବୟସ ତଥା ଅଭିଜ୍ଞତାରେ ଭଗବତୀ ବାବୁଙ୍କଠାରୁ ଢେର ଅଧିକ ବଡ଼ ଥିଲେ । ଫଳରେ ଭଗବତୀ ବାବୁ ନବବାବୁଙ୍କୁ ନିଜର ବଡ଼ ଭାଇ ତୁଲ୍ୟ ମାନ୍ୟ କରୁଥିଲେ ଓ ଭକ୍ତି ମଧ୍ୟ ସେତିକି କରୁଥିଲେ । ଯାହାକି ପରବର୍ତ୍ତୀ ସମୟରେ ଦୁଇ ପରିବାର ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟ ବଢ଼ାଇ ପାରିଥିଲା ।

ସ୍ୱାଧୀନତା ସଂଗ୍ରାମର ମଧ୍ୟବର୍ତ୍ତୀ ସମୟରେ ଗଡ଼ଜାତ ଆନ୍ଦୋଳନରେ ନବବାବୁ ଓ ମାଳତୀ ଦେବୀଙ୍କ ଡାକରାରେ ଭଗବତୀ ସକ୍ରିୟ ଯୋଗଦାନ କରିଥିଲେ । ଓଡ଼ିଶାରେ ଜମିଦାରୀ ପ୍ରଥା ଲୋପ ଓ ରାଜତନ୍ତ୍ରର ଲୋପ କରିବା ପାଇଁ ଏହି ଦୁଇ ନେତାଙ୍କର ଅବଦାନ ଅତୁଳନୀୟ । ବ୍ରିଟିଶ ସରକାରର କୂଟନୀତି ଫଳରେ ଓଡ଼ିଶାର କେତେକ ଗଡ଼ଜାତରେ ରାଜାମାନଙ୍କୁ ଓ ଜମିଦାରମାନଙ୍କୁ ପ୍ରଭାବିତ କରି ବ୍ରିଟିଶ ସରକାର ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରିବାରେ ବେଶ୍ ସଫଳ ହୋଇଥିଲା । ଗଡ଼ଜାତ ପ୍ରଜା ଆନ୍ଦୋଳନ ତୀବ୍ରତର ହେଲା ଢେଙ୍କାନାଳରେ । ଢେଙ୍କାନାଳର ପ୍ରଜାମଣ୍ଡଳର ଦାୟିତ୍ୱରେ ଥିବା ସାଥୀ ବୈଷ୍ଣବ ପଟ୍ଟନାୟକଙ୍କ ସହ ଯୋଗସୂତ୍ର ସ୍ଥାପନ କରିଥିଲେ ନବକୃଷ୍ଣ ଚୌଧୁରୀ ଓ ଭଗବତୀ ଚରଣ ପାଣିଗ୍ରାହୀ । ଫଳରେ ପ୍ରଜାମଣ୍ଡଳର ଆନ୍ଦୋଳନ ପ୍ରବଳ ଭାବରେ ବ୍ୟାପିଥିଲା ଓ ରାଜାଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରାଯାଇଥିଲା । ଏହାର ନେତୃତ୍ୱ ନେବା ପାଇଁ ଭଗବତୀ ବାବୁ ଢେଙ୍କାନାଳରେ ବିପ୍ଳବକୁ ତ୍ୱରାନ୍ୱିତ କରୁଥିଲେ । ଏହି ସମୟରେ ବାଳକ ବାଜିରାଉତ ଇଂରେଜ ପୁଲିସ ଗୁଳିର ଶିକାର ହୋଇ ଟଳି ପଡ଼ିଲା । ମାଳତୀ ଦେବୀ—ଭଗବତୀ ବାବୁଙ୍କର ତରୁଣୀ ସ୍ତ୍ରୀଙ୍କୁ ପ୍ରବୋଧନା ଦେଇ ସେତେବେଳେ କହିଥିଲେ - "ସରସ୍ୱତୀ ତରୁଟୁ କି ଭଗବତୀଙ୍କୁ ଗୁଳି ମୁହଁକୁ ପଠାଇ ଦେଇ ?" ଆଜି ସେଥିମଧ୍ୟରୁ କେହି ବି ଜୀବିତ ନାହାନ୍ତି, କିନ୍ତୁ ଏଇ କଥା କେଇ ପଦ ତୁଏତ ସରସ୍ୱତୀଙ୍କ ମନରେ ଯଥେଷ୍ଟ ସାହସ ଓ ଧୈର୍ଯ୍ୟ ଭରି ଦେଇଥିଲା ।

ନବକୃଷ୍ଣ ଚୌଧୁରୀଙ୍କର ଦୁଇ କନ୍ୟା ବୁବୁ ଓ ଉନୁ । ଏମାନେ ନବବାବୁଙ୍କୁ ବାପୀ ବୋଲି ଡାକନ୍ତି—ସେଇ ଅନୁସାରେ ମା' ମାଳତୀ ଦେବୀଙ୍କୁ ନୁମା ବୋଲି ଡାକନ୍ତି—ଏଇ ଡାକରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବାଜିରାଉତ ଛାତ୍ରାବାସର ସମସ୍ତ ଛାତ୍ରଙ୍କ ମଧ୍ୟରେ, ଘରେ ଓ ବାହାରେ ନୁମା ଓ ବାପୀ ନାମରେ ସେମାନେ ଅଧିକ ପ୍ରିୟ—ଅଧିକ ଆପଣାର ଥିଲେ ।

ଭାରତବର୍ଷ ସ୍ୱାଧୀନ ହେଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ । ଏହାର ଚାରିବର୍ଷ ପୂର୍ବରୁ ଅର୍ଥାତ୍ ୧୯୪୩ ଅକ୍ଟୋବର ମାସରେ ଭଗବତୀ ବାବୁ ଅକାଳରେ ପ୍ରାଣତ୍ୟାଗ କଲେ । ବିଧବା ପତ୍ନୀ ସରସ୍ୱତୀ ପାଣିଗ୍ରାହୀ ଓ ଛୋଟିଆ ଶିଶୁ କନ୍ୟା, ସେମାନେ ପୁଅ ରାମଚଣ୍ଡି ସାହୁ ତାଙ୍କ ଘରେ ଆସି ରହିଲେ । ପରେ ପରେ ନବକୃଷ୍ଣ ଚୌଧୁରୀ ସ୍ୱାଧୀନ ଭାରତ ବର୍ଷର ଓଡ଼ିଶା ପ୍ରଦେଶର ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନେଲେ । କିନ୍ତୁ ସ୍ନେହର ବନ୍ଧନ, ବନ୍ଧୁତ୍ୱର ବନ୍ଧନ ଭୁଲି ନ ଥିଲେ ନୁମା କିମ୍ବା ବାପୀ । ରାମଚଣ୍ଡି ସାହୁର ଶ୍ରେଷ୍ଠ ଘର ଟିରେ ଏବେ ବି ଗୁଞ୍ଜୁଛି ରହିଛି—ଯେଉଁଠି ଓଡ଼ିଶାର

ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ସସ୍ତ୍ରୀକ ଆଗମନ କରିଥିଲେ—ପାଦରେ ଚପଲ ଚପଲ, ଏହି ଆଦର୍ଶ କିଛି କମ୍ ନୁହେଁ । ନୁମା'ଙ୍କ କଥା ଅନୁସାରେ, ସେହି ଦିନଠାରୁ ବାପୀ ନୁହେଁ—'ବଡ଼ବାପା' ବୋଲି ଡାକିବାକୁ ନୁମା କହିଥିଲେ ଭଗବତୀଙ୍କର ଝିଅମାନଙ୍କୁ । ନବକୃଷ୍ଣ ଚୌଧୁରୀଙ୍କ ପରି ମୁଖ୍ୟମନ୍ତ୍ରୀ, ତାଙ୍କର ଆଦର୍ଶ ଓ ମହତ୍ତ୍ୱ ଆଜି ପର୍ଯ୍ୟନ୍ତ କୌଣସି ମୁଖ୍ୟମନ୍ତ୍ରୀଙ୍କ ଠାରେ ପରିଲକ୍ଷିତ ହୋଇ ନାହିଁ ।

ଜୀବନ ଯାହାର ଶେଷ ପର୍ଯ୍ୟନ୍ତ ତ୍ୟାଗ ଓ ସେବାକୁ ଧର୍ମ ଓ ଜୀବନର ବ୍ରତ ବୋଲି ଧରି ନେଇ ବାଣ୍ଟି ଚାଲିବା ଦୃଷ୍ଟାନ୍ତ ଆଜିକାଲି ବିରଳ । ଜୀବନର ସବୁ ସୁଖ ଓ କ୍ଷମତାର ଶୀର୍ଷ ସ୍ଥାନରେ ପହଞ୍ଚି ମଧ୍ୟ ସେ ସବୁକୁ ତୁଚ୍ଛ କରି ଦେବାର ନିଦର୍ଶନ ଆଜି ଦେଖିବାକୁ ମିଳେନା । ଆଜିକାଲି ରାଜନୀତିର ଶେଷ ସୋପାନରେ ପହଞ୍ଚି ରାଜନେତାମାନେ ନିଜକୁ ଯେପରି ସୁଖ ସମୃଦ୍ଧି ମଧ୍ୟରେ ବୁଡ଼ାଇ ରଖିଛନ୍ତି—ଭାବିଲେ, ସେମାନଙ୍କୁ (ନୁମା ଓ ବାପୀଙ୍କ) ତୁଳନାରେ କ'ଣ ? ହାତ ପାଆନ୍ତାରେ ସବୁ ଥାଇ କ୍ଷଣିକ ମଧ୍ୟରେ ସବୁ ଛାଡ଼ି ଦେବାର ମନୋବୃତ୍ତି ଆଜିକାଲି କାହିଁ, ପ୍ରାଚୁର୍ଯ୍ୟ ମଧ୍ୟରେ ସନ୍ନ୍ୟାସିନୀ ଓ ସନ୍ନ୍ୟାସୀ ପରି ଜୀବନ କାଟୁଥିବା ନୁମା ଓ ବାପୀଙ୍କ ଭଳି ବ୍ୟକ୍ତିବିଶେଷ ସମାଜରୁ ବିଦାୟ ନେଇ ଗଲେଣି—ସେ ସ୍ଥାନ ଅପୂରଣୀୟ ।

ମାଳତୀ ଦେବୀ ଚୌଧୁରୀ ଅଧିକାଂଶ ସମୟ ବାଜିରାଉତ ଛାତ୍ରାବାସରେ ରହି ଦରିଦ୍ର ହରିଜନ ଓ ଆଦିବାସୀ ପିଲାଙ୍କୁ ମଣିଷ କରିବାରେ ବ୍ୟସ୍ତ କରି ଯାଇଛନ୍ତି, ନିଜେ ଯାହା କହୁଥିଲେ—ତାହାହିଁ କରି ଦେଖାଉଥିଲେ । ମାଟି ଘରେ ଖପର ଛପର ଘରେ ରହି ଗରିବମାନଙ୍କ ଅନ୍ତରକୁ ଚହ୍ଲି-ଥିଲେ । ଅଭାବ କ'ଣ, ଦୁଃଖ କ'ଣ ନିଜେ ଅଙ୍ଗେ ଅଙ୍ଗେ ଅନୁଭବ କରୁଥିଲେ । ଯେ ବାଜିରାଉତ ଛାତ୍ରାବାସ ଯାଇଛି—ଦେଖିଛି—ସେ ହିଁ ଏ କଥା ବୁଝି ପାରିବ—ତ୍ୟାଗ କାହାକୁ କହନ୍ତି—ଦେଶପ୍ରୀତି କହିଲେ ଅର୍ଥ କ'ଣ ?

ସେ ଜୀବନରେ ସବୁ ପାଇ ସବୁ ଛାଡ଼ି ଦେଇଥିଲେ । କୌଣସି ବିପଦ ଆପଦରେ ଧୈର୍ଯ୍ୟହରା ହୋଇ ପଡ଼ୁ ନ ଥିଲେ । ଏକମାତ୍ର ପୁତ୍ର ସନ୍ତାନ କାଲୁକୁ ହରାଇ ମଧ୍ୟ ଦୁଃଖରେ ଭାଙ୍ଗି ପଡ଼ି ନାହାନ୍ତି । ସଂଗ୍ରାମକୁ ଚିର ସାଥୀ କରି, ଦୁଃଖକୁ ଆଦରି ନେଇ ଗାଇ ଉଠିଥିଲେ—

'ଦୁଃଖେ ଯାଦେର ଜୀବନ ଗଡ଼ା,
ତାଦେର ଆବାର ଦୁଃଖ କରେ ?'

କବିଗୁରୁଙ୍କର ଏ ପଂକ୍ତି ସେ ନିଜ ଜୀବନରେ ବ୍ରତ କରି ନେଇଥିଲେ, ସେଥିଲାଗି ସେ ଚିରସଂଗ୍ରାମୀ ମହିଳା ମୃତ୍ୟୁରେ ମୃତ୍ୟୁ ପର୍ଯ୍ୟନ୍ତ ନିର୍ମଳ ହସ ଟିକକ ଲାଗି ରହିଥିଲା । ଯେତେ ସବୁ ପୁରସ୍କାର ମିଳିଛି ଜୀବଦଶାରେ ବା ପରେ ସେ ସବୁ ବୋଧହୁଏ ତାଙ୍କୁ ଆନନ୍ଦ ଦେଇନି—ଯେତେ ସେ ପାଇଛନ୍ତି ନିଜ ଜୀବନ ସଂଗ୍ରାମରୁ, ସଂଗ୍ରାମରେ ସେ ବଞ୍ଚିଥିଲେ—ସଂଗ୍ରାମରେ ତାଙ୍କର ଜୀବନ ଶେଷ ହେଲା ।

ପୁଷ୍ପ

---

"ମଧ୍ୟବିତ୍ତ ଶିକ୍ଷିତ ଭଉଣୀମାନେ ସମାଜରେ ପାଠ ପଢ଼ିବାର ସୁଯୋଗ ଲାଭ କରି କେତେ କୁସଂସ୍କାରକୁ ଛାଡ଼ି ପାରିଛନ୍ତି । ତଥାପି ବହୁ କୁସଂସ୍କାର ଏବଂ ସମାଜର ଅକଲ୍ୟାଣକାରୀ ଅଶୁଭ କାର୍ଯ୍ୟ ଯାହା ଶିକ୍ଷା ଯୋଗୁଁ ହ୍ରାସ ନ ପାଇ ଉତ୍ତରୋତ୍ତର ବଢ଼ିବାରେ ଲାଗିଛି । ତା' ମଧ୍ୟରେ ସର୍ବପ୍ରଧାନ ହେଉଛି ଯୌତୁକ ପ୍ରଥା । ଆଜି ଶିକ୍ଷିତ ମଧ୍ୟବିତ୍ତ ସମାଜରେ ଯୌତୁକ ପ୍ରଥା ମୂଳରେ ଯଦି ସଜୋର କୁଠାରଘାତ ନ କରାଯାଏ, ତେବେ ଏ ସମାଜ କେଉଁଠାରେ ଯାଇ ଠିଆହେବ । ସେ କଥା ଭାବିଲା ବେଳକୁ ଆତଙ୍କରେ ଦେହ ମନ ଶୀତେଇ ଉଠେ ।"

—ମାଳତୀ ଦେବୀ

# ବସୁଧୈବ କୁଟୁମ୍ବକମ୍

□ ଅନ୍ନପୂର୍ଣ୍ଣା ଦାସ

କଥା ଯେମିତି କାମ ସେମିତି । ରୋଧ କରିବାର ଶକ୍ତି କାହାରି ନାହିଁ । ଭୟରେ ମୁଁ ତାଙ୍କ ପାଖରୁ ଦୂରେଇ ରହିବାର ଚେଷ୍ଟା କରୁଛି । ସେ ବଞ୍ଚିଥିବା ଯାଏ, ଦେହାନ୍ତ ପରେ ବି ନୂମାଙ୍କ ପ୍ରତି ମୋର ଭୟଭାବ ଯାଇ ନାହିଁ । କାହିଁକି ? ଘରେ ନ ପଶୁଣୁ ଖୁଲ ମୁଣ୍ଡରେ ବାଜିଥିଲା । ୧୯୫୦ରେ ଅନୁଗୁଳରେ ମାଳତୀଦେବୀଙ୍କ ଆଶ୍ରମରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହୋଇଥିଲା । ଓଡ଼ିଶାର ଅନେକ ରଚନାତ୍ମକ କର୍ମୀ ସେଥିରେ ଯୋଗ ଦେଇଥିଲେ । ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା ରମାଦେବୀ ଓ ମାଳତୀ ଦେବୀଙ୍କ ତତ୍ତ୍ୱାବଧାନରେ ସବୁ କାମ ହେଉଥାଏ । ଭାରତର ସବୁ ପ୍ରଦେଶରୁ ସାଧାରଣ କର୍ମୀ ବିଶିଷ୍ଟ କର୍ମୀ ଓ ନେତାମାନେ ଯୋଗ ଦେବେ । ସେମାନଙ୍କ ସେବା ଚର୍ଚ୍ଚା ପାଇଁ, ଶାନ୍ତ ଶୃଙ୍ଖଳାରେ ସଭା କାର୍ଯ୍ୟ ହେବା ପାଇଁ ଓଡ଼ିଶାର କର୍ମୀମାନେ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ଭାବରେ ରାତିଦିନ ଅକ୍ଳାନ୍ତ ପରିଶ୍ରମ କରି କାମ କରୁଥାଆନ୍ତି । ସେତେବେଳେ ମୁଁ ମାତ୍ର ଦୁଇ ତିନିମାସ ହେବ କସ୍ତୁରବା ଟ୍ରଷ୍ଟରେ ଯୋଗ ଦେଇଥାଏ । କର୍ମୀ ଏବଂ କାମ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ମୋତେ ମହିଳା ସ୍ୱେଚ୍ଛାସେବିକାମାନଙ୍କ ଦାୟିତ୍ୱ ଦିଆଯାଇଥିଲା । ପ୍ରତ୍ୟେକ କର୍ମୀଙ୍କୁ ମୁଁ ମୋଠାରୁ ଉଚ୍ଚସ୍ତରର ବୋଲି ମନେ କରୁଥାଏ । କାରଣ ସେମାନେ ପୁରୁଣା ଗାନ୍ଧିବାଦୀ । ତାଙ୍କ ଭିତରୁ ଅନେକ ଭଉଣୀ ସ୍ୱାଧୀନତା ସଂଗ୍ରାମରେ ଲଢ଼ି ଜେଲ୍ ମଧ୍ୟ ଯାଇଥିଲେ । ସମସ୍ତଙ୍କୁ ମୁଁ ନମସ୍ୟ ଦୃଷ୍ଟିରେ ଦେଖୁଥାଏ । ସେମାନଙ୍କୁ ନିୟନ୍ତ୍ରଣରେ ରଖି କିଛି କାମ କରାଇବା ମୋ ଶକ୍ତି ବହିର୍ଭୂତ ବୋଲି ମୁଁ ବୋଧ କରୁଥାଏ । ଶ୍ରୀଯୁକ୍ତ ମନମୋହନ ଚୌଧୁରୀଙ୍କ ସେତେବେଳେ ବସନ୍ତ ହୋଇଥିବାରୁ ମା ରମାଦେବୀ ତାଙ୍କ ସେବାରେ ଅନେକ ସମୟ ଦେଉଥାଆନ୍ତି । ସେ ଭଲ ହେବାପରେ ଦିନେ ମା ମୋତେ କହିଲେ, "ଅନ୍ନପୂର୍ଣ୍ଣା ବୁଲୁକୁ ଯେମିତି ଧରଣର ବସନ୍ତ ହୋଇଥିଲା, ମୋ ମାଆକୁ ସେମିତି ହୋଇଥିଲା । ସେ ସେଥିରେ ଦେହ ଛାଡ଼ିଲା । ବୁଲୁକୁ ଫେରି ପାଇବି ବୋଲି ମୋର ଆଶା ନ ଥିଲା ।" ସମ୍ମିଳନୀ ବେଳେ ମୁଁ ମା'ଙ୍କର ନିର୍ଦ୍ଦେଶକୁ ବରାବର ମାନୁଥାଏ । ଅନ୍ୟ କର୍ମୀମାନଙ୍କ କାମ ତଦାରଖ କରିବାରେ ମୁଁ ଯେତେ ଧ୍ୟାନ ଦେଉଥିଲି ତାଠାରୁ ବେଶିସମୟ ନିଜେ କିଛି କାମ କରିବାରେ ଲଗାଉଥିଲି । ଭାଇ ବିନୋଦ କାନୁନଗୋ ଦିନେ ମୋତେ ଥଟ୍ଟା କରି କହିଲେ, "ଅନି ! ତମେ ବଡ଼ବାଲି, ନିଜ ହାତରେ ସବୁ କାମ କରିବାକୁ ଆଗଭର । ତୁ ସ୍ୱେଚ୍ଛା ସେବିକାମାନଙ୍କୁ କାମରେ ନ ଲଗାଇ ନିଜେ ସବୁ କାମ କରିବାକୁ ଚେଷ୍ଟା କରୁଛୁ ସେଇଥିପାଇଁ ।" ନୂମା ସେଠି ଥିଲେ । ସେ ଅନେକ କାମର ଦୋଷତ୍ରୁଟି ଦେଖାଇ କହିଲେ, "ଅନ୍ନପୂର୍ଣ୍ଣା ମୋଟେ କଣ୍ଟ୍ରୋଲ୍ କରି ପାରୁ ନାହିଁ । ତୁଙ୍ଗବିଦ୍ୟାକୁ ସ୍ୱେଚ୍ଛାସେବିକା ଦାୟିତ୍ୱରେ ରଖାଯାଉ । ତୁ ତାକୁ ଦାୟିତ୍ୱ ଦେଇ ଦେ । ଚୂନା ଓ ବୁବୁ (ଅନ୍ନପୂର୍ଣ୍ଣା ମହାରଣା ଓ ହଉରି କେଶାରି)କୁ ଯେଉଁ କାମ ଦିଅ ସେ ଦୁହେଁ ନିପୁଣ ଭାବରେ ସେ କାମ କରନ୍ତି । ବାଛିବାର କିଛି ନ ଥାଏ ।" କେତେ ଛଳନାରହିତ, ବାକ୍ଚାତୁରୀବର୍ଜିତ, ସ୍ପଷ୍ଟ ଅଭିବ୍ୟକ୍ତି । ମୁଁ ଖୁସିରେ ତୁଙ୍ଗବିଦ୍ୟାଙ୍କୁ ଦାୟିତ୍ୱ ଦେବାକୁ ରାଜି ହୋଇଗଲି । ମା ରମା ଦେବୀଙ୍କ ସମ୍ପୂର୍ଣ୍ଣ ସଞ୍ଚାଳନାରେ ରୋଷେଇ, ସଫେଇ, ଅତିଥିସେବା ଆଦି କାମ ଚାଲିଲା । ମାତ୍ର ମୋ ମନରେ ଗୋଟିଏ ପ୍ରଶ୍ନ ରହିଗଲା । ଚୂନା ଅପା, ବୁବୁ ଆବାଲ୍ୟରୁ ଯେଉଁ କାମ ଓ ପରିସ୍ଥିତି ଭିତରେ ବଢ଼ି ଆସିଥିଲେ ମୁଁ ତ ସେପରି ଚଳିନାହିଁ । ମୋତେ ଦୋଷ ଦେଲେ ମୁଁ ନାଚାର । ଗାନ୍ଧି କାମ ପ୍ରତି ଯେଉଁ ଭାବପ୍ରବଣତା ଥିଲା ସେଥିରେ ଆଘାତ ଲାଗିଲା । ସରଳ ମନରେ ଭୟର, ଭୟର ବୀଜ ରୋପି ହୋଇଗଲା ।

ମୁଁ କଟକରେ ପଢ଼ୁଥିବା ବେଳେ ମାଳତୀ ଦେବୀଙ୍କ ତେଜସ୍ୱିତା ବିଷୟରେ ଶୁଣିଥିଲି । କଟକରେ ଛାତ୍ର ଆନ୍ଦୋଳନ ହେଲା । ନବକୃଷ୍ଣ ଚୌଧୁରୀ ସେତେବେଳେ ଦିଲ୍ଲୀ ଯାଇଥିଲେ ପଣ୍ଡିତ ନେହେରୁଙ୍କ ଡାକରାରେ । ଅନ୍ୟ

ମନ୍ତ୍ରୀମାନେ ଉତ୍ତ୍ୟକ୍ତ ଛାତ୍ରଙ୍କ ପାଖକୁ ଯିବାକୁ ସାହସ କଲେ ନାହିଁ । ମାଲତୀଦେବୀ ପିଲାଙ୍କ ଭିଡ଼ ଭିତରକୁ ଏକା ପଶି-ଯାଇଥିଲେ ଆନ୍ଦୋଳନକୁ ପୋଲିସର ସହାୟତା ନ ନେଇ ଶାନ୍ତିପୂର୍ଣ୍ଣ ଉପାୟରେ ଶାନ୍ତ କରିବାକୁ । ଛାତ୍ରମାନେ ସେତେବେଳକୁ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ଉଠିଥିଲେ । ତାଙ୍କ ଭିତରେ ପଶିବା ବରୁଡ଼ ବସାରେ ହାତମାରିବା ଭଳି କଥା ଥିଲା । ମାତ୍ର ସେ ନିର୍ଭୟରେ ଯାଇଥିଲେ । ଛାତ୍ରମାନେ ତାଙ୍କୁ ଆକ୍ରମଣ କଲେ ବାକ୍ୟବାଣରେ ବ୍ୟସ୍ତ କରି । ମାତ୍ର ପରେ ତାଙ୍କର କଥାରେ ଶାନ୍ତ ହେଲେ ।

ଭୟ କରୁଥିଲେ ମଧ୍ୟ ତାଙ୍କର ସ୍ପଷ୍ଟବାଦିତା ପାଇଁ ମୁଁ ତାଙ୍କୁ ଶ୍ରଦ୍ଧା କରୁଥିଲି । ତାଙ୍କଠାରୁ ଟିକିଏ ସ୍ନେହ ପାଇବାର ଆକାଂକ୍ଷା ମୋ' ଭିତରେ ଥିଲା । ପ୍ରତ୍ୟକ୍ଷ ଗାନ୍ଧିକାମ ଗ୍ରହଣ ପରେ ତାଙ୍କୁ ଭେଟିବାକୁ ଅନୁକୂଳ ହେଉଥିଲା । ମନରେ ଭୟ ତ ଥିଲା । ମାତ୍ର ସେଥର ମୁଁ ତାଙ୍କର ବିଚିତ୍ର ବ୍ୟବହାର ଦେଖିଲି । ତାର କାରଣ ମୁଁ ଜାଣେ ନାହିଁ । ସେ ମୋତେ ସସ୍ନେହରେ ବୁଝେଇ ଦେଲେ । ମୋ ପାଇଁ ନିଜେ ରନ୍ଧାରନ୍ଧି କଲେ । ସମସ୍ତଙ୍କୁ କହିଲେ ମୋ ବଡ଼ଝିଅ ଆସିଛି । ମୁଁ ନିଜେ ରାନ୍ଧି ତାକୁ ଖୁଆଇବି ।

ନବବାବୁ ଥିବାବେଳେ ଓ ତାଙ୍କର ତିରୋଧାନ ପରେ ଆଉ କେତେଥର ମୁଁ ତାଙ୍କ ପାଖକୁ ଯାଇଛି ଯେ ହୁଏତ ମୋ ଠାରୁ କିଛି ଆଶାକରୁଥିଲେ । ମୁଁ ପୂରଣ କରିପାରି ନାହିଁ । ସେଇ ଭୟ ମୋତେ ବାଧା ଦେଉଛି । ତାଙ୍କ କାମରେ ତାଙ୍କୁ କିଛି ସାହାଯ୍ୟ କରିଥିଲେ ସେ ହୁଏତ ବେଶି ଖୁସି ହୋଇ-ଥାଆନ୍ତେ । କାରଣ ଥରେ ମୌଳିକ ଶିକ୍ଷା ସମ୍ପର୍କୀୟ ମିଟିଂ ବେଳେ ସେ କହିଲେ, "ଏଠି ଅନୁଗୁଳରେ ମୌଳିକ ଶିକ୍ଷାର ଦାୟିତ୍ୱ ଏକା ମୋ ଉପରେ । କେହି ସାହାଯ୍ୟ କରିବାକୁ ନାହିଁ । ଦିଦିଙ୍କର (ରମାଦେବୀଙ୍କର) ଶରତ, ଫକୀର, ଅମର, ଚୂନା, ଅନ୍ନପୂର୍ଣ୍ଣା ଆଦି ଅଛନ୍ତି । ତଥାପି ଏଠି ଉତ୍ତରମୌଳିକ କ୍ଲାସ ବି ଖୋଲି ଯାଇ ପାରୁଛି ଚମ୍ପତିମୁଣ୍ଡାରେ । ସେ ମୋତେ ସ୍ପଷ୍ଟ ଭାବରେ କେବେ କହିନାହାନ୍ତି ତାଙ୍କୁ ସାହାଯ୍ୟ କରିବାକୁ । ଶେଷ ଆଡ଼କୁ ମୁଁ ତାଙ୍କୁ ସ୍ନେହମୟୀ ମାତୃମୂର୍ତ୍ତି ରୂପରେ କେବଳ ଦେଖିଛି । ପିଲାଙ୍କ ପରି ତାଙ୍କ ପାଖରେ ନାନା ପ୍ରକାର ଅଳି କରିଛି ।

ଆସାମର ବରିଷ୍ଠ ନାରୀକର୍ମୀ କୁମାରୀ ଶକୁନ୍ତଳା ଚୌଧୁରୀଙ୍କ ସାଙ୍ଗରେ ଥରେ ତାଙ୍କ ପାଖକୁ ଯାଇଥିଲି । ସେତେବେଳକୁ ନବବାବୁଙ୍କ ତିରୋଧାନ ହୋଇ ସାରିଥାଏ । ନୃମାଙ୍କ ସାଙ୍ଗରେ ସେଇ ମୋର ଶେଷ ଦେଖା । କାରଣ ତାପରେ ମୁଁ ଆଉ ତାଙ୍କ ପାଖକୁ ଯାଇପାରି ନାହିଁ । ଶକୁନ୍ତଳା ଚୌଧୁରୀ ଓ ମୁଁ ଉଭୟେ କସ୍ତୁରବା ଟ୍ରଷ୍ଟରେ କାମ କରୁଥିଲୁ । ସେବାଗ୍ରାମରେ ମୌଳିକ ଶିକ୍ଷାର ଶିକ୍ଷକ ତାଲିମ କେନ୍ଦ୍ରରେ ଆମେ ଟ୍ରେନିଂ ନେଇଥିଲୁ । ସେ ଦୃଷ୍ଟିରୁ ଘନିଷ୍ଠ ସାଙ୍ଗ । ତାଙ୍କ ସାଙ୍ଗରେ ଆସାମର ଆଉ ଜଣେ ମହିଳା କର୍ମୀ ଥିଲେ । ସେମାନେ ନୃମାଙ୍କ ସାଙ୍ଗରେ କଥା-ବାର୍ତ୍ତା ସାରି ଜଳଖିଆ ଖାଇ କଟକ ଫେରିବାକୁ ବାହାରିଲେ । ମାତ୍ର ମୁଁ ଜିଦ୍ କଲି, ସେଠି ଭାତ ଖାଇ ଆସିବାକୁ । ନୃମାଙ୍କ ସ୍ୱାସ୍ଥ୍ୟ ଭଲ ନ ଥାଏ । ଦିନକୁ ଦିନ ଖରାପ ଆଡ଼କୁ ଗତି କରୁଥାଏ । ମୋ ମାଆ କେତେ ଦିନୁ ମରି ସାରିଥିଲେ । ମାଆର ଅମୃତ ଦୃଷ୍ଟି ପଡ଼ିଥିବା ଅନ୍ନ, ମାଆ ହାତର ସ୍ନେହ ସ୍ପର୍ଶ ଲାଗିଥିବା ଅନ୍ନ ମିଳିବାର ଆଉ ଆଶା ନଥିଲା । ନୃମା ଭାରି ଖୁସି ହେଲେ । ସେଠି ବସି ବସି ନିଜ ହାତରେ ଭାତ ଡାଲି ଆଦି ବାଢ଼ି ପକାଇଲେ । ବାଛୁରୀ ଦୁଧ ପିଇବାକୁ ବଳିଲା । ଗାଈ ପିଆଇବାକୁ ବଳିଲା । ସେ ଆନନ୍ଦ ଅନୁଭବୀ ବିନା ଅନ୍ୟ ଲୋକ ବୁଝିପାରିବ ନାହିଁ । ମୋ ନିଜ ମାଆ ପାଖରେ ମୁଁ କେବେ ସେମିତି ଅଝଟ ହୋଇ ନ ଥିଲି । ଖାଇସାରି ବାହାରିବା ବେଳକୁ ମୁଁ ଅଳି କଲି ନୃମାଙ୍କର ଖଣ୍ଡିଏ ପୁରୁଣା ଚଦରଲୁଗା ଆଣିବାକୁ । ସମସ୍ତେ ହସିଲେ । ମାତ୍ର ମୁଁ ଆଣିଲି ପବିତ୍ର ସ୍ମୃତି । ଆସିବାବେଳେ ନୃମା ବହୁତ ଆଦର କଲେ, ସମସ୍ତଙ୍କୁ କହିଲେ, "ବାଇଆଣୀ ଟାଏ ।" ଏହା ଅତ୍ୟନ୍ତ ବ୍ୟକ୍ତିଗତ କଥା ହେଲେ ମଧ୍ୟ ସାମୂହିକ ଜୀବନରେ ଏହାର ମୂଲ୍ୟ କଳନା କରି ହେବ ନାହିଁ । ମୁଁ ଜଣେ କର୍ମୀ । ଶହ ଶହ ନୂଆ ପୁରୁଣା କର୍ମୀ-ମାନଙ୍କ ମଧ୍ୟରେ ଜଣେ । ତାଙ୍କର ଝିଅ ନୁହେଁ କି ଝିଆରୀ ନୁହେଁ । କର୍ମୀମାନଙ୍କ ପ୍ରତି ଏହା ତାଙ୍କର ବ୍ୟବହାର, ଆନ୍ତରିକତାର ନିଦର୍ଶନ ।

"କେତ ଅଜାନାରେ ଜାନାଇଲେ ତୁମି
କେତ ଘରେ ଦିଲେ ଠାଇଁ
ଦୂରକେ କରିଲେ ନିକଟ ବନ୍ଧୁ
ପରକେ କରିଲେ ଭାଇ ।"

ହୃଦୟଟାକୁ ସେମିତି ବଡ଼ କଲେ ସିନା ସାସ ଶକ୍ତିକୁ

ପରିବାର ଉପକୃତ ହେବ । ରବିଠାକୁରଙ୍କ ପାଖରୁ ସେ ଏ କବିତାଟି କେବଳ ଗାଇବା ଶିଖି ନ ଥିଲେ । ସଂସାରର କଠିନ ବାସ୍ତବତା ଭିତରେ ଏହାକୁ ସେ ଜୀବନରେ ଉତ୍ତାରି ଦେଇଥିଲେ ।

ନବବାବୁ ଥିବା ବେଳେ ଥରେ ନବ ଜୀବନ ମଣ୍ଡଳର ମହିଳା ତାଲିମ କେନ୍ଦ୍ରର ବାର୍ଷିକ ଉତ୍ସବ ବେଳେ ମୋତେ ସଭାପତି ହେବା ପାଇଁ ଡାକ ଥିଲେ । ମୁଁ ମୋର ଅଯୋଗ୍ୟତା ଜଣାଇ ସେତେ ମନା କଲେ ମଧ୍ୟ ଶୁଣିଲେ ନାହିଁ । ଗୁରୁଜନଙ୍କ ଆଦେଶ ଟାଳି ନ ପାରି ସେଠାକୁ ଗଲି । ଶ୍ରୀମତୀ ମନୋରମା ମହାପାତ୍ର ଓଜସ୍ୱିନୀ ଭାଷାରେ ଦୀର୍ଘ ବକ୍ତୃତା ଦେଇ କାର୍ଯ୍ୟବଶତଃ ସମ୍ବଲପୁରକୁ ଚାଲିଗଲେ । ସଭାପତିଙ୍କ ଭାଷଣ ବେଳକୁ ମୁଁ ଅଳ୍ପ କିଛି କହି ପାରିଲି । ମୋର ଗଳା ରୁଦ୍ଧ ହେଲା । ଯେଉଁ ମାଆ ବାପାଙ୍କ ପ୍ରେରଣା ଓ ଶିକ୍ଷା ପାଇ ମୁଁ ମଣିଷ ହୋଇଛି ତାଙ୍କର ଆଗରେ ଗର୍ଜନ କରି ଭାଷଣ ଦେଇ ମୋର ପୌରୁଷ ଦେଖାଇବାକୁ ମୁଁ ସଂକୋଚ ବୋଧକଲି । ତପସ୍ୱୀ ତପସ୍ୱିନୀଙ୍କ ତପସ୍ୟା ସ୍ଥାନ ବାଜିରାଉତ ଛାତ୍ରାବାସ । ମୁଁ ସେଠାକାର ଧୂଳି ଟିକଏ ମୁଣ୍ଡରେ ମାରିଲେ ପବିତ୍ର ହେବ । ସେ ସ୍ଥାନ ମୋର ବାହାଦୁରି ଦେଖାଇବାର ସ୍ଥାନ ନୁହେଁ । ସେମାନେ ବସି ଥାଉଁ ଥାଉଁ ତାଙ୍କ ଆଗରେ ନିଜର ପାଣ୍ଡିତ୍ୟର ଗାରିମା ଦେଖାଇବା ବା ଅଭିଜ୍ଞତାର ଋଜୁ ସଉଦା ବାଢ଼ି ଥୋଇବା ମୁଁ ଅହଙ୍କାରର ପରିଚୟ ବୋଲି ବୋଧ କଲି । ନୂମା କହିଲେ, "ଭାଷଣ ଦେବା ଗୋଟାଏ ଅଭ୍ୟାସର କାମ ।" ମୁଁ ହୁଁ ମାରିଲି । ମୁଁ ଯେ ପ୍ରଚାରର ନୀରବ ପୂଜାରୀ ଏହା ତାଙ୍କୁ ଜାଣିବାକୁ ଦେଇ ନାହିଁ । ନବବାବୁ ମୋତେ ସବୁଦିନେ ବାବାଜୀ ବୋଲି କହନ୍ତି । ସେ ପଚାରିଲେ, "ବାବାଜୀ ଆଜ ଫେରିଯିବୁ ?" ମୁଁ ସେ ଦୁହିଁଙ୍କୁ ପ୍ରଣାମ କରି କଟକ ଫେରିଲି । ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ମୁଁ ନିର୍ଭୟରେ ଏବଂ ପରମ ଆନନ୍ଦରେ କେବେ କେମିତି ଦିନେ ଦିନେ ତାଙ୍କ ପାଖରେ ଭୁବନେଶ୍ୱରରେ ରହି ଆସେ । ନୂମା ସବୁବେଳେ କହନ୍ତି,"ରୁ ବାପାଙ୍କୁ ବେଶୀ ଭଲ ପାଉ । ତାର ଦୋଷ ତୋତେ ଅଦୌ ଦିଶେ ନାହିଁ ।" ଏହା ସବୁ ପରସ୍ପର ପ୍ରତି ସ୍ନେହାଧିକ୍ୟର କାରଣ ଭାବି ମୁଁ ହସିଦିଏ ।

ଦିନେ ନୂମା ଓ ମୁଁ ଟ୍ରେନ୍‌ରେ ଯାଉଥାଉ ସାଙ୍ଗରେ । ଅନ୍ଧଟିଏ ଆମ ତଳାକୁ ଉଠି ଗୀତ ବୋଲିଲା—"ବନ୍ଦେମାତ୍ରମ୍ ଧାରି ନେତାଜୀ ସୁଭାଷ ତୁମି ତୋ ଏଲେ ନା ଫିରେ ।" ନୂମା ତାକୁ କିଛି ପଇସା ଦେଲେ । ସେମାନେ ସାଧାରଣ ଭିକାରୀଙ୍କୁ ଭିକ ଦିଅନ୍ତି ନାହିଁ । ଅନ୍ଧକୁ ଦେଲେ । କହିଲେ, "ଅନ୍ଧ ହେଲେ ମଧ୍ୟ ସେ ବିପ୍ଳବ ଓ ବିପ୍ଳବୀଙ୍କୁ ଶ୍ରଦ୍ଧା କରି ପାଞ୍ଚଜଣଙ୍କ କାନରେ ତାଙ୍କ କଥା ପକାଉଛି । ବହୁତ ବଡ଼ କାମ ।"

ଆଜ ଭାବୁଛି ମୋର ତାଙ୍କ ପ୍ରତି ଭକ୍ତିର କାରଣ ହେଉଛି ତାଙ୍କର ଋଷ୍ଟବାଦୀତା ଓ ପ୍ରଚଣ୍ଡ କର୍ମଶକ୍ତି । ଯାହା ହେଉ ମୁଁ ତାଙ୍କର ସ୍ନେହ ପାଇ ନିଜକୁ ଧନ୍ୟ ମନେ କରୁଛି । ମୋ ଇଚ୍ଛା ପୂରଣ ହୋଇଛି । ମାତ୍ର ତାଙ୍କର କୌଣସି ଇଚ୍ଛା ମୁଁ ପୂରଣ କରିପାରି ନାହିଁ ।

ଭୁଆଁସ, ଭଦ୍ରକ

---

ପ୍ରିୟଜନ ଯାହାକିଛି ତାକୁ ବଦାନ୍ୟ ଦବାକୁ ଯେଉଁ ଜାତି ତରେ ସେ ଜାତିର ଗତିରୋଧ ହୋଇଯାଏ—ଅନ୍ନ ବସ୍ତ୍ରର କଷ୍ଟ ତାକୁ ସହିବାକୁ ହିଁ ପଡ଼େ ।

—ମାଳତୀଦେବୀ

# ସେ ରଣଚଣ୍ଡୀ, ସେ ମମତାମୟୀ !

□ ଧନେଶ୍ୱର ସାହୁ

"ମାଳତୀ ଦେବୀ ରଣଚଣ୍ଡୀ" ମୁଁ ଏହା ବିଦ୍ୟାଳୟରେ ଛାତ୍ର ଥିବାବେଳେ ବହୁ ଦଶନ୍ଧି ତଳେ ଶୁଣିଥିଲି । ଜଣେ କଳହ-ପ୍ରବଣା ବା କଳହପ୍ରିୟା ଉଗ୍ର ମହିଳାଙ୍କୁ ରଣଚଣ୍ଡୀ କୁହାଯାଏ । ଏହା ସାଧାରଣତଃ ଅସମ୍ମାନଜନକ ଅର୍ଥରେ ବ୍ୟବହୃତ ହୋଇଥାଏ । କିନ୍ତୁ କେତେକ ଶବ୍ଦମାନଙ୍କର ଅର୍ଥ ପ୍ରତୀକଧର୍ମୀ ଓ ସେମାନଙ୍କର ପ୍ରଧାନ ଅର୍ଥ ପଶ୍ଚାତରେ ଭିନ୍ନ ଅର୍ଥ ଲୁକ୍କାୟିତ ଭାବରେ ରହିଥାଏ । ମାଳତୀଦେବୀଙ୍କୁ, ଶ୍ରଦ୍ଧାରେ ହେଉ ବା ରାଗରେ ହେଉ ଯେଉଁମାନେ 'ରଣଚଣ୍ଡୀ' କହୁଥିଲେ ସେମାନେ ତାଙ୍କ ବ୍ୟକ୍ତିତ୍ୱର କିଛି ବୈଶିଷ୍ଟ୍ୟ ନିଶ୍ଚୟ ଲକ୍ଷ୍ୟ କରିଛନ୍ତି । ତାଙ୍କର ପ୍ରଶଂସକ ଓ ସମାଲୋଚକ (?) ଉଭୟ ତାଙ୍କ ଭିତରେ ସାଲିସହୀନ ଦୃଷ୍ଟିଭଙ୍ଗୀର ପରିଚୟ ପାଇଛନ୍ତି । ସେହି ପରିଚୟ ହୁଏତ ସମସ୍ତଙ୍କ ପାଇଁ ଏକା ପ୍ରକାର ନୁହେଁ ।

ସମାଜର ଜଣେ ଜଣେ ବ୍ୟକ୍ତି ପ୍ରଚଳିତ ଗାର ଭିତରେ ରହିବାକୁ ଚାହାନ୍ତି ନାହିଁ । ବିପ୍ଳବଶୀଳ ଭାବରେ ସେମାନେ ନୂଆ ବାଟ ଖୋଜନ୍ତି, ନୂତନର ସନ୍ଧାନ କରନ୍ତି । ସେହି ଅନ୍ୱେଷଣ ଭିତରେ ସେମାନେ ସମାଲୋଚିତ ହୁଅନ୍ତି ଓ ସ୍ଥଳବିଶେଷରେ ନାନା ମୂଲ୍ୟ ମଧ୍ୟ ଦିଅନ୍ତି । ତଥାପି ସେହି ସାଲିସହୀନ ବ୍ୟକ୍ତିମାନେ ଯେଉଁ ଅମଡ଼ାବାଟକୁ ବାଛନ୍ତି ତାହା କାଳକ୍ରମେ ସମ୍ଭ୍ରମସମ୍ପନ୍ନ ଆଚରଣର ସ୍ୱୀକୃତି ପାଏ ଓ ସେହି ବାଟର ପଥିକମାନେ ସମାଜ ପାଇଁ ସମ୍ମାନର ବାର୍ତ୍ତାବହ ହୁଅନ୍ତି । ଆମେ ସେମାନଙ୍କୁ ଉଗ୍ର, ରଣଚଣ୍ଡୀ ବା ସେପରି କିଛି ବିଶେଷଣ ଦେଇପାରୁ କିନ୍ତୁ ସେମାନେ ହିଁ ପ୍ରଗତିଶୀଳ ମୂଲ୍ୟବୋଧର ସୂତ୍ରଧର ଅଟନ୍ତି ।

ଆଜକୁ ସାତ ଆଠ ଦଶନ୍ଧି ତଳେ ସେତେବେଳର ସମାଜର ପ୍ରଚଳିତ ବ୍ୟବସ୍ଥା ବିରୋଧରେ ଯାଇ ମାଳତୀ ଦେବୀ ଓ ନବବାବୁ ପରସ୍ପରକୁ ଜୀବନସାଥୀ କରିବା ପାଇଁ ଯେଉଁ ନିଷ୍ପତ୍ତି ନେଇଥିଲେ ତାହା ଏକ ସାହସିକ ପଦକ୍ଷେପ ଥିଲା । ସମାଜର ଜାତି ବ୍ୟବସ୍ଥା ଅଦ୍ୟାବଧି ବଳବତ୍ତର ଥିବା ବେଳେ ଓ ଜାତି ବାହାର ବିବାହ ସମାଜର ସାଧାରଣ ଧାରା ପରିବର୍ତ୍ତେ ବ୍ୟତିକ୍ରମ ବୋଲି ଗ୍ରହଣ କରାଯାଉଥିବା ସମୟରେ ସେତେବେଳେ ଏଭଳି ପାରମ୍ପରିକ ବ୍ୟବସ୍ଥା ବିରୋଧରେ ଯିବା ନିଶ୍ଚିତ ଭାବେ ଦୃଢ଼ ମନୋବଳର ପରିଚୟ ଦିଏ । କବିଗୁରୁ ରବୀନ୍ଦ୍ରନାଥଙ୍କର ଶାନ୍ତିନିକେତନ ଉଭୟଙ୍କ ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠା ପାଇଁ ମାଧ୍ୟମ ଥିଲା ଓ ଉଭୟ ସେଠାରେ ଅଧ୍ୟୟନ ଅବସରରେ ପରସ୍ପରକୁ ଜାଣିବାର ସୁଯୋଗ ପାଇଥିଲେ । ଉଭୟଙ୍କର ଜୀବନଦୃଷ୍ଟି, ଆଦର୍ଶ ଓ ଅଭିମୁଖ୍ୟ ଭିତରେ ଯେଉଁ ସାମଞ୍ଜସ୍ୟ ଥିଲା ତାହା ତାଙ୍କ ଭିତରେ ମମତାର ବନ୍ଧନକୁ ଦୃଢ଼ କରିଥିଲା । ଯେଉଁ ମମତ୍ୱବୋଧ ପାଖରେ କିଛିଟା ପାରିବାରିକ ବିରୋଧ ଓ ଜାତିଗତ ସାମାଜିକ ପରମ୍ପରା ମୂଲ୍ୟହୀନ ହୋଇଯାଇଥିବ ।

ନବବାବୁ ଓ ମାଳତୀଦେବୀ ଉଭୟ ଆଭିଜାତ୍ୟପୂର୍ଣ୍ଣ ପରିବାରରୁ ଆସିଥିଲେ ବି ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଥିଲେ । ଗାନ୍ଧୀଜୀଙ୍କର ରଚନାତ୍ମକ କାର୍ଯ୍ୟସୂଚୀରେ ଅନୁପ୍ରାଣିତ ହୋଇ ସେହି ଲକ୍ଷ୍ୟ ସାଧନରେ ନିଜକୁ ବ୍ରତୀ କରାଇଥିଲେ । ଏକ ସ୍ୱାଧୀନ, ଶ୍ରେଣୀହୀନ ଓ ଶୋଷଣହୀନ ରାଷ୍ଟ୍ର ଗଠନ ପାଇଁ ସେତେବେଳର ସମାଜରେ ଯେଉଁ ରାଜନୈତିକ ଆନ୍ଦୋଳନଟି ଥିଲା ସେଥିରେ ଉଭୟ ସମ୍ପୂର୍ଣ୍ଣ ଭାବରେ ଝାସ ଦେଇଥିଲେ । ନିଜର ସମ୍ଭ୍ରାନ୍ତ ବଂଶ ଆଭିଜାତ୍ୟକୁ ପାଦରେ ଠେଲି ଦେଇ ସମାଜର ନିଃସ୍ୱ ସାଧାରଣ ମଣିଷ ପାଖରେ ପହଞ୍ଚି ସେମାନଙ୍କର ସୁଖଦୁଃଖରେ ଭାଗୀ ହୋଇ ସେମାନଙ୍କର ଆର୍ଥିକ, ମାନସିକ ଓ ନୈତିକ ବିକାଶ ସାଧନରେ ବ୍ରତୀ ହୋଇଥିଲେ । ସମାଜର ସାଧାରଣ ମଣିଷ ସହିତ ନିଜକୁ ମିଶାଇ ଦେବା ଭିତରେ ଏକ ଶ୍ରେଣୀହୀନ ଓ ସମତାଭିତ୍ତିକ ସମାଜର ସ୍ୱପ୍ନ ଯେ ସେମାନଙ୍କୁ ଏକଦା ବିଭୋର କରିଥିଲା, ଏହା କହିବା ଅତ୍ୟୁକ୍ତି ହେବ ନାହିଁ । ତାହା ଅଣଖିଆ ପରି ଏକ ମଫସଲ ଗାଁରେ ରହି ଲୋକଙ୍କର ଆର୍ଥିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ହେଉ; ବା ଗାଁକୁ ଗାଁ

ବହୁ ଲୋକମାନଙ୍କ ଭିତରେ ସ୍ୱାଧୀନତା ପାଇଁ ଜାଗରଣ ସୃଷ୍ଟି କରିବା ପାଇଁ ହେଉ ସବୁର କ୍ଷେତ୍ରରେ ସେ ନିଜକୁ ଅତି ସାଧାରଣ ମଣିଷ ଭିତରୁ ଜଣେ ବୋଲି ଭାବୁଥିଲେ । ସର୍ବୋଦୟ ସମାଜ ପ୍ରତିଷ୍ଠା ପାଇଁ ଜୀବନବ୍ୟାପୀ ଯେଉଁ ସ୍ୱପ୍ନ ତାଙ୍କର ଥିଲା ସେଥିରେ ସେ ପ୍ରାସାଦର ସମ୍ଭୋଗ ଭିତରେ କିପରି ଆବଦ୍ଧ ହୋଇ ରହିଥାନ୍ତେ ? ସମାଜର ସବୁ ଲୋକଙ୍କର କଲ୍ୟାଣ ଓ ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ କେତେ କେତେ ଭାଷଣ ଦିଆଯାଇ ପାରେ ବା କେତେ କେତେ ସିଦ୍ଧାନ୍ତର ଅବତାରଣା କରାଯାଇ ପାରେ କିନ୍ତୁ ସାଧାରଣ ମଣିଷ ସହିତ ଏକାଠି ରହି ତାର ସୁଖ ଦୁଃଖରେ ଭାଗୀ ହୋଇ ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ବୈଷମ୍ୟ ବିରୋଧରେ ଲଢ଼ିବା ବାସ୍ତବରେ ଅତି କଠିନ କାର୍ଯ୍ୟ ଅଟେ । କିନ୍ତୁ ମାଳତୀଦେବୀ ଏହି କଠିନ ରାସ୍ତାରେ ପଥିକ ହୋଇଛନ୍ତି । ସାଧାରଣ ମଣିଷର ଅଧିକାର, ମର୍ଯ୍ୟାଦା ପାଇଁ ସଂଗ୍ରାମକରି ଅସାଧାରଣ ପାଲଟିଛନ୍ତି ।

ସ୍ୱାଧୀନତା ପୂର୍ବରୁ କେତେକ ଗଡ଼ଜାତରେ ଅନେକ ଅନ୍ଧାକାନୁନ ରହିଥିଲା ଓ ବେଠି ଭେଟି ଏବଂ ଶୋଷଣ ଦ୍ୱାରା ଲୋକମାନଙ୍କୁ ତଳିତଳାନ୍ତ କରାଯାଉଥିଲା ତାହା ବିରୋଧରେ ନବବାବୁ ଓ ମାଳତୀଦେବୀ ନିଷ୍ଠାପର ଭାବରେ ଲୋକମାନଙ୍କୁ ସଙ୍ଗଠିତ କରିବା ପାଇଁ ଅଣ୍ଟା ଭିଡ଼ିଥିଲେ । ଢେଙ୍କାନାଳ ବା ନୀଳଗିରିର ପ୍ରଜାମଣ୍ଡଳ ଆନ୍ଦୋଳନ ପଶ୍ଚାତରେ ସେମାନଙ୍କର ଭୂମିକା ଓ ସ୍ୱାଧୀନତାର ଆରମ୍ଭ କାଳରେ ଗଡ଼ଜାତ ମିଶ୍ରଣ ପ୍ରକ୍ରିୟାରେ ସେମାନଙ୍କର ଅବଦାନ ଆଜି ଇତିହାସର ବିଷୟବସ୍ତୁ । ସମାଜର ଅନ୍ୟାୟ, ଅନୀତି, ଶୋଷଣ ବିରୋଧରେ ରଣ ହୁଙ୍କାର ଦେଇ ଏକ ସଂଗ୍ରାମୀ ଜୀବନକୁ ନିର୍ଭୀକ ଭାବରେ ଆଦରି ନେଇଥିବା ମଣିଷଟିକୁ କେହି ରଣଚଣ୍ଡୀ କହିପାରେ, କିନ୍ତୁ ଏହାଦ୍ୱାରା ତାର ବୈପ୍ଳବିକ ଜୀବନାଦର୍ଶକୁ ନ୍ୟୂନ କରାଯାଇ ପାରିବ ନାହିଁ ।

ଗାନ୍ଧିଯୁଗରେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ସାରା ଦେଶରେ ବିସ୍ତାର ଲାଭ କରିଥିଲା ସେହି ସମୟରେ ମାଳତୀ ଦେବୀ ଜାତୀୟ ସ୍ରୋତ ଭିତରେ ନିଜକୁ ମଧ୍ୟ ସାମିଲ କରିଥିଲେ । ଲବଣ ସତ୍ୟାଗ୍ରହ ପାଇଁ ହେଉ କିମ୍ବା ଭାରତ ଛାଡ଼ ଆନ୍ଦୋଳନ ପାଇଁ ହେଉ ପ୍ରତ୍ୟେକ ମୁଖ୍ୟ ଜାତୀୟ କାର୍ଯ୍ୟକ୍ରମ ସହିତ ସେ ଓ ତାଙ୍କ ପରିବାରର ସମସ୍ତେ ଯୋଗ ଦେଇଥିଲେ । ମାଳତୀଦେବୀ ଜାତୀୟ କାର୍ଯ୍ୟକ୍ରମରେ ଯୋଗ ଦେବା ସହିତ ଜାତୀୟ କାର୍ଯ୍ୟସୂଚୀକୁ ଓଡ଼ିଶାରେ ରୂପରେଖ ଦେବାରେ ଅଗ୍ରଣୀ ଭୂମିକା ନେଇଥିଲେ । ଏପରିକି ସେ ନିଜର ଛୋଟ ପୁଅକୁ ନେଇ ବନ୍ଦୀ ଜୀବନ କଟାଇଛନ୍ତି । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ପିଲାଙ୍କର ହିତକୁ ଗୁରୁତ୍ୱ ନ ଦେଇ ଜାତୀୟ ଲକ୍ଷ୍ୟ ହାସଲ ଦିଗରେ ନିଜକୁ ଉତ୍ସର୍ଗ କରିବା ଓ ସେଥିପାଇଁ ଯେକୌଣସି କଷ୍ଟ ବରଣ କରିବା ଗୋଟିଏ ବିପ୍ଳବୀ ବ୍ୟକ୍ତିତ୍ୱର ପରିଚୟ ଦେଇଥାଏ । ଏ କ୍ଷେତ୍ରରେ ତାଙ୍କର ନିଜସ୍ୱ ବୈଶିଷ୍ଟ୍ୟ ମଧ୍ୟ ପରିଲକ୍ଷିତ ହୁଏ । ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଲଢ଼ିବା ସହିତ ଓଡ଼ିଶାରେ କଂଗ୍ରେସ ଦଳ ଭିତରେ ଯେଉଁ ସାମ୍ୟବାଦୀ ଚେତନାର ସୂତ୍ରପାତ ହୋଇଥିଲା, ସେଥିରେ ନବବାବୁ ଓ ମାଳତୀଦେବୀ ଅଗ୍ରଣୀ ଥିଲେ । କାର୍ଲମାର୍କସ ଓ ଏଙ୍ଗେଲସଙ୍କ ପରି ଚିନ୍ତାନାୟକମାନଙ୍କର ବୈପ୍ଳବିକ ସିଦ୍ଧାନ୍ତକୁ ନେଇ ଶ୍ରମଜୀବୀ ମଣିଷର ମୁକ୍ତି ପାଇଁ ଯେଉଁ ସମାଜବାଦୀ ଆନ୍ଦୋଳନ ପୃଥିବୀର କେତେକ ଦେଶରେ ମୁଣ୍ଡ ଟେକିଥିଲା ସେଥିରେ ଅନୁପ୍ରାଣିତ ହୋଇ ନବବାବୁ ଓ ମାଳତୀଦେବୀ ଏକ ଶୋଷଣହୀନ ସାମ୍ୟ ସମାଜ ପାଇଁ ସଙ୍ଗଠନ ଆରମ୍ଭ କରିଥିଲେ । କଂଗ୍ରେସ ଭିତରେ ସେତେବେଳେ ଏହି ଆଦର୍ଶକୁ ପ୍ରସାର କରିବା ଜାତୀୟ ପୃଷ୍ଠଭୂମିରେ ସେମାନଙ୍କର ଉଲ୍ଲେଖନୀୟ ଅବଦାନ ଅଟେ । ମାଳତୀଦେବୀ ନିଜର ସମସ୍ତ ବ୍ୟକ୍ତିଗତ ଅଳଙ୍କାରକୁ କର୍ମୀସଂଘ ହାତରେ ପ୍ରଦାନ କରି "ସାରଥି" ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକା ସମାଜବାଦୀ ବିଚାରର ପ୍ରସାର କ୍ଷେତ୍ରରେ ଏକ ମାଇଲଖୁଣ୍ଟ ଥିଲା ।

ସ୍ୱାଧୀନତା ପରେ ଦେଶରେ ଏକ ଶୋଷଣହୀନ ଓ ସର୍ବୋଦୟ ସମାଜର ପ୍ରତିଷ୍ଠା ପାଇଁ ମାଳତୀ ଦେବୀ ଅବିରତ ସଂଗ୍ରାମ କରିଛନ୍ତି । ସାମାଜିକ ନ୍ୟାୟ ଓ ଅର୍ଥନୈତିକ ସମତା ବ୍ୟତୀତ ରାଜନୈତିକ ସ୍ୱାଧୀନତାର ମୂଲ୍ୟ ଯେ ନାହିଁ ଏହା ସେତେବେଳେ ବହୁ ଦେଶପ୍ରେମୀ ଅନୁଭବ କରିଛନ୍ତି । ବିନୋବାଙ୍କର ଭୂଦାନ ଆନ୍ଦୋଳନ ଏ କ୍ଷେତ୍ରରେ ଏକ କ୍ରାନ୍ତିକାରୀ ପଦକ୍ଷେପ ଥିଲା । ମାଳତୀଦେବୀ ସକ୍ରିୟ ରାଜନୀତିଠାରୁ ଦୂରରେ ରହି ସମାଜରେ କ୍ରାନ୍ତି ପାଇଁ ନିଜର ନିଷ୍ଠାପର ପ୍ରୟାସ ଶେଷ ପର୍ଯ୍ୟନ୍ତ ଜାରି ରଖିଛନ୍ତି । ନବଜୀବନ ମଣ୍ଡଳ, ବାଜିରାଉତ ଛାତ୍ରାବାସ, ଜୀବନ ବିଦ୍ୟାଳୟ କରିଆରେ ମୌଳିକ ଶିକ୍ଷାର ପ୍ରସାର ପରି ବହୁ ଅନୁଷ୍ଠାନ ଗଠନ କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି । ଗିରି

ବେଷ୍ଟିତ ଦୁର୍ଗମ କୋରାପୁଟ, ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳରେ ପଦଯାତ୍ରା କରି ଆଦିବାସୀ ଓ ଦଳିତ ଜନସାଧାରଣଙ୍କର ସ୍ୱାର୍ଥ ପାଇଁ ଅବିରତ ପ୍ରୟାସ କରିଛନ୍ତି । ବଣ ଜଙ୍ଗଲ ଭିତରେ ସାହୁକାର ଓ ଜମିଦାରଙ୍କର ଶୋଷଣରେ ଲୁଣ୍ଠିତ ଓ ଅତ୍ୟାଚାରିତ ହେଉଥିବା ଦଳିତ ଜନଗଣଙ୍କର ଆର୍ଥିକ ସ୍ଥିତିକୁ ବଦଳାଇବାକୁ ତଥା ସେମାନଙ୍କର ଅଧିକାର ବିଷୟରେ ସେମାନଙ୍କୁ ସଚେତନ କରାଇବାକୁ ନିଷ୍ଠାପର ଉଦ୍ୟମ କରିଛନ୍ତି । ସମାଜ ସେବାରେ ନିଜକୁ ନିୟୋଜିତ କରି ରଖିଥିବା କର୍ମୀ ତଥା ସମାଜର ଦଳିତ ଏବଂ ନିଷ୍ପେଷିତ ଲୋକଙ୍କ ପିଲାଙ୍କର ଶିକ୍ଷା ପାଇଁ ବାଜିରାଉତ ଛାତ୍ରାବାସ ପ୍ରତିଷ୍ଠା କରିଛନ୍ତି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ପାଇଁ ଶିକ୍ଷା ମାଧ୍ୟମରେ ସ୍ୱାବଲମ୍ବନଶୀଳତା ଓ ସାମାଜିକ ଉତ୍ତରଦାୟିତ୍ୱ ସୃଷ୍ଟି କରିବାରେ ତାଙ୍କ ଅନୁଷ୍ଠାନର ଭୂମିକା ସର୍ବସ୍ୱୀକୃତ ।

ମାଳତୀଦେବୀ କବିଗୁରୁଙ୍କ ଅନୁଷ୍ଠାନରେ ଅଧ୍ୟୟନ କରି ଓ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ନିଜ ଜୀବନକୁ କଳାମୟ କରି ପାରିଥିଲେ । ସଙ୍ଗୀତ, ନୃତ୍ୟ, ଚିତ୍ରକଳା ପ୍ରତି ତାଙ୍କର ରହିଥିବା ସହଜାତ ଶ୍ରଦ୍ଧା ଜୀବନର ନାନା ବାସ୍ତବତା ଭିତରେ କେବେ ବି ମଳିନ ହୋଇ ଯାଇ ନ ଥିଲା, ଅଧିକନ୍ତୁ ଜୀବନକୁ ଅଧିକ ସୃଜନଶୀଳ ଓ ରସସିକ୍ତ କରି ପାରିଥିଲା । ନିଜ ଅନୁଷ୍ଠାନର କିଶୋର କିଶୋରୀମାନଙ୍କ ପ୍ରତି ତାଙ୍କର ମାତୃସୁଲଭ ଅନୁରାଗ ଏକ କଳାତ୍ମକ ସମ୍ବନ୍ଧରେ ପରିଣତ ହୋଇଥିଲା । ନିଜର ଈପ୍ସିତ ଲକ୍ଷ୍ୟ ଦିଗରେ ସମାଜର ଅଗ୍ରଗତି ବ୍ୟାହତ ହେଉଥିବାର ଦେଖି ଏହି କଳାପ୍ରିୟ ମଣିଷଟି ବେଳକେ ବିଦ୍ରୋହୀ ହୋଇଛି । ବୌଦ୍ଧିକ ବିଳାସ ଭିତରେ ହିଂସା—ଅହିଂସାର ତାତ୍ତ୍ୱିକ ବ୍ୟାଖ୍ୟାକୁ ନେଇ କିଛି ମଣିଷ ବେଶ୍ ସନ୍ତୁଷ୍ଟ ଥା'ନ୍ତି । କିନ୍ତୁ ସମାଜର ଅନ୍ୟାୟ ଶୋଷଣ,ଅତ୍ୟାଚାର ବିରୋଧରେ କେତେକ ବ୍ୟକ୍ତି ହିଂସାତ୍ମକ ପନ୍ଥାର ଆଶ୍ରୟ ନେଇ ପରିବର୍ତ୍ତନ ଚାହିଁଥାନ୍ତି । ଗୋଟିଏ ଅନ୍ୟାୟ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ଯେଉଁଠି ଅହିଂସ ଓ ଆଇନଗତ ବିରୋଧ ନିରର୍ଥକ ହୁଏ ସେଠାରେ ମଣିଷ ପ୍ରତିଶୋଧ ପରାୟଣ ହେବା ସ୍ୱାଭାବିକ ହୋଇଥାଏ । ଏକଦା ନକସଲପନ୍ଥୀ ଆନ୍ଦୋଳନ ଏହି ପ୍ରତିହିଂସାର ପରିପ୍ରକାଶ ଥିଲା । ମାଳତୀଦେବୀ ଓ ନବବାବୁ ନକସାଲପନ୍ଥୀ ଆନ୍ଦୋଳନ ପଶ୍ଚାତରେ ଥିବା ଏହି ଆବେଗକୁ ଅନୁଭବ କରିଥିଲେ । ଏହି ହିଂସାତ୍ମକ ବିପ୍ଳବୀମାନଙ୍କୁ ସେମାନେ ନୈତିକ ସମର୍ଥନ ଜଣାଇବା ପଶ୍ଚାତରେ ଦଳିତ ମଣିଷ ପ୍ରତି ମମତ୍ୱବୋଧ ଓ ସାମାଜିକ ନ୍ୟାୟ ପାଇଁ ସେମାନଙ୍କର ବ୍ୟାକୁଳତା ବେଶ୍ ସୁସ୍ପଷ୍ଟ । ସମାଲୋଚନାକୁ ଭ୍ରୂକ୍ଷେପ ନ କରି ନାଗରିକ ସୁରକ୍ଷା ଓ ମାନବିକ ଅଧିକାର କ୍ଷେତ୍ରରେ ସେମାନେ ନୂଆ ଦିଗନ୍ତ ସୃଷ୍ଟି କରିଛନ୍ତି । ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର ବିରୋଧରେ ଜୟପ୍ରକାଶଙ୍କ ଆନ୍ଦୋଳନରେ ନବବାବୁ ଓ ମାଳତୀଦେବୀ ଓଡ଼ିଶାରେ ଅଗ୍ରଣୀ ଭୂମିକା ନେଇଛନ୍ତି । ଦୁର୍ନୀତି, ଅନ୍ୟାୟ ଓ ଅତ୍ୟାଚାର ବିଲୋପ କରି ସମାଜରେ ନ୍ୟାୟ, ସମତା ଓ ଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ସ୍ୱର ଉଠିଛି । ମାଳତୀଦେବୀ ତାହାକୁ ସମର୍ଥନ ଦେଇଛନ୍ତି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସୁ ଏହାହିଁ ତାଙ୍କ ଜୀବନରେ ସର୍ବଦା ଧ୍ୟେୟ ହୋଇଛି ।

ବ୍ୟକ୍ତିଗତ ଜୀବନରେ ମାଳତୀଦେବୀ ହେତୁବାଦୀ ଜୀବନଦୃଷ୍ଟିର ପକ୍ଷପାତୀ ଥିଲେ । ସାହିତ୍ୟ, ସଙ୍ଗୀତ, କଳା ପ୍ରତି ଏତେ ଅନୁରାଗ ଥିବା ମଣିଷଟି ସତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେ ରହିଥିଲା ତାହା ବେଶ୍ କୌତୂହଳପ୍ରଦ । ଅଲୌକିକତା ବା ଚମତ୍କାରିତାରେ ସେ ବିଶ୍ୱାସୀ ନ ଥିଲେ । ଅନଗୁଳ ନିକଟସ୍ଥ ରନ୍ତାଳେଇ ଗ୍ରାମରେ ଯେଉଁ ନେପାଳୀ ବାବା ଅଲୌକିକ ଶକ୍ତିର ଅଧିକାରୀ ବୋଲି କହି ଲୋକମାନଙ୍କୁ ଠକି ଆସୁଥିଲେ ଓ ହଜାର ହଜାର ଲୋକ ପ୍ରତ୍ୟହରେ ଭିନ୍ନ ଦୂରଦୂରାନ୍ତରୁ ହୁକୁମ ଔଷଧ ପାଇଁ ଆସୁଥିଲେ ତାର ପ୍ରକୃତ ରହସ୍ୟକୁ ପଦାକୁ ଆଣିବାରେ ମାଳତୀଦେବୀ ପ୍ରମୁଖ ଭୂମିକା ନେଇଥିଲେ । ଲୋକମାନଙ୍କର ଧର୍ମଗତ ଭାବପ୍ରବଣତାର ସୁଯୋଗ ନେଇ ଦେଶରେ ଅନେକ ବାବା, ମାତାମାନେ ଅବତାର ପାଲଟି ସାଧାରଣ ମଣିଷକୁ ବେଶ୍ ଠକୁଥାନ୍ତି । ଏହାକୁ ବିରୋଧ କରିବା ଓ ଲୋକମାନଙ୍କ ଭିତରେ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କରାଇବାକୁ ସେ ସର୍ବଦା ଗୁରୁତ୍ୱ ଦେଇଛନ୍ତି ।

ଜାତି, ଧର୍ମ ଇତ୍ୟାଦି ସଙ୍କୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ଥାଇ ସେ ମଣିଷକୁ ଭଲ ପାଇଛନ୍ତି । ସାମ୍ପ୍ରଦାୟିକ ଗଣ୍ଡଗୋଳ ସମୟରେ ସମାଜରେ ଶାନ୍ତି ଓ ସଦ୍ଭାବ ଫେରାଇ ଆଣିବାକୁ ବହୁବାର ପ୍ରୟାସ କରିଛନ୍ତି । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଯେଉଁ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟି ହୋଇଥିଲା ତାହାର ଦୂରୀକରଣ ପାଇଁ ସେ ଯତ୍ପରୋନାସ୍ତି ଉଦ୍ୟମ କରିଛନ୍ତି । ତାଙ୍କର ଉଦ୍ୟମ ଯୋଗୁଁ ୧୯୪୬ରେ କଟକରେ ହିନ୍ଦୁ ଓ ମୁସଲମାନଙ୍କ ଭିତରେ

ଜୀବନକୁ ଏଡ଼ାଯାଇ ପାରିଛି । ସେ ନୂଆଖାଲିରେ ମହାତ୍ମାଗାନ୍ଧିଙ୍କ ସହ ଯୋଗଦେଇ ସାଂପ୍ରଦାୟିକ ସଦ୍‌ଭାବ ପାଇଁ ପ୍ରୟାସ କରିଛନ୍ତି । ରାଉରକେଲାରେ ସାଂପ୍ରଦାୟିକ ଦଙ୍ଗା ସମୟରେ ସେ କ୍ଷତିଗ୍ରସ୍ତ ପରିବାରମାନଙ୍କର ପଛରେ ଛିଡ଼ାହୋଇ ସେମାନଙ୍କର ଆତ୍ମବିଶ୍ୱାସ ଫେରାଇ ଆଣିଛନ୍ତି । ସେହିପରି ହିନ୍ଦୁ ସମାଜର କୁସଂସ୍କାର, ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୋଧରେ ସେ ସର୍ବଦା ସ୍ୱର ଉତ୍ତୋଳନ କରି ଆସିଛନ୍ତି । ଯେଉଁ ପ୍ରଥା ବା ବ୍ୟବସ୍ଥା ବ୍ୟକ୍ତି ମର୍ଯ୍ୟାଦାର ପରିପନ୍ଥୀ, ତାକୁ ସେ ସର୍ବଦା ବିରୋଧ କରିଛନ୍ତି ।

ନିଜ ଆଶ୍ରମର ବହୁ ଛାତ୍ରଛାତ୍ରୀ ଓ କର୍ମୀଙ୍କୁ ମାତୃ ସୁଲଭ ସ୍ନେହ ମମତା ଯେପରି ଦେଇଛନ୍ତି ସେହିପରି ବେଳେବେଳେ ଅନୁଶାସନ ଜନିତ କଟୁତା କଠିନତ୍ୱ ମଧ୍ୟ ଜାହିର କରିଛନ୍ତି । ସାମାଜିକ ଅନ୍ୟାୟ ଓ ଶୋଷଣ ବିରୋଧରେ ବେଳେବେଳେ ରଣହୁଙ୍କାର ଦେଇଛନ୍ତି ଅଥଚ ବଣ କାନ୍ତାରର ସାଧାରଣ ଆଦିବାସୀ ସହିତ ଆତ୍ମୀୟତାର ବନ୍ଧନ ଯୋଡ଼ିଛନ୍ତି । ଅହିଂସା ଓ ସତ୍ୟାଗ୍ରହର ଆଦର୍ଶକୁ ଶ୍ରେଷ୍ଠ ମୂଲ୍ୟବୋଧ ଭାବରେ ଗ୍ରହଣ କରିଛନ୍ତି, ପୁନଶ୍ଚ ସମତା ଓ ସାମାଜିକ କ୍ରାନ୍ତି ପାଇଁ ଲଢ଼ୁଥିବା ପ୍ରଗତିଶୀଳ ବିପ୍ଳବୀମାନଙ୍କର ସ୍ୱାଧିକାର ପାଇଁ ଆଇନର ସହାୟତା ଯୋଗାଇ ନୈତିକ ସମର୍ଥନ ଦେଇଛନ୍ତି । ଏଇସବୁ ବିରୋଧାଭାସ ଦ୍ୱୈତ ତାଙ୍କ ପାଖରେ ରହିଛି । ତଥାପି ସାମଗ୍ରିକ ଭାବରେ ତାଙ୍କ ବ୍ୟକ୍ତିତ୍ୱର ଏକ ନିଜସ୍ୱ ଶୈଳୀ ରହିଛି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସୁ, ସବୁ ମଣିଷ, ମଣିଷର ଗୌରବ ନେଇ ବଞ୍ଚନ୍ତୁ, ଶୋଷଣ ଓ ଅନ୍ୟାୟର ମୂଳୋତ୍ପାଟନ ହେଉ ଏହି ଭାବନା ସର୍ବଦା ତାଙ୍କୁ ପ୍ରଭାବିତ କରିଛି । ଏହି ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇ ସେ ଭିନ୍ନ ଭିନ୍ନ ସମୟରେ ନୂଆ ପଥରେ ପଥିକ ହୋଇଛନ୍ତି ।

ଓଡ଼ିଶାର ଜନ ଜୀବନରେ ମାଳତୀଦେବୀ ଦୀର୍ଘ ସାତ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଧରି ପ୍ରମୁଖ ଭୂମିକା ନେଇଛନ୍ତି । ଅଗଣିତ ମଣିଷ, ସହକର୍ମୀ ଓ ଛାତ୍ରଛାତ୍ରୀ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣରେ ପ୍ରଭାବିତ ହୋଇଛନ୍ତି । ସେ ଥିଲେ ସାମାଜିକ ନ୍ୟାୟ ଓ ମାନବିକ ଅଧିକାରର ସତର୍କପ୍ରହରୀ । ସେ ଅନ୍ୟାୟ ଓ ଶୋଷଣ ଦୂର କରିବାକୁ ରଣଚଣ୍ଡୀ ସାଜୁଥିଲେ ମଧ୍ୟ ସେ ଅନ୍ତରରେ ଥିଲେ ମମତାମୟୀ, ଅନ୍ୟର ଦୁଃଖରେ ଦୁଃଖୀ ହେଉଥିବା ଓ ସମସ୍ତଙ୍କର ମଙ୍ଗଳ ଚାହୁଁଥିବା ଏକ ଦରଦୀ ମଣିଷ । ତାଙ୍କର ସ୍ଥାନ ଅପୂରଣୀୟ ।

ପ୍ରାଧ୍ୟାପକ, ଦର୍ଶନ ବିଭାଗ
ରାଜେନ୍ଦ୍ର ମହାବିଦ୍ୟାଳୟ, ବଲାଙ୍ଗୀର

---

ଅବଶୋଷ ତ ସବୁ ରହିଗଲା । ହେଲା କେଉଁଟା ? କିଛିତ ପୂର୍ଣ୍ଣ ହେଲାନାହିଁ । ଅବଶୋଷ ହିଁ ଅବଶୋଷ । ମତେ ଏବେ ନିଶା ନିବାରଣ କଥା ବହୁତ ଘାରୁଛି । ଏଇଟା ଏକଦମ୍ ଲୋକଙ୍କ ଭିତରେ ବଢ଼ି ଯାଇଛି । ଏଇଟା ତ ଛାଡ଼ିଲେ କିଛି ହେବନି । ମୋର ତ ସମସ୍ତ ସରି ଆସୁଛି । କୁଆଡ଼କୁ ଯାଇ ପାରୁନି । କ'ଣ କରିବି ?

—ମାଳତୀଦେବୀ

# ବିପ୍ଳବର ଆଗ୍ନେୟଗିର "ନୁମା"

☐ ଗୋପାଳପ୍ରସାଦ ଦାସ

ଚଳିତ ଶତାବ୍ଦୀଟି ସର୍ବୋଦୟ ପରିବାରମାନଙ୍କ ପକ୍ଷେ ଘୋର ଦୁର୍ଦ୍ଦିନର ବର୍ଷ । ବର୍ଷ ଆରମ୍ଭରୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ କର୍ମୀ ଓ ଆଦର୍ଶବାଦୀ ନେତା ଓ ନେତ୍ରୀମାନଙ୍କୁ ଆମେ ହରେଇ ବସିଲୁଣି । ଆଗପଛ ହୋଇ ପୂଜ୍ୟା ମାଳତୀଦେବୀ, ଶ୍ରୀଯୁକ୍ତ ମଦନମୋହନ ସାହୁ, ଶ୍ରୀଯୁକ୍ତ କୃଷ୍ଣବିହାରୀ ଦାସ ଓ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ପ୍ରମୁଖ ନେତାମାନେ ଆମମାନଙ୍କୁ ଛାଡ଼ି ଚାଲିଯିବା ଦ୍ୱାରା ସର୍ବୋଦୟ ପରିବାରର ଗୋଟିଏ ପିଢ଼ି ବା Generationର ଅବସାନ ଘଟିଲା ।

ଆଜନ୍ମବିପ୍ଳବୀ ନାରୀନେତ୍ରୀ ପୂଜ୍ୟା ମାଳତୀ ଚୌଧୁରୀ ସାରା ଦେଶରେ "ନୁମା" ନାମରେ ପରିଚିତା । ତୁଳସୀ ଦୁଇପତ୍ରରୁ ବାସିଲାପରି ବାଲ୍ୟକାଳରୁ ତାଙ୍କଠାରେ ବିପ୍ଳବର ଆଭାସ ମିଳିଥିଲା । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଜାତୀୟ ବିଦ୍ୟାଳୟ ଶାନ୍ତିନିକେତନରେ ଅଧ୍ୟୟନର ସୁଯୋଗ ମିଳିଥିବାରୁ ସ୍ୱାଧୀନ ଚିନ୍ତାଧାରା, ସ୍ୱାଧୀନ ମତବାଦକୁ ବିପ୍ଳବର ଶୀର୍ଷସ୍ଥାନକୁ ଉଠାଇ ନେଇ ଯାଇଥିଲା । ଯାହା ସତ୍ୟ ଓ ଯଥାର୍ଥ ତାହା ନିଜ ଆଚରଣରେ ପ୍ରୟୋଗ କରି ନିର୍ଭୀକ ଭାବରେ ଅନ୍ୟାୟ ଅତ୍ୟାଚାର ବିରୋଧରେ ଶେଷ ଜୀବନ ପର୍ଯ୍ୟନ୍ତ "ଏକଲା ଚଲୋ" ନୀତିରେ ବିଶ୍ୱାସ ରଖି ସଂଗ୍ରାମ କରି ଆସିଥିଲେ ।

ସେହି ବିପ୍ଳବରୁ ହିଁ ମାଳତୀ ସେନଙ୍କର ସାଂସାରିକ ଜୀବନ ଆରମ୍ଭ ହେଲା । ଶାନ୍ତିନିକେତନର ମେଧାବୀ ଛାତ୍ର ଓଡ଼ିଶାର ବିପ୍ଳବୀ ଯୁବକ ନବକୃଷ୍ଣ ଚୌଧୁରୀଙ୍କ ସହିତ ପଶ୍ଚିମ ବଙ୍ଗର ବିପ୍ଳବୀ ନେତ୍ରୀ ମାଳତୀ ସେନଙ୍କର ବିବାହ ପ୍ରସ୍ତାବ ଆସିଲା । ଉଭୟ ଉଭୟଙ୍କର ରୁଚି ଅନୁସାରେ ଜାତି, ଯୌତୁକ, ଜାତକବିହୀନ ଗାନ୍ଧୀ ନୀତିରେ ବିବାହ ସମ୍ପନ୍ନ ହୋଇଥିଲା । ଜୀବନସାଥୀ ରୂପେ ଉଭୟ ଉଭୟଙ୍କୁ ଗ୍ରହଣ କରିନେଲେ । ଶାଶୁଘରକୁ ବୋହୂହୋଇ ଆସିବା ଦିନଠାରୁ ମାଳତୀ ସେନ ପରିବର୍ତ୍ତେ ମାଳତୀ ଚୌଧୁରୀ ନାମରେ ପରିଚିତ ହେଲେ । ଗଙ୍ଗା ମହୋଦଧିର ମିଳନ ହେଲା ।

ଶ୍ରୀଯୁକ୍ତା ମାଳତୀ ଦେବୀ ପଶ୍ଚିମବଙ୍ଗର ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତଥାପି ଟୁଙ୍କି (ନବବାବୁ) କରଣ ଘରର ପୁଅ ହୋଇ ପଶ୍ଚିମ ବଙ୍ଗର ଗୋଟିଏ ବଙ୍ଗାଳୀ ଘରେ ବିବାହ କରିଥିବାରୁ ସାଥି, ସାଇ, ବନ୍ଧୁବାନ୍ଧବ ଏପରିକି ନିଜ ପରିବାର ମଧ୍ୟରେ ବିବାହ ପ୍ରସଙ୍ଗ ନେଇ ଘୋର ବିରୋଧୀ ଥିଲେ । ବଡ଼ଭାଇ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଅକାଟ୍ୟ ଯୁକ୍ତି ଓ ଅଖଣ୍ଡ ବ୍ୟକ୍ତିତ୍ୱ ଯୋଗୁଁ କେହି ବିରୋଧୀ କରିବାକୁ ସାହସ କରିନଥିଲେ । ଅକ୍ଲାନ୍ତ ବିପ୍ଳବୀ ନବଦମ୍ପତିଙ୍କର ସମଧର୍ମୀ ଓ ସମଭାବନା ଥିବା ହେତୁ ସମାଜର ପ୍ରତିବନ୍ଧକକୁ ଖାତିର ନ କରି ସବୁ କାର୍ଯ୍ୟ ଆଗ୍ରହର ସହିତ ବୈଜ୍ଞାନିକ ପଦ୍ଧତିରେ କରି ଚାଲିଥିଲେ ।

ନବଦମ୍ପତିଦ୍ୱୟ ଗାନ୍ଧୀଜୀଙ୍କର ଇଙ୍ଗିତରେ ସହରଠାରୁ ମଫସଲ ଅଞ୍ଚଳର ଏକ ପଲ୍ଲୀ ଗାଁରେ ରହିବାକୁ ସ୍ଥିର କଲେ ଓ ଜଗତସିଂହପୁର ନିକଟସ୍ଥ ଏକ ପଲ୍ଲୀ ଗାଁ ଚରିବୁଦିକୁ ନିଜର ସାଧନାପୀଠ ରୂପେ ବାଛିନେଲେ । ଉକ୍ତ ଚରିବୁଦି ଗାଁକୁ କେନ୍ଦ୍ରକରି ପାଖଆଖ ଗାଁ'ମାନଙ୍କରେ ଜାତୀୟ ଆନ୍ଦୋଳନକୁ ଉଦଜୀବିତ କରାଇବାକୁ ଲାଗିଲେ । ତା ସହିତ ନିଜର ଭରଣପୋଷଣ ପାଇଁ ନବଦମ୍ପତି ଶାରୀରିକ ପରିଶ୍ରମ କରି ଏକ ଆଦର୍ଶ କୃଷିକ୍ଷେତ୍ର ପ୍ରସ୍ତୁତ କରିଥିଲେ ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ବିପ୍ଳବୀନେତ୍ରୀ ବିଭିନ୍ନ ସମୟରେ ବହୁବାର କାରାବରଣ କରିଛନ୍ତି । ୧୯୭୫ ମସିହାର ଜରୁରୀ ପରିସ୍ଥିତିକୁ ଖୋଲାଖୋଲି ବିରୋଧ କରି ଜେଲଦଣ୍ଡ ପାଇଥିଲେ । ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ ।

ଓଡ଼ିଶାରେ ବିଭିନ୍ନ ସମୟରେ ଗାନ୍ଧୀଜୀଙ୍କର ଯେଉଁ ଐତିହାସିକ ପଦଯାତ୍ରାମାନ ଚାଲିଥିଲା ସେଥିରେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କର ପରିବାର ପଦଯାତ୍ରାରେ ସାମିଲ ହୋଇ ପଦଯାତ୍ରାକୁ ସଫଳ କରିଥିଲେ । ଗାନ୍ଧୀଜୀଙ୍କର ସକାଳ ଓ ସନ୍ଧ୍ୟା ବେଳର ସର୍ବଧର୍ମ-ପ୍ରାର୍ଥନା ସମୟରେ

ଅଧିକାଂଶ ପ୍ରାର୍ଥନାରେ ମାଳତୀଦେବୀ ରବୀନ୍ଦ୍ର ସଙ୍ଗୀତ ଗାନ କରି ଶ୍ରୋତାମାନଙ୍କୁ ମୁଗ୍ଧକରି ଦେଉଥିଲେ । ଗାନ୍ଧୀଜୀଙ୍କର ନୂଆଖାଲି ଦଙ୍ଗାବିଧ୍ୱସ୍ତ ଅଞ୍ଚଳ ଗସ୍ତ ସମୟରେ ମାଳତୀଦେବୀ ଗାନ୍ଧୀଜୀଙ୍କ ପାଖେ ପାଖେ ରହୁଥିଲେ । ବିପ୍ଳବ ଯେଉଁଠି "ନୁମା" ସେଇଠି । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ବେଙ୍ଗ ପାଣିଅର ପୋଲିସ ଗୁଳିରେ ମୃତ୍ୟୁ ଘଟିଲା । ସରକାରଙ୍କୁ ବଦନାମ କରିବା ପାଇଁ ବିଭିନ୍ନ ରାଜନୈତିକ ଦଳ ଓ ଛାତ୍ର ସଙ୍ଗଠନ ଶବକୁ ଶୋଭାଯାତ୍ରାରେ ବାହାର କରି କଟକ ସହର ପରିକ୍ରମା କରିଥିଲେ । ବିପ୍ଳବୀନେତ୍ରୀ ମାଳତୀଦେବୀ ତା'ର ନେତୃତ୍ୱ ନେଇଥିଲେ । ଏପରି ଏକ ଅଦ୍ଭୁତ ଘଟଣା ସର୍ବସାଧାରଣରେ କୌତୂହଳ ସୃଷ୍ଟି କରିଥିଲା ।

ସନ୍ଥ ବିନୋବାଜୀଙ୍କର ଓଡ଼ିଶା ପଦଯାତ୍ରା ସମୟରେ ପଦଯାତ୍ରାକୁ ସଫଳ କରିବା ପାଇଁ ସପରିବାର ସହିତ ମାଳତୀଦେବୀ କାମରେ ଲାଗି ପଡ଼ିଥିଲେ । ଗ୍ରାମଦାନ ସଂଗ୍ରହ ଗ୍ରାମସଭା ଗଠନ ଆଦି ନିରଳସ ଭାବେ କରି ଚାଲିଥିଲେ ।

ଛାତ୍ର ଆନ୍ଦୋଳନ, କଟକ ସହରରେ ସାଂପ୍ରଦାୟିକ ଦଙ୍ଗା, ଇସ୍ପାତ ନଗରୀ ଓ ରାଉରକେଲାରେ ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ ଯେଉଁ ନରସଂହାର ଚାଲିଥିଲା ସେତେବେଳେ ମାଳତୀଦେବୀ ସେଠାରେ ସପରିବାର ଡେରା ପକାଇ ଶାନ୍ତିବାର୍ତ୍ତା ପ୍ରଚାର କରିଥିଲେ । ସାହି-ବସ୍ତି-ମାନଙ୍କରେ ସର୍ବଧର୍ମ ପ୍ରାର୍ଥନା ଓ ସଭା ସମିତି ମାଧ୍ୟମରେ ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ଜାଗ୍ରତ କରାଇଥିଲେ ।

"ନୁମା"ଙ୍କର ବହୁ ଅନୁଷ୍ଠାନ ସହିତ ସଂପର୍କ ଥିଲା । କଂଗ୍ରେସ କାର୍ଯ୍ୟନିର୍ବାହୀ କମିଟିର ସଦସ୍ୟା, ସମ୍ବିଧାନ ପ୍ରଣୟନ କମିଟିରେ ସଦସ୍ୟା; ଗାନ୍ଧୀ ସ୍ମାରକ ନିଧିର ସଂପାଦିକା, ଓଡ଼ିଶା ଭୂଦାନ ସମିତିରେ ନିବେଦିକା, ଶାନ୍ତି-ସେନା ମଣ୍ଡଳରେ ସଦସ୍ୟା ଆଦି ବହୁ ଅନୁଷ୍ଠାନମାନଙ୍କ ସହିତ ଜଡ଼ିତ ରହି ଗଠନମୂଳକ ପରାମର୍ଶମାନ ଦେଉଥିଲେ ।

ସମାଜସେବା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିବା ଯୋଗୁଁ ତାଙ୍କୁ ଶାନ୍ତିନିକେତନର ସର୍ବୋଚ୍ଚ ସମ୍ମାନ "ଦେଶୀକୋତ୍ତମ" ପ୍ରଦାନ କରାଯାଇଥିଲା । ଏହା ଛଡ଼ା ଯମୁନାଲାଲ୍ ବଜାଜ୍ ପୁରସ୍କାର ମଧ୍ୟ ମିଳିଥିଲା ।

ସବୁଠାରୁ ତଳେ ପଡ଼ିଥିବା ହରିଜନ ଗିରିଜନଙ୍କର ଅଭ୍ୟୁତ୍ଥାନ ପାଇଁ ସେ ଜୀବନସାରା ଉଦ୍ୟମ କରି ଚାଲିଥିଲେ । ସେଥିପାଇଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ନବଜୀବନ ମଣ୍ଡଳର କେନ୍ଦ୍ରମାନ ଖୋଲି ପିଲାମାନଙ୍କୁ ଶିକ୍ଷା ଦେବା ସହିତ ଲୋକମାନଙ୍କୁ ସଚେତନ କରାଇବାକୁ ବିଶେଷ ଧ୍ୟାନ ଦେଉଥିଲେ । ଏହାଛଡ଼ା ଅନୁଗୋଳଠାରେ ମଣିପଗଡ଼ା ତାଲିମ କେନ୍ଦ୍ର ଓ ଚମ୍ପତିମୁଣ୍ଡାରେ ଉଚ୍ଚ ମାଧ୍ୟମିକ ସ୍କୁଲ ସ୍ଥାପନ କରି ଆଦିବାସୀ ପୁଅ-ଝିଅମାନଙ୍କୁ ଶିକ୍ଷାଦାନ ଦିଆ ହେଉଥିଲା । ଏହି ସବୁ ଅନୁଷ୍ଠାନରୁ ଶହ ଶହ ଛାତ୍ର ଛାତ୍ରୀ ଶିକ୍ଷା ଲାଭ କରି ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି ।

ବିପ୍ଳବୀନେତ୍ରୀ "ନୁମା" ସାରାଜୀବନ ଜନସାଧାରଣଙ୍କ ସେବାରେ ନିଜକୁ ହଜାଇ ଦେଇଥିବାରୁ, ଏ ଜାତି—ଏ ଦେଶ କଦାପି ତାଙ୍କୁ ଭୁଲି ପାରିବ ନାହିଁ ।

ପୂର୍ବତନ ସଭାପତି
ଉତ୍କଳ ସର୍ବୋଦୟ ମଣ୍ଡଳ
ଗୁଣନିଧି ଭବନ, କଟକ

---

ଅତୀତ ମୁହଁକୁ ଚାହିଁ ଯେଉଁ ଜାତି ସମାଜ ପରିବର୍ତ୍ତନର ଆଶାରଖନ୍ତି
ସେ ଜାତି ପକ୍ଷରେ ଉପର ସ୍ତରକୁ ଉଠିବା ସମ୍ଭବ ନୁହେଁ ।

—ମାଳତୀଦେବୀ

# ମୁଁ ଓ ନୁମା

□ ଚକ୍ରଧର ସାହୁ

୧୯୪୭ ମସିହାର କଥା । ମେ' ମାସର ଏକ ରୌଦ୍ର ସକାଳ । ଆମ ଗାଁ ସାରା ଏକ ଉନ୍ମାଦନାର ସୃଷ୍ଟି ଖେଳି ଯାଇଥିଲା । କଥା କ'ଣ କି ମାଳତୀ ଚୌଧୁରୀ ଆସିଛନ୍ତି । ମାଳତୀ ଚୌଧୁରୀ—ସେ ସମୟର ଓଡ଼ିଶାର ବର୍ଷୀୟାନ ନେତା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କର ସହଧର୍ମିଣୀ । ଜଣେ କୁଳବଧୂ ହୋଇ ମଧ୍ୟ ସେ ସମୟରେ ମୁଣ୍ଡ ଟେକିଥିବା ଗଡ଼ଜାତ ଆନ୍ଦୋଳନର ସକ୍ରିୟ ନେତୃତ୍ୱ ନେଇ ଝଡ଼ ପରି ଗାଁ ଗାଁ ବୁଲୁଥିଲେ । ଜଣେ ନିଷ୍ଠାପର ମହିଳା ସମାଜ ସେବିକା ହିସାବରେ ତାଙ୍କର ସୁନାମ ଚାରିଆଡ଼େ ବ୍ୟାପି ଯାଇଥିଲା । ତାଙ୍କୁ ଦେଖିବା ପାଇଁ ଆମ ଗାଁର ଲୋକମାନେ ଦଳ ଦଳ ହୋଇ ଯାଉଥିଲେ । ମୁଁ ମଧ୍ୟ ମୋର ବାପାଙ୍କ ସହିତ ତାଙ୍କୁ ଦେଖା କରିବାକୁ ଯାଇଥିଲି ।

ନୟାଗଡ଼ ନିକଟସ୍ଥ ବାହାଡ଼ାଝୋଲା ଆମ ଗାଁ । ମାଳତୀ ଦେବୀ ସେଦିନ ଆମ ଗାଁର କଂଗ୍ରେସ ନେତା ଶ୍ରୀଯୁକ୍ତ ବାଞ୍ଛାନିଧି ସେନାପତିଙ୍କ ଘରେ ରହିଥାନ୍ତି । ତାଙ୍କୁ ଦେଖି ସାରି ସେଦିନ ସନ୍ଧ୍ୟାରେ ମୋର ବଡ଼ଭାଇ ଘରେ ଆସି ମୋତେ କହିଲେ, "ମାଳତୀଦେବୀ ଅନୁଗୁଳରେ ଏକ ସ୍କୁଲ ଖୋଲୁଛନ୍ତି; ସେଠାକୁ ପଢ଼ିବାକୁ ଯିବୁ ?" ମୁଁ ବହୁତ ଖୁସି ହୋଇ 'ହଁ' ଭରିଥିଲି । ସେହିଦିନ ଠାରୁ ମାଳତୀ ଦେବୀ ଓରଫ ଆମମାନଙ୍କର ଆଦରର 'ନୁମା'ଙ୍କ ସହିତ ମୋର ସଂପର୍କର ଅସ୍ୱମାରମ୍ଭ ହୋଇଥିଲା ।

ତାର କିଛି ଦିନ ପରେ ମୁଁ ମୋର ବଣ ପାହାଡ଼ଘେରା ଛୋଟ ଗାଁ ଛାଡ଼ି ମଝିଆଁ ଭାଇଙ୍କ ସହିତ ଅନୁଗୁଳ ଯାତ୍ରା କଲି । ଆସିଲାବେଳେ ବଡ଼ ଭଉଣୀ ଶାଶୁଘର (ମଣାଣି ଝୋଲା)ରେ ମୋର ମା' ସହିତ ଦେଖା କରି ନୟାଗଡ଼ ହୋଇ ଆସିଲୁ । ମୋର ମା' କାନ୍ଦି କାନ୍ଦି ମୋତେ ବିଦାୟ ଦେଇଥିଲା । ଆଉ ତାହା ଥିଲା ମୋ ମା' ସହିତ ମୋର ଶେଷ ଦେଖା । ତା' ପରେ ପରେ ତାର ସ୍ୱର୍ଗବାସ ହୋଇ ଯାଇଥିଲା । ସେତେବେଳେ ମୋତେ ୧୦ ବର୍ଷ । ମୁଁ ଥାଏ ଅନୁଗୁଳରେ । ମା' କୋଳ ଛାଡ଼ି ନୁମା କୋଳରେ ଆଶ୍ରୟ ପାଇଥିଲି । ସେହିଦିନୁ ସେ ହିଁ ମୋର ମା' ଥିଲା । ତା'ର ସ୍ନେହ, ଶିକ୍ଷା, ଶାସନ ଓ ଆଦର୍ଶରେ ମୁଁ ମଣିଷ ହେଲି ।

ନୟାଗଡ଼ରୁ ମୋ ସହିତ ଆଉ ଛଅଜଣ ପିଲା ଆସିଥିଲେ । ସେମାନେ ହେଲେ ମହେଶ୍ୱର ମହାରଣା, ଫକୀର ସାହୁ ଏବଂ ଶୁକ୍ର ବେହେରାଙ୍କ ଝିଅ ସାବିତ୍ରୀ । ନୟାଗଡ଼ରୁ ଜଟଣୀ ପର୍ଯ୍ୟନ୍ତ କୋଇଲା ଗ୍ୟାସଚାଳିତ ବସ୍‌ରେ ଆସିଲୁ । ସେଠୁ ଟ୍ରେନ୍‌ରେ କଟକ । କଟକରେ ପହଞ୍ଚି ସ୍ୱରାଜ ଆଶ୍ରମରେ ରାତିଟା କଟାଇଲୁ । ତା ପରଦିନ ସକାଳୁ ଅନୁଗୁଳ ବାହାରିଲୁ । ଆମ ସାଙ୍ଗରେ ଥିଲେ ମୋର ମଝିଆଁ ଭାଇ ଏବଂ ଶୁକ୍ର ବେହେରା । ଛୋଟ ଗାଁ ଛାଡ଼ି ପ୍ରଥମଥର ପାଇଁ ବାହାରକୁ ବାହାରିଥିଲି । ମନରେ ଥିଲା ଅନେକ ଉତ୍ସାହ ଏବଂ ଉଦ୍ଦୀପନା । ଜଟଣୀ ଓ କଟକ ସହରକୁ ବହୁତ ଆଗ୍ରହ ଓ କୌତୂହଳରେ ଦେଖୁଥିଲି ।

ଅନୁଗୁଳରେ ଆମେମାନେ ପହଞ୍ଚିଲାବେଳକୁ ସେଠି ବିଦ୍ୟାର୍ଥୀ ହିସାବରେ ଥିଲେ ଢେଙ୍କାନାଳର ନବଘନ ବେହେରାଙ୍କ ପୁଅ ନିତ୍ୟାନନ୍ଦ ଏବଂ ନୁମାଙ୍କ ପାଳିଝିଅ ତନୁ । ପରେ ପରେ ଆମ ସହିତ ଯୋଗ ଦେଲେ ଢେଙ୍କାନାଳର ଗୁଲି, ଶୁଲି, ବିଜୁଳି ଆଉ ଗୋଲକ । କଟକରୁ ପ୍ରଭାକର ପୁଷ୍ଟୁଲି, ତାଳଚେରରୁ ଅଗାଧୁ, ରମେଶ, ମୀରା ଓ ଧରଣୀ । ଏହିପରି ୧୬।୧୭ ଜଣ ପିଲାଙ୍କୁ ନେଇ ଜନ୍ମ ନେଇଥିଲା ବାଜିରାଉତ ଛାତ୍ରାବାସ—ନୁମାଙ୍କର କଳ୍ପନାର ଶ୍ରେଷ୍ଠ କୃତିଟିଏ । ଗଡ଼ଜାତ ଆନ୍ଦୋଳନର ଦୁଃସ୍ଥ କର୍ମୀମାନଙ୍କର ପିଲାମାନଙ୍କର ଥଇଥାନ ଥିଲା ନୁମା'ର ଉଦ୍ଦେଶ୍ୟ । ଏହି ଛୋଟ ଛୋଟ ପିଲାମାନଙ୍କୁ ଗଢ଼ି ତୋଳିବାକୁ ଦୃଢ଼ସଂକଳ୍ପ ନେଇଥିଲେ ନୁମା ଆଉ ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ ମଢ଼ି (କାମାକ୍ଷାନଗର)ର ସାରଙ୍ଗଧର ଦାସ (ଅଜା) ।

ଗିରିଜାଭୂଷଣ ଦତ୍ତଙ୍କଠାରୁ ନୁମା କିଣିଥିବା ଜାଗା ଉପରେ ଖଣ୍ଡେ ନଡ଼ା ଛପର ଘର ଏବଂ ଚତୁଃପାର୍ଶ୍ୱ ତଳେଇ ଘେରା ବେଷେଇ ଘରେ ଆରମ୍ଭ ହୋଇଥିଲା ନୁମାର

କର୍ମଠଙ୍କ । ପିଲାମାନଙ୍କର ଶିକ୍ଷାର ଦାୟିତ୍ୱ ପଡ଼ିଥିଲା ବାବାଜୀ ସ୍ୱାଇଁ, ବୁବୁ ଅପା (ନୂମାଙ୍କର ବଡ଼ ଝିଅ) ଏବଂ କରଣ ଅପାଙ୍କ ଉପରେ । ପରେ ଆସିଥିଲେ ରଶ୍ମି ଗୁରୁଜୀ । ଶିକ୍ଷା ଥିଲା—ତୃଣ ଭୂମି ଠାରୁ ଚାଳ ଛପର ପର୍ଯ୍ୟନ୍ତ । ସୌହାର୍ଦ୍ଦ୍ୟ-ପୂର୍ଣ୍ଣ ଘରୁଆ ପରିବେଶରେ ନୂମାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ମାତୃସ୍ନେହରେ ଭିଜି ଯାଉଥିଲୁ ଆମେ ଆମର ନିଜ ପରିବାର ।

ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ଢାଞ୍ଚାରେ ବାଜିରାଉତ ଛାତ୍ରାବାସକୁ ଗଢ଼ି ତୋଳିବାର ଉଦ୍ୟମ କରିଥିଲେ ନୂମା ! ବହି ପାଠ ସାଙ୍ଗେ ସାଙ୍ଗେ ଆମକୁ ଶିକ୍ଷା ଦିଆଯାଉଥିଲା-ନିର୍ଭୀକତା, ସତ୍ୟବାଦିତା, ସ୍ୱାବଲମ୍ବନଶୀଳତା ଓ କର୍ମଠତା ଇତ୍ୟାଦି । ପରାଧୀନ ଭାରତରେ ସ୍ୱାଧୀନଚେତା ନାଗରିକ ଭାବରେ ଆମକୁ ଗଢ଼ୁଥିଲେ ନୂମା । ଆମକୁ ଶିକ୍ଷାଦାନ କରି ଭଲ ମଣିଷ ରୂପେ ଗଢ଼ିବାରେ ନୂମାଙ୍କର ଡାହାଣ ହାତ ଥିଲେ ବାବାଜୀ ସ୍ୱାଇଁ । ବାଜି ରାଉତ ଛାତ୍ରାବାସର ସେ ଥିଲେ ସ୍ୱୟଂ ପିତାମହ । ଆଜୀବନ ଚିରକୁମାର ରହି ଛାତ୍ରାବାସର ସର୍ବାଙ୍ଗୀନ ଉନ୍ନତିରେ ସେ ନୂମାଙ୍କୁ ସାହାଯ୍ୟ କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଛାତ୍ରାବାସର ନିର୍ମାଣ କାର୍ଯ୍ୟ ଓ ଆମମାନଙ୍କର ଶିକ୍ଷା ସାଙ୍ଗକୁ ଆମକୁ ଜାତୀୟ ଆନ୍ଦୋଳନ ପାଇଁ ଗଢ଼ୁଥିଲେ ନୂମା । ସଭା ଓ ଶୋଭାଯାତ୍ରାରେ ଆମେ ସକ୍ରିୟ ଅଂଶ ଗ୍ରହଣ କରୁଥିଲୁ । କୋର୍ଟ, କଚେରି ଆଗରେ ସରକାର ବିରୋଧୀ ସ୍ଲୋଗାନ ଦେବା ଆଦି କାମ ଆମେ ନିର୍ଭୟରେ କରୁଥିଲୁ । ପ୍ରକୃତ ପକ୍ଷରେ ଆମେ ନୂମାଙ୍କର ଥିଲୁ ବାନରସେନା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ । ଦେଶ ସ୍ୱାଧୀନ ହେଲା । ସବୁଆଡ଼େ ଆନନ୍ଦର ଲହରୀ । ଦେଶସାରା ସ୍ୱାଧୀନତାର ଉତ୍ସବ ପାଳନ ହେଉଥିଲା । ଛାତ୍ରାବାସରେ ମଧ୍ୟ ସ୍ୱାଧୀନତାର ଏହି ଐତିହାସିକ ପତାକା ଉତ୍ତୋଳନର ଆୟୋଜନ ହୋଇଥିଲା, ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କ ଅଧ୍ୟକ୍ଷତା ଏବଂ ବୈକୁଣ୍ଠନାଥ ମହାନ୍ତିଙ୍କ ପରିଚାଳନାରେ । ଅନୁଗୁଳର ଆଖପାଖ ଅଞ୍ଚଳରୁ ଗୋରା ସାହେବମାନେ ମଧ୍ୟ ଯୋଗ ଦେଇଥିଲେ । ସେହି ଉତ୍ସବରେ ସେଦିନ ନୂମା ଦେଇଥିବା ଗୁରୁଗମ୍ଭୀର ଉତ୍ସାହଭରା ଭାଷଣ ଏବେ ସୁଦ୍ଧା ମୋର କାନରେ ବାଜୁଛି । ଉପସ୍ଥିତ ଗୋରା ସାହେବ-ମାନଙ୍କ ରଙ୍ଗହୀନ ଚେହେରା ଦର୍ଶନଯୋଗ୍ୟ ଥିଲା । ଦେଶ ସ୍ୱାଧୀନ ହେବା ଖବର ସହିତ ଗାନ୍ଧୀ, ନେହେରୁ, ଶାସ୍ତ୍ରୀ ଓ ସର୍ଦ୍ଦାର୍ ପଟେଲ୍ ପ୍ରଭୃତି ବଡ଼ ବଡ଼ ନେତାଙ୍କ ନାମ ଭାରତର ପାଣି ପବନରେ ଖେଳି ବୁଲୁଥାଏ । ହେଲେ ଆମ ପାଇଁ ନୂମା, ବାପି (ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ), ଅଜା (ସାରଙ୍ଗଧର ଦାସ) ଥିଲେ ସବୁ କିଛି । ଏମାନଙ୍କ ଆଖିରେ ଆମେ ଭାରତକୁ ଦେଖିଥିଲୁ । ବିଭିନ୍ନ ବ୍ୟକ୍ତିତ୍ୱଙ୍କ ପରିଚୟ ଏମାନଙ୍କ ଠାରୁ ହିଁ ପାଉଥିଲୁ ।

ସେତେବେଳକୁ ବାଜି ରାଉତ ଛାତ୍ରାବାସ ଉନ୍ନତିର ଶିଡ଼ି ଚଢ଼ି ସାରିଥିଲା । ପିଲାମାନଙ୍କ ରହିବା ପାଇଁ ମାଟି କାନ୍ଥ ଓ ଚାଳ ଛପରର ଦୁଇ ତିନି ବଖରା ଘର ହୋଇଥିଲା । ନାଁ ଥିଲା 'ଗିରିଜା ଭବନ' । ତା ପାଖକୁ ଲାଗି 'ହନୁମାନ ଭବନ' । ତା ସାମନାରେ ବଖରାଏ ଘରେ ରହୁଥିଲେ ସାରଙ୍ଗଧର ଦାସ, ନାଁ ଥିଲା 'ଅଜାକୁଟୀର ।'

ଧୀରେ ଧୀରେ ସ୍କୁଲର ଛାତ୍ର ସଂଖ୍ୟା ବଢ଼ି ଚାଲିଥାଏ । ନୂଆ ନୂଆ ଶିକ୍ଷକମାନେ ମଧ୍ୟ ଯୋଗ ଦେଇଥିଲେ । ପ୍ରତିଷ୍ଠାନର ଉନ୍ନତି ଏବଂ ପରିଚାଳନା ପାଇଁ ସରକାରଙ୍କୁ ଅନୁରୋଧ କରାଯାଇଥିଲା । ସରକାରଙ୍କ ତରଫରୁ ପ୍ରସ୍ତାବ ଆସିଲା ବାଜି ରାଉତ ଛାତ୍ରାବାସକୁ ଆଦିବାସୀ ହରିଜନଙ୍କ ବିକାଶ ପାଇଁ ଉପଯୋଗ କରାଯାଉ । ବାଜି ରାଉତ ଛାତ୍ରାବାସ ଆଦିବାସୀ ହରିଜନଙ୍କ ଛାତ୍ରାବାସ ରୂପେ ସରକାରୀ ସ୍ୱୀକୃତି ପାଇଲା । ସରକାରୀ ମଂଜୁରୀ ପରେ ଗିରିଜା ଭବନକୁ ଲାଗି ପଶ୍ଚିମପଟକୁ ବର୍ତ୍ତମାନର ଗୋଶାଳା ପର୍ଯ୍ୟନ୍ତ ସରକାରୀ ଜାଗା ଏବଂ ଛାତ୍ରାବାସର ବିକାଶ ପାଇଁ ଅର୍ଥ ସାହାଯ୍ୟ ମିଳିଲା । କୋରାପୁଟ, କେଉଁଝର, ସୁନ୍ଦରଗଡ଼, ଗଞ୍ଜାମ ଆଦି ଜିଲ୍ଲାରୁ ଆଦିବାସୀ ପିଲାମାନେ ଯଥା—ମାଳାମ୍ବର, ବାନାମ୍ବର, ସୋମନାଥ, ଉର୍ବଶୀ, ଗୁରୁବାରି, ଲକ୍ଷ୍ମୀ, ପାର୍ବତୀ ଆଦି ଆସି ପହଞ୍ଚିଥିଲେ ।

ବାଜି ରାଉତ ଛାତ୍ରାବାସର ଅନତିଦୂରରେ ଥିଲା ଏକ ସରକାରୀ ସ୍କୁଲ । ନାମ ଖଲାର ୟୁ.ପି. ସ୍କୁଲ । ଏହି ସ୍କୁଲର ପରିଚାଳନା ଦାୟିତ୍ୱ ସରକାର ଛାତ୍ରାବାସ ହାତକୁ ଦେଲେ । ପିଲାସବୁ ଆଶ୍ରମରେ ରହି ଖଲାର ସ୍କୁଲକୁ ପଢ଼ିବାକୁ ଗଲେ ।

ଧୀରେ ଧୀରେ ପିଲା ସଂଖ୍ୟା ଶହେ ପାଖା ପାଖି ହେଲା । ଏତେଗୁଡ଼େ ପିଲାଙ୍କର ଖାଇବା, ପଢ଼ିବା, ରହିବା ଓ ସ୍ୱାସ୍ଥ୍ୟ ସେବା ସବୁକିଛି ପାରିବାରିକ ରୀତିରେ ଚାଲିଥାଏ । ଏସବୁ ସମ୍ଭବପର ହେଉଥିଲା ନୂମା, ସାରଙ୍ଗଧର ଦାସ ଓ

ବାବାଜୀ ଭାଇଙ୍କର ଅଦମ୍ୟ ଚେଷ୍ଟା ଏବଂ ଅନାବିଳ ବାତ୍ସଲ୍ୟ ମମତା ଯୋଗୁ । ଏମାନଙ୍କ ସହିତ ପାଦ ମିଳାଇ ଦେଶର ଭବିଷ୍ୟତ ନାଗରିକଙ୍କୁ ଶୃଙ୍ଖଳିତ ଭାବେ ଗଢ଼ି ତୋଳିବା ପାଇଁ ଯୋଗ ଦେଇଥିଲେ ବୈକୁଣ୍ଠନାଥ ମହାନ୍ତି, ବୈଷ୍ଣବ ପଟ୍ଟନାୟକ, ସର୍ବେଶ୍ୱର ନାୟକ, ରାଧେଶ୍ୟାମ ପାଣ୍ଡେ, ଉଦୟଚନ୍ଦ୍ର ପାତ୍ର, ଦିବାକର ପ୍ରଧାନ, ଜୟନାରାୟଣ ଦାସ, ଲୋକନାଥ ପ୍ରଧାନ ଓ ନୃତ୍ୟ ଶିକ୍ଷକ ହରିହର ଦାସ ଆଦି ।

ସ୍କୁଲରେ ନ ଥିଲା ସେମିତି ଧରାବନ୍ଧା କାର୍ଯ୍ୟକ୍ରମ । ସ୍କୁଲ ପାଠ ସାଙ୍ଗକୁ ଥିଲା ସୂତାକଟା, ଲୁଗାବୁଣା, ବଗିଚା କାମ, ସଫେଇ, ଗୀତ, ନାଚ, କଳା ଓ ସ୍ଥାପତ୍ୟର ଅପୂର୍ବ ସମନ୍ୱୟ । ସବୁକିଛି ସୁନ୍ଦର ଓ ସାବଲୀଳ ଭାବରେ ଶିଖା ଯାଉଥିଲା । ଜୀବନର ପ୍ରତ୍ୟେକ ମୁହୂର୍ତ୍ତଗୁଡ଼ିକ ପ୍ରାଣବନ୍ତ ଥିଲା । ଏ ସବୁର ମୂଳ ଉତ୍ସ ଥିଲେ ନୁମା । ନିଜେ ଶାନ୍ତିନିକେତନରେ ରବୀନ୍ଦ୍ରନାଥଙ୍କ ପ୍ରିୟ ଶିଷ୍ୟା ରୂପରେ ସଙ୍ଗୀତକଳାର ପୂଜାରିଣୀ ଥିଲେ । ତାଙ୍କ ସାଙ୍ଗକୁ ଥିଲେ ଶିଳ୍ପୀ ଜଗନ୍ନାଥ ଦାସ—ଯାହାଙ୍କର କଳାସୃଷ୍ଟି ଏବେ ବି ଛାତ୍ରାବାସର ଗୌରବ । ନୃତ୍ୟଶିକ୍ଷକ ହରିହର ଦାସ, ଓଡ଼ିଶୀ ନୃତ୍ୟଶିଳ୍ପୀ କେଳୁଚରଣ ମହାପାତ୍ର, ନାଟ୍ୟକାର ବୈକୁଣ୍ଠନାଥ ମହାନ୍ତି ଏବଂ ବୈଷ୍ଣବ ପଟ୍ଟନାୟକ ଆଦି ପ୍ରଖ୍ୟାତ ଗୁରୁମାନଙ୍କ ଠାରୁ ଶିକ୍ଷା ଲାଭ କରିବାର ସୁଯୋଗ ମିଳିଥିଲା । ନୁମାଙ୍କର ବ୍ୟକ୍ତିତ୍ୱ, ଛାତ୍ରାବାସର ନିରାଡ଼ମ୍ବର ତଥା ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଖାଲି ଯେ ଶିକ୍ଷାପ୍ରେମୀ ବା କଳାପ୍ରେମୀଙ୍କୁ ଆକୃଷ୍ଟ କରୁଥିଲା ତା ନୁହେଁ; ଏହା ଯୁବ ରାଜନୀତିଜ୍ଞମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ସେମାନଙ୍କ ଭିତରେ ସୁରେନ୍ଦ୍ର ଦ୍ୱିବେଦୀ, ବାଙ୍କବିହାରୀ ଦାସ ଓ ନିଶାମଣି ଖୁଣ୍ଟିଆ ଆଦି ଥିଲେ ଅଗ୍ରଗଣ୍ୟ । ବାପି ତ ସକ୍ରିୟ ରାଜନୀତିରେ ଭାଗ ନେଇଥାନ୍ତି । ତେଣୁ କେବେ କେବେ ଅନୁଗୁଳ ଆସନ୍ତି । ତାଙ୍କର ଉପସ୍ଥିତି ମନରେ ଅପୂର୍ବ ଉତ୍ସାହ ଓ ପୁଲକ ସୃଷ୍ଟି କରୁଥିଲା ।

ଖଲାଶ ସ୍କୁଲରେ ସେତେବେଳେ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଥିଲା । ଆଗକୁ ପିଲାଙ୍କ ପଢ଼ା ପାଇଁ Post Basic ସ୍କୁଲର ଆରମ୍ଭ କରିବାର ଆୟୋଜନ ହେଲା । ଏହି କାମରେ ଦିଗ୍‌ଦର୍ଶନ ଦେବାର ଦାୟିତ୍ୱ ନେଲେ ପ୍ରବୀଣ ଶିକ୍ଷକ ତଥା ପ୍ରସିଦ୍ଧ ଶିକ୍ଷାବିତ୍ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ । ନୁମାଙ୍କର କଳ୍ପନାକୁ ସାକାର କରିବାକୁ ଚିତ୍ତରଞ୍ଜନ ଦାସ ପ୍ରଥମ ବ୍ୟାଚର ଆମ ଅଠାଇଶ ଜଣ ପିଲାଙ୍କୁ ନେଇ ବାହାରି ପଡ଼ିଲେ ଚମ୍ପତିମୁଣ୍ଡା ଯେଉଁଠି Post Basic ସ୍କୁଲ ଆରମ୍ଭ କରିବାର ସିଦ୍ଧାନ୍ତ ନିଆ ଯାଇଥାଏ । ଲିଙ୍ଗରା ନଦୀ ଓ ବିସ୍ତୀର୍ଣ୍ଣ ଜଙ୍ଗଲ ପରିବେଷ୍ଟିତ ସରକାରୀ ଜାଗା ଉପରେ ଶିଳାନ୍ୟାସ ହୋଇଗଲା "ଜୀବନ ବିଦ୍ୟାଳୟ"ର । ଆମ ରହିବା ପାଇଁ ସେଠି ଥିଲା ବଖରାଏ ସରକାରୀ ଘର । ଘର ନାହିଁ, ସ୍କୁଲ ନାହିଁ, କେବଳ ଚିତ୍ତବାବୁଙ୍କର ଦକ୍ଷ ତତ୍ତ୍ୱାବଧାନ ଆଉ ଆମମାନଙ୍କ ମନରେ ନୂତନତ୍ୱର ଉତ୍ସାହରେ 'ଜୀବନ ବିଦ୍ୟାଳୟ' ଜୀବନ ପାଇଥିଲା । ସକାଳ ପାଞ୍ଚଟାରୁ ଉଠି ଜଙ୍ଗଲ କାଟିବା, ଇଟା ପକାଇବା ଆଦି କାମରେ ଆମେ ବ୍ୟସ୍ତ ରହୁଥିଲୁ ମଧ୍ୟାହ୍ନ ପର୍ଯ୍ୟନ୍ତ । ତା'ର ଭିତରେ ପଥର ଚଟାଣରେ ବସି ଚୂଡ଼ା, ଗୁଡ଼ ପରମ ତୃପ୍ତିରେ ଖାଉଥିଲୁ । ଚମ୍ପତିମୁଣ୍ଡାର ପ୍ରତ୍ୟେକ ଦିନ ନୂଆ ନୂଆ ଅଭିଜ୍ଞତା ଏବଂ ଘଟଣାପୂର୍ଣ୍ଣ ଥିଲା ଯାହାକୁ ଲେଖିଲେ ସହଜରେ ଶେଷ ହେବ ନାହିଁ । ଚମ୍ପତିମୁଣ୍ଡାର ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ଏବଂ ଜଙ୍ଗଲୀ ଜନ୍ତୁଙ୍କର ଲୁଚକାଳି ଖେଳ ବାସ୍ତବିକ ଅବିସ୍ମରଣୀୟ ! ହାଡ଼ଭଙ୍ଗା ପରିଶ୍ରମ ପରେ କିଛି ସମୟ ବିଶ୍ରାମ ନେଇ ଦିନ ତିନିଟା ବେଳେ ଆମେ ରହୁଥିବା ଘର ପଛପଟେ ଥିବା ମହୁଲଗଛ ତଳେ ଆମେମାନେ ଏକତ୍ର ହେଉଥିଲୁ ପାଠ ପଢ଼ିବା ପାଇଁ । ଦେଶ ବିଦେଶର ଅଭିଜ୍ଞତା ସହିତ ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ ଚିତ୍ତଭାଇ । ଏଭଳି ଭାବେ 'ଜୀବନ ବିଦ୍ୟାଳୟ' ଆମମାନଙ୍କ ହାତରେ ଧୀରେ ଧୀରେ ଜୀବନ୍ତ ହୋଇଉଠିଥିଲା ।

ମୋର ଏ ଛାତ୍ର ଜୀବନରେ ନୁମା, ବାପି, ଜଗାଭାଇ ଏବଂ ଚିତ୍ତଭାଇ ପ୍ରକୃତ ଥିଲେ ପ୍ରେରଣାର ଉତ୍ସ । ଏମାନେ ସମସ୍ତେ ଶାନ୍ତିନିକେତନର ଛାତ୍ର ଥିବାରୁ ସେହି ଛାଞ୍ଚରେ ଆମମାନଙ୍କୁ ଗଢ଼ି ତୋଳିବାରେ ସେମାନଙ୍କର ଥିଲା ଅଦମ୍ୟ ଉତ୍ସାହ ଓ ପ୍ରଚେଷ୍ଟା ।

ଛାତ୍ର ଜୀବନରେ ବିଶେଷ କରି ନୁମାଙ୍କର ଶିକ୍ଷା, ଶାସନ ତଥା ମା'ର ସ୍ନେହ ଏବେ ବି ମୋ ପାଇଁ ଅମୂଲ୍ୟ ହୋଇ ରହିଛି । ଥରକର ଘଟଣା । ବାଜିରାଉତ ଛାତ୍ରାବାସରେ ପଢ଼ୁଥିବା ବେଳେ ମୋ ପାଖକୁ ବାପା ଦଶଟଙ୍କା ବହିପତ୍ର କିଣିବା ପାଇଁ ପଠାଇଥିଲେ । ମାତ୍ର ସ୍କୁଲ ଛୁଟି ପରେ ସାଙ୍ଗମାନଙ୍କ ସହିତ ସେ ଟଙ୍କାରେ ଅନୁଗୁଳ ବଜାରରେ ରସଗୋଲା ଖାଇ ଦେଲି । ଏ ଘଟଣା ନୁମାଙ୍କ କାନକୁ ଗଲା । ଏଥିପାଇଁ ତାଙ୍କ ଠାରୁ ମୁଁ ଯେଉଁ ଗାଳି ଖାଇଛି ଓ ଉପଦେଶ ଶୁଣିଛି ତାହା ଜୀବନରେ କେବେ ଭୁଲି ପାରିବି ନାହିଁ ।

ଆଉ ଥରେ ପଞ୍ଚମ ଶ୍ରେଣୀରେ ପଢ଼ିଲା ବେଳେ ମୋ ଅଣ୍ଟାରେ କାଠ ପଡ଼ି ଜଖମ ହୋଇଯାଇଥିଲା । ନୂମା ଘଣ୍ଟା ଘଣ୍ଟା ଓ ମାସ ମାସ ଧରି ତେଲ ମାଲିସ କରିଥିଲେ । ସେତେବେଳେ ବାପି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ତେଣୁ ତାଙ୍କୁ କହି ମୋତେ କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲକୁ ପଠାଇଦେଲେ । ମୁଁ ଭଲ ହୋଇଗଲି ଆଉ ନୂମାର ସେହି ମାତୃ ସ୍ନେହ ମୋତେ ସବୁଦିନ ପାଇଁ ତାଙ୍କ ପାଖରେ ବାନ୍ଧି ରଖିଦେଲା ।

ଗତାନୁଗତିକ ଜୀବନ ଭିତରେ ନୂମା ଆମକୁ ନାଚ, ଗୀତ, ରବୀନ୍ଦ୍ର ସଙ୍ଗୀତ ଓ କବିତା ଆବୃତ୍ତି କରାଉଥିଲେ । ମୁଁ ଗୀତ ଗାଇବା ବେଳେ ବେସୁରିଆ ଥିବାରୁ ଗାଳି ଖାଉଥିଲି । ପ୍ରକୃତିର ତାଳେ ତାଳେ ନୂମା ଆମକୁ ରବୀନ୍ଦ୍ର ସଙ୍ଗୀତ ଶୁଣାଉଥିଲେ । ଛୁଟି ହେଲେ ଛୁଟି ଗୀତ, ବର୍ଷା ହେଲେ ବର୍ଷା ଗୀତ ଗାଇ ସେ ଆମକୁ ନଚାଉଥିଲେ ।

ରୁବୁ ଅପା ଓ କିରଣ ଅପା ବାହା ହୋଇ ନିଜ ସଂସାରକୁ ଚାଲିଗଲେ । କିନ୍ତୁ ବାବାଜୀ ଭାଇ ଆମମାନଙ୍କୁ ଜଗି ବସିଲେ । ଛାତ୍ର ଜୀବନ ସାରି ମୁଁ ସେଠାରେ କିଛି ଦିନ ଶିକ୍ଷକତା କରିଥିଲି । ପିଲାମାନଙ୍କର ପରିଚାଳକ ଭାବେ କାମ କରି ମୁଁ ଶିଖିଥିବା କାମ ପିଲାମାନଙ୍କୁ ଶିଖାଇବାରେ ପ୍ରୟାସ କରିଥିଲି ।

ମୋର ପରବର୍ତ୍ତୀ ଜୀବନ ମଧ୍ୟ ନୂମାଙ୍କର ପ୍ରଭାବରୁ ମୁକ୍ତ ହୋଇ ନଥିଲା । ମା' ପରି ମୋର ପାଖେ ପାଖେ ରହି ଶେଷରେ ୧୯୬୦ ମସିହାରେ ମୋର ବିବାହ କାର୍ଯ୍ୟ ମଧ୍ୟ ସେ ସେହି ବାଜିରାଉତ ଛାତ୍ରାବାସରେ ସମ୍ପନ୍ନ କରାଇଥିଲେ । ସେଥିରେ ନୂମାଙ୍କ ସହିତ ବାପି, ବୁନ୍ଦି, ଗୁରୁଜୀ, ବାବାଜୀଭାଇ ଏବଂ ଦୀନବନ୍ଧୁ ସାହୁ ସମସ୍ତେ ଉପସ୍ଥିତ ଥିଲେ । କହିବା ବାହୁଲ୍ୟ ହେବ ଯେ ପରେ ମୋର ତିନିଟି ସନ୍ତାନ ମଧ୍ୟ ନୂମାଙ୍କର ବାତ୍ସଲ୍ୟ ମମତା ପାଇ ବାଜିରାଉତ ଛାତ୍ରାବାସର ବଗିଚାରେ ଫୁଲ ପରି ଫୁଟି ଉଠିଥିଲେ ।

କର୍ମମୟ ଜୀବନର ପରବର୍ତ୍ତୀ ଅଙ୍କରେ ମୁଁ ନୂମାଙ୍କର ନିକଟରେ ରହୁନଥିଲେ ବି ମୋର ସ୍ମୃତିରେ ସେ ସବୁବେଳେ ସ୍ଥିର ହୋଇ ଯାଇଥିଲେ । ମଝିରେ ମଝିରେ ଦେଖା ସାକ୍ଷାତରେ ତାଙ୍କର 'ଚନ୍ଦ' 'ଚନ୍ଦ' ଡାକରେ ମମତାର ଝଲକ ପାଇ ମୁଁ ପୁଲକିତ ହୋଇଉଠୁଥିଲି ।

୧୯୪୭ରୁ ୧୯୯୮ ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ମୋ ଜୀବନ ଇତିହାସରେ ନୂମା ଏକାଧାରରେ ମୋର ଜନନୀ, ଗୁରୁ ଓ ପ୍ରେରଣାର ନାୟିକା ହୋଇ ମୋ ଜୀବନକୁ ଧନ୍ୟ କରିଛନ୍ତି । ସେ ଆଜି ରକ୍ତ, ମାଂସ ଶରୀରରେ ନାହାନ୍ତି ଆଉ ତାଙ୍କର ମମତାମୟୀ ଚେହେରା ଆଉ ତୀକ୍ଷ୍ଣ ଛୁରି ସମାନ ସ୍ୱର ସବୁ ଦିନ ପାଇଁ ସ୍ୱପ୍ନ ହୋଇଯାଇଛି ବୋଲି ଭାବିଲାବେଳକୁ ମୁଁ ଦୁଃଖରେ ମ୍ରିୟମାଣ ହୋଇପଡ଼ୁଛି । ସୋମନାଥପୁର, ଖଲ୍ଲର, ଓ ଖମାର ପ୍ରଭୃତି ଗ୍ରାମ ଓ ସନ୍ନିକଟ ଲିଙ୍ଗରା ନଦୀ କୂଳରେ ଯେଉଁ ନୂମାଙ୍କର କର୍ମତତ୍ପର ଜୀବନରେ ଆମେମାନେ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲୁ, ସେହି ନଦୀଜଳରେ ନୂମାଙ୍କର ଚିତାଭସ୍ମକୁ ତର୍ପଣ କଲାବେଳେ ମୋ ଆଖିରୁ ଯେମିତି ଆଉ ଏକ ଉପନଦୀ ବାହାରି ଲିଙ୍ଗରା ନଦୀରେ ମିଶି ଯାଉଥିଲା !

ପ୍ଲଟ ନଂ—୬୭୭, ଜେଲରୋଡ଼
ଶାନ୍ତିନଗର (ଝାରପଡ଼ା)
ଭୁବନେଶ୍ୱର-୬

---

"ମୋ ମୃତ୍ୟୁ ପୂର୍ବରୁ ମୁଁ ସାରା ଭାରତରେ ନିଶାମୁକ୍ତ ସମାଜ ଚାହେଁ ।"

—ମାଳତୀଦେବୀ

# ତ୍ରାଣକର୍ତ୍ତ୍ରୀ ମାଳତୀଦେବୀ

□ ଗଣେଶ୍ୱର ପ୍ରଧାନ

କୋରାପୁଟର ସ୍ୱାଧୀନତା ସଂଗ୍ରାମୀ ବୀର ଲକ୍ଷ୍ମଣ ନାଏକଙ୍କୁ ହତ୍ୟା ଅପରାଧରେ ଜଡ଼ିତ କରାଯାଇ ଫାଶୀ ଦିଆ ସରିଥାଏ । ଭାରତର ପୂର୍ବ ଭାରତୀୟ ଗଡ଼ଜାତ ସମୂହର ରାଜନୈତିକ ମୁଖ୍ୟ (Political Agent of Estern States Agency) ମେଜର ବେଜଲଗେଟ୍ (Major Budgleget)ଙ୍କ ହତ୍ୟାକାଣ୍ଡରେ ଜଡ଼ିତ କରାଯାଇ ଓଡ଼ିଶାର ରଣପୁର ଗଡ଼ଜାତର ସ୍ୱାଧୀନତା ସଂଗ୍ରାମୀ ରଘୁ, ଦିବାକରମାନଙ୍କୁ ମଧ୍ୟ ଫାଶୀଦଣ୍ଡରେ ଦଣ୍ଡିତ କରାଯାଇଥାଏ ।

ଏ ଦୃଷ୍ଟାନ୍ତକୁ ଆଖି ଆଗରେ ରଖି ତାଳଚେର ରାଜ ସରକାରଙ୍କ ତରଫରୁ ତାଳଚେର ଜେଲ ମଧ୍ୟରେ ଥିବା ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ମଦନମୋହନ ପ୍ରଧାନ, ଶ୍ରୀଯୁକ୍ତ ମାଗୁଣି ଚରଣ ପ୍ରଧାନ, ଶ୍ରୀଯୁକ୍ତ ଦାସରଥି ପାଣି ଓଗେର ଓ ଫେରାର ହୋଇଯାଇଥିବା ବିପ୍ଳବୀ ବୀର ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନ ଓଗେର ସହକର୍ମୀମାନଙ୍କୁ ରାଜଦ୍ରୋହ ଅପରାଧରେ ଫାଶୀଦଣ୍ଡ ଦିଆଯିବା ନିମିତ୍ତ ଏକ ପରିକଳ୍ପିତ ଯୋଜନା ତିଆରି କରାଗଲା ।

ଏହି ଷଡ଼ଯନ୍ତ୍ର ମକଦ୍ଦମା (Conspiracy Case)ର ବିଷୟବସ୍ତୁ ଏହି ଯେ, ୧୯୪୨ ସେପ୍ଟେମ୍ବର ସାତ ତାରିଖରେ ଜେଲ ଭିତରେ ଏବଂ ବାହାରେ ଥିବା ସ୍ୱାଧୀନତା ସଂଗ୍ରାମୀମାନେ ଜନସାଧାରଣଙ୍କୁ ମତାଇ, ଉତ୍ତେଜିତ କରି ରାଜା ଏବଂ ତାଳଚେର ରାଜ ପରିବାର ଲୋକଙ୍କୁ ହତ୍ୟା କରିବା ପାଇଁ ସଶସ୍ତ୍ର ଆକ୍ରମଣ କରିଥିଲେ । ବ୍ରିଟିଶ ସରକାରଙ୍କ ଆକାଶ ସେନାର ସହାୟତା ପାଇ ନ ଥିଲେ ରାଜା ଏବଂ ରାଜ ପରିବାର ଧ୍ୱଂସ ପାଇଥାଆନ୍ତେ ।

ଏହି ମହା ଅଭିଯୋଗ ତାଳଚେର କୋର୍ଟରେ ଆଗତ କରାଯାଇ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଫାଶୀଦଣ୍ଡ ଦିଆଯିବା ପାଇଁ ରାଜସରକାରଙ୍କ ତରଫରୁ ମକଦ୍ଦମା ଆରମ୍ଭ କରାଗଲା ।

ସେ କାଳରେ ତାଳଚେର କୋର୍ଟର ନିଷ୍ପତ୍ତି ବିରୋଧରେ ଅପିଲ କରି ନ୍ୟାୟ ପାଇବାପାଇଁ କୌଣସି ଉଚ୍ଚ ଅଦାଲତର ବ୍ୟବସ୍ଥା ନ ଥିଲା । ରାଜାସ୍ୱୟଂ ଗଡ଼ଜାତ ରାଜ୍ୟମାନଙ୍କର ସର୍ବୋଚ୍ଚ ଅଦାଲତ । ରାଜାଙ୍କର ଉପସ୍ଥାପିତ ଏ ମକଦ୍ଦମାର ପରିଣାମ ଯେ କେଡ଼େ ଭୟାବହ ତାହା ଅନୁମେୟ । ସାରା ଓଡ଼ିଶାରେ ଏହା ଚର୍ଚ୍ଚାର ବିଷୟ ହୋଇଗଲା ।

ଏତେବେଳେ ଭାରତର ରାଜନୈତିକ ପରିସ୍ଥିତି ତମସାଚ୍ଛନ୍ନ । ମହାତ୍ମାଗାନ୍ଧୀ, ନେହେରୁଙ୍କଠାରୁ ଆରମ୍ଭ କରି ସମଗ୍ର ଭାରତ ତଥା ଓଡ଼ିଶାର ବରେଣ୍ୟ ନେତୃବୃନ୍ଦ ସମସ୍ତେ ବନ୍ଦୀ ।

ସୌଭାଗ୍ୟର କଥା—ଓଡ଼ିଶାର ମୁକ୍ତିସଂଗ୍ରାମର ଶକ୍ତି-ସ୍ୱରୂପା ଶ୍ରୀମତୀ ମାଳତୀ ଚୌଧୁରୀଙ୍କର ମିଆଦ ପୂର୍ଣ୍ଣ ହୋଇ-ଯିବାରୁ ସେ ଜେଲରୁ ମୁକ୍ତିଲାଭ କରି ସର୍ବସାଧାରଣରେ ଉଭା ହୋଇଗଲେ । ଲୁଚି, ଛପି କାର୍ଯ୍ୟରତ ଥିବା ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ଆନନ୍ଦ ଉତ୍ସାହ ଖେଳିଗଲା । ନବ ସୂର୍ଯ୍ୟୋଦୟରେ ରାତିର ଅନ୍ଧକାର ଅପସାରିତ ହେଲାପରି ଆନ୍ଦୋଳନପ୍ରେମୀମାନଙ୍କ ହୃଦୟରେ ସତେ ଯେପରି ସେହି ଶକ୍ତିମୟୀଙ୍କଠାରୁ ବିକଶିତ ଉଦ୍ଦାମ ଶକ୍ତି ସହସ୍ର ଗୁଣରେ ସଞ୍ଚାରିତ ହୋଇ ଦେଶପ୍ରାଣଙ୍କ ସମସ୍ତଙ୍କୁ ଉଦ୍‌ବୁଦ୍ଧ କଲା ।

ଅନୁଗୁଳଠାରେ ତାଙ୍କ ଆଶ୍ରମରେ ଅବସାଦଭରା ମନ-ନେଇ ମୁଁ ସାକ୍ଷାତ କଲି ମାଳତୀଦେବୀଙ୍କୁ । ମୋର ଦୟନୀୟ ବିଷନ୍ନ ମନର ଭାବ ତାଙ୍କର ମହାନତା ବଳରେ ସେ ବୁଝିପାରିଥିଲେ । ଅତି ନିକଟରୁ ଡାକି ମୋତେ ଆଶିଷ ଦେଇ ଏପରି ବିଷନ୍ନତାର କାରଣ ପଚାରି ବୁଝିଲେ ।

ଏହି ଆନ୍ଦୋଳନ ଭିତରେ ମୋର ପିତା ପଦ୍ମନାଭ ପ୍ରଧାନଙ୍କର ଦେହାନ୍ତ ସାଙ୍ଗକୁ ମୋର କକା ମଦନ ମୋହନ ପ୍ରଧାନ ଓଗେର ତାଳଚେରର ସମସ୍ତ ସଂଗ୍ରାମୀ-ମାନଙ୍କ ନାମରେ ଚାଲିଥିବା ଷଡ଼ଯନ୍ତ୍ର ମକଦ୍ଦମାର ବିଶଦ ବିବରଣୀ ମୋ'ଠାରୁ ଶୁଣିବାକୁ ପାଇ ପ୍ରଥମେ ମାଳତୀଦେବୀ ଚିନ୍ତିତ ହୋଇ ପଡ଼ିଲେ ।

ପରଦିନ ମୋତେ ସାଙ୍ଗରେ ଧରି ମାଳତୀଦେବୀ କଟକର ସୁପ୍ରତିଷ୍ଠିତ ଆଡ଼ଭୋକେଟ ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁଙ୍କ ସହିତ ସାକ୍ଷାତ କଲେ । ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁ ଜଣେ ପ୍ରତିଷ୍ଠିତ ସ୍ୱାଧୀନତା ସଂଗ୍ରାମୀ । ପୂର୍ବରୁ ୧୯୩୮ ମସିହାରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର କେତେକ ମକଦ୍ଦମା ଲଢ଼ିବାରେ ଅଭିଜ୍ଞତା ତାଙ୍କର ଥିଲା । ତାଳଚେର ଆନ୍ଦୋଳନ ଓ ରାଜଦରବାରଙ୍କର ସଂଗ୍ରାମୀମାନଙ୍କ ବିରୋଧରେ ଆଗତ ମିଥ୍ୟା ମକଦ୍ଦମାଗୁଡ଼ିକ ବିଷୟରେ ବିଶେଷ ଭାବରେ ସେ ଅବହିତ ଥିଲେ ।

ସେ ମହାଶୟ ନୈରାଶ୍ୟବାଣୀ ଶୁଣାଇ କହିଲେ ଯେ "ଗଡ଼ଜାତ ଶାସନ ତ ଅନ୍ଧାରିଶାସନ । ସେଠାରେ ରାଜା ହିଁ ସର୍ବେସର୍ବା । ଗଡ଼ଜାତର ଅଦାଲତରେ ରାୟ ବିରୋଧରେ ଅପିଲ କରିବା ପାଇଁ High Court ବା Supreme Court ନାହିଁ । ରାଜାଙ୍କ ଅଦାଲତରେ ନିଯୁକ୍ତ ମାଜିଷ୍ଟ୍ରେଟ୍‌ମାନେ ସେମାନଙ୍କର ଭୃତ୍ୟ ସଦୃଶ । ରାଜା ଯେମିତି ଚାହିଁବେ ସେମାନେ ସେମିତି ରାୟ ଦେବାକୁ ବାଧ୍ୟ । ନଚେତ୍ ମାଜିଷ୍ଟ୍ରେଟର ଚାକିରି ଗଲା । କେବଳ ସେତିକି ନୁହେଁ ସେମାନଙ୍କୁ ମଧ୍ୟ ମିଥ୍ୟା ମକଦ୍ଦମାରେ ପକାଇ ଦଣ୍ଡ ଦେବା ରାଜାମାନଙ୍କର ଚିରାଚରିତ ଅଭ୍ୟାସ ।"

ଦୀନବନ୍ଧୁବାବୁ ତାଙ୍କସହ ତାଳଚେରରେ ଘଟିଥିବା ଏକ ଘଟଣାର ପୁନଃବିବରଣୀ ପ୍ରଦାନ କରି କହିଲେ—

ମୋ ନିଜ ଅନୁଭବ କଥା ଶୁଣନ୍ତୁ ମାଳତୀଦେବୀ । ତାଳଚେରର ଘଟଣା । ମୋ ସହକାରୀ ମୋର ଫାଇଲ ପତ୍ରଧରି ମୋ ପଛେ ପଛେ ସାଇକେଲରେ ଆସୁଛି । ତାଳଚେର କଚେରୀ ପାଖାପାଖି ମୋ ସହକାରୀର ସାଇକେଲକୁ ପୋଲିସ ଜବତ୍ କଲା । ସାଇକେଲଟିକୁ କାହିଁକି ଜବତ କରୁଛ ବୋଲି ମୁଁ ପୋଲିସକୁ ପଚାରିଲି ? ପୋଲିସ ଠାରୁ ଉତ୍ତର ଶୁଣିଲି ରାଜାଙ୍କ ହୁକୁମ୍ । ମୁଁ ସେହି କେଶ୍‌କୁ ନିଜ ହାତରେ ନେଇ ଲଢ଼ିଲି; ମୋର ଅନୁଭୂତି ପାଇଁ । ସାଇକେଲଟିର ସମସ୍ତ ଅଂଶ ଠିକ୍ ଥିଲେ ମଧ୍ୟ ସାଇକେଲରେ ବ୍ରେକ୍ ଓ ଲାଇଟ ନାହିଁ (ଦିନଟାରେ) ବୋଲି ଦର୍ଶାଇ ମୋ ସହକାରୀ ମଦନ ସୁନ୍ଦର ପ୍ରଧାନଙ୍କୁ ଛଅ ମାସ ସଶ୍ରମ କାରାଦଣ୍ଡ ଦିଆଗଲା ।

ଅଛି ଏ କେଶ ତ ରାଜଦ୍ରୋହ (Conspiracy) ପୁନଶ୍ଚ ଦେଶୀୟ ରାଜ୍ୟରେ ଆଇନର ଅର୍ଥ କିଏ ବୁଝୁଛି । ଓକିଲ ସେଠାରେ କରିବ ବା କଅଣ ? କେବଳ ଅପଦସ୍ଥ ହେବାହିଁ ସାର । ରାଜାର ଇଚ୍ଛା ଏମାନଙ୍କ ଫାଶୀ ଅନିବାର୍ଯ୍ୟ ।"

ଦୃଢ଼ମନା ମାଳତୀଦେବୀ ସବୁ ଶୁଣିସାରି କହିଲେ "ଯାହା କହୁଛ ଦୀନବନ୍ଧୁ କିଛି ନୂଆ କଥା ନୁହଁ । ତା ବୋଲି ଅନ୍ୟାୟ ଅନୀତି ବିରୋଧରେ ସଂଗ୍ରାମରୁ ଆମେମାନେ ନୀରବୀ ଯିବା କି ? ଏହା ତ କାପୁରୁଷର ଲକ୍ଷଣ । ଚରମ ନିର୍ଯାତନା ମଧ୍ୟରେ ଆମକୁ ଅଗ୍ରସର ହେବାକୁ ପଡ଼ିବ । ପ୍ରଜାମଣ୍ଡଳର ଏହି ବୀର ସୈନିକମାନଙ୍କୁ ମୁକୁଳାଇବା ପାଇଁ ଚରମ ତ୍ୟାଗ ଓ ଦୁଃଖ କଷ୍ଟର ସମ୍ମୁଖୀନ ହେବା ଆମର ପବିତ୍ର କର୍ତ୍ତବ୍ୟ ।"

ଭାବି ଦେଖ ଦୀନବନ୍ଧୁବାବୁ ! ଏ ମକଦ୍ଦମାକୁ ଲଢ଼ିଲେ ଅନ୍ତତଃ କୌଶଳରେ ତାରିଖ ଗଡ଼ାଇ ଚାଲିଲେ ବିଚାର ଶେଷ ବେଳକୁ କିଛି ସମୟ ଆମ ହାତରେ ପାଇବା । ଭାରତର ରାଜନୈତିକ ବାତାବରଣ ପରିବର୍ତ୍ତିତ ହୋଇ-ଯାଇପାରେ । ମହାତ୍ମାଗାନ୍ଧୀ, ନେହେରୁ ପ୍ରଭୃତିଙ୍କ ମୁକ୍ତି ଲାଭ ପରେ ଏମାନଙ୍କୁ ଫାଶୀଖୁଣ୍ଟରେ ଝୁଲାଇବା ଏତେ ସହଜ ନୁହେଁ । ଏଣୁ ଯେ କୌଣସି ତ୍ୟାଗ ସ୍ୱୀକାର କରିବାକୁ ହେଲେ ମଧ୍ୟ ଆମର ଉଦ୍ୟମ ଜାରି ରଖିବାକୁ ହେବ । ଉଦ୍ଦେଶ୍ୟ ଯଦି ମହତ୍, ଭଗବାନ ଆମକୁ ସହାୟ ହେବେ । ଏଥିରେ ଆମେ ଯଦି ନିରାଶ ହୋଇ ପଛେଇ ଯିବା ସେମାନଙ୍କର କେହି ସାହା-ବାହା ନାହିଁ ଭାବି ତାଳଚେର ରାଜା ଏହି ସଂଗ୍ରାମୀମାନଙ୍କର ବିଚାର କରି ତୁରନ୍ତ ଫାଶୀ ଦେଇ ଦେବାର ବ୍ୟବସ୍ଥା କରିଦେବ ।

ତେବେ ମକଦ୍ଦମା ଲଢ଼ିବାକୁ ଆବଶ୍ୟକ ଅର୍ଥ କେଉଁଠୁ ଆସିବ ? ମୋତେ ପ୍ରଶ୍ନ କରିବାରୁ ମୁଁ ଉତ୍ତର ଦେଇ ପାରିଲି ନାହିଁ । ଦୁଃଖରେ ମ୍ରିୟମାଣ ହୋଇ ମୁଁ କାନ୍ଦି ପକାଇଲି । ମାଳତୀଦେବୀ ବସିଥିବା ଚୌକିରୁ ଉଠିଆସି ତାଙ୍କର ପଣତରେ ମୋର ଲୁହ ପୋଛି ଦେଇଥିଲେ । ଆଶ୍ୱାସନା ଦେଇ କହିଲେ "ଗଣେଶ୍ୱର ତୁମେ କାନ୍ଦୁଛ କାହିଁକି ? ମୁଁ ସେମିତି କହିଦେଲି ସିନା । ସଂଗ୍ରାମୀମାନେ ତ ଜେଲ ଭିତରେ ଆବଦ୍ଧ । ସେମାନଙ୍କର ସମ୍ପତ୍ତିବାଡ଼ି ସମସ୍ତ ବାଜ୍ୟାପ୍ତ । ପିଲାଛୁଆ ସବୁ ଦାଣ୍ଡର ଭିକାରି । ତାଳଚେର ପ୍ରଜାମାନଙ୍କ ଅବସ୍ଥା ମୋତେ କଅଣ ଅଜଣା ? ତୁମେ ମୋତେ ଏହା ଜଣାଇ ଦେଇଛ । ତୁମର କର୍ତ୍ତବ୍ୟ ଶେଷ ହୋଇ ଯାଇଛି । ଏଣିକି ଦାୟିତ୍ୱ ମୋର । ତୁମେ ନିଶ୍ଚିନ୍ତ ରହ । ମୋର ଜୀବନ ପଣ କରି ମୁଁ ସେମାନଙ୍କୁ ରକ୍ଷା କରିବି ।"

ଦୀନବନ୍ଧୁବାବୁଙ୍କ ସହିତ ଆଲୋଚନା ଶେଷ କରି ତା ପରଦିନ ସେଇ ଟ୍ରେନରେ ଅନୁଗୁଳ ଫେରିଲୁ ।

ଶ୍ରୀଯୁକ୍ତ ବିଲୋଚନ ମିଶ୍ର ସେତେବେଳେ ଅନୁଗୁଳ କୋର୍ଟର ଜଣେ ପ୍ରତିଷ୍ଠିତ ଯୁବ ଆଡ଼ଭୋକେଟ । ତାଙ୍କର ଚେତନାରେ ଉଦ୍‌ବୁଦ୍ଧ ହୋଇ ସେ ଅନୁଗୁଳର ସ୍ୱାଧୀନତା ସଂଗ୍ରାମୀମାନଙ୍କର ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ ହୋଇଥାଆନ୍ତି ।

ତାଳଚେର ରାଜସରକାରଙ୍କର Conspiracy Case ରୂପକ ପରିକଳ୍ପିତ ମିଥ୍ୟା ଅଭିଯୋଗର ସମସ୍ତ ବିବରଣୀ ଶୁଣିବା ପରେ ଅତ୍ୟନ୍ତ ଆନନ୍ଦ ଓ ଆଗ୍ରହର ସହିତ ଶ୍ରୀଯୁକ୍ତ ବିଲୋଚନ ମିଶ୍ର ନିଜ ହାତକୁ ଏ ମକଦ୍ଦମାଟି ନେବା ପାଇଁ ସ୍ୱୀକାର କଲେ ।

କାଳବିଳମ୍ବ ନ କରି ତତ୍ପର ଦିବସରେ ଶ୍ରୀଯୁକ୍ତ ବିଲୋଚନ ମିଶ୍ର ତାଳଚେର ଆସି ଜେଲ ଭିତରେ ଥିବା ଅଭିଯୁକ୍ତମାନଙ୍କୁ ସାକ୍ଷାତ କରି ତାଳଚେର ଅଦାଲତରେ ଓକିଲତନାମା ଦାଖଲ କଲେ ।

ସହାୟକ ଭାବରେ ମୁଁ ତାଙ୍କର ନଥିପତ୍ର ଧରି ତାଙ୍କ ସାଙ୍ଗରେ ଅନୁଗୁଳରୁ ତାଳଚେର ଯିବା ଆସିବା କରୁଥାଏ । ସେତେବେଳେ ଆଜିର ପିଚୁ ରାସ୍ତା ବା ଯାନବାହନ ନଥାଏ । ଉତ୍ତପ୍ତ ଖରା ଓ ପାଣି କାଦୁଅ ରାସ୍ତାରେ ତାଳଚେର ଯିବାଆସିବା କରିବା, ବିଶେଷରେ ବର୍ଷାକାଳରେ ଗୁରୁଡାଙ୍ଗୁଲି ଗ୍ରାମଠାରେ ଥିବା ନଦୀର ଘୋର ବଢ଼ି ପାଣି ଭିତରେ ସାଇକେଲଟିକୁ କାନ୍ଧରେ ଧରି ଅତିକ୍ରମ କରିବା ଯେ କେତେ କଷ୍ଟସାଧ୍ୟ ଆଜିର ମଣିଷ ତାହା ଉପଲବ୍ଧି କରିପାରିବ ନାହିଁ ।

ତଥାପି ବିନା ପାରିଶ୍ରମିକରେ ଜଣେ ସ୍ୱାଧୀନତା ସଂଗ୍ରାମୀର ଭୂମିକା ନେଇ ତାଳଚେର ନେତୃବୃନ୍ଦଙ୍କୁ ଫାଶୀ ଦଣ୍ଡରୁ ରକ୍ଷା କରିବା ପାଇଁ ଆଡ଼ଭୋକେଟ ଶ୍ରୀ ବିଲୋଚନ ମିଶ୍ର ତାଙ୍କର ଅକ୍ଳାନ୍ତ ଉଦ୍ୟମ ଓ ଅଦମ୍ୟ ନିଷ୍ଠାରୁ ଟିକେ ହେଲେ ବିଚ୍ୟୁତ ଘଟାଇ ନାହାନ୍ତି । ସେଥିପାଇଁ ତାଙ୍କ ପାଖରେ ସମସ୍ତ ତାଳଚେରବାସୀ ଚିର ଋଣୀ ।

ପୁନଶ୍ଚ ସେଇ ଏକ କଥା । "ମୋତେ ଯେତେ ମାଠିବୁ ମାଠ ମୁଁ ସେଇ ଦରପୋଡ଼ା କାଠ ।" ଗଡ଼ଜାତ ଅଦାଲତରେ ଆଇନର ସ୍ଥାନ ନାହିଁ । Argument ପାଇଁ ଯେତେବେଳେ ସାକ୍ଷୀମାନଙ୍କର ଜମାନବନ୍ଦୀ ଓ Advocateଙ୍କର ଜେରା ଜବାବର ନକଲ ବିଲୋଚନ ମିଶ୍ର ଦେଖିଲେ ତାହା ସମସ୍ତ ଓଲଟପାଲଟ କରାଯାଇଛି । ସମସ୍ତ କାଗଜକୁ ଜାଲ୍ କରାଯାଇ ସରକାରଙ୍କ ଉଦ୍ଦେଶ୍ୟକୁ ସାକାର କରିବା ପାଇଁ ରାଜାଙ୍କ ନିଯୁକ୍ତ ମାଜିଷ୍ଟ୍ରେଟମାନେ ଦରଜ କରିସାରିଛନ୍ତି । ରାଜସରକାରଙ୍କର ଏହି ହୀନ ଆଚରଣରୁ ସନ୍ଦେହଟି ସତ୍ୟରେ ପରିଣତ ହେବ ବୋଲି ଦୃଢ଼ ପ୍ରତୀୟମାନ ହେଲା । ଏହି ବିଚାରଧାରାରୁ ବନ୍ଦୀ ସଂଗ୍ରାମୀମାନେ ମଧ୍ୟ ସେମାନଙ୍କୁ ଫାଶୀ ଦିଆଯିବାର ଆଭାସ ପାଇ ସାରିଥିଲେ ।

ଏଣୁ ଅଦାଲତ ପରିସର ମଧ୍ୟରେ ଥିବା ସମୟରେ ସମସ୍ତ ସଂଗ୍ରାମୀ ମୋତେ ଏକ ଅନୁରୋଧ କଲେ । ସମସ୍ତଙ୍କ ତରଫରୁ ମୋର କକା ଶ୍ରୀଯୁକ୍ତ ମଦନ ମୋହନ ପ୍ରଧାନ କହିଲେ "ଗଣେଶ୍ୱର । ଆମର ଜୀବନ ରକ୍ଷା ନିମିତ୍ତ ଆମର ନେତ୍ରୀ ମହୀୟସୀ ବରେଣ୍ୟା ମାଳତୀଦେବୀ, ସହୃଦୟ Advocate ଶ୍ରୀଯୁକ୍ତ ବିଲୋଚନ ମିଶ୍ର ଆମମାନଙ୍କ ମଙ୍ଗଳ ନିମିତ୍ତ ବହୁ କଷ୍ଟବରଣ କରିଛନ୍ତି । ଆମେ ସେମାନଙ୍କଠାରେ ଜନ୍ମ-ଜନ୍ମାନ୍ତରରେ ଋଣୀ । ଏ ତ ଅଦାଲତ ନୁହେଁ । ଏ ରାଜସରକାର ଆମକୁ ଫାଶୀ ଦେବ । ଦେଶ-ଦଶ ପାଇଁ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ମୃତ୍ୟୁକୁ ବରଣ କରିବା ଆମମାନଙ୍କର ପରମ ସୌଭାଗ୍ୟ ।

ତେବେ ପରମ ଶ୍ରଦ୍ଧେୟା ମାଳତୀଦେବୀଙ୍କୁ ଆମମାନଙ୍କର ଏକାନ୍ତ ଶେଷ ଅନୁରୋଧ ଜଣାଇବ । ଏହା ପରେ ଷଡ଼ଯନ୍ତ୍ର ମକଦ୍ଦମାର ରାୟ ଦିଆଯିବ । ଆସନ୍ତା ତାରିଖରେ ରାୟ ଦେବା ସମୟରେ ଶ୍ରୀମତୀ ମାଳତୀଦେବୀ ଏହି ଅଦାଲତରେ ଆମକୁ ସାକ୍ଷାତ ଦେବେ । ତାଙ୍କୁ ପଶ୍ଚାତରେ ଦର୍ଶନ ମାତ୍ର କରି ଆମେ ହସି ହସି ଫାଶୀ ଆଦେଶକୁ ଆନନ୍ଦରେ ଗ୍ରହଣ କରିନେବୁ । ଏ ଜନ୍ମରେ ତ ଆଉ ଦେଖା ସାକ୍ଷାତର ସମ୍ଭାବନା ନାହିଁ । ଏହାହିଁ ଆମର ତାଙ୍କ ପ୍ରତି ଶେଷ ଅନୁରୋଧ ।"

ଏପରି ଏକ ଦୁଃଖଦ ସମ୍ବାଦ ଓ ସଂଗ୍ରାମୀମାନଙ୍କର ତାଙ୍କ ପ୍ରତି ଥିବା ଅତୁଟ ଶ୍ରଦ୍ଧା ମୋଠାରୁ ଶୁଣିବା ପରେ ଶ୍ରୀମତୀ ମାଳତୀଦେବୀ ବଡ଼ ଅଧୀର ହୋଇପଡ଼ିଲେ । ଏବଂ କହିଲେ, ରାୟ ତାରିଖରେ ସେ ନିଶ୍ଚିତ ରୂପେ ତାଳଚେର ଅଦାଲତରେ ଉପସ୍ଥିତ ହୋଇ ସମସ୍ତଙ୍କୁ ସାକ୍ଷାତ କରିବେ ।

ଆପଣ ବଅଁରପାଳ ରାସ୍ତାରେ ଗଲେ, ତାଳଚେର ସୀମାରେ ପହଞ୍ଚିବା ମାତ୍ରେ ଆପଣଙ୍କୁ ତାଳଚେର ପୋଲିସ ଗିରଫ କରି ଅଟକାଇ ଦେବ । ଆପଣ କେଉଁବାଟରେ କିପରି ପହଞ୍ଚି ପାରିବେ ବୋଲି ମୁଁ ପଚାରିଲି ? ମୋତେ ଉତ୍ତରରେ କହିଲେ, "ତୁମେ ଆଦୌ ଚିନ୍ତା କରିବ ନାହିଁ ଗଣେଶ୍ୱର । ମୁଁ ନିଶ୍ଚୟ ଯିବି । ବାଟରେ ଯାଇ ନ ପାରିଲେ ମୁଁ ଅବାଟରେ ଯିବି । ତାଳଚେର ରାଜଶକ୍ତି ମୋତେ ଅଟକାଇ ପାରିବ ନାହିଁ ।"

ରାୟ ଦେବା ଦିନ ମୁଁ କଚେରିରେ ଅପେକ୍ଷା କରିଥାଏ । ସମସ୍ତ ସଂଗ୍ରାମୀ ବନ୍ଦୀମାନଙ୍କୁ କଡ଼ା ନିରାପତ୍ତା ସହିତ କୋର୍ଟ ମଧ୍ୟରେ ଉପସ୍ଥାପିତ କରାଗଲା । ମାଳତୀଦେବୀ ଆସିବାର ସମ୍ବାଦ ମୁଁ ବନ୍ଦୀମାନଙ୍କୁ ଜଣାଇଦେଲି । ତାଳଚେର କଚେରି ଠାରୁ ତାଳଚେର ବଜାର ଛକ ପର୍ଯ୍ୟନ୍ତ ସାଇକେଲରେ ମୁଁ ଦୁଇ ଚାରି ଥର ବୁଲୁଥାଏ । ବଜାର ପଟରୁ ଫେରି ଥରେ ହଠାତ୍ ଦେଖିଲି ଶ୍ରୀମତୀ ମାଳତୀଦେବୀ ତାଙ୍କ ସାଥିରେ ବୟୋବୃଦ୍ଧ ସଂଗ୍ରାମୀ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଢ଼ିହାରୀଙ୍କୁ ଧରି ଅଦାଲତ ଅଗଣାରେ ହାଜର । ଦୁହିଁଙ୍କ କାନ୍ଧରେ ଦୁଇଟି ଝୁଲାମୁଣି, ଅଧିକ କେବଳ ପଢ଼ିହାରୀଙ୍କ ହାତରେ ଭର ଦେଇ ଚାଲିବା ପାଇଁ ଖଣ୍ଡିଏ ବାଡ଼ି ।

ବାସ୍ତବରେ ମୁଁ ପଚାରିଲି ବଜାର ଛକରୁ ଏପର୍ଯ୍ୟନ୍ତ ପ୍ରାୟ ମାଇଲିଏ ରାସ୍ତାରେ ତ ମୁଁ ଆପଣଙ୍କୁ ଜଗିଥିଲି । ଆପଣ ଏଠାରେ କିପରି ପହଞ୍ଚିଲେ ? ହସି ହସି ସେ କହିଲେ ତୁମେ ଜାଣି ପାରୁ ନାହିଁ ଏପର୍ଯ୍ୟନ୍ତ ? ତୁମେ ସତର୍କ କରିଦେଇଥିଲ ନାଁ ? ଏଣୁ ମେରାମଣ୍ଡଳ ଠାରୁ ନଦୀ ପାର ହୋଇ ବ୍ରାହ୍ମଣୀ ନଦୀର କୂଳ ପାଖେ ପାଖେ ଚାଲି ଆସି ଖାଇପାଳ ଘାଟଦେଇ ଏଇ କଚେରିରେ ଆସି ପହଞ୍ଚି ଯାଇଛୁ ? କିଏ ଆମକୁ ଆଉ ଅଟକାଇବ ?

କଚେରି ବାରଣ୍ଡାକୁ ଉଠିବା ମାତ୍ରେ ଅଦାଲତର କାଠଗଡ଼ାରେ ଛିଡ଼ା ହୋଇଥିବା ସମସ୍ତ ଅଭିଯୁକ୍ତ ସଂଗ୍ରାମୀ ବନ୍ଦୀଗଣ ଆନନ୍ଦରେ ଅଧୀର ହୋଇଗଲେ । ଗୋଡ଼ର ବେଡ଼ି ଓ ହାତର କଡ଼ିକୁ ସେମାନେ ସମ୍ପୂର୍ଣ୍ଣ ପାଶୋରି ପକାଇଲେ । ସମସ୍ତ ଶୃଙ୍ଖଳକୁ ପଛରେ ପକାଇ ଅଦାଲତ କକ୍ଷ ମଧ୍ୟରୁ ବାହାରି ଆସି ମାଳତୀଦେବୀଙ୍କୁ ଅଭିନନ୍ଦନ ଜଣାଇଲେ । ଶ୍ରୀମତୀ ମାଳତୀଦେବୀ ଓ ପଢ଼ିହାରୀ ମହୋଦୟ ଉଭୟେ ସମସ୍ତଙ୍କ ହୃଦୟରେ ହୃଦୟ ମିଳାଇଦେଲେ । ସେହି ଅପୂର୍ବ ମିଳନର ଦୃଶ୍ୟ ଚିରକାଳ ପାଇଁ ମୋ ମାନସପଟରେ ଅଙ୍କିତ ହୋଇ ରହିଯାଇଛି ।

ଦିନ ପ୍ରାୟ ଘ ୧୧-୩୦ ମିନିଟ । ମାଜିଷ୍ଟ୍ରେଟ ଏପର୍ଯ୍ୟନ୍ତ ଆସି ନାହାନ୍ତି । ମୋତେ ପଚାରିଲେ ମାଳତୀଦେବୀ "ଏ ଅଦାଲତରେ Visitor ବସିବା ବ୍ୟବସ୍ଥା ନାହିଁ କାହିଁକି ? କେଉଁଠି ବସିବା ଆମେ ?" ସେତେବେଳେ ଶୁଣିବା ଲୋକର କଥା କିଏ ପଚାରେ ଓକିଲଙ୍କ ବସିବା ପାଇଁ କଚେରିରେ ବ୍ୟବସ୍ଥା ନାହିଁ । ଏ ସବୁ "ଅନ୍ୟାୟ ମୂଳକ ଆଜ୍ଞା" ମୁଁ ଜଣାଇଲି । ପୁଣି ସେ ପ୍ରଶ୍ନ କଲେ, ମାଜିଷ୍ଟ୍ରେଟ କିଏ ? କେଉଁଠି ତାଙ୍କ ଖାସ କାମେରା ମୋତେ ଦେଖାଇ ଦିଅନ୍ତ ଗଣେଶ୍ୱର । ମୁଁ ସଙ୍ଗେ ସଙ୍ଗେ ମାଜିଷ୍ଟ୍ରେଟଙ୍କ କାମେରା ପର୍ଯ୍ୟନ୍ତ ତାଙ୍କୁ ନେଇଗଲି ।

ମାଳତୀଦେବୀ ମାଜିଷ୍ଟ୍ରେଟଙ୍କ କକ୍ଷକୁ ପଶିଯାଇ କହି ଉଠିଲେ । ଆରେ, ଜଗମୋହନ ତୁମେ ଏଇଠି କ'ଣ କରୁଛ ? "ମୁଁ ଏଇଠି ମାଜିଷ୍ଟ୍ରେଟ ଅଛୁ ମାଡ଼ାମ," ଚୌକିରୁ ଉଠି ନମସ୍କାର କଲେ ମାଜିଷ୍ଟ୍ରେଟ ।

ଓଃ, ତୁମେ ତେବେ ଏଇ କୋର୍ଟର Special Magistrate । ଠିକ୍ ଅଛୁ, ପ୍ରାଣକୃଷ୍ଣ ପଢ଼ିହାରୀ ମୋ ସାଙ୍ଗରେ ଆସିଛନ୍ତି । ଆମେ ଏଇ Conspiracy Caseର hearing ଶୁଣିବାକୁ ଆସିଛୁ । ଆମ ଦୁଇଜଣଙ୍କ ବସିବା ପାଇଁ ତୁମ କୋର୍ଟକୁ ଦୁଇଟା ଚେୟାର ପଠାଅ । ଏତିକି କହି ମାଳତୀଦେବୀ କାମେରା ଭିତରୁ ବାହାରି ଆସିଲେ ଏବଂ ସଙ୍ଗେ ସଙ୍ଗେ ଦୁଇଟି ଚୌକି ଅଣାଗଲା । ମାଳତୀଦେବୀ ଓ ପଢ଼ିହାରୀ ମହାଶୟ ଦୁଇଟି ଚୌକିରେ ବସିଗଲେ । ଗୋଟାଏ ଚେୟାର ଖାଲି ପଡ଼ିଲା । ମୋ ସମ୍ମୁଖରେ ମୋର ଗୁରୁଜନ ସଂଗ୍ରାମୀବୃନ୍ଦ କାଠଗଡ଼ାରେ ଛିଡ଼ା ହୋଇଛନ୍ତି । ମୁଁ କିପରି ସେଠି ବସି ପାରିବି ?

ଆଜି କେବଳ ରାୟ ଦିଆଯିବ । ମାଜିଷ୍ଟ୍ରେଟ ଆସିଲେ ରାୟ ପଢ଼ି ଶୁଣାଇଦେବେ । କିନ୍ତୁ ୧୨ଟା ପରେ ଗୋଟାଏ; ତାପରେ ଅପରାହ୍ଣ ଦୁଇଟା ସମୟ ହେଲା । ଅପେକ୍ଷା ପରେ ଅପେକ୍ଷା କରି ବିରକ୍ତି ପ୍ରକାଶ କରି ମାଳତୀଦେବୀ କହିଲେ । "ଗଣେଶ୍ୱର ଯାଅ ତ । ସେ ମାଜିଷ୍ଟ୍ରେଟଙ୍କୁ ଟିକିଏ କହ । ତାଙ୍କଠାରୁ ରାୟ ଶୁଣିବାପରେ ଆମେ ତ ପୁଣି ଅନୁଗୁଳ ଫେରିଯିବୁ । ଏପରି ଏକ ନିର୍ଦ୍ଦେଶରେ ମୁଁ ଶଙ୍କିତ ହେଲେ ମଧ୍ୟ ମାଳତୀଦେବୀଙ୍କ ଆଦେଶକୁ ଅବମାନନା କରିବା ମୋ ପକ୍ଷରେ ଅଶୋଭନୀୟ । ଏ ରୂପ ବିଚିତ୍ର ସଙ୍କଟ ଭିତରେ ବାଧ୍ୟ ହୋଇ ମୁଁ ମାଜିଷ୍ଟ୍ରେଟଙ୍କ କକ୍ଷ ଭିତରକୁ ଚାଲି ଯାଇଥିଲି ।

ମାଳତୀଦେବୀଙ୍କ ଅନୁରୋଧ ବିଷୟ ମୁଁ ଜଣାଇବା ପୂର୍ବରୁ ମାଜିଷ୍ଟ୍ରେଟ ସ୍ୱୟଂ ମୋତେ ତାଙ୍କର ଅତି ନିକଟକୁ ଯିବା ପାଇଁ ଇସାରା ଦେବାରୁ ମୁଁ ତାଙ୍କ ଚୌକି ପାଖକୁ ଚାଲିଗଲି । କୋଠରିର ନିର୍ଜନତାକୁ ନଜର ପକାଇ ଅତି ସନ୍ତର୍ପଣରେ ମୋତେ ମାଜିଷ୍ଟ୍ରେଟ କହିଲେ —"ମୋ ଘର ଶ୍ରୀମତୀ ମାଳତୀଦେବୀଙ୍କ ଘର ପାଖରେ । ସେ ଆସିଛନ୍ତି ଭଲ ହେଲା । ନଚେତ୍ ମୋ ଜୀବନରେ ମୁଁ ଆଜି ଏକ ମସ୍ତବଡ଼

ଭୁଲ କରିବାକୁ ଯାଉଥିଲି । ସେଥିପାଇଁ ସାରା ଜୀବନଟା ମୋ ପାଇଁ ନିତ୍ୟାନ୍ତ ଦୁର୍ବିସହ ହୋଇଥାଆନ୍ତା । ତେବେ ମାଳତୀଦେବୀଙ୍କୁ ଦର୍ଶନ କରି ବର୍ତ୍ତମାନ ଯାହା କରିବାକୁ ଯାଉଛି ସେଥିପାଇଁ ମୋର ଏ ଶୁକର ଖଣ୍ଡିକ ଯିବ । ତଥାପି ମୁଁ ଶାନ୍ତି ପାଇବି । ମାଳତୀଦେବୀଙ୍କୁ କହିବ, ଭଟକରେ ମୋ ପାଇଁ ଗୋଟିଏ ଶୁକର ଯୋଗାଡ଼ କରିଦେବେ । ମୁଁ ତାଙ୍କୁ କଟକରେ ଭେଟିବି । ଏବେ ଟାଇପ ଚାଲିଛି । ଆଉରି ଘଣ୍ଟାଏ ପର୍ଯ୍ୟନ୍ତ ବିଳମ୍ବ ହୋଇପାରେ । ଟାଇପ କାର୍ଯ୍ୟ ଶେଷ ହେଲେ ମୁଁ ଅଦାଲତକୁ ଯିବି ।

ଏହି ସମୟ ମଧ୍ୟରେ ମାଳତୀଦେବୀଙ୍କୁ ଦେଖିବା ପାଇଁ ସମଗ୍ର କଟକର, ରାଜରାସ୍ତା ଲୋକାରଣ୍ୟ ହୋଇ ଯାଇଥାଏ । ତଥାପି ରାଜ-ଶାସନ-ଦଣ୍ଡ ଭୟରେ ମାଳତୀଦେବୀଙ୍କ ପାଖକୁ ଆସିବାକୁ ଜଣେହେଲେ କେହି ସାହସ କରି ଆସୁ ନ ଥାଆନ୍ତି ।

ମାଜିଷ୍ଟ୍ରେଟ ମହୋଦୟଙ୍କ ବାର୍ତ୍ତା ମୁଁ ପହଞ୍ଚାଇ ଦେବା ପରେ ମାଳତୀଦେବୀ ଓ ପରିହାରୀ ଉଭୟେ ଶାନ୍ତ ଓ ଗମ୍ଭୀର ହୋଇ ବସି ରହିଲେ ।

ଅପରାହ୍ଣ ତା ୩-୩୦ ମିନିଟରେ ମାଜିଷ୍ଟ୍ରେଟ ଅଦାଲତକୁ ଆସି ଦୀର୍ଘ ୪୫ ପୃଷ୍ଠାର ରାୟ ପାଠ କରିଗଲେ । ସ୍ଥାନେ ସ୍ଥାନେ ଟାଇପ ଭୁଲକୁ ମାଜିଷ୍ଟ୍ରେଟ ନିଜେ ନିଜ ହାତରେ ସଂଶୋଧନ କରି ପଢ଼ୁଥାଆନ୍ତି । ଅତି ଉତ୍ସୁକତାର ସହିତ ରାୟର ଅମୂଳ ଚୂଳ ପାଠ ଶୁଣିବାକୁ ହେଲା । ସଂଗ୍ରାମୀମାନଙ୍କ ମଧ୍ୟରୁ କାହାକୁ ୩ ବର୍ଷ, କାହାରିକୁ ୨ ବର୍ଷ କାହାରିକୁ ୧ ବର୍ଷ ଏହିପରି ଜେଲ ଦଣ୍ଡରେ ଦଣ୍ଡିତ କରି-ଯାଇଥାଏ । କାହାରିକୁ ଫାଶୀ ଦଣ୍ଡ ଦିଆଯାଇ ନ ଥିବାରୁ ସମସ୍ତ କଏଦୀଙ୍କ ଅନନ୍ଦ ଉଲ୍ଲାସରେ ଭରି ଯାଇଥିଲା ।

ସମସ୍ତ ବନ୍ଦୀଗଣ ଆନନ୍ଦାତିଶଯ୍ୟରେ ଏକ ସ୍ୱରରେ କହି ଉଠିଲେ ମାଳତୀଦେବୀଙ୍କ ଜୟ, ମହାତ୍ମା ଗାନ୍ଧୀଙ୍କ ଜୟ ସ୍ୱାଧୀନ ଭାରତ କି ଜୟ ।

ଏଇତ ଜ୍ୱଳନ୍ତ ପ୍ରମାଣ । ତାଙ୍କ ସମ୍ମୁଖରେ ଅବନମିତ ହୋଇ ଯାଇଥିଲା କ୍ରୂର, ନିଷ୍ଠୁର ପ୍ରଶାସକ । ତାଙ୍କର ଦର୍ଶନରେ ଭରି ରହିଥିଲା ଯାଦୁକରୀ ମାୟା । ନବନୀତରେ ପରିଣତ ହେଉଥିଲା ପଥର । ତାଙ୍କରି ଅଗ୍ନିବର୍ଷୀ ବାଣୀରେ ଦୀନ, ଦୁଃଖୀ, କଙ୍କାଳର ପ୍ରାଣରେ ଭରି ଯାଉଥିଲା ପ୍ରାଣ ପ୍ରାଚୁର୍ଯ୍ୟ । ମହାନତାରେ ସେ ଥିଲେ ମାତା ଗଙ୍ଗା ।

ସୁପ୍ରତିଷ୍ଠିତ ବାରିଷ୍ଟର ପରିବାରର ଅଳିଅଳୀ କନ୍ୟା ଏକ ଉତ୍କଳର ରାଜରାଣୀର ଅଧିକାରୀ ଥିଲେ ସେ । କିନ୍ତୁ ସକଳ ପାର୍ଥିବ ସମ୍ପଦ, ପଣ, ଧନ, ମର୍ଯ୍ୟାଦା, ମାନ, ସମ୍ମାନ ଲୋଟିଯାଇଛନ୍ତି ତାଙ୍କ ପଦ ତଳେ । କେହି ତାଙ୍କୁ ସ୍ପର୍ଶ କରିବାର ଅବସର ପାଇ ନାହାନ୍ତି ।

ପ୍ରେମ, ତ୍ୟାଗ ଓ ପ୍ରଜ୍ଞାର ସେ ଥିଲେ ମୂର୍ତ୍ତିମନ୍ତ ଅବତାର ।
ଆମରି ଆଗରେ ରହିଯାଇଛନ୍ତି ସେ ଜ୍ୱଳନ୍ତ ଆଦର୍ଶ ।
ହେ ମନସ୍ୱିନୀ, ମମତାମୟୀ ତୁମ !

ନିର୍ଯ୍ୟାତିତ, ନିଷ୍ପୀଡ଼ିତ, ଦୀନ, ଦୁଃଖୀ, ଦଳିତ ଜନର ସନ୍ତାନମାନଙ୍କ ପ୍ରତି ତବ, ଶାଶ୍ୱତ, ଆଶିଷର ଧାର ଅବାରିତ ରହୁ ।

ଗ୍ରାମ / ପୋ-କୁମୁଣ୍ଡା
ତାଳଚେର

---

"ଦେଖିବାକୁ ଗଲେ ଜନତା କିଛି ନୁହନ୍ତି, ମାତ୍ର ବୁଝିବାକୁ ଗଲେ ସେମାନେ ହିଁ ସବୁ ।"

—ମାଳତୀଦେବୀ

# ଫୁଲ ଫୁଟାଇବା ଗୀତ ଗାଇଯା……

□ ଟୁକୁ ମହାନ୍ତି

ଆଜି ସବୁ ଇତିହାସ । ଫୁଲ ନାହିଁ—ମହକ ଟିକିଏ ଚେତାଇ ଦେଉଛି ତାର ରଙ୍ଗ ଓ ଗଠନ । ୫୦ ବର୍ଷ ଶେଷ ହେଲା । ସରକାରୀ ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଉଛି ; ସମ୍ମ-ଶବଟାକୁ କାନ୍ଧରେ ଥୋଇ । ଆମେ ତାକୁ ଦେଶର ସ୍ୱାଧୀନତା ବୋଲି ହୁରି ଛାଡୁଛେ । ଗୋଟାଏ ଶକ୍ତିମାନ ଯୁବକ ଗଢ଼ିବାର ବାହାନାରେ ଆମେ ୫୦ ବର୍ଷ ଭିତରେ ତାକୁ ମଡ଼ାଟାଏ କରି ଦେଇଛୁ । ବିଦେଶୀ ସାମଗ୍ରୀ ବର୍ଜନର ଇତିହାସ ଭୁଲିଯାଇଛୁ । ବିଦେଶୀ ବଜାର ଆଜି ଦେଶରେ ଲହଡ଼ି ଖେଳିଲାଣି । କିଏ କାହାକୁ ପଚାରିବ ଏହାର ତାତ୍ପର୍ଯ୍ୟ ? ଯିଏ କିଛି ବୁଝିଥିଲା, ହୃଦୟଙ୍ଗମ କରିଥିଲା, ସେ ଗଲାଣି । ଯିଏ ସେମାନଙ୍କ ଭିତରୁ ରହିଯାଇଛି ସେ ତ ବୟସାଧିକ୍ୟରୁ ପଙ୍ଗୁ ସମାନ । ଏତିକି ବେଳେ ସେଥିପାଇଁ ସେମାନେ ସାମ୍ନାକୁ ଆସୁଛନ୍ତି । ସାମ୍ନାକୁ ଆସୁଛି ସେମାନଙ୍କ କାର୍ଯ୍ୟ କଳାପ-ସ୍ୱାଧୀନତାର ପ୍ରାକ୍‌କାଳର କର୍ମ ଚଞ୍ଚଳତା ।

୧୯୩୦ ବେଳର କଥା । ଇଞ୍ଚୁଡ଼ି ଠାରୁ କୁଜଙ୍ଗ ଓ କାଜଟପୁର ପର୍ଯ୍ୟନ୍ତ ଲୁଣମରା ଚାଲିଲା । ମାଳତୀଦେବୀ, ରମାଦେବୀ, କୁଜଙ୍ଗରାଣୀ ଭାଗବତୀଦେବୀ, କିରଣବାଳା ସେନ୍‌ଙ୍କୁ ସାଥୀ କରି, ଶହ ଶହ ଝିଅ-ବୋହୂଙ୍କ ମେଳରେ ଲୁଣ ମାରିଲେ । ମାଳତୀଦେବୀ ଗିରଫ ହେଲେ ପୋତା ନଈଠାରେ । ସରକାରଙ୍କ ଶ୍ୟେନଦୃଷ୍ଟି ଭିତରେ ଚଳ ପ୍ରଚଳ ହେବାକୁ ବାଧ୍ୟ ହେଲେ ମାଳତୀଦେବୀ ଓ ରମାଦେବୀ । ତାହା କିନ୍ତୁ ଅଧିକ ସଂଯମଶୀଳତାର ଶିକ୍ଷା ଦେଲା । ଦାୟିତ୍ୱ ବହନ କରିବାର ସାହସ ମନକୁ ଆଣିଦେଲା । କର୍ତ୍ତବ୍ୟ ପ୍ରତି ମମତା ଓ ଦୃଢ଼ ମନୋଭାବ ପ୍ରକଟେଇଲା । ତେଣୁ ସ୍ୱାମୀ ନବକୃଷ୍ଣ ଚୌଧୁରୀଙ୍କ ସହ ମିଶି କୃଷକ ସଂଘ ଗଢ଼ିଲେ । କୃଷୀ-ମୂଲିଆଙ୍କ ଭିତରେ ଚେତନା ଆଣିବାକୁ ନିଜ ଗହଣା ବିକି "ସାରଥି" ପତ୍ରିକା ପ୍ରକାଶ କଲେ ।

ରଜାର ଶାସନ ଭାଙ୍ଗିବାକୁ ପରେ ପରେ ପ୍ରଜାମଣ୍ଡଳ ବି ଗଢ଼ାଗଲା । ସେ ଗଡ଼ଜାତମାନ ବୁଲି ବୁଲି ପ୍ରଜାଙ୍କୁ ସଙ୍ଗଠିତ କଲେ । ଅତ୍ୟାଚାରିତ ପ୍ରଜାଙ୍କ ପିଲାମାନଙ୍କର ଓ ଆଦିବାସୀ ପିଲାଙ୍କ ଶିକ୍ଷା ପାଇଁ ୧୯୪୭ରେ ଗଢ଼ା ଗଲା ବାଜିରାଉତ ଛାତ୍ରାବାସ ।

ଗାନ୍ଧୀଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମ ଭିତରେ, ଶୃଙ୍ଖଳିତ ହୋଇ, ଆଦିବାସୀ ସେବାରେ ସେ ନିଜକୁ ବିଶେଷ ଭାବରେ ନିୟୋଜିତ କଲେ , ସ୍ୱାଧୀନତା ପ୍ରାପ୍ତି ପରେ ପରେ । ଯଦିଓ ସ୍ୱାଧୀନତା ପୂର୍ବରୁ ଓଡ଼ିଶା କଂଗ୍ରେସର ସେ ସଭାନେତ୍ରୀ ଥିଲେ । ସ୍ୱାଧୀନତା ପରେ ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟା, ରାଜ୍ୟ ସମାଜ ମଙ୍ଗଳ ଉପଦେଷ୍ଟା ବୋର୍ଡ଼ର ସେ ପ୍ରଥମ ଅଧ୍ୟକ୍ଷା ଏବଂ ଉତ୍କଳ ଗାନ୍ଧୀ ସ୍ମାରକ ନିଧିର ସମ୍ପାଦିକା ଓ ସଭାନେତ୍ରୀ ମଧ୍ୟ ଥିଲେ । ସବୁଠାରୁ ନିଜକୁ ମୁକୁଳାଇ ଆଦିବାସୀର ସେବାରେ ଜୀବନ ଉତ୍ସର୍ଗ କରିବାକୁ ସେ ପଣ କଲେ ଓ ଗଢ଼ାଗଲା—"ଉତ୍କଳ ନବଜୀବନ ମଣ୍ଡଳ ।"

ସାଙ୍ଗରେ ରହିଲେ ନବ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ସାରଙ୍ଗଧର ଦାସ, ଈଶ୍ୱରଲାଲ ବ୍ୟାସ, ରାଜକୃଷ୍ଣ ବୋଷ, ଆଚାର୍ଯ୍ୟ ହରିହର, ଉପେନ୍ଦ୍ର ମହାପାତ୍ର ଓ ତା' ରମାଦେବୀ । ଓଡ଼ିଶାର ଆଦିବାସୀ ଅଞ୍ଚଳରେ ଉକ୍ତ ଅନୁଷ୍ଠାନ ସେଦିନରୁ କାମ କରି ଚାଲିଛି । ଆଦିବାସୀଙ୍କୁ ରୋଗମୁକ୍ତ କରି, ଶିକ୍ଷାଦେଇ, ନାଗରିକ କରି ଗଢ଼ିବାକୁ ଓ ତା'ଉପରେ ହେଉଥିବା ଅତ୍ୟାଚାର ଓ ଜୁଲମକୁ ମୁକାବିଲା କରିବାକୁ ସେ ଅନେକ ଭଉଣୀଙ୍କୁ ତାଲିମ୍ ଦେଇ ସେବାକାର୍ଯ୍ୟରେ ଲଗାଇ ଜୀବନର ସମସ୍ତ ସମୟତକ ଘୂରି ବୁଲିଛନ୍ତି ଓ ସେମାନଙ୍କ ଚିନ୍ତାରେ ଘାରିହୋଇ ଶେଷ ନିଶ୍ୱାସ ଛାଡ଼ିଛନ୍ତି ।

ମୋର ତାଙ୍କ ସହ ପରିଚୟ ଅନ୍ଧଯୁଗ (Emer-gency)ର କିଛି ପୂର୍ବରୁ । ତାଙ୍କୁ ଯଦିଓ ଜାଣିଥିଲି ୧୯୫୭ ମସିହାର ସୀମା ଆନ୍ଦୋଳନ କାଳରୁ । ହାଇସ୍କୁଲର

ବୃଦ୍ଧାବସ୍ଥାରୁ ଓ ତାଙ୍କ ସ୍ୱାମୀ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କ ପ୍ରତି ମୋର ବିପରୀତ ମନୋଭାବ ରହି ଆସିଥିଲା ସେ ଦିନରୁ ।

୧୯୭୭ରେ ଢେଙ୍କାନାଳ ବିଧାନସଭା ନିର୍ବାଚନରେ ସହାୟତା ଦେବାକୁ ମହତାବ ବାବୁଙ୍କ ସହ ତାଙ୍କ ଘରେ ପହଞ୍ଚି ଢେଙ୍କାନାଳରେ ରହି ନିର୍ବାଚନ ଶେଷ ପର୍ଯ୍ୟନ୍ତ କାମ କରିବାର ପ୍ରତିଶ୍ରୁତି ଦେଇ ମୋର କେତେଜଣ ବନ୍ଧୁଙ୍କ ସହ ବୋଧେ ୧୮ ଦିନ କାର୍ଯ୍ୟ କରିଥିଲି ।

ସେ ସବୁଦିନେ କ୍ଷଣକୋପୀ ଓ ମୁଖରା ମଣିଷ । ମୋର ବି ବଦ୍‌ରାଗ ପ୍ରକୃତି ଓ ବଡ଼ପାଟି । ମୋତେ ସବୁବେଳେ ସେ ବଡ଼ପାଟିଆ ବୋଲି କହି ଆସିଛନ୍ତି ମୃତ୍ୟୁର ପୂର୍ବଦିନ ପର୍ଯ୍ୟନ୍ତ । ନିର୍ବାଚନର ପ୍ରଚାର ଦିନମାନଙ୍କରେ ବି ଆମ-ଭିତରେ ଅନେକ ତୋଫାନର ପୂର୍ବାଭାସ ଅନ୍ୟମାନେ ଲକ୍ଷ୍ୟ କରି ତାକୁ ନିୟନ୍ତ୍ରଣ କରିଛନ୍ତି । ଗୋଟାଏ ଘଟଣା ନ କହିଲେ ମୁଁ ଅପରାଧୀ ହୋଇ ରହିଯିବି । ନିର୍ବାଚନ ଆଉ ୨/୪ ଦିନ ଥାଏ । ମୁଁ କେଇଜଣ ପ୍ରଚାରକଙ୍କୁ ମୋ ଗାଡ଼ିରେ ବସାଇ ମେରାମୁଣ୍ଡଳି ଅଞ୍ଚଳର କୌଣସି ଗାଁକୁ ନିର୍ବାଚନ ପ୍ରଚାରରେ ଯାଉଥାଏ । ଆମ ଭିତରୁ ଜଣଙ୍କର କଟକ ଯିବାର ଆବଶ୍ୟକତା ପଡ଼ିଲା । ସେତେବେଳକୁ ଦିନ ବୋଧେ ଦିନଟା ପାଖାପାଖି । କେହି ଖାଇ ନ ଥାଉ । ମାଲତୀଦେବୀ ଆମେ ଯାଉଥିବା ଅଞ୍ଚଳ ଆଡ଼ୁ ତାଙ୍କ ପ୍ରଚାରକଙ୍କ ସହ ଫେରୁଥାନ୍ତି ଗୋଟାଏ ଜିପ୍‌ରେ । ମୁଁ ତାଙ୍କ ଗାଡ଼ିଟାକୁ ହାତ ଦେଖାଇ ଅଟକାଇ ଦେଲି ମୋ ଭିତରୁ ଜଣକୁ ଢେଙ୍କାନାଳ ଫେରିବାକୁ, ତାର କଟକ ଯିବାର କାରଣ ଯୋଗୁଁ । ନୁମା ଗାଡ଼ିରୁ ପ୍ରଚଣ୍ଡ ମୂର୍ତ୍ତି ସାଜି ଓହ୍ଲାଇପଡ଼ି ଗର୍ଜି ଉଠିଲେ । ସେ ସେପର୍ଯ୍ୟନ୍ତ କି ଖାଇନଥାନ୍ତି । ଭୋକରେ ଆଉଟି ପାଉଟି ହେଉଥିବାବେଳେ ମୁଁ ତାଙ୍କ ଗାଡ଼ିକୁ ଅଟକାଇ ଥିବାରୁ ଅକ୍ଷମଣୀୟ ଅପରାଧ ମୋ ଉପରେ ଲଦି ଚାଲିଲେ । ମୁଁ ବି ହଠାତ୍ ପାଟି କରି କହି ଉଠିଲି "ମୁଁ କଣ ଭଡ଼ାଟିଆ କର୍ମୀ କି ? ଆପଣଙ୍କୁ ସାଧାରଣ ଶିଷ୍ଟାଚାର ଜଣା ନାହିଁ । ଆପଣ ମୋତେ ପଚାରିବାର କଥା ମୁଁ ଖାଇଛି ନା ନାହିଁ ।" ସେ ହତଭମ୍ବ ହୋଇ ଛିଡ଼ା ହୋଇଗଲେ । କରୁଣାରେ ଆର୍ଦ୍ର କଣ୍ଠ । ମୁଁ ବେଖାତିର କରି ମୋ ଗାଡ଼ି ଚଲାଇ ଆଗକୁ ଚାଲିଗଲି ପ୍ରଚାରରେ । ବିଳମ୍ବିତ ରାତି ପର୍ଯ୍ୟନ୍ତ ମୋ ଫେରିବା ବାଟକୁ ଚାହିଁ କରି ରହିଥିଲେ ସେ ରାତିରେ । ବିଳମ୍ବରେ ମୋତେ ଦେଖି ପକାଇ "ତୁମେ ଫେରିନ—ମୁଁ ଶୋଇବାକୁ ଯାଇ ପାରୁ ନାହିଁ ।" ମମତାର ସେଇ ସ୍ନେହ ଚଇତାଳି ।

ସେଇ ୧୯୭୭ ନିର୍ବାଚନ ଭିତରେ ଅନ୍ୟ ଏକ ଦିନର ଘଟଣା । କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଏକାଠି କରି ବାଣୀ ଚୌକଠାରେ ଏକ ସଭାର ଆୟୋଜନ ହୋଇଥାଏ । ମୁଁ ନୁମା, ଦିନୁଅପା, ଓ ତାଙ୍କ ଜ୍ୱାଇଁ ବିଭୁଦତ୍ତବାବୁ ଢେଙ୍କାନାଳ ସହର ପଛରେ ହରିଜନ ସାହିକୁ ନିର୍ବାଚନ ପ୍ରଚାରରେ ଯାଇଥାଉ । ସେଠାରେ ହରିଜନଙ୍କ ପାଇଁ ପିଇବା ପାଣିର ବ୍ୟବସ୍ଥା ନ ଥିବା ଜାଣି ସେ ଚିତ୍କାର କରୁଥାନ୍ତି । ପାଣିର ବ୍ୟବସ୍ଥା ନ ହେବା ପର୍ଯ୍ୟନ୍ତ ସେ ଉଠିବେ ନାହିଁ ବୋଲି ଜିଦ୍ ଧରିଲେ । ସଭା କାର୍ଯ୍ୟ ଚାଲିପାରୁ ନ ଥାଏ ତାଙ୍କ ଅନୁପସ୍ଥିତି ଯୋଗୁଁ । ମୁଁ ବିରକ୍ତି ପ୍ରକାଶ କରି କହିଲି "ଆପଣ ଜିତିଲେ ସବୁ ହେବ" । ସେ ମୋ ଉପରକୁ ଲମ୍ଫ ଦେବାପରି ଚିତ୍କାର କରି ଉଠିଲେ । ଆମକୁ ଅନେକ ଅସୁବିଧା ସାମ୍ନା କରିବାକୁ ହେବ । ମଣିଷ ପାଇଁ ତା ଅଧିକାର ସପକ୍ଷରେ ତାଙ୍କ ଚେତନାର ପରିଚୟ ଏତିକି କ'ଣ ଯଥେଷ୍ଟ ହେବ ନାହିଁ ।

ମୁଁ କୋରାପୁଟ, ବେଲ୍‌ଘର, ଆର. ଉଦୟଗିରି, କେନ୍ଦୁଝରର ଭୂୟାଁପୀଢ଼ ଓ ଜୁଆଙ୍ଗପୀଢ଼ ବୁଲିଛି । ଟିକରପଡ଼ା ଅଞ୍ଚଳର ଉଚ୍ଚ ପାହାଡ଼ିଆ ଗାଁକୁ ଯାଇ ତାଙ୍କ ସମୟର ପୋଖରୀ ଓ ବିଦ୍ୟାଳୟ ଦେଖି ଆସିଛି । ସବୁ-ଠାରେ ରହିଛି ନୁମାଙ୍କ ସ୍ମୃତି । ଜୁଆଙ୍ଗପୀଢ଼ରେ ଆଜି ବି ସେମାନେ ଝୁରି ହେଉଛନ୍ତି, ନୁମା ଆଉ ସେ ଅଞ୍ଚଳକୁ ନଯିବା କାରଣରୁ । ଆଦିବାସୀଙ୍କୁ ମଣିଷର ପରିଚୟ ଦେବାକୁ ଦୁର୍ଗମ ପାହାଡ଼ ଚଢ଼ି ନିଘଞ୍ଚ ଅରଣ୍ୟ ଭିତରେ ହିଂସ୍ର ଜନ୍ତୁଙ୍କୁ ବେଖାତିର କରି ସେ ୪୦ ବର୍ଷ ତଳେ ସେଠାରେ ପହଞ୍ଚି, କାମ କରି, ନିଜର ପରିଚୟ ଜାହିର କରି ସ୍ମୃତି ରଖି ଯାଇଛନ୍ତି, ସେ ଅଞ୍ଚଳ ଆଜି ବି ନ ଦେଖିଲେ କେହି ବିଶ୍ୱାସ କରିବ ନାହିଁ ।

ସେ ତାଙ୍କର ଶ୍ରେଷ୍ଠ ଲେଖାଟିଏ "ଜୀବନ ସଂଗ୍ରାମ"ରେ ପ୍ରକାଶ କରିଛନ୍ତି "ସୁନ୍ଦରଗଡ଼ ଜିଲ୍ଲା ଭିତରେ ଗାଡ଼ି ପ୍ରବେଶ କଲା ମାତ୍ରକେ ଅକ୍ଷି ସାମ୍ନାରେ ୧୯୬୪ ମସିହାର ନୃଶଂସ ହତ୍ୟାକାଣ୍ଡର ତମାମ୍ ଚିତ୍ର ଝଲସି ଉଠିଲା । × × ଏହି ହତ୍ୟାକାଣ୍ଡ ପରେ ପରେ ସାରା ସୁନ୍ଦରଗଡ଼ ଜିଲ୍ଲାର ଅତି ଦୂରଦୂରାନ୍ତ ଗାଁଗହଳକୁ ଯାଇ, ଅତି ନିବିଡ଼ ଜଙ୍ଗଲ ଭିତରକୁ ପ୍ରବେଶ କରି ହତ୍ୟାକାଣ୍ଡର ବୀଭତ୍ସତା ପ୍ରତ୍ୟକ୍ଷ କରିଥିଲି । × × × ରାଉରକେଲାଠାରେ ଏହି ଲୌହ କାରଖାନା କରିବା ପୂର୍ବେ ଏହା ଏକ ଆଦିବାସୀ ଅଧ୍ୟୁଷିତ

ପାର୍ବତ୍ୟ ଅଞ୍ଚଳ ଥିଲା । ମାତ୍ର ଆଜି ସେ ଅଞ୍ଚଳରେ ଆଦିବାସୀଙ୍କର ପ୍ରଭାବ ବା ଆଧିପତ୍ୟ କାହିଁ ? ଏ ଦେଶର ସରକାର ଏକ ସମାଜବାଦୀ ସରକାର ହୋଇଥିଲେ ସର୍ବାଗ୍ରେ ଭୂମିଚ୍ୟୁତ ଏବଂ ବାସଚ୍ୟୁତ ଏହି ଆଦିବାସୀମାନଙ୍କୁ ନେଇ ଏକ ପ୍ରଶିକ୍ଷଣ ବିଦ୍ୟାଳୟ ଖୋଲି, ଲୌହ କାରଖାନାର ବିଶାଳ ଏବଂ ମହତ୍ତ୍ୱ ଉଦ୍ଦେଶ୍ୟ ବୁଝାଇ ଲୌହ କାରଖାନାକୁ ଏମାନଙ୍କର ନିଜର ଏକ ସମ୍ପଦ ଭାବରେ ଏମାନଙ୍କ ମନରେ କାରଖାନା ପ୍ରତି ମମତା ସୃଷ୍ଟି କରେଇ ପାରିଥାନ୍ତେ ।"

ଗତ ତା ୨୦-୭-୧୯୫୨ 'ଗ୍ରାମସେବକ'ରେ ପ୍ରକାଶିତ "ମୋର ଅ.ର. ଉଦୟଗିରି ଅଭିଜ୍ଞତା"ରେ ସେ ବର୍ଣ୍ଣନା କରିଛନ୍ତି "ଏ ସବୁ ଅଞ୍ଚଳର ପ୍ରାକୃତିକ ଦୃଶ୍ୟ ଯେପରି ମନୋହର ହୃଦୟାକର୍ଷକ ଏ ଅଞ୍ଚଳର ଅତ୍ୟାଚାର କାହାଣୀ ସେହିପରି ନିର୍ମମ ଓ ହୃଦୟ-ବିଦାରକ । × × ଏହା ବ୍ୟତୀତ ରାସ୍ତା ତିଆରି ବେଠି ଯାହାକି କୌଣସି ମଣିଷର କଳ୍ପନାତୀତ ତାହା ତ ଅଛି । ସରକାରୀ ହୁକୁମ ମୁତାବକ ସେଡ଼ ବେଠିକୁ ପ୍ରତି ଗାଁରୁ ଘରପିଛା ଜଣେ ବେଠିଆ ଯିବେ । × × ପାଠକେ ଅଣ ସେଡ଼ ଯେ ଦେଖିଥିବେ ସେ ଜାଣିବେ ଯେ ସମ୍ପୂର୍ଣ୍ଣ ବେଠିରେ ଏ କାର୍ଯ୍ୟ ଯେଉଁ ମଣିଷ କରାଉଛି ତାକୁ କ୍ରିମିନାଲ ଛଡ଼ା ଆଉ କୌଣସି ନାମରେ ଅଭିହିତ କରାଯାଇ ନ ପାରେ । × × ସବୁଠାରୁ ଦୁଃଖର କଥା ଅଣଆଦିବାସୀମାନଙ୍କ ଭିତରୁ କାହାକୁ ମାମୁଲି ଦେବାକୁ ପଡ଼େ ନାହିଁ ବା ବେଠି କରିବାକୁ ପଡ଼େ ନାହିଁ । × × × କର୍ମଚାରୀମାନଙ୍କ ବ୍ୟତୀତ ସ୍କୁଲ ମାଷ୍ଟରେ ବା ଯେ ଯେଉଁଆଡ଼ୁ ଆସିଲେ ହେଣ୍ଡିଆ ଡାକିଲା ମାତ୍ରକେ ବେଠିଆମାନେ ଯାଇ ସେମାନଙ୍କ ଭାର ବୋହିବା ପାଇଁ ବାଧ୍ୟ ହୁଅନ୍ତି ଏବଂ ନ' ଦଶ ମାଇଲ୍ ବାଟକୁ ଦୁଇ ତିନି ଅଣାରୁ ବେଶୀ ସେମାନଙ୍କ ଭାଗ୍ୟରେ ଜୁଟେ ନାହିଁ ।"

ସେହି ଗ୍ରାମସେବକରେ ତା ୨୭-୧-୧୯୫୩ ସଂଖ୍ୟାରେ ପ୍ରକାଶିତ "ଖଡ଼ିଆଳ ଓ ନୂଆପଡ଼ାରେ ଆଦିବାସୀ ଭାଇ-ମାନଙ୍କ ଦୁର୍ଦ୍ଦଶା" ସମ୍ପର୍କରେ ସେ ବର୍ଣ୍ଣନା କରିଛନ୍ତି ଯେ ରେଭିନ୍ୟୁ ଇନ୍‌ସପେକ୍ଟର ଭଳି ଥିବା ପଟୱାରୀ ଗ୍ରାମର ସାଧାରଣ ଚାଷୀଙ୍କୁ ଡରେଇ ଧମକେଇ ରଖି ଆସିଛି । ×× ପଟ୍ଟା ନ ଥିବାରୁ ଏ ଅଞ୍ଚଳର ପ୍ରଜାମାନେ ବିଦ୍ୟାଳୟର ଆଶ୍ରୟ ମଧ୍ୟ ନେଇପାରୁ ନାହାନ୍ତି ।"

ଜୁଲାଇ ୧୯୮୮ର ଏକ ସାକ୍ଷାତକାରରେ "ସଙ୍ଗୀତ ଭଳି ସେବା ମଧ୍ୟ ଏକ କଳା" ସେ ଥିଲା ତାଙ୍କ ବକ୍ତବ୍ୟ । ନାଗଭୂଷଣ ପଟ୍ଟନାୟକଙ୍କୁ ଯେତେବେଳେ ପ୍ରାୟ ପ୍ରାଣଦଣ୍ଡ ହୋଇ ଯିବାର ଥିଲା, ସେତେବେଳେ ମାଳତୀଦେବୀ ତାଙ୍କୁ ରାଜନୈତିକ କ୍ଷମା ଦିଆଯିବା ପାଇଁ ବିଭିନ୍ନ ମହଲରୁ ସରକାରଙ୍କ ଉପରେ ଚାପ ପକାଇଲେ । ସେ କହନ୍ତି "ତାଙ୍କ ପାଞ୍ଚ ଜଣ ସ୍ତ୍ରୀ ଥିଲେ ? ସ୍ତ୍ରୀ ଥିଲେ ଏଇ ଯୋଉ ଦଳ ଅତ୍ୟାଚାର କରୁଛି, କାହାକୁ ମାନୁନାହିଁ, ସେଥିରୁ ଗୋଟେ ଦି'ଟାକୁ ଖୋଜି ଖୋଜି ହତ୍ୟା କରିଦେଲେ ସେମାନେ ଡରି ଯିବେ, ଶାନ୍ତି ଆସିବ ।"

୧୯୫୦-୫୧ର କଥା । ରନ୍ଧଲେଇରେ ହୁକୁମ ଯୋଗୁ ୧୭୦୦ ଲୋକଙ୍କର ମୃତ୍ୟୁ ହେଲା । ନବବାବୁ ମୁଖ୍ୟମନ୍ତ୍ରୀ । ସେଠାରେ ୧୪୪ ଧାରା ଜାରି କରିବାକୁ ମାଳତୀଦେବୀ ମୁଖ୍ୟମନ୍ତ୍ରୀଙ୍କୁ ବାଧ୍ୟ କଲେ । ମୁଖ୍ୟମନ୍ତ୍ରୀ "ଧର୍ମ ନିରପେକ୍ଷ ରାଷ୍ଟ୍ର" ଅଳରେ ଆଇନଗତ ଅସୁବିଧା ଦେଖାଇଲେ । ମାଳତୀଦେବୀ ନିଜର କର୍ମୀଙ୍କୁ ନେଇ, ସେଠାରେ ପହଞ୍ଚି ନେପାଳି ବାବାକୁ ଘୋଷାରି ଆଣି ରନ୍ଧଲେଇ ଛାଡ଼ିବାକୁ ନିର୍ଦ୍ଦେଶ ଦେଲେ । ବିରକ୍ତ ପ୍ରକାଶ କରି "ଅନ୍ଧବିଶ୍ୱାସରେ ଲୋକମାନେ ମରିବେ, ଇଏ କି ଧର୍ମ ନିରପେକ୍ଷତା" ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶ୍ନ କରିଥିଲେ ।

ମାନବିକ ଅଧିକାରର ଚେତନା ତାଙ୍କୁ ଜୀବନର ଅଧିକରୁ ଅଧିକ ସମୟ ପାହାଡ଼, ଜଙ୍ଗଲ, ଖମା, ଖାଲ ଡିଆଁଇ ଓଡ଼ିଶା ସାରା ଘୂରାଇ ଥିଲା । ମଣିଷ ପାଇଁ, ତା ଅଧିକାର ସପକ୍ଷରେ ତାଙ୍କ ଚେତନାର ପରିଚୟ ଏତିକି କଣ ଯଥେଷ୍ଟ ହେବ ନାହିଁ ?

ପୁଣି ସେଇ ବୁଲ୍‌ବୁଲ୍‌ର କାହାଣୀ ମନରେ ଜାଗୁଛି । ଗୀତ ଗାଇ ଫୁଲ ଫୁଟାଇବାର ଅବିରାମ ପ୍ରଚେଷ୍ଟା କି ଗୋଟାଏ ସଂଗ୍ରାମ । ତା' ନୁହେଁ ତ ଆଉ କଣ ହୋଇ ପାରେ ? ହେମିଙ୍ଗ୍‌ୱେଙ୍କ(Hemingway) ଅମର ବାଣୀ ଏଇଠି ମନକୁ ଛୁଉଁଛି । Man is destroyed but never defeated". ପ୍ରକୃତିକୁ ଜୟ କରିବାର ସଂଗ୍ରାମ ତ ସେଇ ପ୍ରକୃତି ଶିଖାଇଛି, ତା ସୃଷ୍ଟିକୁ ବଞ୍ଚି ରହିବାକୁ । ସେ ପ୍ରକୃତି ସହିତ ଅନବରତ ସଂଗ୍ରାମ କରି ନ ପାରିଲେ ପ୍ରକୃତି କଣ ତାକୁ ବଞ୍ଚାଇ ରଖିଥାନ୍ତା ? ସେଇ ସୃଷ୍ଟି ଓ ବଳୟର ନିୟାମକ । ସେ ସେଥିପାଇଁ ପ୍ରଗଳ୍‌ଭ । ଗମ୍ଭୀର । ସ୍ନିଗ୍ଧ ଏବଂ କାନ୍ତ ।

ମାଳତୀଦେବୀ ଥିଲେ ଜନନୀ ଓ ଜାୟା । ସେ ଭୂଷ,

ବର୍ଷଣ ଓ ସ୍ନେହର ଫୁଲ ଫୋଟାଇବ ଭଳି । ମନରେ ତାଙ୍କର ବୁଲ୍‌ବୁଲ୍‌ର ସ୍ୱପ୍ନ, ରକ୍ତାକ୍ତ ହୋଇ ବ ଗୋଲାପକୁ ଲାଲ କରିବା ପାଇଁ । ଫୁଲ ଫୁଟାଇବା ର ସ୍ୱପ୍ନ ! ସେ ପୁଣି ଫୁଟିବ କପରି ? ତାକୁ ନାନାବାସ୍ନା ଗୀତ ଗାଇ ତା ମନରେ ସ୍ୱପ୍ନ ଭରିଦେଇ, ତରଙ୍ଗ ସୃଷ୍ଟି କଲେ ତ ଯାଇ ! ସେ ସେଥିପାଇଁ ବୀଣା ଧରିଥିଲେ, ଝଙ୍କାର ସୃଷ୍ଟି କରିବାକୁ । ସେଇ ମଣିଷ ମନରେ ନୂଆର ସୃଷ୍ଟି କରିବାକୁ ସେ ପଣ କରିଥିଲେ ଯେ ଭଦ୍ର ସମାଜର ମଣିଷକୁ ଦେଖି ଭୟରେ ଦୌଡ଼ି ପଳାଉଥିଲା; ମୃଗଟିଏ ଭୟଙ୍କର ବାଘର ସୁରାକ ପାଇ ନଘଞ୍ଚ ଅରଣ୍ୟର ପଥ ପାହାଡ଼କୁ ଦୌଡ଼ଯାଏ ଯେପରି ।

ସେଇ ଫୁଲ ଫୁଟିବାର ଗୀତ ଗାଇ ସେ ଚାଲିଯାଇଛନ୍ତି । ସେ ସୁର କେତେ ଯୋଜନକୁ, କେତେ କାଳକୁ ପ୍ରତଧ୍ୱନିତ କରିବ ତାହା ମହାକାଳ ବିଚାର କରିବ ।



"ସ୍ୱାଧୀନତା ଆନ୍ଦୋଳନ କାମରେ ଗାଁ ଗହଳରେ ବୁଲିବା ବେଳେ ଅନ୍ଧାର ଘର କୋଣରେ ଓଢ଼ଣା ପକାଇ ବସିଥିବା ଶହ ଶହ ବୋହୂ, ଭଉଣୀମାନଙ୍କର ସେଇ ଚିତ୍ର ମୁଁ ଦେଖିଛି, ନିର୍ଜନ କାରାବାସରେ ସେହିମାନଙ୍କର ସେ ଦୁର୍ଦ୍ଦଶାର ଚିତ୍ର ମୋ ଆଖି ଆଗରେ ଭାସି ଉଠିଲା ମାତ୍ରେ ମୋ ନିର୍ଜନ କାରବାସ ମୋ ପାଖରେ ମଧୁର ହୋଇ ଉଠିଛି ।"

—ମାଳତୀଦେବୀ

# ସାହସ, ସେବା ଓ ନିର୍ଭୀକତାର ପ୍ରହରୀ

❑ ଶିବପ୍ରସାଦ ଜେନା

ପୂର୍ବ ବଙ୍ଗ ବର୍ତ୍ତମାନ ବଙ୍ଗଳା ଦେଶରେ ୧୯୦୪ ଜୁଲାଇ ୨୬ରେ କୁମୁଦନାଥ ସେନ୍‌ଗୁପ୍ତ, ମାତା ସ୍ନେହଲତା ଦେବୀଙ୍କର କନିଷ୍ଠ ସନ୍ତାନ ରୂପେ ମାଲତୀଦେବୀ ଜନ୍ମ ଗ୍ରହଣ କରିଥିଲେ ଏବଂ ବାପା, ମା'ଙ୍କର ଅଲିଅଳି ସନ୍ତାନ ଭାବେ ବଢ଼ିଥିଲେ ।

ବାପା ଯେପରି ଜଣେ ସ୍ୱନାମଧନ୍ୟ ନିର୍ଭିକ ସଚ୍ଚୋଟ ଓ ପରୋପକାରୀ ବାରିଷ୍ଟର ଥିଲେ ସେହିପରି ଅଜା ବିହାରିଲାଲ- ଗୁପ୍ତ ଆଇ.ସି.ଏସ୍ ଥିଲେ । ଏବେକାର I.A.S. । ଉଭୟ ପରିବାରର ସ୍ନେହ, ଶ୍ରଦ୍ଧା, ଆଦର୍ଶ ଓ ଅନ୍ୟକୁ ସାହାଯ୍ୟ ଭାବର ପ୍ରଭାବ ପିଲାବେଳୁ ମାଲତୀ ଦେବୀଙ୍କ ଉପରେ ପଡ଼ିଥିଲା । ମା' ସ୍ନେହଲତା ଦେବୀ ଝିଅକୁ ମଧ୍ୟ ଉଭୟ ପରିବାରର ଆଦର୍ଶରେ ଅନୁପ୍ରାଣିତ ଜଣେ ମନସ୍ୱିନୀ ମହିଳା ଭାବେ ଗଢ଼ିବାକୁ ଚାହୁଁଥିଲେ ।

କିନ୍ତୁ "ବିଧିର ବିଧାନ କେ କରିବ ଆନ ।" ଯେତେ- ବେଳେ ତାଙ୍କୁ ୨୮ ବର୍ଷ ହୋଇଥିଲା, ସେ ପଢ଼ିବା ସଙ୍ଗେ ସଙ୍ଗେ ସଙ୍ଗୀତ ପ୍ରତି ଆକୃଷ୍ଟ ଥିଲେ । ତେଣୁ ରବୀନ୍ଦ୍ରନାଥ ଠାକୁରଙ୍କ ସାନିଧ୍ୟରେ ତାଙ୍କୁ ଶାନ୍ତିନିକେତନରେ ପଢ଼ାଇବା ପାଇଁ ସ୍ଥିର କରାଗଲା । ସେତେବେଳେ ଶାନ୍ତିନିକେତନ ସାରା ଦେଶରେ କଳାର ପୀଠ ରୂପେ ଉତ୍କର୍ଷ ଲାଭ କରିଥିଲା ।

ରବୀନ୍ଦ୍ରନାଥ ଠାକୁର କହିଲେ ଯଦି ମାଲତୀଦେବୀ (ମିନୁ) ଏଠାରେ ପଢ଼ିବ ତେବେ ସ୍ନେହଲତାଦେବୀ ଆସି ଝିଅମାନଙ୍କର ଦାୟିତ୍ୱ ନିଅନ୍ତୁ । ଝିଅର ଭବିଷ୍ୟତ ଓ ଝିଅକୁ ଦେଶର ଜଣେ ଶ୍ରେଷ୍ଠ ମହିଳା ଭାବେ ଗଢ଼ିବା ପାଇଁ ପିତା, ମାତା, ଅଜା, ଅଜା ଚାହୁଁଥିଲେ । ତେଣୁ ସ୍ନେହଲତା ଏ କଥାରେ ରାଜି ହୋଇଗଲେ ।

ନୁମା ଶାନ୍ତିନିକେତନରେ ପ୍ରବେଶ କରି ପଢ଼ିବା ସଙ୍ଗେ ସଙ୍ଗେ ସଙ୍ଗୀତ ଶିକ୍ଷା କଲେ ।

୧୯୨୦ରେ ମାଲତୀଦେବୀ ବେଥୁନ ସ୍କୁଲରୁ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍‌ସ ବା ମାଟ୍ରିକ୍ୟୁଲେସନ୍ ପାସ କରିବା ପରେ ଶାନ୍ତିନିକେତନରେ ଦୀର୍ଘ ସାତବର୍ଷ ଅଧ୍ୟୟନ କରି- ଥିଲେ । ସେହି ପଢ଼ିବା ସମୟରେ ଗାନ୍ଧୀଜୀଙ୍କର ଜାତିକୁ "ମୁକ୍ତି ଡାକରା" ଶୁଣିବା ସଙ୍ଗେ ସଙ୍ଗେ ନିଜକୁ ସଜାଗ ରଖି ରବୀନ୍ଦ୍ର ସଙ୍ଗୀତ, ବୀଣା-ବଂଶୀବାଦନ ଇତ୍ୟାଦି ଶିଖିଥିଲେ ।

ସେଠାରେ ସେ ପଣ୍ଡିତ କ୍ଷୀତିମୋହନ ସେନ୍, ଜଗଦାନନ୍ଦ ରାୟ, ଓ ଦେବେନ୍ଦ୍ର ନାଥ ଠାକୁର ଆଦି ଜାତୀୟ ବୀରମାନଙ୍କ ପ୍ରଭାବ ଦ୍ୱାରା ପ୍ରଭାବିତ ହୋଇଥିଲେ ।

ସେହି ସମୟରେ ନବକୃଷ୍ଣ ଚୌଧୁରୀ ବିଭିନ୍ନ ଜାତୀୟ କାର୍ଯ୍ୟକ୍ରମରେ ତାଲିମ ପାଇଁ ଶାନ୍ତିନିକେତନରେ ରହି ପଢ଼ୁଥିଲେ ।

ମାଲତୀଦେବୀଙ୍କ ସହିତ ଓଡ଼ିଆ ଯୁବକ ନବକୃଷ୍ଣ ଚୌଧୁରୀଙ୍କର ପରିଚୟ ହେଲା । ଉଭୟେ ଉଭୟଙ୍କର ବିଚାର ଆଦାନ ପ୍ରଦାନରେ ପ୍ରଭାବିତ ହୋଇ ପରସ୍ପରକୁ ଭଲ ପାଇ ବସିଲେ ଓ ବିଭା ହେବା ପାଇଁ ସ୍ଥିର କରି ୧୯୨୭ ଜୁଲାଇରେ ବିବାହ କରି ଓଡ଼ିଶା ଆସିଲେ । ଏହାର ସୂଚନା ମଧ୍ୟ ଚୌଧୁରୀ ପରିବାର ଜାଣି ଥିଲେ ଏବଂ ଗୋପବାବୁଙ୍କର ଏଥିରେ ସମ୍ମତି ଥିଲା ।

ଏହା ସେତେବେଳେ ବଙ୍ଗଳା ଓ ଓଡ଼ିଶାର ଗୋଟିଏ ଐତିହାସିକ ଘଟଣା ଥିଲା ।

ସେତେବେଳେ ଇଂରେଜ ସରକାରଙ୍କର ଦେଶ- ବାସୀଙ୍କ ପ୍ରତି ଅତ୍ୟାଚାର ସହିତ ରାଜା, ଜମିଦାରମାନଙ୍କର ମଧ୍ୟ କମ୍ ଅତ୍ୟାଚାର ନ ଥିଲା ।

ସେତେବେଳେ ନବକୃଷ୍ଣ ଚୌଧୁରୀ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସଭ୍ୟ ଥାଇ କୃଷକ ସଙ୍ଗଠନ କରୁଥିଲେ ।

ନବବାବୁ ଶାନ୍ତିନିକେତନରୁ ଫେରିବା ପୂର୍ବରୁ ଗୋପବାବୁ ୧୯୨୧ ଫେବୃୟାରୀରେ ମାଜିଷ୍ଟ୍ରେଟ ଚାକିରି ଛାଡ଼ି ସମସ୍ତ ପ୍ରକାର ଭୋଗବିଳାସରୁ ବିରତ ହୋଇ, ଗାନ୍ଧୀଙ୍କର ଆଶୀର୍ବାଦକୁ ପାଥେୟ କରି ରମାଦେବୀଙ୍କ ସହିତ ମିଶି କଂଗ୍ରେସ ସଙ୍ଗଠନ କାର୍ଯ୍ୟ କରୁଥାନ୍ତି ।

ସେତେବେଳକୁ ନୁମାଙ୍କୁ ଧରି ନବବାବୁ ଓଡ଼ିଶାକୁ ଫେରି ଆସିଥିଲେ । ଏହା ହେଉଛି ଦେଶସେବାର ଭବିଷ୍ୟତ ପାଇଁ ମଣିକାଞ୍ଚନ ଯୋଗ ।

୧୯୩୦ ଏପ୍ରିଲ ଓ ମେ ମାସରେ ଲବଣ ଆଇନ ଭଙ୍ଗ କରିବା ପାଇଁ ଦୁଇ ଜା' ଓ ଦୁଇ ଭାଇଙ୍କର ପ୍ରେରଣାରେ ଶହ ଶହ ଯୁବକ ଯୁବତୀ ବାହାରି ପଡ଼ିଲେ । ପ୍ରଥମରେ ଇଞ୍ଚୁଡ଼ି, କୁଜଙ୍ଗ, ଶ୍ରୀଜଙ୍ଗ ଓ ଉଦାଳପୁର ପ୍ରଭୃତି ସ୍ଥାନରେ ଲବଣସତ୍ୟାଗ୍ରହରେ ଯୋଗ ଦେଇ ସେହି ବର୍ଷ ସେ ଜେଲ ଗଲେ ।

ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟରେ ୧୯୩୩ ମସିହା ବେଳକୁ ସ୍ୱାଧୀନତା ସଂଗ୍ରାମୀମାନେ ଖଲାସ ହୋଇ ଆସିବା ପରେ ୧୯୩୭-୩୮ରେ ରଜାରାଜୁଡ଼ା ଶାସନର ତୀବ୍ର ବିରୋଧ କରି, ଢେଙ୍କାନାଳ, ତାଳଚେର ଓ ଆଠମଲ୍ଲିକ ଅଞ୍ଚଳରେ ପ୍ରଜାମଣ୍ଡଳ ଆନ୍ଦୋଳନ ବ୍ୟାପକ ହେଲା । ଏଥି ସହ କଂଗ୍ରେସ ଅନୁଷ୍ଠାନରେ ସମାଜବାଦୀ ଚିନ୍ତାଧାରା ପ୍ରବର୍ତ୍ତନ ପାଇଁ ବିପ୍ଳବୀ ଜନନାୟକ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ଭିତରେ ଯେଉଁ ସମାଜବାଦୀ ଗୋଷ୍ଠୀ ଗଢ଼ା ହେଲା ଓ ଯେଉଁମାନେ ଓଡ଼ିଶାରେ କୃଷକ ଓ ପ୍ରଜାମଣ୍ଡଳ ଆନ୍ଦୋଳନର ନେତୃତ୍ୱ ନେଲେ ସେମାନଙ୍କ ଭିତରେ ଅଗ୍ରଣୀ ଥିଲେ ମାଳତୀଦେବୀ ।

କୌଣସି ସ୍ଥାନରେ ଦରିଦ୍ର, କୃଷୀ, ମୂଲିଆଙ୍କ ଉପରେ ଅତ୍ୟାଚାର, ଶୋଷଣର ସମ୍ବାଦ ଶୁଣିଲେ, ଶୁଣିବା ମାତ୍ରେ ସେ ଧାଇଁ ଯାଇ କୃଷୀ ମୂଲିଆଙ୍କୁ ସଙ୍ଗଠିତ କରାଇ ଏହାର ସମ୍ମୁଖୀନ ହେଉଥିଲେ ।

ସ୍ୱାଧୀନତା ପରେ ପଛରେ ପଡ଼ିଥିବା ଓଡ଼ିଶାର ଅବହେଳିତ ବାଳକ-ବାଳିକାଙ୍କୁ ମଣିଷ କରିବା କାର୍ଯ୍ୟକୁ, ବିଧାୟକ, ସାଂସଦ ଓ ଶାସନ ବିଧାୟକ ପରିଷଦର—ସଦସ୍ୟା ହେବା ଅପେକ୍ଷା ସେ ଅଧିକ ଗୁରୁତ୍ୱ ଦେଉଥିଲେ । ସେଥିପାଇଁ ସେ ଶାସନ ବିଧାୟକ ପରିଷଦର ସଦସ୍ୟା ପଦରୁ ଇସ୍ତଫା ଦେଇଥିଲେ ।

ନିଜକୁ ଲୋକସେବାରେ ଲଗାଇବାକୁ ମନସ୍ଥ କରି ଆଦିବାସୀ, ହରିଜନ ତଥା ଦରିଦ୍ରତମ ଶ୍ରେଣୀର ପିଲାଙ୍କୁ ଦେଶର ଉପଯୁକ୍ତ ନାଗରିକ କରି ଗଢ଼ିବା ପାଇଁ ସୁଦୂର ଅନୁଗୁଳଠାରେ ଗୋଟିଏ ଗାଁରେ ବାଜିରାଉତ ଛାତ୍ରାବାସ ନିର୍ମାଣ କରି ରହିଲେ ।

ନିଜର ସୁଖ-ସୁବିଧା ପ୍ରତି ଧ୍ୟାନ ଥିଲେ ସେ କଟକ, ଭୁବନେଶ୍ୱର ଓ ପୁରୀ ଠାରେ ଅନୁଷ୍ଠାନ ନିର୍ମାଣ କରିପାରି-ଥାନ୍ତେ । କିନ୍ତୁ ଯେଉଁମାନଙ୍କୁ ଶାସକବର୍ଗ ତଥା ଶିକ୍ଷିତ ବୁଦ୍ଧିଜୀବୀ ବ୍ୟବସାୟୀ ଗୋଷ୍ଠୀ ଛଳ ବଳ କରି ଶୋଷଣ କରି ସାମ୍ରାଜ୍ୟ କରୁଛନ୍ତି ବୋଲି ଛଳନା କରି ଗଣ୍ଡିମ ବନାଉଛନ୍ତି, ତାଙ୍କଠାରୁ ଦୂରେଇ ରହି ଶିକ୍ଷା ସଚେତନତା ମାଧ୍ୟମରେ ପରିପୂର୍ଣ୍ଣ ନାଗରିକ ହିସାବରେ ଗଢ଼ିବା ପାଇଁ ଉତ୍କଳ ନବଜୀବନ ମଣ୍ଡଳ ନାମରେ ଗୋଟିଏ ଅନୁଷ୍ଠାନ ୧୯୪୭ରେ ଗଠନ କଲେ ।

ପରଲୋକର କିଛି ବର୍ଷ ପୂର୍ବରୁ ଏହି ବିପ୍ଳବିଣୀ ମହୀୟସୀ ମହିଳା ମାଳତୀଦେବୀ ଚଳନ ଶକ୍ତି ରହିତ ହୋଇ ପଡ଼ିବା ବେଳର ଅବସ୍ଥାରେ ତାଙ୍କୁ ସିଂହୀ ସହିତ ତୁଳନା କରାଯାଇ ପାରେ ।

ସେତେବେଳେ ସେ ଶୋଷଣ ଉତ୍ପୀଡ଼ନ ନାରୀ ନିର୍ଯ୍ୟାତନା ଓ ଗରିବ ଲୋକଙ୍କ ପ୍ରତି ଅତ୍ୟାଚାର ଭଳି ଘଟଣା ମାନ ଶୁଣିଲା କ୍ଷଣି ଉତ୍କ୍ଷିପ୍ତ ହୋଇ ଉଠୁଥିଲେ ।

ଥରେ ସେ ନାରୀ ନିର୍ଯ୍ୟାତନାକୁ ଲକ୍ଷ୍ୟ କରି କହିଲେ ଯେ ଯେଉଁ ସରକାର ନାରୀ ନିର୍ଯ୍ୟାତନା ବନ୍ଦ କରି ନପାରେ ସେ ଶାସନକୁ ଧିକ୍ । ସୁସ୍ଥ ଥିଲେ ସେ କ'ଣ ନୀରବରେ ବସି ଥାନ୍ତେ ?

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଜାରି ହୋଇଥିବା ଜରୁରୀକାଳୀନ ପରିସ୍ଥିତିରେ ପ୍ରତିବାଦ କରିବାରେ ସେ ଅଗ୍ରଣୀ ଥିଲେ । ସେହିପରି ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ହାତରୁ ଯମୁନାଲାଲ ବଜାଜ ପୁରସ୍କାର ଗ୍ରହଣ କରି ନ ଥିଲେ । ପ୍ରଚଣ୍ଡ ସାହସ ତାଙ୍କର ଥିଲା । ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ହାତରୁ ସମ୍ମାନ ଗ୍ରହଣ ପାଇଁ ସେତେବେଳେ ଲୋକେ ଆକୁଳ ବ୍ୟାକୁଳ ହେଉଥିଲେ ।

ସେହି ଅତୁଳନୀୟା ନାରୀନେତ୍ରୀ, ପ୍ରଚଣ୍ଡ ସାହସିନୀ ନିର୍ଭୀକତାର ପ୍ରତୀକ ସ୍ୱର୍ଗତା ମାଳତୀଙ୍କ କାର୍ଯ୍ୟକୁ ଆଗାମୀ ପିଢ଼ି କ'ଣ ବୁଝି ପାରିବ ?

ଆଲବର୍ଟ ଆଇନ୍‌ଷ୍ଟାଇନ୍ ଗାନ୍ଧୀଜୀଙ୍କୁ ଲକ୍ଷ୍ୟ କରି କହିଥିଲେ, "ଭବିଷ୍ୟତରେ ଲୋକେ ବିଶ୍ୱାସ କରିପାରିବେ ନାହିଁ ଯେ, ଗାନ୍ଧୀ ନାମକ ଜଣେ ରକ୍ତମାଂସଧାରୀ କେବେ ଏ ଧରଣୀର ମାଟିରେ ପଦଚାରଣ କରିଥିଲେ ।" ସେହିପରି ଭବିଷ୍ୟତର ମଣିଷଙ୍କୁ ମନେ ପକାଇ କହିବେ ଯେ ସତରେ କ'ଣ ରକ୍ତମାଂସଧାରୀ ମାଳତୀଦେବୀ ନାମ୍ନୀ ଜଣେ ମହୀୟସୀ ମହିଳା ଏ ଧରଣୀ ପୃଷ୍ଠରେ ପଦଚାରଣ କରିଥିଲେ ?

ଗୁଣନିଧି ଭବନ, କଟକ

# ଜେଲ୍‌ରୁ ଆସିବାପରେ

□ କସ୍ତୁରୀଚରଣ ମଠକ

ବ୍ରହ୍ମପୁର ଜେଲରୁ ୧୯୪୫ ମସିହା ଏପ୍ରିଲ ପନ୍ଦରରେ ଖଲାସ ହେଲି । ସେହିଦିନ କଟକ ଜେଲରୁ ନୂମା ମଧ୍ୟ ଖଲାସ ହେଲେ । ଜେଲର ସାଙ୍ଗସାଥୀମାନେ ବିଦାୟ ସମ୍ବର୍ଦ୍ଧନା ଦେଲେ । ଜୟକୃଷ୍ଣ ମହାନ୍ତିଙ୍କ ନେତୃତ୍ୱରେ ପରିଚାଳିତ 'ଆଜାଦ ମେସ୍'ର ଉପେନ୍ଦ୍ର ମହାନ୍ତି, ଭଗବାନ ପ୍ରତିହାରୀ, ଚନ୍ଦ୍ରଶେଖର ମହାପାତ୍ର ପ୍ରଭୃତି ବାଟରେ ଖାଇବାକୁ କିଛି ଛତୁ ଓ ଲଡ଼୍ଡୁ ତିଆରି କରି ଦେଲେ । ବାପି ଖଣ୍ଡିଏ ଚିଠି ଲେଖି ମୋ ହାତରେ ନୂମା ପାଖକୁ ଦେଲେ—"କସ୍ତୁରି ଯାଉଛି । ତମ ପାଖରେ ରହିବ । ତମେ କେଉଁଠି ଆଶ୍ରମ କରି ରହିବ ତରକୁନ କି ଅନୁଗୋଳ ତାହା ସ୍ଥିର କରିବ ।" ନୂମାକୁ ଚିଠି ଦେଲି । କଟକ ବାଙ୍କାବଜାର ତାଙ୍କ କୋଠାରେ ଦୁଇଦିନ ରହି ଘରକୁ ଗଲି । ଆମ ଗାଁ ଅଲଙ୍ଗି । କଟକରୁ ପ୍ରାୟ ୪୫ କିଲୋମିଟର ବାଟ— କଟକରୁ ଚାଲି ଚାଲି ଗାଁକୁ ଗଲି । ଗାଁରେ ୨।୩ ଦିନ ରହି କଟକ ନୂମା ବସାକୁ ଫେରିଲି । ଅନୁଗୋଳ ଯିବା ପାଇଁ ସ୍ଥିର ହେଲା । ଢନୁ, ମୁଁ ଓ ନୂମା ଅନୁଗୋଳ ଚାଲିଲୁ ସାଥିରେ କିଛି ମୋଟା ଉସୁନା ଚାଉଳ ଏବଂ ନୂମାଙ୍କର ପୁରୁଣା ଇକନମିକ୍ ଚୁଲିଟି ନେଲୁ ।

ମେରାମୁଣ୍ଡଳି ଷ୍ଟେସନରୁ ସମ୍ବଲପୁର ବସରେ ଯାଇ P. T. S. ଛକରେ ଓହ୍ଲାଇ ଚାଲି ଚାଲି ସୁସୁଡ଼ା ଗାଁରେ ପହଞ୍ଚିଲୁ । ସେଠାରେ ମହି, ବାବାଜି (ବଳଭଦ୍ର ମିଶ୍ର) ଓ ବଣି ଥାନ୍ତି । ଇକନମିକ୍‌ରେ ନୂମା ରୋଷେଇ କଲେ । ଭାତ, ଓଲୁଅ ସିଝା ଓ ଭେଣ୍ଡି ସିଝା ଖାଇ ରହିଲୁ । ଆର୍ଥିକ ଅବସ୍ଥା ଶୋଚନୀୟ । ମଝିରେ ମଝିରେ ମଦନ ପ୍ରଧାନଙ୍କ ସ୍ତ୍ରୀ କିଛି କିଛି ମୁଗଡାଲି ପଠାନ୍ତି ତ ଡାଲି ହୁଏ । ଢେଙ୍କାନାଳ କର୍ମୀମାନଙ୍କ ପିଲା ଛୁଆଙ୍କ କରୁଣ କାହାଣୀ ଶୁଣି ନୂମା ବିଚଳିତ ହୋଇପଡ଼ନ୍ତି । ପ୍ରତ୍ୟକ୍ଷ ରିପୋର୍ଟ ସଂଗ୍ରହ ପାଇଁ ନୂମା ଓ ମୁଁ ଢନୁକୁ ଧରି ଚାଲି ଚାଲି ମହେଶ୍ୱର ସୁବାହୁ ସିଂହଙ୍କ ଘରେ ପହଞ୍ଚିଲୁ । ତାଙ୍କଠାରୁ ଢେଙ୍କାନାଳର ସଂଗ୍ରାମୀମାନଙ୍କ ରିପୋର୍ଟ ସଂଗ୍ରହ କଲୁ । ସେଠାରେ ଦୁଇଦିନ ରହିଲୁ । ସୁବାହୁସିଂହଙ୍କ ଘରେ ପୁରୁଣା ଓଳିଆବନ୍ଧା ନଖସରୁ ବାସନା ଚାଉଳ, ସୁନାମୁଗ ଡାଲି ଓ ଗୁଆଘିଅ ଖାଇବା—ଭୁଲି ହେବ ନାହିଁ ।

ସେଠାରୁ ଚାଲି ଚାଲି ବିଭିନ୍ନ ଗାଁ ବୁଲି ୩।୪ ଦିନ ପରେ ଅନୁଗୋଳ ଫେରିଲୁ । ମହେଶ୍ୱର ସୁବାହୁସିଂହଙ୍କ ଘରେ ଦୁଃସ୍ଥ ରାଜନୀତିକବନ୍ଦୀ ପିଲାଙ୍କ ଉତ୍ଥାନପାଇଁ ଅନୁଗୋଳରେ ଛାତ୍ରାବାସ ପ୍ରତିଷ୍ଠା କରି ପାଠ ପଢ଼ାଇବାକୁ ସ୍ଥିର ହେଲା ।

ମାସ ମାସ ଧରି ସେହି ଉସୁନା ଚାଉଳ, ଓଲୁଅ ସିଝା, ଫୁଟିକାକୁଡ଼ି ସିଝା ଓ ଭେଣ୍ଡି ସିଝାରେ ଦିନ କଟିଲା । ସେତେବେଳକୁ କେବଳ ନୂମା, ମୁଁ, ଢନୁ, ବାବାଜି ଓ ବଣି ଥାଉ ।

ଦିନେ ହଠାତ୍ ନୂମାର ସାଂଘାତିକ ଭାବରେ ଡାଏରିଆ ଝାଡ଼ା ଆରମ୍ଭ ହେଲା । ବାପିଙ୍କର ଜଣେ ମାମୁଁ ଅନୁଗୋଳ ସୁରପଡ଼ାରେ ଥା'ନ୍ତି । ନୂମା ତାଙ୍କ ନିକଟକୁ ଚିଠି ଦେଲା । ମୁଁ ମଧ୍ୟ ଅନୁଗୋଳ ଡାକ୍ତରଙ୍କୁ ଡାକିଲି । ସେ ଚିକିତ୍ସା କଲେ । ଦୁଇ ଦିନରେ ଝାଡ଼ା ବନ୍ଦ ହେଲା । ମୁଁ କଟକ ବସାକୁ ଚିଠିଦେଲି । ଆଚାର୍ଯ୍ୟ ମହାଶୟ ଆସିଲେ । ନୂମା ଟିକିଏ ଦମ୍ଭ ହେଲା । ଆଚାର୍ଯ୍ୟ ମହାଶୟଙ୍କୁ ଗୋଟିଏ କଥା ମନେ ପକାଇ ଦେଲି । ଜେଲରେ ଦିନେ ମୁଁ ସପନ ଦେଖିଥିଲି, "ମୁଁ ଅନୁଗୋଳରେ ନୂମା ପାଖରେ ଅଛି— ନୂମାକୁ ଖିପଣ ଝାଡ଼ା । ତାଙ୍କ ନିକଟରେ କେହି ନାହାଁନ୍ତି । ଆଚାର୍ଯ୍ୟ ମହାଶୟ ପହଁଚିଛନ୍ତି ।"

ଏହି ସପନ କଥା ଜେଲରେ ମୁଁ ସକାଳ ଭ୍ରମଣବେଳେ ଦିନେ ଆଚାର୍ଯ୍ୟଙ୍କୁ କହିଥାଏ । ଖଲାସ ହେବାର ବହୁଦିନ ପୂର୍ବରୁ ସତକୁ ସତ ସେହି କଥା ଘଟିଲା ।

ନୂମା ଟିକିଏ ସୁସ୍ଥ ହେଲେ । ଆଶ୍ରମରେ କିଛିଦିନ ରହିବା ପାଇଁ ପାର୍ବତୀ ଗିରିଙ୍କୁ ଡାକିଲେ । ପାର୍ବତୀ ଗିରି ଆସି ରହିଲେ । ପାର୍ବତୀ ଗିରି ଓ ମୁଁ ରହିଲୁ । ନୂମା ତାଙ୍କ ମା'ଙ୍କୁ ଦେଖିବା ପାଇଁ ଢନୁକୁ ଧରି କଲିକତା ଗଲେ ।

ସେଠାରୁ ପ୍ରାୟ ଏକ ସପ୍ତାହ ପରେ ଫେରିଲେ । ପାଟଣାଗିରି ଆଶ୍ରମର ଦାୟିତ୍ୱ ନେଇ ସବୁଦିନେ ରହିବାକୁ ରାଜି ହେଲେ ନାହିଁ । ସେ ଚାଲିଗଲେ, ତାପରେ ମୁରଲୀଧର କାନୁନଗୋଙ୍କ ସ୍ତ୍ରୀ ହୀରାମଣି କାନୁନଗୋ ଆସିଲେ । ସେ କିଛିଦିନ ରହିଲେ । ସେ ବି ଚାଲିଗଲେ ।

ଆର୍ଥିକ ଅବସ୍ଥା ଅତି ଶୋଚନୀୟ । ବହୁଥର କଟକ ଆସି ଚାଉଳ ନେବାକୁ ପଡ଼େ । ମଝିରେ ମା ମନାକଲେ ଚାଉଳ ଦେବେ ନାହିଁ । ଏକ ସାଇକେଲି ପଡ଼ିଲା । ମୋତେ ମାରୁ ବାବୁଙ୍କ ଘରକୁ ଯିବାକୁ ହେଲା । (ମାରୁଣି ଚରଣ କାନୁନଗୋ) ଗ୍ରାମ-ନନ୍ଦନ—ପିଉସା ହେବେ) ।

ନୁମାର ଗୋଟିଏ ଲେଡ଼ିସାଇକଲ ଥାଏ । ଅଚଳ—ଟାୟାର, ଟ୍ୟୁବ୍ ନାହିଁ । ଗୋଟିଏ ଟଙ୍କା ନେଲି—ଟାୟାର ଦଶଅଣା, ୨ଟା ଟ୍ୟୁବ୍ ତିନଅଣା ଲେଖାଏ ଛଅଣା—ମରାମତି ହେଲା ସେ ଏକମାତ୍ର ଯାନ । ଚଟି ଖଣ୍ଡିଏ ନେଇ ନନ୍ଦନ ଗଲି—ଚାଉଳ ବ୍ୟବସ୍ଥା ହେଲା ।

ସେପ୍ଟେମ୍ବର ମାସରେ ଜେଲରୁ ବହୁତ କର୍ମୀ ଓ ନେତା ଖଲାସ ହେଲେ । ବାପି ଓ ସାରଙ୍ଗଧରବାବୁ ବି ଖଲାସ ହେଲେଣି । କଟକ ଜିଲ୍ଲା ସମ୍ମିଳନୀ ହେଲା—ନୁମା କଟକ ଜିଲ୍ଲା କଂଗ୍ରେସ କମିଟୀ ସଭାନେତ୍ରୀ ରୂପେ ନିର୍ବାଚିତା ହେଲା । ବାପି, ସାରଙ୍ଗଧରବାବୁ ଓ ନୁମା ସ୍ଥିରକଲେ ଅନୁଗୋଳରେ ଗଡ଼ଜାତ ଅଞ୍ଚଳର କର୍ମୀମାନଙ୍କର ପିଲା-ମାନଙ୍କୁ ଛାତ୍ରାବାସରେ ରଖି ପାଠପଢ଼ାଇ ମଣିଷ କରିବାକୁ ହେବ । ନୁମା ମୋତେ କହିଲେ—"କାରଣ ଆସି ରହିବ ଏଠି । ତୁ ମଧ୍ୟ ନିକଟରେ ଆସି ଯାଉଛୁ । ତୋ ଉପରେ ଦାୟିତ୍ୱ ଢେଙ୍କାନାଳର ଦୁଃସ୍ଥ ପିଲାମାନଙ୍କୁ ଏଠାକୁ ଆଣିବା । ଏହି ସାଇକଲ ନେଇ ଗାଁକୁ ଯିବୁ, ଯେଉଁଠି ଆମର କର୍ମୀମାନେ ଦୁଃସ୍ଥ ହୋଇ ପଡ଼ିରହିଛନ୍ତି; ତାଙ୍କର ପିଲାମାନଙ୍କୁ ଆଣିବୁ ।

ଅନୁଗୋଳ ଯିବା ବାଟରେ ପ୍ରଥମେ ଟ୍ରେନରୁ ଗୋଟିଏ ପିଲା ନେଇଥିଲୁ । ନୁମା କହିଲେ ଏ ହେବ ଆମର ପ୍ରଥମ ଛାତ୍ର । ତାକୁ ନେଇ ରଖିଲେ । ୭/୮ ଦିନ ରହି ସେ ପଳାଇଲା । ତାପରେ ନିତ୍ୟାନନ୍ଦକୁ ଆଣିଲି ସେ ପ୍ରଥମ ହୋଇ ରହିଲା । ନୁମା ତାକୁ ପଢ଼ାନ୍ତି । ବାବାଜୀ ଭାଇ ବି ପଢ଼ାନ୍ତି । ସମୟେ ସମୟେ ମୁଁ ପଢ଼ାଏ । ସେତେବେଳକୁ କାରଣ ଆସି ନ ଥାଏ । ସେପ୍ଟେମ୍ବର ବା ଅକ୍ଟୋବର ବେଳକୁ କାରଣ ଆସିଲା । ତାପରେ ବୁବୁ ଆସିଲା ।

ଢେଙ୍କାନାଳର ପିଲାମାନଙ୍କୁ ଆଣିବା ମୋ ଦାୟିତ୍ୱ । ସ୍ଥାୟୀ ଭାବରେ କାରଣ ରହିଲା ପରେ ଏମାନଙ୍କର ପାଠପଢ଼ା ଓ ସବୁ ଖବର ସେ ବୁଝାସୁଝା କଲା । ପିଲାମାନଙ୍କ ସଂଖ୍ୟା ବଢ଼ିଲା । ଜାନୁୟାରୀ ମାସ ବେଳକୁ ଋଷି ଗୁରୁଜୀ ଆସିଲେ । ପାଠପଢ଼ା ନିୟମିତ ଚାଲିଲା । ଛାତ୍ରାବାସର ନାମକରଣ ଓ ଉଦ୍‌ଘାଟନ ଉତ୍ସବ ହେଲା । ସାରଙ୍ଗଧର ବାବୁ ବମ୍ବେ ଓ କଲିକତା ଯାଇ ତାଙ୍କ ବନ୍ଧୁମାନଙ୍କର ଜରିଆରେ କିଛି ପାଣ୍ଠି ମଧ୍ୟ ସଂଗ୍ରହ କଲେ ।

ସାରଙ୍ଗଧର ବାବୁଙ୍କ ରହିବା ଘର ପାଇଁ ଓ ପିଲାଙ୍କର କର୍ମଶାଳା ପାଇଁ କାଠ ବାଉଁଶ ସଂଗ୍ରହ କରିବା ମୋ ଦାୟିତ୍ୱରେ ଥିଲା । ଆଶ୍ରମରେ ପାଣିର ଖୁବ୍ ଅଭାବ । ପୁରୁଣା ବାର୍ମିରୁ ଡେଣ୍ଡାରେ ପାଣି ଉଠାଇବାକୁ ପଡ଼ୁଥିଲା ।

ପିଲାଙ୍କ ପାଇଁ ଗୋଟିଏ ଗୋଶାଳା କରିବାକୁ ସ୍ଥିର ହେଲା । ମୁଁ ଆମ ଗାଁରୁ ଗୋଟିଏ କାଳି ଗାଈ ଏକଶତ ଟଙ୍କାରୁ ଆଣିଲି । ଗୌରାଙ୍ଗ ଚରଣ ଦାସ ବାଗଲପୁରରୁ ଗୋଟିଏ ହରିଆନା ଗାଈ ପଠାଇଲେ । ସେ ଭଲ ଅଣ୍ଡିରା ଜନ୍ମ କଲା । ମାତ୍ର ଅଳ୍ପ କ୍ଷୀର ଦିଏ । ମୋ ଗାଈର ନାମ ଶ୍ୟାମା । ସେ ଦିନକୁ ୮ ଲିଟର କ୍ଷୀର ଦେଲା ।

ବାପି ୧୯୪୭ରେ ମନ୍ତ୍ରୀ ଥାନ୍ତି । ସେ ଅନୁଗୋଳ ଟାଉନ ବୁଲିଯାଇଥିଲେ । ଜଣେ ମାରୁଆଡ଼ିର ଗୋଟିଏ ଗାଈଥିଲା । ସେ କ୍ଷୀର ଦିଏ ନାହିଁ । ଦୁହିଁଲା ବେଳେ ଶୋଇ ପଡ଼େ । ସେ ଗାଈକୁ ଶହେ ଟଙ୍କା ଦେଇ ଆଣିଲେ । ସେ ଗାଈ ଆଶ୍ରମରେ ରହିଲା—ଚୂନା, ଚଣି ଖାଇ ତାର ସ୍ୱାସ୍ଥ୍ୟ ବଦଳି ଗଲା । ୨/୩ ମାସରେ ଦିନକୁ ୭/୮ ଲିଟର କ୍ଷୀର ଦେଲା ।

ଦେଶ ସ୍ୱାଧୀନ ହେଲା । ମୁଁ ସକ୍ରିୟ ରାଜନୀତିରେ ଯୋଗ ଦେଲି ଓ ପ୍ରଜା ସୋସଲିଷ୍ଟ ପାର୍ଟିରେ ମିଶିଲି । ଏଣୁ ଆଶ୍ରମ ଛାଡ଼ିଲି । ନିର୍ବାଚନରେ ପ୍ରାର୍ଥୀ ହୋଇ ବିଧାନସଭାକୁ ଚାରି ଥର ନିର୍ବାଚିତ ହେଲି । ନୁମା ଓଡ଼ିଶାର ହରିଜନ ଓ ଆଦିବାସୀଙ୍କ ଉପରେ ଅତ୍ୟାଚାର ଖବର ପାଇଲେ ବଡ଼ ଧୈର୍ଯ୍ୟଚ୍ୟୁତ ହୋଇପଡ଼ନ୍ତି । ନୁମା ଓ ବାପି ସେ ସ୍ଥାନକୁ ଯିବା ପାଇଁ ତାଙ୍କର ପ୍ରୋଗ୍ରାମ ହୋଇଯାଏ ।

ମୋ ଗା ନାମ ଅଲିଙ୍ଗି । କଟକ ଜିଲ୍ଲା ଗୋବିନ୍ଦପୁର ଥାନାରେ । ଏହି ଗାଁରେ ଜଣେ ସବର୍ଣ୍ଣ ଯୁବକ ଜଣେ ହରିଜନ ଝିଅ ପ୍ରତି ଅସଦ୍‌ବ୍ୟବହାର କଲା । ହରିଜନମାନେ ପ୍ରତିବାଦ କରି ଉକ୍ତ ଯୁବକକୁ ମାଡ଼ ଦେଲେ । ଏଥିରେ

ଗ୍ରାମବାସୀ ଉତ୍ତ୍ୟକ୍ତ ହୋଇ ଠେଙ୍ଗା ବାଡ଼ି ଧରି ହରିଜନ ବସ୍ତିରେ ପ୍ରବେଶ କରି ଝିଅ ବୋହୂଙ୍କୁ ମାଡ଼ଦେଲେ ।

ଏହା ୧୯୪୯ ମସିହା ଜାନୁଆରୀ ମାସ ଘଟଣା । ମୋ ଠି ପାଇ ନୂମା ବାପି, ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ସଦାଶିବ ତ୍ରିପାଠୀ, ଗୌରାଙ୍ଗ ଚରଣ ଦାସ ଏମ୍. ଏଲ୍. ଏ ଓ କଂଗ୍ରେସ କର୍ମୀମାନେ ଆମ ଗାଁରେ ପହଁଚି ମୋର ଅତିଥି ହେଲେ । ଆମ ଘରେ ସେ ଯେପରି ନ ଖା'ନ୍ତି ନୋଦାରେ ତାଙ୍କର ଖାଇବା ଓ ରହିବା ପାଇଁ କେତେକ ଭଦ୍ରବ୍ୟକ୍ତି ବ୍ୟବସ୍ଥା କରି ତାଙ୍କୁ ଅଟକାଇଲେ । ନୂମା କହିଲେ, ଭଣ୍ଡାରୀ ମଲିକ ଘରେ ଆମେ ନିଶ୍ଚୟ ଖାଇବୁ । ଆମ ଜାତି ଯିବ ନାହିଁ । ନୋଦାରେ ପାଣି ଛୁଇଁଲେ ନାହିଁ । ତା ପରଦିନ ଆମ ଗାଁରେ ଏକ ବିରାଟ ସଭା ହେଲା । ହଜାର ହଜାର ଲୋକ ଯୋଗ ଦେଇଥିଲେ । ସେଠାରେ ହରିଜନ ସମସ୍ୟା ଉପରେ ନୂମା ଯେଉଁ ଭାଷଣ ଦେଲେ ଲୋକେ ଦ୍ରବୀଭୂତ ହୋଇଗଲେ । ଆମ ଅଞ୍ଚଳରୁ ହରିଜନମାନଙ୍କ ପ୍ରତି ଯେଉଁ ଘୃଣା ଭାବ ଥିଲା ତାହା ଦୂରୀଭୂତ ହୋଇଗଲା ।

ଅଠଗଡ଼ ଥାନା ଖୁଣ୍ଟୁଣୀରେ ଭୂସତ୍ୟାଗ୍ରହ ଜରିଆରେ ଶତାଧିକ ଏକର ଜମି ଦଖଲ କରି ସାରଙ୍ଗଧର ବାବୁଙ୍କ ନେତୃତ୍ୱରେ ଭୂମିହୀନ ଲୋକଙ୍କର ଏକ ଗାଁ ବସାଇଛୁ । ସେହି ଗାଁର ନାମ ସତ୍ୟନାରାୟଣପୁର । ସେଠାରେ ମୋତେ ହେଲା ଟାଇଫଏଡ଼ ଜ୍ୱର । ମୋର ବଞ୍ଚିବାର ଆଶା ନଥିଲା । ନୂମା ଏ ଖବର ପାଇ ସିଧା କଟକ ବଡ଼ ଡାକ୍ତରଖାନାରେ ପହଞ୍ଚି ମତେ ଗାଡ଼ିରେ ବାପି ବସାକୁ ନେଇଗଲେ । ବାପି ଥାନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଏହା ୧୯୫୪।୧୯୫୫ ମସିହା ଖବର । ମୁଖ୍ୟମନ୍ତ୍ରୀଙ୍କ କ୍ୱାଟରରେ ପ୍ରାୟ ଦୁଇ ବର୍ଷ ରହିଲି । ସଂପୂର୍ଣ୍ଣ ସୁସ୍ଥ ହୋଇ ଫେରିଲି । ମୁଁ ସେତେବେଳେ ଜଣେ ସୋସଲିଷ୍ଟ ପାର୍ଟି କର୍ମୀ । ବାପି କଂଗ୍ରେସର ମୁଖ୍ୟମନ୍ତ୍ରୀ । ସଂକୀର୍ଣ୍ଣ ରାଜନୀତିକ ଗଣ୍ଡି ଭିତରୁ ଉର୍ଦ୍ଧ୍ୱରେ ରହି ନୂମା ଓ ବାପି ମୋ ଜୀବନ ରକ୍ଷାକଲେ । ତାଙ୍କର ମହନୀୟତା, ଓ ମାନବପଣିଆ ମୋ ଜୀବନ ରକ୍ଷାକଲା । ମୁଁ ତାଙ୍କଠାରେ ଚିର ଋଣୀ ।

---

**"ପୀଡ଼ିତ ସନ୍ତାନ ମୁହଁରେ ଅପଥ୍ୟ ଯୋଗାଇବା ଯେପରି ଦୋଷାବହ, ମଦ ଖାଉଥିବା ମଣିଷକୁ ମଦ ଯୋଗାଇବା ସେହିପରି ଦୋଷାବହ ଓ ଅମଣିଷ ପଣିଆ ।"**

**—ମାଳତୀଦେବୀ**

# ଆଜନ୍ମ ସଂଗ୍ରାମୀ, ଅବିସ୍ମରଣୀୟା 'ନୁମା'

□ ବସନ୍ତ ଦେବୀ

ପୂଜ୍ୟା ମାଳତୀ ଚୌଧୁରୀ ଆଜ ଇହଜଗତରୁ ବିଦାୟ ନେଲେ ମଧ୍ୟ ଆମମାନଙ୍କ ମନରେ ଅଧିକ ସ୍ଥାନ ଅଧିକାର କରିଛନ୍ତି । ବର୍ତ୍ତମାନର ସାମାଜିକ ଦୃଷ୍ଟିତ ଓ ନାରୀସମାଜର ଦୁର୍ଗତି ବେଳରେ ତାଙ୍କପରି ଦୃଢ଼ମନା, ବିପ୍ଳବିଣୀଙ୍କ ଅଭାବ ପ୍ରତ୍ୟେକ ଚିନ୍ତାଶୀଳ ଲୋକ ଅନୁଭବ କରୁଥିବେ, ଏହା ନିରାଟ ସତ୍ୟ ।

ସେ ଯେତେବେଳେ ଓଡ଼ିଶାକୁ ବୋହୂ ହୋଇ ଆସିଥିଲେ, ଓଡ଼ିଶାର ଉତ୍କଟ ରକ୍ଷଣଶୀଳତାର ସମ୍ମୁଖୀନ ହୋଇ-ବହୁ ସମାଲୋଚନା ଓ ବିରୋଧର ସମ୍ମୁଖୀନ ହୋଇ ଥିବେ । କିନ୍ତୁ ସବୁ ଅବସ୍ଥାକୁ ଆଦରିନେଇ ସରଳଭାବରେ ଆଗେଇ ଯିବା ତାଙ୍କର ବିଶେଷତ୍ୱ ଥିଲା ।

ସେତିକିବେଳେ ସ୍ୱାଧୀନତା ଆନ୍ଦୋଳନର ଯୁଦ୍ଧ ଦୁନ୍ଦୁଭି ବାଜିଉଠିଲା—ଚୌଧୁରୀ ପରିବାର ସଂଗ୍ରାମରେ ଝାସ ଦେଲେ ମା' ରମାଦେବୀ ଓ ନୁମା ମାଳତୀଦେବୀ, ବହୁସଂଖ୍ୟାରେ ନାରୀମାନଙ୍କୁ ମଧ୍ୟ ସେଇ ଝଞ୍ଜାରେ ଟାଣି ନେଲେ ।

ବିପ୍ଳବର ଅର୍ଥ କ୍ଷୁଦ୍ର ପରିବର୍ତ୍ତନ-ସ୍ୱାଧୀନତା ସଂଗ୍ରାମର ଅବସାନପରେ ସଂଗ୍ରାମୀର ସଂଗ୍ରାମ ଶିଥିଳ ହୋଇ ନଥିଲା- ଅଧିକ ଶକ୍ତିଶାଳୀ ହୋଇ ଲୋକଙ୍କ ଦାରିଦ୍ର୍ୟ ଓ ଦୁଃଖ ବିରୋଧରେ ସଂଗ୍ରାମ ମାଳତୀଦେବୀ ଆଦରି ନେଲେ ।

ବହୁତ ସୁଖ ସମ୍ଭୋଗର ସୁଯୋଗ ମଧ୍ୟ ତାଙ୍କୁ ତାଙ୍କ ଲକ୍ଷ୍ୟପଥରୁ ବିରତ କରିପାରି ନଥିଲା । ଜନସେବା କାର୍ଯ୍ୟରେ ବହୁତ ଅମତ୍ତା ମାତ୍ର ସେ କୌଣସି ବାଧାବିଘ୍ନକୁ ଭ୍ରୁକ୍ଷେପ ନକରି ଲକ୍ଷ୍ୟପଥରେ ଆଗେଇବା ତାଙ୍କଠାରେ ଏକ ବିଶେଷତା ଥିଲା ଓ 'ନବଜୀବନ ମଣ୍ଡଳ' ଅନୁଷ୍ଠାନ ଗଢ଼ି ବଡ଼ ଏକ କୀର୍ତ୍ତି ପ୍ରତିଷ୍ଠା କରିଥିଲେ ।

ବହୁଦିନ ଯାଏ ମୋର ତାଙ୍କସହିତ ପ୍ରତ୍ୟକ୍ଷ ସମ୍ପର୍କ ନଥିଲା ଓ ମୋର ଗୋଟାଏ ଧାରଣା ଥିଲା ସେ ଖୁବ କଡ଼ା ଲୋକ । ଏ ଧାରଣା ବହୁତ ଦିନ ଭୁଲରେ ରହିଯାଇଥିଲା । ପରେ ବୁଝିଲି ତାଙ୍କପରି ମମତାମୟୀ ଜଗତରେ ବିରଳ ।

ସେଦିନ ସେ ଯୋଗଅଭ୍ୟାସ ଗୁଣନିଧି ଭବନରେ ମତେ କହିଲେ "ବସନ୍ତଦେଇ ! ମୁଁ ତୁମ ସାଙ୍ଗରେ କଥା ହେବି । ତୁମେ ଯିବା ଆଗରୁ ମତେ କହିବ ।' '

ଏତେବେଳେ ମୁଁ ତାଙ୍କୁ ଭଲକରି ଜାଣିନଥିଲି । ଜଣେ କଡ଼ାଲୋକ ବୋଲି ଧାରଣା ଥିଲା । ତେଣୁ ସତର୍କତାର ସହିତ ଶୀଘ୍ର ତାଙ୍କ ପାଖରେ ପହୁଞ୍ଚିବା ପାଇଁ ମା ରମା-ଦେବୀଙ୍କ ପାଖରୁ ବିଦା ହୋଇଆସିଲି ।

ମାଳତୀଦେବୀ ମତେ ବସେଇଲେ—ନବବାବୁ ସେ ଘରେ ଥିଲେ, ତାଙ୍କୁ ସେ ଘରୁ ଯିବାକୁ କହିଲେ । ନବବାବୁ ହସିକରି ଗୁଲିଗଲେ—ପ୍ରଥମରୁ ଏଯାଏ ମୋ ମନରେ କୌତୂହଳ ଓ ସନ୍ଦେହ ସହିତ ଭୟ ବି ଥାଏ ।—

ନୁମା କହିଲେ—ତୁମେ ଅନ୍ତର୍ଜାତିକ ସାମାଜିକ ନୈତିକ ସଂସ୍ଥା, (Social Moral Hygine)ରେ କଣସବୁ କରୁଥିଲ । କେତେଦିନ କରିଛ—କଏ ସବୁ ଥିଲେ—କାହିଁକି ଛାଡ଼ିଲ ? ଏକାବେଳେ ସବୁକଥା ପଚାରିଗଲେ—

ମୁଁ ମଧ୍ୟ କହିଲି ସଂକ୍ଷେପରେ—"ଶରତ ମୁଖାର୍ଜୀ ହେଉଛ ଅନୁଷ୍ଠାନର ସଭାପତି ଥିଲେ—ମୁଁ ସମ୍ପାଦକ ଓ ସଙ୍ଗଠକର କାମ କରୁଥିଲି--ମୋ ଘରେ ବହୁତ ପ୍ରକାର ଅସୁବିଧା ହେଲା । ମୁଁ ବାହାର କାମରେ ଅଧିକ ସମୟ ଦେଇପାରୁ ନ ଥିବାରୁ ଛାଡ଼ିଦେବାକୁ ବାଧ୍ୟ ହେଲି । ତାପରେ ଶରତ ବାବୁ ବେଶି ଆଗେଇବାର ସୁବିଧା କରି ପାରିଲେ ନାହିଁ ବୋଲି ମୁଁ ଜାଣିଥିଲି—ତାପରେ ସେ ସଂସ୍ଥାର ପୁନର୍ଗଠନ ସମସ୍ୟା ଆସିଥିଲା ।''

ସେ କହିଲେ, "ଶରତ ମୁଖାର୍ଜ୍ଜୀ ମତେ ତୁମ କଥା କହିଥିଲେ ବୋଲି ମୁଁ ତୁମଠୁ ସବୁ ଜାଣିବାକୁ ଚାହୁଁଛି । ତମେ ଜାଣ ମୁଁ ବର୍ତ୍ତମାନ ସେ ସଙ୍ଗଠନର ପ୍ରେସିଡେଣ୍ଟ ଓ ନନ୍ଦିନୀ ଶତପଥୀ ତୁମ କାମର ଦାୟିତ୍ୱ ନେଇଛନ୍ତି ।"

"ମତେ ସେ କାମ ବିଷୟରେ କିପରି ସୂଚନା ଦବ ?" ତାଙ୍କ କଥାରେ ମୋ ମନରୁ ଡର ଯାଇଥିଲା ।

ମୁଁ ତାଙ୍କୁ ମୋର ସେଇ ସାମାଜିକ କ୍ରିୟାକଲାପ ବିଷୟ ଯାହା ଜାଣିଥିଲି, ଠିକେ ଠିକେ କହି ଦେଲି । ତା'ର ମୁଖ୍ୟକାମ ହେଲା ବେଶ୍ୟାବୃତ୍ତି ନିବାରଣ । ସେଇ ଅନୁଷ୍ଠାନ ପ୍ରତିଷ୍ଠାବେଳେ ପ୍ରଥମେ ବହୁତ ଲୋକ ଓ ମହିଳାମାନେ ଯୋଗ ଦେଉଥିଲେ—ପରେ ପରେ ଦେଖାଗଲା ମହିଳାମାନେ ଓ ପୁରୁଷମାନେ ମଧ୍ୟ ଅପସରିଗଲେ, ସଙ୍ଗଠନ ଦୁର୍ବଳ ଓ ରୁଗ୍‌ଣ ହୋଇଗଲା । କିନ୍ତୁ ମୂଳ ଅନୁଷ୍ଠାନରେ ଆମର କାମ ଖୁବ୍ ପ୍ରଶଂସିତ ହୋଇଥିଲା—ତା ମଧ୍ୟ ବୁଝାଇ ଦେଲି । ସେ ଖୁବ୍ ଖୁସି ହୋଇଥିଲେ ।

ସେ ଖୁସି ହୋଇ ମୋତେ କହିଲେ—ନନ୍ଦିନୀଙ୍କୁ ମୁଁ କହିଦେବି ସେ ତମ ସାଙ୍ଗରେ କଥାବାର୍ତ୍ତା ହେବେ ଓ ତୁମେ ତାଙ୍କୁ ସାହାଯ୍ୟ କରିବ—କାରଣ ତମେ ବହୁତ ଅଭିଜ୍ଞତା ଲାଭ କରିଛ—ସେ ନୂଆ ତ ।

ସେଦିନ କୌଣସି ଦ୍ୱିଧା ନ ରଖି ମୁଁ ତାଙ୍କୁ କହିଥିଲି ମୁଁ ନନ୍ଦିନୀ ଦେବୀଙ୍କ ଘରକୁ ଯାଇ ଆପଣଙ୍କ କଥା କହିବି ଓ ଯାହା ଯେତେବେଳେ ଆବଶ୍ୟକ ହେବ ମୁଁ ତାଙ୍କ ସହିତ ସହଯୋଗ କରିବି ।

ମୋ କଥାରେ ସେ ଏତେ ଖୁସି ହୋଇ ଯାଉଥିଲେ ଯେ ତାଙ୍କ ପାଖ ପଶିବାକୁ ମୋ ଭିତରେ ଯେଉଁ କୁଣ୍ଠା ଥିଲା ସେଇଦିନଠୁଁ ଖସିଗଲା—ସେଦିନୁଁ ମୁଁ ବୁଝିଲି ତାଙ୍କର ପ୍ରତିଭାର ଶକ୍ତି । ତାଙ୍କ ହୃଦୟର ସରଳତା ।

ସେ ଜଣେ ଦୃଢ଼ପ୍ରତିଜ୍ଞ, ନିଷ୍ଠାବାନ ଦେଶସେବୀ ଥିଲେ । କୌଣସି ପ୍ରକାର ସ୍ୱାର୍ଥପରତା ବା ସଙ୍କୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରିନଥିଲା ।

ସେ ବଙ୍ଗଳାରୁ ଓଡ଼ିଶାକୁ ଆସିଥିଲେ ବୋହୂ ହୋଇ । ସେତେବେଳେ ଓଡ଼ିଶାର ରକ୍ଷଣଶୀଳତା ଅତି ଉଗ୍ର । କେହି ବୋହୂ ଦେଖିବାକୁ ଆସି ବୋହୂ ଆଖି ବୁଜିଦେବା ପ୍ରଥା ଥାଏ । ବୋହୂ ଭାବରେ ତାଙ୍କୁ କେତେ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିବ । କିନ୍ତୁ ତାଙ୍କର ଉଚ୍ଚକୋଟିର ସ୍ୱଭାବସିଦ୍ଧ ଉଦାର ବ୍ୟକ୍ତିତ୍ୱ ପାଖରେ ସବୁ ହାର ମାନିଥିଲା ।

ସବୁ ବିପରୀତ ସ୍ଥିତିକୁ ଆଦରି ନେବା ବେଳେ ତାଙ୍କଠାରେ ଆଶ୍ଚର୍ଯ୍ୟଜନକ କବିତ୍ୱ ଦେଖିବାକୁ ମିଳେ । ମା ରମାଦେବୀଙ୍କ ସହିତ ତାଙ୍କ ସମଭାବ ଅଦ୍‌ଭୁତ । ଦୁହେଁ ଦୁଇ ଜାଗାରୁ ଭିନ୍ନ ଭାଷା ଭିନ୍ନ ଶିକ୍ଷା, ଭିନ୍ନ ସଂସ୍କୃତିରୁ ଆସି ଗୋଟିଏ ପରିବାରରେ ସମସ୍ତ ଭିନ୍ନତାକୁ ଦୂରେଇ ଦେଇ ପରସ୍ପରର ପରିପୂରକ ଭାବେ ଓଡ଼ିଶାର ଦୁର୍ଗତ ଜନତାର ସେବାରେ ନିଜକୁ ସମର୍ପଣ କରି ଦେଇପାରିଥିଲେ । ନୁମାଙ୍କର ଓ ମା ରମାଦେବୀଙ୍କ ସହାୟେ ଉତ୍କଳ ନାରୀ ସମାଜ ଭାରତରେ ସୁନାମ ଓ ପ୍ରତିଷ୍ଠା ଲାଭ କରିଥିଲା । ଓଡ଼ିଶାରେ ନାରୀମାନଙ୍କ ଅପୂର୍ବ ପ୍ରତିଭା ପ୍ରକାଶ ପାଇଥିଲା ।

ଦୁଇ ଜା'ଙ୍କର ଗୋଟିଏ ସମଗୁଣ—ତା' ହେଉଛି ଅପୂର୍ବ ସ୍ନେହ ସୌହାର୍ଦ୍ଦ୍ୟ । ଯେଉଁ ମହାଶକ୍ତି ପାଖରେ ସବୁ ବିପରୀତ ବ୍ୟକ୍ତିତ୍ୱ ସମର୍ପିତ ହେବାର ଦେଖା ଯାଇଥାଏ ।

ତାଙ୍କ ସ୍ନେହଶୀଳତାର ଗୋଟିଏ କଥା ମନେପଡ଼େ ନୁମାଙ୍କର ୯୪ ତମ ଜୟନ୍ତୀ ଉପଲକ୍ଷେ ଅନୁଗୋଳରେ ସେଦିନର ଅନୁଷ୍ଠାନର ସମସ୍ତ କାର୍ଯ୍ୟକ୍ରମ ଶେଷହେବା ପରେ ରାତି ୧୦ଟା ବେଳେ ଆମେ କଟକ ଫେରିବା ଆଗରୁ ମୁଁ ବିଦାୟ ନେବାକୁ ଗଲି । ନୁମା ମୋ ହାତଟାକୁ ଧରିପକେଇ କହିଲେ "ତୁ ଯିବୁ ? ତୁ ରହିଯା କାଲି ସକାଳୁ ଯିବୁ ।"

ମୁଁ ନବୁଝିପାରି ନୀରବ ରହିଗଲି—ତାପରେ ସେ ମୋତେ ବୁଝାଇ କହିଦେଲେ "ତୁ ରହିଲେ ମୋ ଭଲ ଲାଗନ୍ତା କାଲି ସକାଳୁ ଯା'ନ୍ତା—ଗୋଟିଏ ରାତି । ଧନ୍ୟ ବାତ୍ସଲ୍ୟ ମମତା ତାଙ୍କର ।

ତାଙ୍କ ତୁଳ କିଏ ? ଓଡ଼ିଶାର ଆବାଳବୃଦ୍ଧ-ବନିତାଙ୍କ ବଡ଼ ଭାଇ "ବୁଲୁଭାଇ"—ମହାମାନ୍ୟ—ମନମୋହନ ଚୌଧୁରୀ ।

ନୁମାଙ୍କର ସେକଥା ଓ ସ୍ୱର ଭୁଲି ହେବନି ।

ଝାଞ୍ଜିରିମଙ୍ଗଳା, କଟକ

---

# ନୂମା ଥିଲେ ଲୁହାର ମଣିଷ

□ ନିଶାକର ଦାସ

ନୂମାଙ୍କ ବିଷୟରେ ମୁଁ ଅନେକ ଜାଣିଥିବା କେତୋଟି ଘଟଣା ଏଠାରେ ଦର୍ଶାଉଅଛି । ଫୁଲବାଣୀ ଜିଲ୍ଲାରେ ନବଜୀବନ ମଣ୍ଡଳର ଦୁଇଜଣ ମହିଳା କର୍ମୀ ରାଧାମଣି ଅପା ଓ ଧୋବେନ୍ଦ୍ରୀ ଅପା ସେବାକାର୍ଯ୍ୟ କରୁଥାନ୍ତି । ତାଙ୍କ କର୍ମକ୍ଷେତ୍ର ଆଦିବାସୀ ଅଞ୍ଚଳ । ଆଦିବାସୀଙ୍କ ଉପରେ ସରକାରୀ କର୍ମଚାରୀ ଓ ସାହୁକାରଙ୍କ ଶୋଷଣ ବିରୋଧରେ ଏ ଅପା ଦୁଇଜଣ ରହି ଲଢ଼ାଇ କରୁଥାଆନ୍ତି । ସରକାରୀ କର୍ମଚାରୀମାନେ ଅପା ଦୁଇଜଣଙ୍କ ଉପରେ ମିଥ୍ୟା କେଶ୍ କରି ହଇରାଣ କରିବାକୁ ଉଦ୍ୟମ ଚାଲିଥାଏ । ଏ ବିଷୟରେ ରାଧାମଣି ଅପା ଓ ଧୋବେନ୍ଦ୍ରୀଅପାଙ୍କ ଠାରୁ ନୂମା ଚିଠି ପାଇଲେ । ଦିନ ଦୁଇଟା ହୋଇଥାଏ । ସଙ୍ଗେ ସଙ୍ଗେ ନୂମା ଫୁଲବାଣୀ ଯିବାକୁ ବାହାରି ପଡ଼ିଲେ । ନବବାବୁ ମନାକଲେ— କହିଲେ, "ବଣ ଜଙ୍ଗଲ ଓ ଘାଟି ଜାଗା । କାଲି ସକାଳୁ ଯିବ ।" କିନ୍ତୁ ନୂମା ଜିଦ୍ ଧରି ବସିଲେ ନା ମୁଁ ଏବେ ଯିବି । ପୂଜ୍ୟ ନବବାବୁ କହିଲେ, ସେ ଜିଦ୍ ଧରିଲେ ନିଶ୍ଚୟ ଯିବେ । ଜିପ୍ ଠିକ୍ କରିଦେଲେ । କେତେ ଜଣ କର୍ମୀଙ୍କୁ ସାଙ୍ଗରେ ନେଇ ନୂମା ଫୁଲବାଣୀ ବାହାରି ପଡ଼ିଲେ । ମୁଁ ନବଜୀବନ ମଣ୍ଡଳର କର୍ମୀ ଥିଲି ଓ ନୂମାଙ୍କ ପାଖକୁ ଆସି-ଥିଲି । ନୂମା କହିଲେ ନିଶାକର ବି ମୋ ସଙ୍ଗରେ ଯିବ । ସମସ୍ତେ ଜିପ୍‌ରେ ବସି ଗଲୁ । ଚୁଲୁବାବୁ ଓ ତୃପ୍ତି କେନ୍ଦ୍ରକୁ ଯିବାକୁ ହେଲେ ବଡ଼ ଘାଟି ପଡ଼ିବ, ବାଘ, ଭାଲୁ, ହାତୀର ଭୟ । ଏଣେ ରାତି ହୋଇ ଆସୁଥାଏ । ଘାଟି ତଳେ ରାତି ଆଠଟା ହୋଇଗଲା । ଆମେ କେତେକ କର୍ମୀ କହିଲୁ କେଉଁଠି ରହି ସକାଳେ ଯିବା । ନୂମା କହିଲେ ଆଜି ଯେତେ ରାତି ହେଉ ପଛେ ପହଞ୍ଚିବାକୁ ହେବ । ଜିପ୍ ଘାଟି ଉପରକୁ ଚଢ଼ିଲା । ବାଘ ଗର୍ଜୁଥାଏ, ହାତୀମାନଙ୍କ ଭୟ ଥାଏ । କିନ୍ତୁ ଘାଟିଉପରେ ଜିପ୍ ଚଢ଼ି ପାରିଲାନାହିଁ । ନୂମାଙ୍କ ସଙ୍ଗରେ ଆମେ ଯାଉଥିବା କର୍ମୀମାନେ ଜିପ୍‌ରୁ ଓହ୍ଲାଇ ପଡ଼ି ପଥର ଦେଇ, ଠେଲି, ଜିପ୍‌କୁ ଘାଟିର କିଛି ବାଟ ଉପରକୁ ନେଲୁ । ନୂମା ମଧ୍ୟ ଜିପ୍‌ରୁ ଓହ୍ଲାଇ ଆମ ସଙ୍ଗରେ ଜିପ୍‌କୁ ଠେଲୁ ଥାଆନ୍ତି । ବହୁତ ଚେଷ୍ଟା ସତ୍ତ୍ୱେ ଜିପ୍ ଘାଟି ଚଢ଼ି ପାରିଲା ନାହିଁ । ବାଘ ଗର୍ଜନରେ ଆମ୍ଭେ କର୍ମୀମାନେ ଥରି ଯାଉ ଥାଉ, କିନ୍ତୁ ନୂମାଙ୍କର ଯେ କିଛି ଭୟ ନଥାଏ, ମୁଁ ଦେଖିଲି । ଏ ଘାଟି ଉପରେ କଣ କରିବା, ଟର୍ଚ୍ଚ ବି କାହା ପାଖରେ ନ ଥାଏ । ଗାଁ ଅଖ ପାଖରେ ନାହିଁ, ବଣ ଜଙ୍ଗଲ ଘାଟିଉପରେ ଆମ ଦୁଃଖ କିଏ ଶୁଣିବ । ଆମ୍ଭେମାନେ ଭୟରେ ଥରି ଯାଉ ଥାଉ । ନୂମା କହିଲେ ଘାଟି ଚଢ଼ି ପାଦରେ ଚାଲି ଚାଲିଯିବା ଜିପ୍ ଏଠାରେ ଥାଉ । ଅନ୍ଧାରରେ ବାଟ,ଘାଟ ଦିଶୁ ନ ଥାଏ । ତିଆସିଲି କାଢ଼ି ବାଟରେ ପଡ଼ିଥିବା ଶୁଖିଲା ପତ୍ର ଲଗାଇଲୁ । ଟିକିଏ ଉଜ୍ଜ୍ୱଳ ହେବାକୁ ଶୁଖିଲା ଡାଳ ସଂଗ୍ରହ କରି ତାକୁ ନିଆଁ ଲଗାଇ ଚାଲିଲୁ । ବିଛଣା ଇତ୍ୟାଦି ସଙ୍ଗରେ ଧରିଥାଉ । ଦୁଇ, ତିନି ମାଇଲଘାଟି ତଳକୁ ଓହ୍ଲାଇ ଚାଲିବା ପରେ ଗୋଟିଏ ସ୍ଥାନରେ ଜୁଳ ଜୁଳ ହୋଇ ଅଲୁଅଟିଏ ରାସ୍ତା କଡ଼ରେ ଦିଶିଲା । ନୂମା କହିଲେ ହେଇ ଆଲୁଅଦିଶୁଛି, ଯେଉଁଠି ଗାଁ ଅଛି, ସେଠାକୁଚାଲ । ସେ ସ୍ଥାନକୁ ଗଲୁ । ରାସ୍ତାରେ ମାଟି କାମ କରିବାକୁ ୨୦-୩୦ ଜଣ କୁଲି ସେଠାରେ ପତ୍ର କୁଡ଼ିଆ କରି ରହିଥାଆନ୍ତି । ସେ କୁଲିମାନଙ୍କ ପାଖରେ ପହଞ୍ଚିଗଲୁ । ସେମାନେ କହିଲେ ଏତେ ରାତିରେ ବାଘ, ହାତୀ ବୁଲିବା ଜାଗା ଏ ଘାଟି ଭିତରେ ଏତେ ସାହସ କରି କିପରି ଆସିଲେ । ଆମେ କହିଲୁ, ଏ ମା' ଥିଲେ ବାଘ, ଭାଲୁ, ହାତୀ, ସରକାରୀ କର୍ମଚାରୀ ଓ ଶୋଷଣକାରୀ ସାହୁକାର ସବୁ ଡରିବେ । ସେମାନେ ସବୁ ଆଶ୍ଚର୍ଯ୍ୟ ହେଲେ । ରାତିଟି ସେ ପତ୍ର-କୁଡ଼ିଆରେ ଶୋଇଲୁ । ସକାଳ ପାହିଲାରୁ ସେହି କୁଲିମାନଙ୍କ ସାହାଯ୍ୟରେ ଜିପ୍‌କୁ ଘାଟି ଉପରକୁ ଉଠାଇ ଚୁଲୁବାବୁ ଓ ତୃପ୍ତି ସେବା କେନ୍ଦ୍ରରେ ଆସି ପହଞ୍ଚିଲୁ । ସତକୁ ସତ କିଛିଦିନ ପୂର୍ବରୁ ଏକ ହାତୀକୁ କିଏ ଗୁଳିକରି ଘାଇଲା କରିଥାଏ । ହାତୀ ଦଳ ଆସି ସେ ଘାଇଲା ହାତୀକୁ ତାଙ୍କ ଯୋରରେ ଟେକି

ନଦୀ ପାଖକୁ ଆଣି ପାଣି ପିଆଇଲେ । ହାତୀଟି ମରଯାଇ ଥାଏ । ସେହି ରାତିରେ ହାତୀମାନେ ସେ ଅଞ୍ଚଳରେ ଉପଦ୍ରବ କରୁଥାଆନ୍ତି । ନଦୀ ପାଖରେ ହାତୀ ପୋତା ହୋଇଥିବା ସ୍ଥାନ ଦେଖିବାକୁ ନୂମାଙ୍କ ସଙ୍ଗରେ ଗଲୁ । ହାତୀ ହାଡ଼ କେତେ ଖଣ୍ଡ ସେ ନଦୀରୁ ସଂଗ୍ରହ କରି ଆଣିଥିଲୁ । ଇନ୍ଦିରା ଗାନ୍ଧୀ ୧୯୭୫ ମସିହାରେ ଦେଶରେ ଜରୁରୀକାଳୀନ ଆଇନ ଜାରି କରି ସର୍ବୋଦୟ ନେତା ଶ୍ରୀ ଜୟପ୍ରକାଶ ନାରାୟଣ ଓ ଅନ୍ୟାନ୍ୟ ସର୍ବୋଦୟ ନେତା ଏବଂ ବିଭିନ୍ନ ରାଜନୈତିକ ଦଳର ନେତାମାନଙ୍କୁ ଜେଲଖାନାରେ ରଖିଥାଆନ୍ତି । ପୂଜ୍ୟା ନୂମା ଜେଲଖାନାରୁ ଖଲାସ ହୋଇ ଏମରଜେନ୍ସି ଓ ଇନ୍ଦିରା ଗାନ୍ଧୀଙ୍କ ବିରୋଧରେ ଆନ୍ଦୋଳନକୁ ବ୍ୟାପକ କରିବା ଉଦ୍ଦେଶ୍ୟରେ କୋରାପୁଟ ଆଦିବାସୀ ଅଞ୍ଚଳକୁ ଯାତ୍ରା କଲେ । ଆମମାନଙ୍କ ମଧ୍ୟରୁ କେତେକ କର୍ମୀଙ୍କୁ ନଜରବନ୍ଦୀ କରି ରଖାଯାଇଥାଏ । କୌଣସି ଗାଁଗଣ୍ଡାକୁ ଏବଂ ସଭାସମିତି କରିବାକୁ ପୋଲିସ ସି. ଆଇ. ଡ଼ି.ବାଲା ଛାଡ଼ୁ ନଥାଆନ୍ତି । ଏ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାକୁ ନୂମା କୋରାପୁଟକୁ ଯାତ୍ରାକଲେ । ପୁରାତନ ସର୍ବୋଦୟ ମଣ୍ଡଳ ସଭାପତି ସ୍ୱର୍ଗୀୟ ଚୂଳମଣି ମହାପାତ୍ରଙ୍କ ସ୍ତ୍ରୀ ସ୍ୱର୍ଗୀୟା ଶ୍ୟାମଳୀ ଦେବୀଙ୍କୁ ସଙ୍ଗରେନେଇ କୋରାପୁଟରେ ନୂମା ପହଞ୍ଚିଥିଲେ । ମୋତେ ଚିଠି ଲେଖିଥିଲେ, ମୁଁ ମଧ୍ୟ କୋରାପୁଟରେ ପହଞ୍ଚିଲି । ନୂମା ଶ୍ରୀ ନିମାଇଁ ଭାଇଙ୍କୁ କହିବାରୁ କେତେଗୁଡ଼ିଏ କାଗଜ ପଟି ନିମାଇଁବାକୁ ଯୋଗାଡ଼ କରି ଆଣିଲେ । ସେ କାଗଜ ପଟିରେ ଏମରଜେନ୍ସି ଓ ସରକାରଙ୍କ ବିରୋଧରେ ସ୍ଲୋଗାନ ଲେଖା ଗଲା । ନୂମା ତାଙ୍କ ବେକରେ ଦୁଇଗୋଟି ଲଟକାଇ ଦେଇ ଛାତି ପାଖରେ ଆଗକୁ ଗୋଟିଏ ଏବଂ ପିଠି ପାଖରେ ପଛକୁ ଗୋଟିଏ ଓହଳାଇ ଦେଲେ । ସ୍ୱ. ଶ୍ୟାମଳୀ ଦେବୀ ଓ ମୁଁ ମଧ୍ୟ ଏହିଭଳି ପଟି ସବୁ ଆଗକୁ ପଛକୁ ଲଟକାଇଲୁ । କୋରାପୁଟ ବସଷ୍ଟାଣ୍ଡ ପାଖ ବଜାରରେ ବୁଲି ବୁଲି ନୂମାଙ୍କ-ସଙ୍ଗରେ ବୁଲିଲୁ । ସଙ୍ଗେ ସଙ୍ଗେ ପୋଲିସ ସି.ଆଇ.ଡ଼ି. ଡି.ଏସ୍.ପି. ପୁଲିସମାନଙ୍କ ସହ ଆସି ଆମ ଚାରିପାଖେ ଘେରି ଗଲେ । ପିଠି, ପେଟ ପାଖରେ ଓହଳା ଯାଇଥିବା ପଟିରେ ସରକାର ଏବଂ ଇମରଜେନ୍ସି ବିରୋଧରେ ଲେଖାମାନ ପଢ଼ିଲେ । ବଜାର ବସ୍‌ଷ୍ଟାଣ୍ଡ ଇତ୍ୟାଦି ଜାଗାମାନଙ୍କରେ ନୂମାଙ୍କ ସାଙ୍ଗରେ ବୁଲୁଥାଉଁ । ୧୦-୧୫ ଜଣ ପୋଲିସ ସି. ଆଇ. ଡି. ଆମ ସଙ୍ଗରେ ବୁଲୁଥାଆନ୍ତି । ୧-୩ ଘଣ୍ଟା ବୁଲିଲା ପରେ ନୂମାଙ୍କ ନିର୍ଦ୍ଦେଶରେ ପ୍ରକୃତ ନିବାସ ନବ-ଜୀବନ ମଣ୍ଡଳ ଘରକୁ ଗଲୁ । ନୂମା ପଛକୁ ଅନାଇ ଦେଖିଲେ ପୋଲିସ ସି. ଆଇ. ଡ଼ି. ତାଙ୍କ ପଛେ ପଛେ ଆସୁଛନ୍ତି । ମୋତେ ଓ ଶ୍ରୀ ବ୍ରଜନାଥ ମଲ୍ଲିକଙ୍କୁ ନୂମା କହିଲେ—ଏ ପୋଲିସ ସି. ଆଇ. ଡ଼ି. ମୋତେ ନିତ୍ୟ କର୍ମ କରେଇ ଦେବେନି, ତୁମେ ଜିଲ୍ଲା କଲେକ୍ଟରଙ୍କୁ ଯାଇ କୁହ । ଆମେ ଦୁଇଜଣ କଲେକ୍ଟରଙ୍କ ପାଖକୁ ଗଲୁ । କଲେକ୍ଟରଙ୍କୁ ନୂମାଙ୍କ କହିବା ମୁତାବକ କହିଲୁ । ତାପରେ ପୋଲିସ ସି. ଆଇ. ଡ଼ି.ବାଲା ଚାଲିଗଲେ । ନୂମା ତାଙ୍କର ନିତ୍ୟ କର୍ମ ସମାପ୍ତ କରି ରହିଲେ ।

ଇମରଜେନ୍ସି ପରେ ଢେଙ୍କାନାଳରେ ନିର୍ବାଚନ ଘୋଷଣା ହେଲା । ନନ୍ଦିନୀଦେବୀଙ୍କ ବିରୋଧରେ ଠିଆ ହେବାକୁ କେହି ସାହସ କରୁ ନ ଥାଆନ୍ତି ତାଙ୍କ ବିରୋଧରେ ନିର୍ବାଚନରେ ଲଢ଼ାଇ କରିବା ପାଇଁ । ନୂମା କହିଲେ ମୁଁ ଛିଡ଼ା ହେବି । ଏହା ସର୍ବସମ୍ମତିରେ ନିଷ୍ପତ୍ତି କରାଗଲା, ନୂମା ନନ୍ଦିନୀଦେବୀଙ୍କୁ ଏ ନିର୍ବାଚନ ମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କରିବେ । ଆମ ପରି ବହୁତ ସର୍ବୋଦୟ କର୍ମୀଙ୍କୁ ନୂମାଙ୍କୁ ଢେଙ୍କାନାଳରେ ଜିଣାଇବାକୁ ପ୍ରଚାର ଉଦ୍ଦେଶ୍ୟରେ ଆସିବାକୁ ପଡ଼ିଲା । ମୁଁ, ଶ୍ରୀ ବ୍ରଜନାଥ ଭାଇ କେତେକ ଗ୍ରାମପଞ୍ଚାୟତର ଗ୍ରାମଗୁଡ଼ିକୁ ଯାଇ ନୂମାଙ୍କୁ ଭୋଟ ଦେଇ ଜିଣାଇବାକୁ ଜନସାଧାରଣ ଓ ଭୋଟରଙ୍କୁ ବୁଝାଇବାକୁ ପଠାଯାଇଥିଲା । ସେଥିମଧ୍ୟରୁ ଗୋଟିଏ ଗାଁରେ ଆମକୁ ପ୍ରଚାର କରିବାକୁ ହେବ । ଯେଉଁ ଗ୍ରାମରେ ଢେଙ୍କାନାଳ ରାଜାଙ୍କ ଡାହାଣ ହାତ ବିରାଟକାୟ, ବିରାଟ ନିଶ, ଓ ବିରାଟ ମୁଖମଣ୍ଡଳ ଥିବା ଜଣଙ୍କର ସମ୍ମୁଖୀନ ହେବାକୁ ଆମକୁ ପଡିଥିଲା । ସେ ଗ୍ରାମ ନାମ ଭୁଲିଯାଇଛି । ଢେଙ୍କାନାଳ ରାଜାଙ୍କର ସେ ଲୋକଟି ଜଣେ ଗୁଣ୍ଡା,ଅଟନ୍ତି । ତାଙ୍କ ପାଖକୁ ମୁଁ ଓ ବ୍ରଜନାଥ ଭାଇ ଗଲୁ । ତାଙ୍କୁ ଦେଖି ଆମେ ପ୍ରଥମରେ ଡରିଗଲୁ । ତେବେ ଆମେ ନ ଛାଡ଼ିବା ଲୋକ ତାଙ୍କୁ ଏମରଜେନ୍ସି କଥା ଲୋକ-ନାୟକ ଜୟପ୍ରକାଶଙ୍କ କଥା ବୁଝାଇଲୁ । ସେ ଆମର ସମସ୍ତ କଥା ଶୁଣି ଶେଷରେ ଆମ ଦୁଇଜଣଙ୍କୁ ଘଉଡ଼ାଇ ଦେବାକୁ ଗ୍ରାମରୁ ଚେଷ୍ଟା କଲେ । ସେ ଗ୍ରାମର କେତେ ଘର ଲୋକ ଆମ ସପକ୍ଷରେ ଏବଂ ସେ ଲୋକଙ୍କ ବିରୋଧରେ ଥିଲେ । ସେହିମାନଙ୍କ ପାଖରେ ଆମେ ରହି ପ୍ରଚାର କାମ ଚଳାଇଲୁ । ସେ ଗ୍ରାମର ଆମ ସମର୍ଥକ ଲୋକଙ୍କୁ ସଙ୍ଗରେ ନେଇ ନୂମାଙ୍କର ଏକ ସଭା ସେ ଗ୍ରାମରେ କରାଇବାକୁ ଆୟୋଜନ କଲୁ । ନୂମା ସେ ଗ୍ରାମକୁ ଆସି ସଭା କରି ଭୋଟରମାନଙ୍କୁ

ତାଙ୍କୁ ଭୋଟ ଦେଇ ନିଯୁକ୍ତ କରିବାକୁ ନିବେଦନ କରିବା କଥା ଠିକ୍ କରିଗଲା । ସେ ଭଦ୍ରଲୋକ ନନ୍ଦମା-ଦେବୀଙ୍କ ସପକ୍ଷରେ ରହି ମାଳତୀ ଚୌଧୁରୀ (ନୂମା)ଙ୍କ ବିରୋଧରେ ସଂଗଠନ କରିବାକୁ ଯୋରସୋର ଉଦ୍ୟମ କଲେ; ମାଳତୀ ଚୌଧୁରୀଙ୍କ ସଭା କରିଇ ନ ଦେବାକୁ । ନୂମା ଯେତେବେଳେ ସଭାରେ ପହଞ୍ଚିଲେ ହରିବୋଲ, ହୁଳହୁଳି ଓ ମାଳତୀ ଚୌଧୁରୀ କି ଜୟ ଇତ୍ୟାଦିରେ ଗାଁ କମ୍ପିଗଲା । ରାଜାଙ୍କ ଗୁଣ୍ଡା ଦ୍ୱାରା ଉତ୍ପୀଡ଼ିତ ହୋଇଥିବା ଗ୍ରାମବାସୀ ନିର୍ଭୟ ହୋଇ ଏକଜୁଟ ହୋଇଗଲେ ଓ ରାଜାଙ୍କ ଗୁଣ୍ଡା ଓ ନନ୍ଦମାଦେବୀଙ୍କ ସମର୍ଥକ ସବୁ ସମ୍ମିଳନ ଗୁଣ୍ଡା ପାଟିତୁଣ୍ଡ କରି ପଳାଇଗଲେ । ପୂଜ୍ୟା ନୂମାଙ୍କ ଦକ୍ଷ ପ୍ରଚାର ଏବଂ ତାଙ୍କର ନିର୍ଭୀକତା ପାଖରେ ଡର, ଭୟ, ଗରିବମାନଙ୍କ ଉପରେ ନିର୍ଯାତନା କରୁଥିବା ଶୋଷଣକାରୀ ସରକାରୀ କର୍ମଚାରୀ ଓ ସାହୁକାରମାନେ ହାର ମାନିଥିଲେ । ଏହି ଉକ୍ତଗୋଟି ଘଟଣାରେ ମୁଁ ତାଙ୍କ ସାନିଧ୍ୟରେ ରହି ତାଙ୍କର ଲୁହାର ମଣିଷପଣିଆକୁ ଅଙ୍ଗେ ଲିଭାଇବା ଘଟଣାଟିକୁ ଲେଖିଲି । ପ୍ରତ୍ୟେକ ଜନସାଧାରଣ, ସର୍ବୋଦୟ ସେବକ ସେବିକା ଏଥିରୁ ଶିକ୍ଷା ଲାଭ କରିବେ ବୋଲି ଆଶା ।

ସର୍ବୋଦୟ କର୍ମୀ
ପାଡ଼ୁଆ

---

"ପ୍ରକୃତ କଥା କହିବାକୁ ଗଲେ ସେବାରେ ପ୍ରାଣ ପ୍ରାଚୁର୍ଯ୍ୟର ପ୍ରୟୋଜନ ଅର୍ଥଠାରୁ ଅଧିକ ଆବଶ୍ୟକ । ପ୍ରାଣରେ ସରସତା ଥିଲେ ସେ ବାଧାକୁ ବାଧା ବୋଲି ଗଣ୍ୟ କରିବ ନାହିଁ । ସେ ପ୍ରକାର ସରସତା, ପ୍ରାଣ ପ୍ରାଚୁର୍ଯ୍ୟ ପ୍ରତ୍ୟେକ ଭଉଣୀ କର୍ମୀଙ୍କ ଭିତରେ ପରିପୂର୍ଣ୍ଣ ହୋଇ ରହୁ ।"

—ମାଳତୀଦେବୀ

# କିଛି ସ୍ମୃତି : କିଛି ଅନୁଭୂତି

□ ମମତାମୟୀ ପାତ୍ର

ଏଠୁ ଅନେକ ଦୂର କୋରାପୁଟ (ବର୍ତ୍ତମାନ ରାୟଗଡ଼ା) ଜିଲ୍ଲାରେ କୁଟେନ୍ଦ୍ରୀ ଗାଁରେ ମୋର ଜନ୍ମ । ଋଷିପ୍ରତିମ ପିତା ତୁଲ୍ୟ 'ଅଜ୍ଞା' (ଶ୍ରୀଯୁକ୍ତ ବିଶ୍ୱନାଥ ପଟ୍ଟନାୟକ) ୧୯୪୮ରେ ଆମ ଗାଁରୁ କେତୋଟି ପୁଅ ଝିଅଙ୍କୁ ଅନୁଗୋଳର ଏଇ ବାଜିରାଉତ ଛାତ୍ରାବାସକୁ ନେଇ ଆସିଲେ ପାଠ ପଢ଼ାଇ ମଣିଷ କରିବାକୁ । ଆମେ ଯେଉଁମାନେ ଏଠାକୁ ଆସି ଶିକ୍ଷା, ଦୀକ୍ଷା ପାଇଲୁ, ଗାଁରେ ରହି ଯାଇଥିଲେ ହୁଏତ ଶିକ୍ଷାର ଆଲୋକ ଆମକୁ ମିଳି ପାରି ନଥାନ୍ତା ।

ମା, ବାପା ଓ ପରିବାର କୁଟୁମ୍ବଙ୍କୁ ଛାଡ଼ି ଏତେ ଦୂରରେ ପହଞ୍ଚି ପ୍ରଥମେ ପ୍ରଥମେ ଖୁବ କାନ୍ଦ ମାଡ଼ୁଥିଲା । ମାତ୍ର ଏଠି ନୁମା, ବାବାଜୀଭାଇ ଓ ଅନ୍ୟ ଗୁରୁଜୀମାନଙ୍କର ସ୍ନେହ, ଆଦର ପାଇ ଧୀରେ ଧୀରେ ବାପା, ମାଆ ଓ କୁଟୁମ୍ବଙ୍କୁ ଝୁରିହେବା କମିଗଲା । ନୁମାଙ୍କ ସ୍ନେହ-ଆଦର ଏତେ ମିଳିଥିଲା ଯେ—ତାର ପ୍ରଭାବ ମୃତ୍ୟୁ ପର୍ଯ୍ୟନ୍ତ ବି ଭୁଲି ହେବନି । ତାଙ୍କ ପାଖରେ ବେଶୀ ସମୟ କଟିଛି, ତାଙ୍କର ସ୍ନେହ-ଶ୍ରଦ୍ଧା ଓ ସଂସ୍କାର ପାଇ ମୁଁ ଲାଳିତ, ପାଳିତ ହୋଇଛି । ତେଣୁ ତାଙ୍କୁ ମୁଁ ମୋର "ଯଶୋଦା ମାଆ" ବୋଲି ଧରିନେଇଛି । ବାଲ୍ୟ-କୈଶୋରର ଜୀବନ ଏଇ ଛାତ୍ରାବାସ ଏବଂ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଅତି ସୁଖରେ କଟିଛି । ଏତେସୁଖ ପଛରେ ରହିଛନ୍ତି ନୁମା ଓ ବାପି । ସେ ସବୁ ସ୍ମୃତିକୁ ଅନୁଭବ କରି ହୁଏ, ବ୍ୟକ୍ତକରି ହୁଏନା । ଆମେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମୌଳିକ ଶିକ୍ଷାରେ ତାଲିମ ପାଇଛୁଁ । କ୍ଲାସ ରୁମ୍ ପଢ଼ା ଆମ ବେଳେ କମ୍ ହେଉଥିଲା । ସଫେଇ, ବଗିଚାକାମ, ସେପେଇ, ସୂତାକଟା, ଲୁଗାବୁଣା, ବଢ଼େଇକାମ, ଗୀତ, ନାଚ ଆଦି ଭିତରେ (ଗୁରୁଜୀମାନେ ଆମ ସାଙ୍ଗରେ ବି ସବୁକାମ କରୁଥିଲେ) ଆମକୁ ଯେଉଁ ଶିକ୍ଷା ମିଳୁଥିଲା ସେଥିରେ ଆମେ ବେଶୀ ଆନନ୍ଦ ପାଉଥିଲୁ । ସେହି କାମ ମାର୍ଫତରେ ପାଠଗୁଡ଼ିକ ବେଶି ମନେ ରହିଯାଉଥିଲା ।

ବିବାହର ୩ ବର୍ଷ ପରଠାରୁ ଆମେ ଏଇ ଆଶ୍ରମ ପରିସର ମଧ୍ୟରେ ରହିଛୁ । ଆମେ ଆସିବାର ଅଳ୍ପ କେତେ ବର୍ଷପରେ ଶିକ୍ଷାରେ ମୌଳିକ ଜିନିଷଟା ଶିକ୍ଷାର ପ୍ରାଣ ଥିଲା । ଏବର ଶିକ୍ଷା ଯେପରି ପ୍ରାଣହୀନ । ଶିକ୍ଷା ଭିତରୁ ମୌଳିକ ଜିନିଷଟା ଖସି ଯାଇଥିଲେ ବି ଆଶ୍ରମ (ଛାତ୍ରାବାସ)ରେ ଆଜି କେତେଗୁଡ଼ିଏ ମୌଳିକତା (ଯଥା ଜାତି ଧର୍ମର ସଙ୍କୀର୍ଣ୍ଣତା ନଥିବା ଓ ଶରୀରଶ୍ରମ ପ୍ରତି ଆଦରଭାବ) ବିଦ୍ୟମାନ ରହିପାରିଛି । ଏଠା ଛାତ୍ରଛାତ୍ରୀଙ୍କ ଭିତରୁ ଅନେକ ଉଚ୍ଚ ପଦପଦବୀରେ କାମ କରୁଛନ୍ତି । ସେମାନେ ପ୍ରାୟ ସମସ୍ତେ ନମ୍ର ଓ ଅହଙ୍କାରଶୂନ୍ୟ । ସେମାନଙ୍କ ପାଇଁ ମନରେ ଗର୍ବ ଆସେ ।

ନୁମା ଓ ବାପିଙ୍କ ବ୍ୟତୀତ ଯେଉଁ ଗୁରୁଜୀମାନଙ୍କର ମୋ ଜୀବନ ଉପରେ ବେଶୀ ପ୍ରଭାବ ପଡ଼ିଛି ସେମାନେ ହେଲେ ବାବାଜୀ ଭାଇ (ସେ ଗୁରୁଜୀ ନଥିଲେ ବି ପିଲା-ମାନଙ୍କର ବଡ଼ ଗୁରୁଜୀ ଥିଲେ) । ଶ୍ରୀ ଋଷି ବେହେରା, ଶ୍ରୀ ଦିବାକର ପ୍ରଧାନ, ଶ୍ରୀ ସର୍ବେଶ୍ୱର ନାୟକ । ବାବାଜୀ-ଭାଇଙ୍କ ପ୍ରତି ଯେତିକି ଆଦର ଥାଏ—ସେତିକି ଡର ବି ଥାଏ । ମାତ୍ର ସନ୍ଧ୍ୟାବେଳେ ଯେତେବେଳେ ତାଙ୍କ ଗପମୁଣି ଖୋଲେ, ସେତେବେଳେ ତାଙ୍କ ସାହଚର୍ଯ୍ୟ ଭିତରେ ସେ ଏକାନ୍ତ ଆପଣାର ମନେ ହୁଅନ୍ତି ।

ଆମେ ଏଠି ପଢ଼ିଲାବେଳେ ଇଂରାଜୀକୁ ଏତେ ପ୍ରାଧାନ୍ୟ ଦିଆଯାଉନଥିଲା । ଚମ୍ପତିମୁଣ୍ଡାରେ ମଧ୍ୟ । ଏବେ ତ ପିଲା କଥା କହି ଶିଖିଲା ବେଳୁ ତା ମୁଣ୍ଡ ଉପରେ ଇଂରାଜୀ ଲଦି ଦିଆଯାଉଛି । ବାପ ମାଆ ଅଭିଭାବକମାନେ ମନେ କରୁଛନ୍ତି........ ପିଲା ମମି, ଡାଡି, ଠାରୁ ଆରମ୍ଭ କରି ଇଂରାଜୀରେ କଥାବାର୍ତ୍ତା ନ କଲେ ଯେପରି ସପ୍ତପୁରୁଷ ପାଣି ପାଇବେନି ।

ନୁମା ଏଠି ବେଶୀ ସମୟ ରହୁ ନଥିଲେ । କିନ୍ତୁ ଯେତିକି ସମୟ ରହି ସେ ଏ ଆଶ୍ରମ ବାତାବରଣରେ ଏମିତି କିଛି କମିଆ ଛାଡ଼ିଦେଇ ଯାଉଥିଲେ ଯାହା ଫଳରେ ପ୍ରତି

ମୁହୂର୍ତ୍ତରେ ଏଠି ଆଶ୍ରମଟା ସବୁବେଳେ ସଙ୍ଗୀତମୟ ପ୍ରାଣ ପ୍ରାଚୁର୍ଯ୍ୟରେ ଭରି ଉଠୁଥିଲା । ଗୋଟାଏ ଚମକ ଥିଲା । ସେ ଚମକ ପିଲାମାନଙ୍କ ଭିତରେ ଫୁଟି ଉଠୁଥିଲା, ଗଛଲତା, ଘରଦ୍ୱାର ଯୁଆଡ଼େ ଚାହିଁଲେ ବାରି ହୋଇ ପଡୁଥିଲା, ଏବେ ବ ବଶେଷ ଦିନରେ ବୈତାଳିକ ହେଉଛି, ଗାନ୍ଧୀ ଜୟନ୍ତୀରେ ସୂତ ଯଜ୍ଞ ହେଉଛି, ବଶିଷ୍ଟ ଜନନାୟକଙ୍କ ଜୟନ୍ତୀ ଓ ମହାପ୍ରୟାଣ ଦିବସମାନ ପାଳନ ହେଉଛି ମାତ୍ର ସବୁଥିରୁ କର୍ପୂର ଉଡ଼ିଗଲାପରି ଲାଗୁଛି । ମନେ ପଡ଼ୁଛି ତାହାକୁ ବିଦାୟ ଦେଲାବେଳେ 'ଆଉ କି ଆସିବ ଫେରି ?' ସେହି ଅପୂର୍ବ ସଙ୍ଗୀତରେ ରାଗିଣୀ ଝଙ୍କୃତ ହେଉଛି ପ୍ରାଣରେ । ମୋର ପରି ଅନେକ ପୁଅ, ଝିଅ, ତୁମାଙ୍କଠାରୁ ଅନେକ କିଛି ପାଇଛନ୍ତି । ତାଙ୍କ ହାତରେ କିଛି ଯାଦୁ ଥିଲା । ମୁଁ କଅଣ ବୁଜେନ୍ଦ୍ରୀରେ ରହି ତେବେ ରବୀନ୍ଦ୍ର ସଙ୍ଗୀତ ଶିଖି ପାରିଥାନ୍ତି ? ଯେବେ ମୋ ମାତୃଭାଷା (ସହର) ବାହାରେ ଓଡ଼ିଆ, ବଙ୍ଗଳା, ଓ ହିନ୍ଦୀ ଭାଷାରେ ଗୀତ ଗାଇ ପାରିଥାନ୍ତି ? ସବୁ ବିଷୟରେ ସଣୁଣା ପାଇ-ପାରିଥାନ୍ତି ? କେବଳ ମୁଁ ନୁହେଁ ମୋଭଳି ଅନେକେ ପାଇଛନ୍ତି । ଆମର ସମସ୍ତ ସ୍ମୃତି ଓ ଅନୁଭୂତିରେ ତୁମା ଚିରଦିନ ଅମର ହୋଇ ରହିଥିବେ ।

ନବଜୀବନ ମଣ୍ଡଳ, ଅନୁଗୋଳ

(ସୁବର୍ଣ୍ଣଜୟନ୍ତୀ ବିଶେଷାଙ୍କ ୧୯୭୭ ବାଜି ପତ୍ରିକାର ସୌଜନ୍ୟରୁ)

---

"ବହୁ ସଂଖ୍ୟାରେ ଭଉଣୀ ସମାଜ ଯଦି ଖୁବ୍ ଜୋର ଦେଇ ନିଶା ବିରୁଦ୍ଧରେ ସ୍ୱର ଉଠାଇବେ, ତେବେ ଯେକୌଣସି ସରକାର ଏହା ରୋକିବାକୁ ବାଧ୍ୟ ହେବେ । ନିଶାକୁ ଖୁଲ୍ଲ ରଖି ଯେଉଁ ସରକାର ଗରିବୀ ହଟାଇବାର କଥା ମୁହଁରେ କହୁଛନ୍ତି, ସେ ସରକାର ଲୋକଙ୍କୁ ପ୍ରତାରଣା କରୁଛନ୍ତି ମାତ୍ର ।"

—ମାଳତୀଦେବୀ

# ଜରୁରୀକାଳୀନ ପରିସ୍ଥିତିରେ ନୁମା

☐ ଲୋକନାଥ ପ୍ରଧାନ

୧୯୭୫ ଜରୁରୀକାଳୀନ ସ୍ଥିତି ଜାରି ହେବା ସଙ୍ଗେ ସଙ୍ଗେ ନବବାବୁଙ୍କ ସମେତ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଗିରଫ କରି ନିଆଗଲା; ମାତ୍ର ମାଳତୀଦେବୀ ଲୁଚି ଯାଇ ଆତ୍ମଗୋପନ କଲେ—'ସଂଗ୍ରାମ' ନାମକ ଏକ ସାଇକ୍ଲୋଷ୍ଟାଇଲ ପତ୍ରିକା ପ୍ରକାଶ କଲେ—ଏବଂ ବିଭିନ୍ନ ସ୍ଥାନରେ ବୁଲି ଇନ୍ଦିରାଙ୍କ ଏକଛତ୍ର ଶାସନ ବିରୋଧରେ ଲୋକମତ ସୃଷ୍ଟି କଲେ । ପରେ ୧୯୭୬ ଫେବୃଆରୀ ୩ ତାରିଖ ଦିନ ତାଙ୍କୁ ମଧ୍ୟ ଗିରଫ କରାଗଲା । ନ ଖାଇ ନ ପିଇ ଦିଖଣ୍ଡ ଶାଢ଼ି ଧୋଇ ଶୁଖାଇ ପିନ୍ଧି ପ୍ରଚୁର ଅଭିଯାନରେ ନୁମା ବୁଲୁଥିବାର ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ନିମ୍ନରେ ପ୍ରକାଶ କରାଯାଉଛି ।

ଆଷାଢ଼ ମାସରେ ବର୍ଷା ପ୍ରକୋପ ସେଦିନ ଖୁବ୍ ଜୋର ଥିଲା । ଆମ ଗାଁର ମାଟି ରାସ୍ତାରେ କାଦୁଅ ଭରି ରହିଥିଲା । ଆମ ଦାଣ୍ଡ ପିଣ୍ଡାରେ ଜଣେ ବିଚରା ନିଘୋଡ଼ ନିଦରେ ଶୋଇଥିଲା । ରାତି ପ୍ରାୟ ୧୨ଟାରୁ ଉପର । ବାହାକୁ ବାହା ଦିଶୁ ନ ଥିଲା । କେବଳ ବିଜୁଳି ଆଲୁଅରେ ବେଳେବେଳେ ଗଛଲତା ରାସ୍ତା ଘାଟ ଦିଶି ଯାଉଥିଲା ।

ନୁମା ଜିପ୍‌ରୁ ଓହ୍ଲାଇ ଆମ ଘର ପିଣ୍ଡା ଉପରକୁ ଚଢ଼ିଲା, ବାରଣ୍ଡାରେ ଶୋଇଥିବା ଲୋକଟିକୁ ଧୀରେ ଉଠାଇଲା । ସେ ତ ନୁମାକୁ କେବେ ଦେଖି ନ ଥିଲା । ଭୟରେ ଥରଉଠିଲା । ନୁମା କହିଲା ଏଟା ଲଳିତା ଘରତ ? ତମେ ଯାଇ ତାକୁ ଟିକେ ଡାକିଦିଅ । ଲଳିତା ପାଟି ବାରି କବାଟ ଖୋଲି ଦେଖେ ନୁମା ଏବଂ ଆଉ ଜଣେ ଅପା ଛିଡ଼ା ହୋଇଛନ୍ତି । ଏ ପରିସ୍ଥିତିରେ ତା ପାଟିରୁ କଥା ଫୁଟିଲା ନାହିଁ । ନୁମା କହିଲା ମୋ ପାଇଁ ଗୋଟେ ଦଉଡ଼ିଆ ଖଟ ଖୋଲାଜାଗାରେ ଦେ । ମଶାରିଟା ଟାଙ୍ଗିଦେ । ମୁଁ ବଡ଼ ଥକା, ଟିକେ ଶୋଇପଡ଼େ ।

ନୁମା ସହିତ ଯେଉଁ ଅପା ଆଶ୍ରମରୁ ଆସିଥିଲେ ତାଙ୍କର ତରଳ ଝାଡ଼ା ଓ ବାନ୍ତି ଗୋଟାଏ ପରେ ଗୋଟାଏ ଆରମ୍ଭ ହେଲା । ନୁମାଙ୍କୁ କହିଲାରୁ ନୁମା କହିଲେ ତାକୁ ଚିନି ଲୁଣ ପାଣି ଦେ । ଆଉ ଯଦି କିଛି ଔଷଧ ଅଛି ତାକୁ ଦେଲ; ସେ ଭଲ ହୋଇଯିବ । ଭଗବାନଙ୍କ କୃପାରୁ ପାହାନ୍ତିଆ ବେଳକୁ ସେ ଅପା ନିଦରେ ଶୋଇପଡ଼ିଲେ; ତାଙ୍କ ଦେହ ଭଲ ହୋଇଗଲା ।

ସକାଳୁ ଉଠି ତା ନିତ୍ୟକର୍ମ ସେ କଲା । ତାପରେ ତାର ଆସିବାର ଉଦ୍ଦେଶ୍ୟ ଲଳିତାକୁ ଓ ମୋର ବାପାଙ୍କୁ ଶୁଣାଇଲା । ବାହାର ଲୋକଙ୍କୁ ତାର ରହିବା କଥା ନ କହିବା ପାଇଁ ତାଙ୍କୁ ବୁଝାଇଦେଲା ।

ତାପରଦିନ ସମ୍ବଲପୁର ଆସି ଆମ ଲୋକ ମତେ ଖବର ଦେଲା । ସେତେବେଳକୁ ସବୁ ଅଫିସ ଜରୁରୀ-କାଳୀନ ପରିସ୍ଥିତି ପାଇଁ ତତ୍ପର ହୋଇ ଉଠିଥିଲେ । ନିୟମ କଡ଼ାକଡ଼ି ହୋଇ ଉଠିଥିଲା । ମୁଁ ସମୟ କରି ରବିବାର ଦିନ ଯାଇ ଘରେ ପହଞ୍ଚିଲି । ନୁମା ବେଶ ଖୁସି ଥିଲା । କହିଲା, ବାପି କେଉଁ ଜେଲରେ ରହିଲେ ମୁଁ ଜାଣେ ନାହିଁ । ସେ କଟକରୁ ଜେଲକୁ ଗଲେ । ମୁଁ ଖବର ପାଇ ଏଠିକି ଲୁଚିକରି ପଳେଇ ଆସିଲି । ସବୁ ନେତାମାନେ ତ ବର୍ତ୍ତମାନ ଜେଲରେ । ବାହାରେ ମୁଁ ନ ରହିଲେ ବାକି କାମ କରିବ କିଏ ? ମୁଁ ଏଠାରେ ରହିଲେ ମଧ୍ୟ କିଛି କରିପାରିବି ନାହିଁ । ମତେ କୌଣସି ଉପାୟରେ ସମ୍ବଲପୁର ଯିବାକୁ ହେବ । ମୁଁ ଏଠାରେ ଆଠ ଦଶ ଦିନ ବିଶ୍ରାମ ନେବା ପରେ ସମ୍ବଲପୁର ଯିବି । ସେଠାରେ ବୁଦ୍ଧିଜୀବୀ କଲେଜ ଓ ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କ ମଧ୍ୟରେ ଏ ଶାସନର ଅନ୍ୟାୟ ବାର୍ତ୍ତା ପହଞ୍ଚାଇବାକୁ ପଡ଼ିବ । ଦେଶଟାକୁ ସ୍ୱାଧୀନ କରିବା ପାଇଁ କେତେ ଦିନ ଜେଲରେ ସଢ଼ିଲୁ । ବର୍ତ୍ତମାନ ସେଇ ଜେଲ ଭିତରେ ଅନେକ ଲୋକ ରହିଲେ ।

ମତେ ଏ ସଂଗ୍ରାମ ଶେଷ ପର୍ଯ୍ୟନ୍ତ ଲଢ଼ିବାକୁ ପଡ଼ିବ । ତୁ କେବେ ଆସିବୁ କହ । ସେଦିନ ମୁଁ ସଜ ହୋଇଥିବି,

ସନ୍ଧ୍ୟା ପରେ ଏଠାରୁ ଯିବା । ମୁଁ ତାର କଥା ଶୁଣିଲି ବେଳେ ଭାବୁଥାଏ ସଂଗ୍ରାମୀର ପିପାସା କେତେ ପ୍ରବଳ । ହୃଦୟ ତାର କେତେ ବ୍ୟାକୁଳ । ଦେଶ ପାଇଁ କେତେ ଚିନ୍ତା ତା ମନରେ ! ସେଦିନ ସମ୍ବଲପୁର ମୁଁ ଫେରିଆସିଲି । କହି ଆସିଥିଲି ଆସନ୍ତା ସୋମବାର ଅଫିସ କାମ ପରେ ମୁଁ ଗାଡ଼ି ଆଣି ତତେ ବାମୁର ପାଖରୁ ନେଇଯିବି ।

ଆମ ଗାଁରେ ଥିଲାବେଳେ ବାଜପେୟୀଙ୍କ ଗ୍ରନ୍ଥାବାଳୀରୁ ପାଲିକରି ଶ୍ୟାମ ଭାଇ, ଭାସ୍କର ଭାଇ ଇତ୍ୟାଦି ନୂମାର ଚିଠିପତ୍ର, ଇଂରେଜୀ ଖବର କାଗଜ ଆମ ଗାଁରେ ପହଞ୍ଚାଇ ଦେଉଥିଲେ । ଆଶ୍ରମର ଭଲମନ୍ଦ ନୂମା ସେମାନଙ୍କ ପାଖରୁ ପାଉଥିଲା । ତେଣୁ ଗ୍ରନ୍ଥାବାଳୀ ସହିତ ତାର ଯୋଗସୂତ୍ର ସେ ରକ୍ଷି ପାରୁଥିଲା । ସେତେବେଳେ ନବଜୀବନ ମଣ୍ଡଳ କର୍ମୀମାନଙ୍କର ଭତ୍ତା ଓ ଅନ୍ୟାନ୍ୟ ଅନୁଦାନ ସରକାର ବନ୍ଦ କରିଦେଲେ । କିନ୍ତୁ ନୂମାର କର୍ମୀମାନଙ୍କର ମନୋବଳ ଭାଙ୍ଗି ନ ଥିଲା । ଫୁଲବାଣୀର ମାଳ ଅଞ୍ଚଳରେ ରହୁଥିବା ଅପାମାନେ ନିଜପାଇଁ ବିକଳ୍ପ ପନ୍ଥା ଗ୍ରହଣ କରିଥିଲେ । କିଏ ମୁଡ଼ି, ପନିପରିବା ବିକି କରି ଚଳିଗଲେ । ଆଶ୍ରମରେ ବାବାଜୀ ଭାଇ ଓ କେତେଜଣ ଗୁଣ୍ଡୁଙ୍କ ପନିପରିବା ଚାଷ ଜୋରରେ ଆରମ୍ଭ କଲେ ଏବଂ ପିଲାମାନଙ୍କୁ ଆଦର କରି ରହିଗଲେ । ପୋଲିସ ପହରା ଆଶ୍ରମ ବାହାରେ ଗରୁଡ଼ନେ ଦେଉଥିଲେ । ସେଥିପାଇଁ ବାହାର ଲୋକ ସେଠାକୁ ଯିବାକୁ ଡରୁଥିଲେ ।

ମୁଁ ଯେଉଁଦିନ ଗାଡ଼ି ନେଇ ନୂମାକୁ ଆଣିବା ପାଇଁ କଥା ଦେଇଥିଲି, ସେଦିନ ମୋର ସରକାରୀ କାମ ଏମିତି ପଡ଼ିଲା ଯେ ମୁଁ କଥା ରକ୍ଷା କରି ପାରିନଥିଲି । କିନ୍ତୁ ନୂମା ଆମ ଘରଠାରୁ ବାମୁରକୁ ବିଲ ଓ ଜଙ୍ଗଲ ରାସ୍ତା ଦେଇ ଆମ ଘର ଥିବା ଜଗାକୁ ସାଙ୍ଗରେ ନେଇ ଚାଲି ଚାଲି ୧୨ କି.ମି. ବାଟ ଅତିକ୍ରମ କରି ବାମୁରରୁ ବସ୍‌ରେ ସମ୍ବଲପୁର ଆସି ପହଞ୍ଚିଗଲା । ସମ୍ବଲପୁରରେ କାହା ଘରେ ରହିଲେ ବିପଦ ମଣିଲା । ତେଣୁ ସେ ନିଜେ ଧନକଉଡ଼ା ଚରଖା ସଂଘ ଘରେ ରହିଗଲା । ମୁଁ ରାତିରେ ସାଇକେଲ ନେଇ ତା ପାଖରେ ପହଞ୍ଚେ । ମିଞ୍ଜି ମିଞ୍ଜି ଲଣ୍ଠନ ଆଲୁଅରେ ନୂମା ତାର ଲିଫଲେଟ ଲେଖିବା, ଚିଠି ଲେଖିବା କାମରେ ବ୍ୟସ୍ତ ଥାଏ । ମତେ ସେ କହିଲା ଏଗୁଡ଼ାକ କେମିତି ଛପାହେବ ଏବଂ ବୁଦ୍ଧିଜୀବୀ ଲୋକଙ୍କ ପାଖରେ ପହଞ୍ଚିବ ତେବେ ଯାଇ ଏଠାକୁ ଆସିବାର କାମ ସଫଳ ହେବ । ଛପାହୋଇ ନ ପାରୁ ପଛେ ମୁଁ ତାହା ଲେଖେ କରିବାର ଦାୟିତ୍ୱ ନେଲି । ତାହା ପିଲଙ୍କ ଜରିଆରେ ସମ୍ବଲପୁରର କାନ୍ଥବାଡ଼ରେ ଲଗାଗଲା । ପିଲଙ୍କ ମଧ୍ୟରେ ବଣ୍ଟାଗଲା । ନୂମାର ନାଁ କେଉଁଠାରେ ଲେଖା ନଥିଲା । ଭାଷା ବଡ଼ ସୁନ୍ଦର ଥିଲା । ଯିଏ ପଢ଼ୁଥିଲା ସେ ଗରମ ହୋଇ ଯାଉଥିଲା । ଏହାପରେ ଏ କାମ ସେମିତି ଚାଲିଲା ।

ମୋର ମନେ ଅଛି ଦିନେ ବର୍ଷା ଯୋଗୁ ଖଦଡ଼ ଶାଢ଼ି ଖଣ୍ଡେ ପୁରା ଶୁଖିନ ନ ଥିଲା । ମୋତେ ଡାକିକି ସେ ଆଉଜେଇ ନେଲାବେଳେ ମୁଁ ଅନୁଭବ କଲି ଯେ ଲୁଗାଟା ଶୁଖିନାହିଁ ଅଥଚ ସେ ପିନ୍ଧିଛି । ମୁଁ ତାକୁ କିଛି ନ କହି ଆଉ ଖଣ୍ଡେ ପତଳା ଖଦଡ଼ ଶାଢ଼ି ନେଇ ପହଞ୍ଚାଇଲି । କହିଲି ତୋ ଦେହ ଖରାପ ହେବ, ତୁ ଏ ଲୁଗାକୁ ବଦଳାଇ ପକା । ସେ ମୋ ଆଡ଼କୁ ଚାହିଁଲା ଓ କହିଲା, "ମୋର ଦୁଇଖଣ୍ଡ ଶାଢ଼ି ଯଥେଷ୍ଟ । ଯେ ସଂଗ୍ରାମ ପାଇଁ ଯାଏ ତାର ଅଧିକ ଲୁଗାପଟା ଦରକାର ନାହିଁ ଏବଂ ଏ ଶାଢ଼ି ଖଣ୍ଡ ତୁ ଫେରେଇ ନେ । ନଚେତ ଲକ୍ଷ୍ମୀକୁ ଦେଇଦେବୁ ।" ନୂମାକୁ ଜବାବ ଦେବାର କିଛି ନଥିଲା । କେବଳ ମୋ ଆଖିରୁ ଦୁଧାର ଲୁହ ମୋର ଅଜାଣତରେ ବହିଗଲା ।

ତାର ଦୁ'ଦିନପରେ ନୂମାକୁ ଜ୍ୱର ହେଲା । ସେ ଚରଖା ସଂଘ ଘରଛାଡ଼ି ବୁର୍ଲା ଚାଲିଗଲା । ସେଠାରେ ସେ ମହିଳା ଡାକ୍ତର ସରସ୍ୱତୀ ଅପାଙ୍କ ଘରେ ରହିଗଲା । ନୂମା ଚରଖା ସଂଘ ଘର ଛାଡ଼ିବା ପରେ ପୋଲିସ ଖାନତଲାସ କଲା । ସେ ଲିଫ୍‌ଲେଟ୍‌ରୁ ଖଣ୍ଡେ ଭୁଲବଶତଃ ଖଟତଳେ ପଡ଼ିଥିଲା । ତେଣୁ ସେଠାରେ ରହୁଥିବା ଜଣେ କର୍ମୀଙ୍କୁ ଜେଲ ପଠାଗଲା ।

ଡାକ୍ତର ସରସ୍ୱତୀ ଅପାଙ୍କ ଘର ପୋଲିସ ଚଢ଼ାଉ କଲା ବେଳେ ନୂମା ତାର ଲୁଗାପଟା ନେଇ ବାଉପଟ ଦେଇ ମେହେନ୍ତରାଣୀ ବେଶରେ ଘର ପଛ ଦରଜାରେ ବାହାରି ବସ୍‌ରେ ରାଜପୁରବେଢ଼ ଚାଲିଗଲା । ସେଠାରେ ସେ ଆରେଷ୍ଟ ହେଲା ଏବଂ କଟକ ଜେଲକୁ ଗଲା ।

ଜରୁରୀକାଳୀନ ପରିସ୍ଥିତି ପରେ ଭିନ୍ନ ଭିନ୍ନ ଜେଲରେ ବନ୍ଦୀ ଥିବା ନେତା ନେତ୍ରୀମାନେ ଖଲାସ ହେଲେ ।

ଯେ ଦେଶପାଇଁ ସଂଗ୍ରାମୀ ସୈନିକ ତାକୁ ବୟସ, ବାର୍ଦ୍ଧକ୍ୟ, ରୋଗ, ଅଭାବ, ଅସୁବିଧା ଜଣାପଡ଼େ ନାହିଁ । ସେ ସଂଗ୍ରାମରେ ଲିପ୍ତ ରହି ସବୁ ଭୁଲିଯାଏ । ନୂମାଠାରୁ ଜରୁରୀ ପରିସ୍ଥିତି ବେଳେ ମୁଁ ଏହି ଯେଉଁ ମହତ୍ତ୍ୱ ଶିକ୍ଷା ପାଇଛି ତାହା ଭୁଲିବାର ନୁହେଁ । ସେ ସ୍ମୃତି ଅମ୍ଳାନ୍ !

(ସୁବର୍ଣ୍ଣ ଜୟନ୍ତୀ ବିଶେଷାଙ୍କ ୧୯୯୬ ବାଜୀ ପତ୍ରିକାର ସୌଜନ୍ୟରୁ)

———

# ମା' ମାଳତୀଦେବୀ ଓ ବାନରସେନା

□ ପୁରୁଷୋତ୍ତମ ସିଂହ

ଭାରତରେ ଯେତେବେଳେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା, ମାଳତୀଦେବୀ, ଅନ୍ନପୂର୍ଣ୍ଣା ଚୌଧୁରୀ ଓ ଲୁଲୁବାବୁଙ୍କୁ ସାଙ୍ଗରେ ନେଇ ଆନ୍ଦୋଳନ ଚଳାଇବା ପାଇଁ ଚାନ୍ଦା ସଂଗ୍ରହ କରିବାକୁ ବାହାରି ପଡ଼ିଲେ । ନିଜେ ବାପଘରୁ ଆଣିଥିବା ସୁନା ଅଳଙ୍କାରଗୁଡ଼ିକୁ ସ୍ୱହସ୍ତରେ ଦାନ କରିଥିଲେ । ମା' ରମାଦେବୀଙ୍କ ସାଙ୍ଗରେ ଗାଁ ଗାଁ ବୁଲି ସଭା ସମିତି କରୁଥିଲେ । ତତ୍ପରେ ତାଙ୍କ ପ୍ରେରଣାରେ ପ୍ରେରିତ ହୋଇଥିବା ବ୍ୟକ୍ତିବିଶେଷଙ୍କୁ ପ୍ରଥମେ ନିଜର ବାସ-ଭବନରେ ରଖି, ସ୍ୱରାଜ ଆଶ୍ରମକୁ ପଠାଉଥିଲେ । ସେତେବେଳେ ମାଳତୀଦେବୀଙ୍କ ଆନ୍ଦୋଳନ ପ୍ରଚାର ଦେଖି ସରକାର ଚିନ୍ତିତ ହୋଇ ତାଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ।

୧୯୩୦ ମସିହାରେ ଯେତେବେଳେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା, ସେତେବେଳେ ସେ ପ୍ରଥମେ ନିଜ ବାସ-ଭବନରୁ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଦଳେ ସତ୍ୟାଗ୍ରହୀଙ୍କୁ ବାଲେଶ୍ୱର ଲୁଣ ମାରିବାକୁ ପଠାଇଥିଲେ । ନିଜେ ରମାଦେବୀଙ୍କ ସାଙ୍ଗରେ ଲବଣ ଆଇନ ଭାଙ୍ଗିବା ପାଇଁ ସମୁଦ୍ରକୂଳକୁ ବାହାରିଲେ । ରମାଦେବୀ ବାଲିଝୁଡ଼ା ବାଟେ "ଗୋଡ଼ା" ଗଲେ । ମାଳତୀଦେବୀ କୁଜଙ୍ଗ ବାଟେ ଚଟୁଆ ଗଲେ । ସାଙ୍ଗରେ ନବକୃଷ୍ଣ ଚୌଧୁରୀ ଯାଇଥିଲେ ।

ଆନ୍ଦୋଳନ ଯେତେବେଳେ ତୀବ୍ରତର ଆକାର ଧାରଣ କଲା, ଗୁପ୍ତ ଭାବରେ ଖବର ଯାଇ ସି. ଆଇଡ଼ି ବିଭାଗରେ ପହଞ୍ଚିଗଲା । ସେହି ସମୟରେ କଲେକ୍ଟର ଗୋରାସାହେବ ଥିଲେ, ଲବଣ ଆନ୍ଦୋଳନର ସଭାସମିତିକୁ ଭାଙ୍ଗିବା ପାଇଁ ବିରାଟ ଯୋଜନା କଲେ । "ରମାଦେବୀ ଓ ମାଳତୀ ଚୌଧୁରୀ ଯେଉଁଠାକୁ ଯାଉଛନ୍ତି, ସେଠାରେ କଠୋରତା ସହିତ ଦମନ କରି ଓ ସଭା ସମିତି କରାଇ ଦିଅନାହିଁ" ବୋଲି ସରକାରୀ ଆଦେଶ ପହଞ୍ଚିଗଲା ଓ ସରକାର ଜଣେ ଅତ୍ୟାଚାରୀ ମାଜିଷ୍ଟ୍ରେଟ୍‌ଙ୍କୁ ଏ କାମ କରିବା ପାଇଁ ପଠାଇଲେ । ଗୋଟିଏ ପ୍ଲାଟୁନ୍ ପୋଲିସ ଲାଠି, ବନ୍ଧୁକ ଓ ଲୁହବୁହା ଗ୍ୟାସ ସହ ରମାଦେବୀଙ୍କ ସଭାସ୍ଥଳ ବାଲିଝୁଡ଼ାକୁ ପଠାଗଲା । ସରକାର ଆଉ ଗୋଟିଏ ପ୍ଲାଟୁନ୍ ପୁଲିସ ଲାଠି ବନ୍ଧୁକ ସହ କୁଜଙ୍ଗର ଚଟୁଆକୁ ପଠାଇଲେ । ପୁଲିସ ଚଟୁଆରେ ପହଞ୍ଚିବା ପୂର୍ବରୁ ମା ମାଳତୀଦେବୀ ଲୁଣ ମରି ସାରି ଅନନ୍ତପୁର ସ୍କୁଲ ଆସିଥିଲେ । ସାଙ୍ଗରେ ନବକୃଷ୍ଣ ଚୌଧୁରୀ ଥାନ୍ତି । ଅନନ୍ତପୁର ହାଟରେ ସଭା ହେବ ।

ଅନନ୍ତପୁର ଥାଏ ବର୍ଦ୍ଧମାନ ରାଜାଙ୍କର ଇଲାକା, ରାଜାଙ୍କର ଜଣେ ମେନେଜର ରହି ଇଲାକା ଚଳାଉଥାଏ । ସେଠାରେ ରାଜାଙ୍କ ନାମରେ ବନବିହାରୀ ହାଇସ୍କୁଲ ନାମରେ ଗୋଟିଏ ସ୍କୁଲ ଥିଲା । ସ୍କୁଲ ଆଗରେ ପିକେଟିଂ କରିବାକୁ ମାଳତୀଦେବୀ ଓ ନବକୃଷ୍ଣ ଚୌଧୁରୀ ବାହାରି ପଡ଼ିଲେ । ସ୍କୁଲର ହେଡ଼ମାଷ୍ଟର ଜଣେ ଭଦ୍ର ଲୋକ ଥିଲେ । ସେ ସ୍କୁଲ ଫାଟକରେ ତାଲା ପକାଇ ଦେଲେ । କୌଣସି ପିଲା ଗେଟ୍ ବାହାରକୁ ଯିବ ନାହିଁ । ଯିଏ ଯିବ ତାକୁ ବେତ ପ୍ରହାର କରାଯିବ । ମାଳତୀଦେବୀଙ୍କ ସାଙ୍ଗରେ ବାଲେଶ୍ୱରର ମହେଶ ପ୍ରଧାନ, ଅସୁରେଶ୍ୱରର ଦୁର୍ଗାବାନନ୍ଦ ସାହୁ ଥାନ୍ତି । ସେ ପିକେଟିଂ ସାରି ସଭାକୁ ଆସିଲେ । ପୂର୍ବରୁ ରଜାଙ୍କ ପୁଲିସ ଓ ଜଣେ ଜମାଦାର ଆସି ହାଟରେ ରହିଥାଆନ୍ତି ।

ଆମେ କେତେଜଣ ପିଲା—ମୋ ସହିତ ହେଡ଼୍‌ମାଷ୍ଟରଙ୍କ ପୁତୁରା ଦେବେନ୍ଦ୍ର ବାନାର୍ଜି, ରାଧାଶ୍ୟାମ ପରିଜା, ଧୂଆଁ ସାହୁ ପ୍ରମୁଖ ମହାନ୍ତି ପ୍ରଭୃତି ସ୍କୁଲର ପଛପାଖେ ପାଚେରି ଡେଇଁ ଅନ୍ୟବାଟରେ ଆସି ହାଟସଭାରେ ପହଞ୍ଚିଲୁ । ସଭାରେ ବହୁତ ଲୋକ ଜମା ହୋଇଥାଆନ୍ତି । ମା' ମାଳତୀଦେବୀ ସଭା ଆରମ୍ଭରେ ଗୋଟିଏ ଗୀତ ବୋଲିଲେ—

"କେତେ କାଳ ଏ ଅନୀତି ସହିବା ଭାଇ
ଅନୀତିର ପ୍ରତିକାର କି କରିବ ନାହିଁ ।
ଲବଣ ସାଗର ଭରି ଦେଇଛି ବିଧାତା ପରା
ତାକୁ ମାରି ଖାଇବାର ଅମ ଦାବି କି ନାହିଁ ?"

ଦେଶରେ ବ୍ରିଟିଶ ସରକାରଙ୍କ ଅତ୍ୟାଚାର ବିଷୟରେ ବହୁ-କଥା ଉଦାହରଣ ଦେଇ ସେ ବୁଝାଇଲେ । ତାଙ୍କ ଆହ୍ୱାନରେ ଆମ୍ଭେ ପିଲାମାନେ ସତ୍ୟାଗ୍ରହୀ ତାଲିକାରେ

ନାମ ଲେଖାଇଲୁ । "ବାଲେଶ୍ୱର ମହେଶ ପ୍ରଧାନ ଅସୁରେଶ୍ୱର ହରିହରାନନ୍ଦ ସାଧୁ ଓ ମୁଁ ମାଳତୀଦେବୀଙ୍କ ସାଙ୍ଗରେ କଟକ ଆସି ପ୍ରଥମ ଦିନ ଗୋପବନ୍ଧୁ ଚୌଧୁରୀଙ୍କ ବାସଭବନରେ ରହିଲୁ । ପରଦିନ ସକାଳୁ ଆମକୁ ସାଙ୍ଗରେ ନେଇ ସ୍ୱରାଜ ଆଶ୍ରମରେ ଛାଡ଼ିଲେ । ଆଶ୍ରମରେ ନୀଳମଣି ପ୍ରଧାନ, ଅନ୍ଧାର ସତ୍ୟଦେବ ଦାସ, ବାଙ୍କୀର ଗୋଲଖ ଚନ୍ଦ୍ର ମହାରଣା ଥା'ନ୍ତି ।

ନସ୍ୟାସଡ଼କର କୃପାସିନ୍ଧୁ ମିଶ୍ର ଖଦଡ଼ ଷ୍ଟୋରରୁ ଖଣ୍ଡେ ପଢ଼ ଦେଲେ । ଖଦୀଭଣ୍ଡାରରୁ କୃପାସିନ୍ଧୁ ବାବୁ ଖଣ୍ଡିଏ ଖଦଡ଼ଲୁଗା ଦେଲେ । ଖଣ୍ଡିଏ ଗାମୁଛା ଖଣ୍ଡିଏ ଚଦର ଦେଲେ । ଖଣ୍ଡିଏ ଜାମା ମାପ ଶକୁ ଦରଜୀକୁ ଦେଲେ । ସେଠାରୁ ଆସି ସ୍ୱରାଜ ଆଶ୍ରମରେ ଥିବା ପୁରୁଣା ଲୁଗା ସବୁ ଫୋପାଡ଼ି ଦେଲେ ।

ମାଳତୀଦେବୀ, ରମାଦେବୀ, ବୃଲୁବାବୁ, ଚନ୍ଦ୍ର ଅପା ସବୁଦିନେ ଆଶ୍ରମକୁ ଆସନ୍ତି । ବାହାରୁ ସୂତା ଅସୁଲ କରି ସ୍ୱରାଜ ଆଶ୍ରମକୁ ଦିଅନ୍ତି ଓ ସନ୍ଧ୍ୟାବେଳକୁ ପ୍ରାର୍ଥନା ସଭାରେ ଯୋଗ ଦିଅନ୍ତି ।

ମାଳତୀଦେବୀଙ୍କ ସହ ଆମେ ବାନରସେନାମାନେ ଯେତେବେଳେ ବିଦେଶୀ ଲୁଗା ବିରୋଧରେ ପିକେଟିଂ, ମଦ ଦୋକାନ ପାଖରେ ପିକେଟିଂ କରିବାକୁ ଯାଉ, ମା'ଆଗରେ ଅଛି ଆମ୍ଭେମାନେ ପଛରେ ଥାଉ । ପିକେଟିଂର କାଇଦା ମାଳତୀଦେବୀ ଆମ୍ଭମାନଙ୍କୁ ଆଗରୁ ଶିଖେଇ ଥାନ୍ତି । ବାନର ସେନାମାନେ ପିକେଟିଂ କରି ଗିରଫ ହୁଅନ୍ତି । ପୁଲିସ ଗିରଫ ପିଲାମାନଙ୍କୁ ଥାନାକୁ ଆଣନ୍ତି । ରାତିରେ ଥାନାରେ ଆମ ଖାଇବା ପାଇଁ ମାଳତୀଦେବୀ ଆଶ୍ରମରେ ବନ୍ଦୋବସ୍ତ କରିଥାଆନ୍ତି ।

ଅତ୍ତେଦ ସାହେବଙ୍କ କୋର୍ଟରେ ହାଜର ହୋଇ ପନ୍ଦର ବେତ ଲେଖାଏ ପାହାରଦଣ୍ଡ ମିଳେ । ହାତ ଫାଟିଯାଇ ରକ୍ତ ବାହାରେ । ସେଠାରୁ ଆସି ରଜନୀବାବୁଙ୍କ ଡାକ୍ତର-ଖାନାରେ ରହୁ । ମା' ରମାଦେବୀ, ମା' ମାଳତୀଦେବୀ ଡାକ୍ତରଖାନା ଯାଇ ସେଠାରେ ବାନରସେନାଙ୍କ ସେବା କରନ୍ତି । ହାତ, ଘର୍ଣ୍ଣି, ଫୁଲିଯିବାରୁ ହାତ ମୁଠାକରି ହୁଏ ନାହିଁ । ପିଲାମାନଙ୍କୁ ଖୋଇଦିଅନ୍ତି । ଝାଡ଼ାଫେର ପାଣି ସାରିବା ପାଇଁ ହାତମୁଠା ହୋଇ ନ ପାରିବାରୁ ପାଣି ଆଣି ଶୌଚ କରିଦିଅନ୍ତି ।

ବାନରସେନାମାନେ ଗିରଫ ହୋଇ କଟକ ଜେଲକୁ ଗଲେ, ମାଳତୀଦେବୀ ମଧ୍ୟ ଗିରଫ ହୋଇ ଜେଲକୁ ଗଲେ । ନବକୃଷ୍ଣ ଚୌଧୁରୀ ମଧ୍ୟ ଗିରଫ ହୋଇ ଜେଲକୁ ଗଲେ । କଟକ ଜେଲରେ ମାଳତୀଦେବୀ ନଂ୧୬ ଓ୍ୱାର୍ଡ଼ରେ ଏକେଲା ଥା'ନ୍ତି । ନବବାବୁ ନଂ୧୪ ଓ୍ୱାର୍ଡ଼ରୁ ବଦଳି ହୋଇ ୧୫ ନମ୍ବରକୁ ଯାଇଥାଆନ୍ତି । ତାଙ୍କ ସଙ୍ଗରେ ବାନରସେନାମାନେ ମଧ୍ୟ ୧୫ ନମ୍ବର ଓ୍ୱାର୍ଡ଼କୁ ଗଲେ ।

ଜେଲର ସୁପରିଣ୍ଟେଣ୍ଡେଣ୍ଟ ପାଲିତ ସାହେବ ଥା'ନ୍ତି । ସୋମବାର ଦିନ ଜେଲ୍‌ର ସବୁଅଡ଼ ପରିଦର୍ଶନ କରନ୍ତି । ୧୬ନଂ ପରିଦର୍ଶନ କଲାବେଳେ ମାଳତୀଦେବୀଙ୍କୁ ଏକାକୀ ଥିବା ଦେଖିଲେ ଏବଂ ମାଳତୀଦେବୀଙ୍କୁ ପଚାରିଲେ ଆପଣଙ୍କର କ'ଣ ଅସୁବିଧା ହୋଇଛି । ମା' କହିଲେ ଏକୁଟିଆ ରହିବାକୁ କଷ୍ଟ ଲାଗୁଛି । ମୋର ପିଲାମାନଙ୍କୁ ଏଠାକୁ ପଠାଇଲେ ମୁଁ ସେମାନଙ୍କୁ ଦେଖି ଆନନ୍ଦ ଅନୁଭବ କରନ୍ତି ।

ସୁପରିଣ୍ଟେଣ୍ଡେଣ୍ଟ ଜେଲରଙ୍କୁ ଆଦେଶ ଦେଲେ । ପୁରୁଷୋତ୍ତମ ସିଂହ, ରାଧାଶ୍ୟାମ ପଣ୍ଡା, ସୁଧାଂଶୁ ମୈତ୍ର, ବଙ୍କିମ ବିହାରୀ ସିଂହ,ଦେବେନ୍ଦ୍ର ବାନାର୍ଜି,ସନାତନକୁ ସକାଳ ୭ଟାରୁ ସଂ ୧୦ଟା ଓ ଦିନ ୩ଟାରୁ ୫ଟା ପର୍ଯ୍ୟନ୍ତ ବାରନମ୍ବରକୁ ଆସିବାକୁ ଆଦେଶ ଦେଲେ । ମା' ଓ ପୁଅମାନେ ଆନନ୍ଦରେ ଜେଲଦଣ୍ଡର ଅବଧିକୁ କଟାଇଲୁ । ମା' ମାଳତୀ-ଦେବୀଙ୍କର ସମସ୍ତଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ଥିଲା । ସେ ସମସ୍ତଙ୍କୁ ଭଲ ପାଉଥିଲେ । ସେଥିପାଇଁ ବାନରସେନାମାନେ ନିଜର ବାପା, ମା' ଓ ଭାଇ, ଭଉଣୀମାନଙ୍କୁ ଭୁଲି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ମାଳତୀଦେବୀଙ୍କ ପ୍ରଭାବରେ ଦୁଷ୍ଟଲୋକ ମଧ୍ୟ ଭଲ ଲୋକ ହୋଇ ଯାଉଥିଲା ।

ବର୍ତ୍ତମାନ ଦେଶର ମା'ଭଉଣୀମାନଙ୍କୁ ମୁଁ ନିବେଦନ କରେ ଯେ, ସେମାନେ ମା' ମାଳତୀ ଚୌଧୁରୀଙ୍କୁ ଅନୁକରଣ କରି, ଦେଶ ଓ ଜନତାର ସେବା କରିବାକୁ ଆଗେଇ ଆସନ୍ତୁ ।

—— କଟକ

# ସ୍ମୃତିରୁ ଝିଅଟିଏ

□ ରମାକାନ୍ତ ମଣ୍ଡଳ

୧୯୯୧ ମସିହା । ଉତ୍କଳ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ଶେଷ ବର୍ଷର ଛାତ୍ର ଥାଏ ମୁଁ । ସେତେବେଳେ ବାଣୀବିହାରର ଛାତ୍ର ସଂସଦରେ ସାମାଜିକ ସେବା ସମ୍ପାଦକ ପଦରେ ଥାଏ । ବିଶ୍ୱବିଦ୍ୟାଳୟକୁ ମାଲତୀଦେବୀଙ୍କୁ ଅତିଥି ରୂପେ ନିମନ୍ତ୍ରଣ କରିବା ପାଇଁ, ତିନିଜଣ ବାରୁ ଯାଇଥିଲୁ ସୁଦୂର ଅନୁଗୋଳ ଠାରେ ଅବସ୍ଥିତ ବାଜିରାଉତ ଛାତ୍ରାବାସକୁ । ତାଙ୍କ ସହ ଆମମାନଙ୍କର ପ୍ରଥମ ଦେଖା-ହେଲା । ପ୍ରଥମ ଦେଖାରେ ସେ ପଚାରିଲେ ଘର କେଉଁଠାରେ ? କ'ଣ ପାଇଁ ଆସିଛ ? କ'ଣ କରୁଛ ? ଆଉ କେତେଗୁଡ଼ିଏ ପ୍ରଶ୍ନ ? ତାଙ୍କ ପ୍ରଶ୍ନର ଉତ୍ତର ଆମ୍ଭେ ଦେଉଥାଉ । ସେ ଯେତେବେଳେ ଜାଣିବାକୁ ପାଇଲେ ଆମ ଘର ସବୁ ଭଦ୍ରକରେ, ସେ ତତ୍‌କ୍ଷଣାତ୍ ଉଦ୍‌ବିଗ୍ନ ହୋଇ ଉଠିଲେ ଏବଂ ବହୁତ ଧିକ୍କାର କରି ଚାଲୁଥାନ୍ତି ନିଜକୁ ।

ସେତେବେଳେ ଭଦ୍ରକରେ ହିନ୍ଦୁ-ମୁସଲିମ୍ ଦଙ୍ଗାର ଅଗ୍ନି ଜଳୁଥାଏ । ମାଲତୀଦେବୀ ଏହି ଦଙ୍ଗା ବିଷୟରେ ଚିନ୍ତା କରି ଅଧୈର୍ଯ୍ୟ ହୋଇ ଉଠୁଥାନ୍ତି । ସରକାରଙ୍କର ନିଷ୍କ୍ରିୟତାକୁ ଭୀଷଣ ରାଗରେ ଗାଳି ଦେଉଥାନ୍ତି ଏବଂ କହୁଥାନ୍ତି ମୋର ଯଦି ଟିକିଏ ସ୍ୱାସ୍ଥ୍ୟର ଅବସ୍ଥା ଭଲ ଥାଆନ୍ତା, ମୁଁ ଭଦ୍ରକ ଯାଆନ୍ତି ଏବଂ ସେଠାରେ କିଛି ଦିନ ରହି ଉଭୟ ସଂପ୍ରଦାୟର ଲୋକମାନଙ୍କୁ ବୁଝାନ୍ତି, ଏହିପରି କେତେଗୁଡ଼ିଏ କଥା ।

ତାପରେ ଆମେ ବିଶ୍ରାମ ନେଲୁ ବାଜିରାଉତ ଅଡ଼ିଟୋରିୟମ ପ୍ରକୋଷ୍ଠ ମଧ୍ୟରେ । ବିଶ୍ରାମ ନେବା ସମୟରେ କେତୋଟି ଅଙ୍କାବଙ୍କା ଲେଖା ଶବ୍ଦ ଏକ କାଚ ଫଟୋ ମଧ୍ୟରେ ଦେଖିବାକୁ ପାଇଲୁ । ସେ ଲେଖାଗୁଡ଼ିକ ଏମିତି ଥାଏ, "ସାଥ୍ ମେ ଖାନା ନହିଁ କରେଙ୍ଗେ ହମ୍ ଅଲଗ୍ ।" ଏହି ଶବ୍ଦଗୁଡ଼ିକ ମନ ମଧ୍ୟରେ ଆନ୍ଦୋଳିତ ହେଉଥିଲା ଫେରି ଆସିବା ପରେ । କିପରି ସାଥିହୋଇ ରହିବା, ସାଥିହୋଇ ମିଶି କାମ କରିବା । ସେହିଦିନଠାରୁ ମୋର ମନ ମଧ୍ୟରେ ସାମାଜିକ କାମ କରିବାର ଜିଜ୍ଞାସା ଏବଂ ସର୍ବୋପରି ସର୍ବୋଦୟ (ଗାନ୍ଧୀଜୀଙ୍କ) ଆଦର୍ଶରେ ଅନୁପ୍ରାଣିତ ହୋଇ କାମ କରିବାର ପ୍ରତ୍ୟାଶା ବଢ଼ି ବଢ଼ି ଚାଲିଥାଏ । ସତରେ ଆଜି କହିବାକୁ ଗଲେ ମାଲତୀଦେବୀ ମୋର ଅଲକ୍ଷ୍ୟରେ ପଥପ୍ରଦର୍ଶକ ହୋଇ ଯାଇଛନ୍ତି ।

ମାଲତୀଦେବୀ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର କର୍ମମୟ ଜୀବନ ଏବଂ ଆଦର୍ଶ ଏକ ଅନୁଷ୍ଠାନ ହୋଇରହିଛି । ତାଙ୍କର କର୍ମମୟ ଜୀବନରେ ସେ ବିଭିନ୍ନ ଆନ୍ଦୋଳନ ସହ ଜଡ଼ିତ ଥିଲେ । ହରିଜନ ଆନ୍ଦୋଳନ ହେଉ ଅଥବା ନିଶା ବିରୋଧୀ ଆନ୍ଦୋଳନ ହେଉ, ପ୍ରଜାମଣ୍ଡଳ ଆନ୍ଦୋଳନ ହେଉ ଅଥବା ସ୍ୱାଧୀନତା ଆନ୍ଦୋଳନ ହେଉ, ସମାଜବାଦୀ ଆନ୍ଦୋଳନ ହେଉ ଅଥବା କଂଗ୍ରେସ ହଟାଓ ଆନ୍ଦୋଳନ ହେଉ, କୃଷି ଆନ୍ଦୋଳନ ହେଉ, ଯେକୌଣସି ମୁହୂର୍ତ୍ତରେ ଯେଉଁଠାରେ ଉପସ୍ଥିତ ଆବଶ୍ୟକ ସେଠାରେ ଯାଇ ପହଞ୍ଚିଛନ୍ତି ।

ଜୀବନରେ ସବୁବେଳେ ଧକ୍କା ଖାଇଛନ୍ତି । ନିଜର ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ, ଧନରତ୍ନ ସବୁକୁ ପରିହାର କରି ଆଗକୁ ଆଗକୁ ଚାଲିଛନ୍ତି । ଜୀବନ ସାରା ନିଜର ପତି ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କ ସହ ଗୋଟାଏ ରାସ୍ତାରେ ସହଗାମିନୀ ହୋଇଛନ୍ତି ଏବଂ ନିଜର ଆଦର୍ଶସ୍ଥାନୀୟ ଦୁଇ ମହାନ ନେତା ସ୍ୱର୍ଗତ ରବୀନ୍ଦ୍ରନାଥ ଠାକୁର ଏବଂ ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅବିଚଳିତ ଭାବରେ ଅଟଳ ରହିଛନ୍ତି । ଗାନ୍ଧୀଜୀଙ୍କ ପରି ସେ ମଧ୍ୟ ବିଶ୍ୱାସ କରୁଥିଲେ ଯେ ଭୀରୁର ଅହିଂସା ଅପେକ୍ଷା ବୀରର ହିଂସା ଅଧିକ ଗ୍ରହଣୀୟ ।

ମାଲତୀଦେବୀ ଦୁଇ ଦୁଇଟା ବଡ଼ ଅନୁଷ୍ଠାନକୁ ଚଳେଇବାରେ ସକ୍ଷମ ହୋଇପାରିଥିଲେ । ତାଙ୍କର ସତ୍‌ସାହସ, କର୍ତ୍ତବ୍ୟନିଷ୍ଠା ଏବଂ ଦୃଢ଼ତା ତାଙ୍କ ଜୀବନରେ ପରମବ୍ରତ ହୋଇଥିଲା, ଦୀର୍ଘ ୭୦ ବର୍ଷର କର୍ମମୟ ଜୀବନ-କାଳ ଭିତରେ ଏକ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶକୁ ଅନୁସରଣ କରି କାର୍ଯ୍ୟକରି ଆସିଥିବାରୁ ସେ ଜାତୀୟ ଇତିହାସରେ ଅମରହୋଇ ରହିବେ । ନୂମା ଓ ବାପିଙ୍କର କାର୍ଯ୍ୟପନ୍ଥାକୁ ଅନୁସରଣ କରି ଆଜିର ଯୁବ ସମାଜ ଆଗେଇ ଆସନ୍ତୁ ବୋଲି ମୋର ଆହ୍ୱାନ ।

———

ସମ୍ପାଦକ, ଉତ୍କଳ ସର୍ବୋଦୟ ମଣ୍ଡଳ

# ଆମର ପୂଜ୍ୟା ନୁମାଙ୍କ ସମ୍ପର୍କିତ କେତୋଟି ସ୍ମୃତି

□ କ୍ଷେତ୍ରମୋହନ ମହାନ୍ତ

୧୯୫୦-୫୧ ମସିହା । ସେଇ ବର୍ଷ ମୋର ଦ୍ୱିତୀୟ ବାର୍ଷିକ ମୌଳିକ ଟ୍ରେନିଂ ହେଉଥାଏ ଅନୁଗୁଳ ତାଲିମ ଭବନରେ । ପ୍ରଧାନ ଗୁରୁଜୀ ଥାଆନ୍ତି ସ୍ୱନାମଧନ୍ୟ ଶ୍ରୀଯୁକ୍ତ ଗୌରଚନ୍ଦ୍ର ପାଢ଼ୀ । ତତ୍ପୂର୍ବରୁ ଶିଳ୍ପ ଶିକ୍ଷା ବିଷୟରେ ଅଭିଜ୍ଞତା ଅର୍ଜନ କରିବାକୁ ସେ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ଫେରିଆସି ଥାଆନ୍ତି । ଅନୁଗୋଳର ଖଳାରି ଗ୍ରାମରେ ବାଜିରାଉତ ଛାତ୍ରାବାସ । ଏହି ଛାତ୍ରାବାସର ପ୍ରତିଷ୍ଠାତ୍ରୀ ଓ କର୍ତ୍ତ୍ରୀ ହେଉଛନ୍ତି ଆମର 'ନୁମା' ୰ ମାଳତୀ ଚୌଧୁରୀ । ସେଠି ସାରା ଓଡ଼ିଶାରୁ ଅବହେଳିତ ଆଦିବାସୀ ହରିଜନ ଶ୍ରେଣୀର ଶ୍ରେଷ୍ଠ ଶ୍ରେଷ୍ଠ ପୁଅ ଝିଅମାନେ ରହି ଖଳାରି ମୌଳିକ ସ୍କୁଲରେ ପଢ଼ନ୍ତି । ସେତେବେଳର ଓଡ଼ିଶା—ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏବଂ ତାଙ୍କର ଧର୍ମପତ୍ନୀ ମାଳତୀ ଚୌଧୁରୀଙ୍କ ସର୍ବକନିଷ୍ଠା ଅଲିଅଳି କନ୍ୟା ତନୁ ମଧ୍ୟ ସେଇ ମୌଳିକ ବିଦ୍ୟାଳୟରେ ପଢୁଥାଏ । ତନୁ ଏବେ ଶ୍ରୀମତୀ କୃଷ୍ଣା ମହାନ୍ତି ନାମରେ ସୁପରିଚିତା । ଆମେ ଅନୁଗୋଳ ତାଲିମ ଭବନର ଗୁରୁ ଛାତ୍ରମାନେ ସେଠାକୁ ଅଭ୍ୟାସ ଶିକ୍ଷାଦାନ ପାଇଁ ଯାଉଁ । ସେତେବେଳେ ତନୁର ବୁଦ୍ଧିମତା ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିଥାଏ । ଏଥିପାଇଁ ଆମେ ଯଥେଷ୍ଟ ଭାବରେ ପ୍ରସ୍ତୁତ ହୋଇ ଶିକ୍ଷାଦାନ କରିବାକୁ ଯାଇ ଥାଉଁ ।

ସେଇ ସମୟର ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଅନୁଗୁଳ ଟାଉନର ଅନତି ଦୂରରେ ରନ୍ତଲେଇ ଗ୍ରାମ ଅବସ୍ଥିତ । ସେଠି ନେପାଳୀ ବାବା ବାହାରି ହୁକୁମ ଔଷଧ ଦେଇ ଦେଇ ତାହା କ୍ରମଶଃ ବିରାଟ ଆକାର ଧାରଣ କଲା । ଏହାର ପ୍ରଚାର ପ୍ରସାର ଏତେ ହେଲା ଯେ ସାରା ଭାରତର ବିଭିନ୍ନ ପ୍ରାନ୍ତର ରୋଗୀମାନଙ୍କ ଧାଡ଼ି ଛୁଟିଲା । ଅନୁଗୁଳ ଲୋକାରଣ୍ୟ ହେଲା । ଆକାଶ ଧୂଳିରେ ଭରି ହୋଇଗଲା । ପରିବେଶ ସମ୍ପୂର୍ଣ୍ଣ ଦୂଷିତ ହୋଇପଡ଼ିଲା । ହଇଜା ଭଳି ସଂକ୍ରାମକ ରୋଗ ବ୍ୟାପିବାରେ ଲାଗିଲା । ଏଇ ସଙ୍କଟସମୟ ପ୍ରଳୟ କାଣ୍ଡକୁ ଦୃଢ଼ତାର ସହିତ ମୁକାବିଲା କରିଥିଲେ ସେଇ ମାଳତୀ ଚୌଧୁରୀ । ଆମର କଳା ଶିକ୍ଷକ (Art Teacher) ଜଗନ୍ନାଥ ସ୍ୱାଇଁଙ୍କୁ ସାଙ୍ଗରେ ନେଇ ମାଳତୀ-ଦେବୀ ରନ୍ତଲେଇ ଗଲେ । ସେଠି ତଥାକଥିତ ନେପାଳୀ-ବାବାକୁ ଶକ୍ତ ବୃପୁଢ଼ା ଦେଇ ଲୋକଙ୍କ କୁସଂସ୍କାର ଧାରଣା ଦୂର କଲେ । ଏହା ଫଳରେ ରନ୍ତଲେଇ ପ୍ରଳୟ କାଣ୍ଡର ପରିସମାପ୍ତି ଘଟିଥିଲା ।

ଦ୍ୱିତୀୟ ବାର୍ଷିକ ଟ୍ରେନିଂ ପରେ ମୌଳିକ ଶିକ୍ଷାର ବିଭିନ୍ନ ସ୍ତରରେ କାର୍ଯ୍ୟ କରି ୧୯୬୨-୬୩ ମସିହା ବେଳକୁ ପୁଣି ଅନୁଗୋଳର ଜୟସିଂହା ଉଚ୍ଚମୌଳିକ ସ୍କୁଲର ୨ୟ ଶିକ୍ଷକ ରୂପେ ମୋର ବଦଳି ହେଲା । ସେଠି ସପରିବାର ରହୁଥାଏ । ୧୯୬୪ ମସିହା ଡିସେମ୍ବର ପହିଲା ତାରିଖରେ ମୋର ତୃତୀୟ ପୁଅ ଶ୍ରୀମାନ୍ ଶାରଦା ପ୍ରସାଦ ଏବଂ ୧୯୬୮ ମସିହା ଜୁନ୍ ମାସରେ ବଲିସିଂହା ଉଚ୍ଚ ମୌଳିକ ସ୍କୁଲର ପ୍ରଧାନ ଶିକ୍ଷକ ଥିବା ସମୟରେ ଚତୁର୍ଥ ପୁଅ ଶ୍ରୀମାନ୍ ଈଶ୍ୱର ପ୍ରସାଦର ଜନ୍ମ ସେଇ ନୁମାଙ୍କ ପ୍ରତିଷ୍ଠିତ ଖଳାରି ମାତୃମଙ୍ଗଳ କେନ୍ଦ୍ରରେ ହୋଇଥିଲା । ବାଜିରାଉତ ଛାତ୍ରାବାସର ଗୋଟିଏ ପାର୍ଶ୍ୱରେ ମାତୃମଙ୍ଗଳ କେନ୍ଦ୍ର ଅବସ୍ଥିତ । ଅତି ସୁନ୍ଦର ଓ ସୁଶୃଙ୍ଖଳିତ ବ୍ୟବସ୍ଥା ମଧ୍ୟରେ ସମସ୍ତ କାର୍ଯ୍ୟ ସେଠି ସମାହିତ ହୁଏ । ଏଥିପାଇଁ ବାଜିରାଉତ ଛାତ୍ରାବାସ ପରିସର ମଧ୍ୟସ୍ଥିତ ଗୋଟିଏ ପ୍ରକୋଷ୍ଠରେ ଅଳ୍ପ କେତୋଟି ଦିନ ପରିବାର ସହ କଟାଇବା ସୁଯୋଗରେ ଆମେ ସେଇ ଉଦାରହୃଦୟା ନୁମାଙ୍କର ସାହଚର୍ଯ୍ୟ ଲାଭ କରିଥିଲୁ । ତାଙ୍କର କଠୋର ଶୃଙ୍ଖଳା ପୁଣି ଅନାବିଳ ସ୍ନେହ ଯେକୌଣସି ବ୍ୟକ୍ତିକୁ ପ୍ରଭାବିତ କରିବ । ଏହାହିଁ ଥିଲା ସେଇ ମହୀୟସୀ ବ୍ୟକ୍ତିଙ୍କ ପ୍ରତି ଗଭୀର କୃତଜ୍ଞତା ଏବଂ ଜୀବନର ଏକ ଅଭୁଲା ସ୍ମୃତି ।

ଅନୁଗୋଳ ଅଞ୍ଚଳର ବିଭିନ୍ନ ସ୍ଥାନରେ ଦୀର୍ଘ ସମୟ କାର୍ଯ୍ୟ କରିବା ଫଳରେ ସେଠିକାର ପରିବେଶ ଏବଂ ଜନ ସମ୍ପର୍କ ମୋତେ ଆକୃଷ୍ଟ କରିଥିଲା । ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ ବେଳକୁ ସେଠି ତାଲ୍‌ଚେର ନଗର ଗଢ଼ି ଉଠିଥିଲା । ଏଣୁ ୧୯୮୪ ମସିହାରେ ତାଲଚେର ନଗର-ଠାରେ ଏକ ପୁସ୍ତକ ଭଣ୍ଡାର ପ୍ରତିଷ୍ଠା ଉଦ୍ୟମ କରିଥିଲି । ସେହି ସମୟରେ ପୂଜ୍ୟ ବାପି ନବକୃଷ୍ଣ ଚୌଧୁରୀଙ୍କର ଦେହାନ୍ତ ହୋଇଥିଲା । ସେ ଦିନ ତାଙ୍କର ଶେଷ ଦର୍ଶନ ପାଇଁ ଯାଇ ବାଜିରାଉତ ଛାତ୍ରାବାସଠାରୁ ଶବ ଶୋଭା-ଯାତ୍ରାରେ ସହଯାତ୍ରୀ ହୋଇଥିଲି । ଏହାପରେ ତାଲ୍‌ଚେର ନଗର ଛାଡ଼ି ଫେରିଆସିଲି । ଏବେ ଯାଜପୁର ଓ ବାଙ୍ଗୀରିପୋଶିକୁ କେନ୍ଦ୍ର କରି ସତ୍ମାର୍ଗରେ ଜୀବିକା ଅର୍ଜନର ପନ୍ଥା ଗ୍ରହଣ କରିବା ସହିତ ବିଭିନ୍ନ ଲୋକସେବା କାର୍ଯ୍ୟରେ ନିବିଷ୍ଟ ରହି ଆନନ୍ଦ ଲାଭ କରିବାକୁ ଚେଷ୍ଟିତ ଅଛି । ଏହା ଫଳରେ ଆମ ନୂତନ ଯାଜପୁର ଜିଲ୍ଲାରେ ସର୍ବୋଦୟ ପ୍ରେମୀମାନଙ୍କୁ ନେଇ ଯାଜପୁର ଜିଲ୍ଲା ସର୍ବୋଦୟ ମଣ୍ଡଳ ୧୯୯୭ ମସିହା ଠାରୁ ଗଠିତ ହୋଇ କାର୍ଯ୍ୟ କରିଆସୁଛି ।

ଆଜୀବନ ସମାଜ-ସେବୀ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଏବଂ ନିଷ୍ଠାପର ସର୍ବୋଦୟ ନେତ୍ରୀ ନୂମା (ମାଲତୀ ଚୌଧୁରୀ)ଙ୍କର ଦେହାନ୍ତ ୧୯୯୮ ମସିହା ମାର୍ଚ୍ଚ ୧୫ ତାରିଖ ରବିବାର ସକାଳ ୧୦।୪୫ମି.ରେ ତାଙ୍କର କର୍ମକ୍ଷେତ୍ର ବାଜିରାଉତ ଛାତ୍ରାବାସଠାରେ ହୋଇଯିବା ଦେଶ ଓ ଜାତି ପାଇଁ ନିଶ୍ଚିତ ଭାବରେ ଏକ ଅପୂରଣୀୟ କ୍ଷତି । କିନ୍ତୁ ଏହା ତ ଅନିବାର୍ଯ୍ୟ ଥିଲା । ଏଣୁ ସମ୍ପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ତାଙ୍କର ଶବ ସତ୍କାର କରାଯାଇ ବାପିଙ୍କ ଶ୍ମଶାନପାର୍ଶ୍ୱରେ ତାଙ୍କୁ ନେଇ ସମାଧିସ୍ଥ କରାଗଲା ।

ତାଙ୍କର ଚିତାଭସ୍ମକୁ ଚଳିତ ବର୍ଷର ବାରୁଣୀ ସ୍ନାନ ଯୋଗରେ ପବିତ୍ର ବୈତରଣୀ ନଦୀ ଜଳରେ ଯାଜପୁର ସର୍ବୋଦୟ ମଣ୍ଡଳ ଦ୍ୱାରା ବିସର୍ଜନ କରି ସେହି ଅମର ଆତ୍ମାର ସଦ୍‌ଗତି କାମନାରେ ଆମ୍ଭେମାନେ ପ୍ରାର୍ଥନା କରିଥିଲୁ ।

ସମ୍ପାଦକ, ଜିଲ୍ଲା ସର୍ବୋଦୟ ମଣ୍ଡଳ
ଯାଜପୁର

———

"ପୋଷ୍ଟ୍ରୁ କରିବାର ଅଧିକାର ଆଦିବାସୀଙ୍କର ରହିଛି । ଏ ପାହାଡ଼, ପର୍ବତ, ଜଙ୍ଗଲ, ଜମି ଆଦିବାସୀଙ୍କର । ଶିକ୍ଷା ଅଭାବରୁ ଏମାନଙ୍କ ଉପରେ ସରକାରୀ କର୍ମଚାରୀ, ଷ୍ଟେଟ ଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ହାକିମି ଚଳେଇ ଏମାନଙ୍କୁ ଦବାଇବାରେ ଲାଗିଛନ୍ତି ।"

—ମାଳତୀଦେବୀ



୧. ପିତାମହ ବିହାରୀଲାଲ ଗୁପ୍ତ
କଟକରେ ୧୯୧୦ ଦଶନ୍ଧିରେ ଜିଲ୍ଲା ଜଜ୍‌ଭାବରେ ଅବସ୍ଥାପିତ ଥିଲେ ।



୨. ପିତା : କୁମୁଦନାଥ ସେନ୍



୪. ଶୈଶବ ବଡ଼ ଭଉଣୀ ସୁନୀତି ଓ ମଝିଆଁ ଭାଇ କୁଳ ପ୍ରସାଦଙ୍କ ସହ



୬. ମା'ଙ୍କର ୮୦ତମ ଜନ୍ମଦିନରେ
ବାମରୁ: ବଡ଼ଭାଇ ପ୍ରଦ୍ୟୋତ କୁମାର, ବଡ଼ଭଉଣୀସୁନୀତି, ମା,
ମଝିଆଁ ଭାଇ କୁଳ ପ୍ରସାଦ, ମାଳତୀ



୭. ବିବାହପରେ (୧୯୬୭)



୬. ୧୯୩୦ରେ ଇଂଚୁଡ଼ି ଠାରେ ଲବଣ ଆଇନ୍ ଭଙ୍ଗ
ବାମରୁ : ଚୂଲ୍ଲୀ ଲଗାଉଛନ୍ତି ରମାଦେବୀ, ପାଖରେ ବସିଛନ୍ତି ମାଳତୀଦେବୀ
ଦଣ୍ଡାୟମାନ କିରଣବାଳା ସେନ୍



୮. ମଝିଆଁ ଭାଇ କୁଳପ୍ରସାଦଙ୍କ ସହ



୧୧. ବଡ଼ ଝିଅ ଉତ୍ତରାଙ୍କ ସହ



୯. ମନମୋହନଙ୍କ ବିବାହ ଅବସରରେ

ବସିଛନ୍ତି ବାମରୁ : ରମାଦେବୀ, କୃଷ୍ଣା, ଗୋପବନ୍ଧୁ, ବିନାୟକ,

ପଛରେ ବାମରୁ : ମାଳତୀଦେବୀ, ଉତ୍ତରା, ମନମୋହନ, ସୁମିତ୍ରା, ନବବାବୁ

୧୩. ନାତିନାତୁଣୀଙ୍କ ସହ

ବାମରୁ: ଅଂଶୁମାନ, ଅନୁବ୍ରତ, ଅରଷ୍ଟୁ (ପଛରେ), ତଥାଗତ (ଆଗରେ),

ଋମରଶ୍ମିଅମିତାଭ କୋଳରେ କେଶ



୧୩. ସାନ୍ଟିଅ ବୃଷ୍ଣାଙ୍କ ସହ



୧୪. ନାରୀକର୍ମୀଙ୍କ ମେଳରେ



୧୫. ଲୋକନାୟକ ଜୟପ୍ରକାଶ ଓ ସହକର୍ମୀଙ୍କ ସହ



୧୬. ନାଗଭୂଷଣ ପଟ୍ଟନାୟକଙ୍କ ସହ

୧୨. ନବବାବୁ ଓ ମାଳତୀଦେବୀ ଆତ୍ମୀୟ ଓ କମ୍ୟୁନିଷ୍ଟ ନେତା ଗୌତମ ଚଟ୍ଟୋପାଧ୍ୟାୟଙ୍କ ସହ



୧୦. ନବବାବୁଙ୍କର ପରିବାର

ବାମରୁ : ବସିଛନ୍ତି- ନାରାୟଣ ଦେସାଇ, ଉତ୍ତରା, ନବବାବୁ, ମାଳତୀଦେବୀ, କୃଷ୍ଣା

ବିଭୂତି ଭୂଷଣ ମହାନ୍ତି :

ପଛରେ କସ୍ତୁରୀ, ନଚିକେତା, ସୁରେନ୍ଦ୍ର, ସଂଘମିତ୍ରା, କଳ୍ପନା

ତଳେ ବସିଛନ୍ତି : ଅପ୍ଲାତୁନ୍, ଅସୀମ ।



୧୮. କାମାକ୍ଷାନଗର ଅଧିବେଶନରେ ସମ୍ମିଳିତ
ଉତ୍କଳ ନବଜୀବନ ମଣ୍ଡଳୀର କର୍ମୀଭାଇ ଭଉଣୀଙ୍କ ସହ

ବାମରୁ : ଆଗଧାଡ଼ି- ବିନାୟକ ପାଢ଼ୀ, ପ୍ରହ୍ଲାଦକୁମାର ସିଂହ, ମାଳତୀଦେବୀ,
ଅନିଲ କୁମାର ଘୋଷ, କିରଣଲେଖା ମହାନ୍ତି, ଜୟକୃଷ୍ଣ ମହାନ୍ତି,
ସର୍ବେଶ୍ୱର ନାୟକ, ଲୋକନାଥ ମଲ୍ଲିକ

ପଛଧାଡ଼ି : ବି. ଗୌରୀଆମ୍ମା, ସୈରିନ୍ଧ୍ରୀ ସାହୁ, ମନମୋହନ ଚୌଧୁରୀ, ନିଶାକର ଦାସ,
ସୁଶୀଳାଦେବୀ, ମହମ୍ମଦ ବାଜୀ, ଜୟ ଭାଇ, ସରସ୍ୱତୀ ଦେବୀ,
ଧୋବେନ୍ଦ୍ରୀ ମହାପାତ୍ର, ମମତା ପାତ୍ର, ଗୋଲକ ଚରଣ ପାତ୍ର



୧୯. ଖଲାରୀ ଗ୍ରାମର ବାଲୱାଡ଼ିର ପିଲାମାନଙ୍କ ସହ



୨୦. ଜଣେ ବିଦେଶିନୀ ବନ୍ଧୁଙ୍କ ସହ
ନବବାବୁ ଓ ମାଳତୀ ଦେବୀ



୨୧. ନବବାବୁ ଓ ମାଳତୀଦେବୀ : ବିଶ୍ରାନ୍ତିର ମୁହୂର୍ତ୍ତ



୨୨. ଅବସର ବିନୋଦନ

ବାମରୁ : ନବବାବୁ, କୃଷ୍ଣା, ମାଳତୀଦେବୀ, ପ୍ରଫୁଲ୍ଲ ସେନାପତି



୨୩. ଯାତ୍ରାପଥେ



୨୪. ବାବାଜୀଭାଇ

ସେ ଥିଲେ ବାଜୀ ରାଉତ ଛାତ୍ରାବାସର ପ୍ରାଣକେନ୍ଦ୍ର

## ଚିତ୍ରାବଳୀ ନିମନ୍ତେ କୃତଜ୍ଞତା ସ୍ୱୀକାର

ଚିତ୍ର ୧ ଓ ୨ ଶ୍ରୀ ଜୟାସେନଗୁପ୍ତଙ୍କ ସୌଜନ୍ୟରୁ

ଚିତ୍ର ୩, ୪, ୫, ୬, ୯, ୧୦, ୧୫, ୧୬, ୧୮, ୨୦, ୨୧, ୨୨, ୨୩
ଶ୍ରୀ କୃଷ୍ଣା ମହାନ୍ତିଙ୍କ ସୌଜନ୍ୟରୁ

ଚିତ୍ର ୭ ଆଲୋକଚିତ୍ର ଗ୍ରହୀତା ଶ୍ରୀ ମନମୋହନ ଚୌଧୁରୀଙ୍କ ସୌଜନ୍ୟରୁ

ଚିତ୍ର ୧୧, ୧୨, ୧୩, ୧୪, ୧୭, ୧୯, ୨୪, ୨୫
ଆଲୋକଚିତ୍ର ଗ୍ରହୀତା ଶ୍ରୀ ବିଭୂତିଭୂଷଣ ମହାନ୍ତିଙ୍କ ସୌଜନ୍ୟରୁ

୧୫୬ ପୃଷ୍ଠାରେ ଚିତ୍ରର ଆଲୋକ ଚିତ୍ର ଗ୍ରହିତା ଅସୀମ ମହାନ୍ତି

# ମାନବିକ ଅଧିକାରର ଅତନ୍ଦ୍ରପ୍ରହରୀ

□ ରବୀନ୍ଦ୍ରନାଥ ସାହୁ

"ମୋର ମକଦ୍ଦମା ଛଅମାସକାଳ ଚାଲିଥିଲା ଏବଂ ଜେଲରୁ ଯେଉଁ ପୋଲିସମାନେ ମୋତେ କୋର୍ଟକୁ ନେବା-ଆଣିବା କରୁଥିଲେ ସେମାନଙ୍କ ବ୍ୟବହାର ଖୁବ୍ ଦୁଃଖଦାୟକ ଥିଲା । ଛଅ ଜଣ ବନ୍ଧୁକଧାରୀ ମୋତେ ବରାବର ଘେରି ରହୁଥିଲେ ଏବଂ ତାଙ୍କ ଭିତରେ ଯେଉଁ ଜଣକ ମୁଖ୍ୟ ଥିଲେ ସେ ବରାବର ମୋତେ କହୁଥାନ୍ତି—ଆପଣ କାହା ସହିତ କଥା କହିପାରିବେ ନାହିଁ । ମୁଁ ସେମାନଙ୍କୁ କହେ—ମୁହଁଟା ତ ମୋର, ମୁଁ କଥା କହିଲେ ଆପଣମାନେ କଅଣ କରିବେ ? ଗୁଳି (ଗୁଲି) କରି ଦେବେ ନଚେତ୍ ମୁହଁକୁ ବାନ୍ଧି ଦେବେ, ଏହା ତ ? ..."

ଜରୁରୀ ପରିସ୍ଥିତି ସମୟରେ ସଦ୍ୟ ଜେଲରୁ ମୁକୁଳି ମାଳତୀଦେବୀ ଜୟପ୍ରକାଶଙ୍କୁ ଏକ ଚିଠି ଲେଖିଥିଲେ । ଉପରୋକ୍ତ ଉଦ୍ଧୃତ ତା ୩-୭-୭୬ରେ ଲିଖିତ ସେହି ଚିଠିର କିୟଦଂଶ । ଭାରତର ସ୍ୱାଧୀନତା ଆନ୍ଦୋଳନ ପଛରେ ଥିବା ତତ୍ତ୍ୱର କି ସହଜ ସରଳ ଅଥଚ ଅପୂର୍ବ ଓ ବ୍ୟଞ୍ଜନା-ଯୁକ୍ତ ତର୍କ—ଯେହେତୁ ମୁହଁଟା ମୋ ନିଜର, ସେଥିରୁ ବାହାରୁଥିବା କଥା ଉପରେ ନିୟନ୍ତ୍ରଣ ଜାରି କରିବାର ଅଧିକାର କେବଳ ମୋ ନିଜର ।

ତେବେ କେବଳ ମୁହଁଟା ନିଜର ହୋଇଥିଲେ କଣ କିଏ କେବେ ଏତେ ବେକ୍‌ଠୋକ୍, ଏତେ ନିର୍ଭୀକ ଭାବେ ନିଜ ଅଧିକାର ସାବ୍ୟସ୍ତ କରିପାରେ ? ଯାହାର ମୁଣ୍ଡ ଏବଂ ହୃଦୟ ମଧ୍ୟ ସମ୍ପୂର୍ଣ୍ଣ ନିଜସ୍ୱ, କେବଳ ସେହି ବ୍ୟକ୍ତିର ମୁହଁ ହିଁ ଏପରି ବାକ୍-ସ୍ୱାଧୀନତା ଦାବି କରିପାରେ । ମାଳତୀଦେବୀ ସେହିପରି ଜଣେ ସ୍ୱାଧୀନଚେତା, ମୁକ୍ତହୃଦୟ ବିପ୍ଳବୀ । ପରିବାରଠାରୁ ସମାଜ ପର୍ଯ୍ୟନ୍ତ କୌଣସି କ୍ଷେତ୍ରରେ କସ୍ମିନ୍-କାଳେ ସେ ନିଜର ମୁଣ୍ଡ ଅଥବା ହୃଦୟ ବନ୍ଧା ପକାଇ ନାହାନ୍ତି । ଏବଂ ଏଇଥିପାଇଁ ଯେତେବେଳେ ଶାସକ ଓ ନିଷ୍ପେଷକ ଶ୍ରେଣୀ ଜନସାଧାରଣଙ୍କ ମୁଣ୍ଡ ଏବଂ ହୃଦୟକୁ ନିଜ ପାଖେ ବନ୍ଧା ରଖିବାକୁ ଚେଷ୍ଟା କରନ୍ତି ଅଥବା ଜନତା ମୁହଁରେ ତାଲା ପକାଇବାକୁ ଚେଷ୍ଟା କରନ୍ତି, ଚିର ମୁକ୍ତ, ଚିରବିଦ୍ରୋହୀ ମାଳତୀଦେବୀ ଧର୍ମଯୁଦ୍ଧର ଡାକରା ଦେଇଛନ୍ତି ।

କେତେବେଳେ ସେ ଏ ଯୁଦ୍ଧ ଲଢ଼ିଛନ୍ତି ଏକକ ଭାବେ, କେତେବେଳେ ଅବା ସଙ୍ଗଠନ ମାଧ୍ୟମରେ । ୧୯୩୯ରେ ରଣପୁରରେ ଅତ୍ୟାଚାରୀ ବେଜେଲ୍‌ଗେଟ୍‌କୁ ଜନସାଧାରଣ ହତ୍ୟା କଲେ । ବିଚାର ପରେ ଯେଉଁମାନଙ୍କୁ ସଜା ମିଳିଲା ମାଳତୀଦେବୀ ସେମାନଙ୍କୁ ମୁକୁଳାଇବା ପାଇଁ ଏକକ ଭାବେ ତତ୍କାଳୀନ ଗଭର୍ଣ୍ଣରଙ୍କୁ ବ୍ୟକ୍ତିଗତ ଚିଠି ଓ ସରକାରଙ୍କୁ ଖୋଲା ଚିଠି ଲେଖିଛନ୍ତି । ସରକାରଙ୍କୁ ଖୋଲାଚିଠି ଲେଖିଲେ ଫଳ ଓଲଟା ହେବ ବୋଲି ଗଭର୍ଣ୍ଣର ତାଙ୍କୁ ପରୋକ୍ଷଭାବେ ଧମକାଇଛନ୍ତି ଏବଂ ସୁଫଳ ପାଇଁ ବରଂ ରଣପୁର ରଜାଙ୍କୁ ନିବେଦନ କରିବାକୁ ପରାମର୍ଶ ଦେଇଛନ୍ତି । ଏହାପରେ ମାଳତୀଦେବୀ ମହାତ୍ମାଗାନ୍ଧୀଙ୍କୁ ଏଥିରେ ହସ୍ତକ୍ଷେପ କରିବା ନିମିତ୍ତ ଲେଖିଛନ୍ତି । ଯେତେବେଳେ ମହାତ୍ମାଜୀ ପୂର୍ବବଙ୍ଗ ନୂଆଖାଲିର ଦଙ୍ଗା ବିଧ୍ୱସ୍ତ ଅଞ୍ଚଳରେ ପଦଯାତ୍ରା କରୁଥିଲେ, ତାଙ୍କ ସହ ବୁଲୁଥିବା ଠକ୍କର-ବାପାଙ୍କୁ ମାଳତୀଦେବୀ ଏହି ମର୍ମରେ ଏକ ପତ୍ର ଲେଖିଥିଲେ ।

ପରାଧୀନ ଓଡ଼ିଶାରେ ଏମିତି ଏକ ସ୍ୱତଃସ୍ଫୂର୍ତ୍ତ ହିଂସା ଘଟାଇଥିବା ବୀରମାନଙ୍କ ପାଇଁ ଯେପରି ଲଢ଼ିଛନ୍ତି ଅହିଂସା-ବାଦୀ ମାଳତୀଦେବୀ, ସେହିପରି ସ୍ୱାଧୀନ ଭାରତରେ ସଂଗଠିତ ହିଂସାର ଆଶ୍ରୟ ନେଇଥିବା ନକ୍ସଲପନ୍ଥୀଙ୍କ ପାଇଁ ମଧ୍ୟ ଲଢ଼ିଛନ୍ତି ଅହିଂସାବାଦୀ ମାଳତୀଦେବୀ । ସ୍ୱର୍ଗତ ଗାନ୍ଧୀବାଦୀ ଚିନ୍ତାନାୟକ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଅବଶ୍ୟ ଗାନ୍ଧୀବାଦ ଓ ମାର୍କସବାଦ, ବିଶେଷ କରି ଗାନ୍ଧୀବାଦ ଓ ମାଓବାଦ ପରସ୍ପରର ପରିପୂରକ ବୋଲି ଭାବୁଥିଲେ । ମାତ୍ର ଆଦର୍ଶ ଦୃଷ୍ଟିରୁ ମାଳତୀଦେବୀ ଥିଲେ ଜଣେ ଶୁଦ୍ଧ ଗାନ୍ଧୀବାଦୀ । ସାମ୍ୟ ସମତାର ସମାଜ ପ୍ରତିଷ୍ଠା ପାଇଁ ହିଂସାର ଆଶ୍ରୟ ନେଉଥିବା ସମାଜସେବୀମାନଙ୍କୁ ସେ ସମ୍ମାନ କରୁଥିଲେ । ଗାନ୍ଧୀଙ୍କ ପରି ସେ ମଧ୍ୟ ବିଶ୍ୱାସ କରୁଥିଲେ ଯେ ଭୀରୁର ଅହିଂସା ଅପେକ୍ଷା ବୀରର ହିଂସା ଅଧିକ ଗ୍ରହଣୀୟ । ଏଇଥିପାଇଁ ବେଜେଲ୍‌ଗେଟ୍‌ର ହତ୍ୟାକାରୀ ପ୍ରଜାମଣ୍ଡଳ କର୍ମୀ-ମାନଙ୍କ ପାଇଁ ଯେପରି ସେ ସ୍ୱର ଉତ୍ତୋଳନ କରିଛନ୍ତି,

ଯେଉଁପରି ସାହୁକାର ଶୀନବନ୍ଧୁ ଚୌଧୁରୀର ହତ୍ୟାକାରୀ ନକ୍ସଲପନ୍ଥୀମାନଙ୍କୁ ମଧ୍ୟ ଅକୁଣ୍ଠ ସାହାଯ୍ୟ ପ୍ରଦାନ କରିଛନ୍ତି । ମାତ୍ର ପରାଧୀନ ଭାରତରେ ମାଳତୀଦେବୀଙ୍କର ଏତାଦୃଶ କାର୍ଯ୍ୟ ଥିଲା କୁଆଡ଼େ ଦେଶାତ୍ମବୋଧ ଓ ପରିପକ୍ୱ ରାଜନୀତିବୋଧର ପରିଚାୟକ, ମାତ୍ର ସ୍ୱାଧୀନ ଭାରତରେ ନକ୍ସଲପନ୍ଥୀଙ୍କ ସ୍ୱାଧିକାର ପାଇଁ ତାଙ୍କର ଲଢ଼ିବାଟା ଥିଲା ତାଙ୍କର "ହିଂସାରେ ପ୍ରଚ୍ଛନ୍ନ ବିଶ୍ୱାସ" ଅଥବା "ମତି ଭ୍ରମ, ରାଜନୈତିକ ଅପରିପକ୍ୱତା ଏବଂ ରାଜନୈତିକ ହତାଶାର ପରିସ୍ଫୁରଣ !"

୧୯୬୭ ମସିହାରେ ପଶ୍ଚିମବଙ୍ଗର ନକ୍ସଲବାଡ଼ିଠାରେ ମାଓପନ୍ଥୀ ( ପରେ CPI-ML ଦଳ ରୂପେ ପରିଚିତ )-ମାନଙ୍କ ନେତୃତ୍ୱରେ ନିଷ୍ପେଷିତ ଭୂମିହୀନ କୃଷି ମଜୁରିଆ ଏକ ସଶସ୍ତ୍ର ବିପ୍ଳବର ସୂତ୍ରପାତ କଲେ । ବନାଗ୍ନି ପରି ଅନତି ବିଳମ୍ବେ ଏହା ଭାରତସାରା ବ୍ୟାପିଗଲା । ବିଶେଷକରି ବଙ୍ଗ, ଓଡ଼ିଶା ଏବଂ ଅନ୍ଧ୍ରରେ ଏହା ଦଳିତ ନିଷ୍ପେଷିତ ଆଦିବାସୀ-ମାନଙ୍କ ମଧ୍ୟରେ ଖୁବ୍ ଶୀଘ୍ର ଏକ ଉନ୍ମାଦ ଅବସ୍ଥା ସୃଷ୍ଟି କଲା । ଏହି ସଶସ୍ତ୍ର ବିପ୍ଳବକୁ ଦମନ କରିବାକୁ ଯାଇ ନକ୍ସଲପନ୍ଥୀ ବୋଲି ସନ୍ଦେହ କରାଯାଉଥିବା ବହୁ ଉଚ୍ଚ ଶିକ୍ଷିତ ଯୁବକଯୁବତୀଙ୍କୁ ହାତଗୋଡ଼ ବାନ୍ଧି ବନ୍ଦୀ ଅବସ୍ଥାରେ ରାସ୍ତା କଡ଼ରେ ଅଥବା ବଣ ଜଙ୍ଗଲରେ ଗୁଳି କରି ହତ୍ୟା କରାଗଲା । କେବଳ ସେତିକି ନୁହେଁ, ସେମାନଙ୍କୁ ସାହାଯ୍ୟ କରୁଥିବା ଅଳି ଦେଖାଇ ଗଞ୍ଜାମ, କୋରାପୁଟ, ମୟୂରଭଞ୍ଜର ଆଦିବାସୀ ଗ୍ରାମମାନଙ୍କରେ ପୋଲିସ ଓ ମିଲିଟାରୀ ବ୍ୟାପକ ଲୁଟତରାଜ, ପାଶବିକ ଅତ୍ୟାଚାର ତଥା ଆଖିବୁଜା ଲାଠି ଓ ଗୁଳିର ବର୍ଗୀ ଶାସନ ଚଳାଇଲେ ।

ନବବାବୁ, ମାଳତୀଦେବୀଙ୍କର ଦରଦୀ ପ୍ରାଣକୁ ଏ ପ୍ରକାର ଯଥେଚ୍ଛାଚାର ଗଭୀର ଭାବେ ଆନ୍ଦୋଳିତ କଲା । ସେମାନଙ୍କୁ ଆହୁରି ଅଧିକ ଆନ୍ଦୋଳିତ କଲା ବିଭିନ୍ନ ବାମପନ୍ଥୀ ଦଳମାନଙ୍କର ପ୍ରତିକ୍ରିୟା । ନକ୍ସଲପନ୍ଥୀମାନଙ୍କୁ ଅଗଣ-ତାନ୍ତ୍ରିକ, ଚରମପନ୍ଥୀ ଇତ୍ୟାଦି ଆଖ୍ୟା ଦେଇ ସେମାନେ ନିଜକୁ ଶୁଦ୍ଧ ଗଣତନ୍ତ୍ରବାଦୀ, ଶୁଦ୍ଧ ସାମ୍ୟବାଦୀ ଇତ୍ୟାଦି କହି ଗର୍ବ କରୁଥିଲେ ଏବଂ ସରକାରଙ୍କର ସମ୍ପୂର୍ଣ୍ଣ ଅଗଣତାନ୍ତ୍ରିକ, ଚରମପନ୍ଥୀ କାର୍ଯ୍ୟକଳାପକୁ ସେମାନେ ଆଖି ବୁଜି ଦେଇଥିଲେ । ନାଗରିକ ସ୍ୱାଧିକାର ସୁରକ୍ଷା ଦୃଷ୍ଟିକୋଣରୁ ଏ ପ୍ରକାର ଯଥେଚ୍ଛାଚାରର ସୁଦୂରପ୍ରସାରୀ ପରିଣତି କଣ ହୋଇପାରେ ତାହା ବିଚାର ନକରି "ଉଚିତ୍ ଶିକ୍ଷା" "ଯେସାକୁ ତେସା", ଇତ୍ୟାଦି ଉଲ୍ଲସିତ ମନ୍ତବ୍ୟ ମାଧ୍ୟମରେ ପରିସ୍ଥିତିର ଗୁରୁତ୍ୱକୁ ସେମାନେ ଅତି ଅନୁଦାର ଭାବେ ଲଘୁ କରି ଦେଇଥିଲେ । ନବବାବୁ ମାଳତୀଦେବୀ ଏ ପରିଣତ ବୟସରେ ଆଉ ଏକ ନୂତନ ସଂଗଠନର ଦାୟିତ୍ୱ ନେବା ପାଇଁ ପ୍ରସ୍ତୁତ ନଥିଲେ । ମାତ୍ର ସରକାରଙ୍କର କ୍ରମବର୍ଦ୍ଧମାନ ଉଲଙ୍ଗ ସ୍ୱୈରାଚାର ଓ ପ୍ରଗତିଶୀଳ ଦଳମାନଙ୍କର ସେଥିପ୍ରତି ଥିବା ପରୋକ୍ଷ ସମର୍ଥନ ନବବାବୁ ଓ ମାଳତୀଦେବୀଙ୍କୁ ଅତ୍ୟନ୍ତ ବିବ୍ରତ କରିଦେଲା । ଏହି ସରକାରୀ ସ୍ୱୈରାଚାର ବିରୋଧରେ ସେ ସମୟରେ ଯଦିଓ ବଙ୍ଗଳାର ମୁଷ୍ଟିମେୟ ବୁଦ୍ଧିଜୀବୀ କ୍ଷୀଣ ପ୍ରତିବାଦର ସ୍ୱର ଉଠାଇଥିଲେ, ନବବାବୁ ଓ ମାଳତୀଦେବୀ ହିଁ ଭାରତର ପ୍ରଥମ ମାନ୍ୟଗଣ୍ୟ ବ୍ୟକ୍ତି ଯିଏ ସ୍ୱାଧିକାରର ପ୍ରଶ୍ନ କରି ଏହାକୁ ଏକ ଆନ୍ଦୋଳନର ସ୍ତରରେ ନେଇ ଠିଆକରିଥିଲେ । ପ୍ରଥମ ପର୍ଯ୍ୟାୟରେ ସେ ଦୁହେଁ ବିଭିନ୍ନ ସ୍ଥାନ ବୁଲି ସଭା ସମିତି କଲେ । ଓଡ଼ିଶା ତଥା ଓଡ଼ିଶା ବାହାରର ଖବରକାଗଜ, ପତ୍ର ପତ୍ରିକାରେ ଏ ସମ୍ପର୍କରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କଲେ । ପରାଧୀନ ଭାରତର ପୋଲିସ ଓ ପରାଧୀନ ଭାରତର ଶାସନ କିପରି ସ୍ୱାଧୀନ ଭାରତର ପୋଲିସ ତଥା ସରକାର ଅପେକ୍ଷା ଅଧିକ ନ୍ୟାୟବନ୍ତ, ଉଦାର ଓ ଭଦ୍ର ଥିଲା ତାହାର ଭୂରି ଭୂରି ପ୍ରମାଣ ମାଳତୀଦେବୀ ଦେଉଥିଲେ ଏବଂ ଦେଶରେ ନ୍ୟାୟର ଶାସନ ନ ହେଲେ ବି ଅନ୍ତତଃ ଆଇନର ଶାସନ ଚାଲୁ ବୋଲି ସେ ଦାବି କରୁଥିଲେ । ନବବାବୁ ଆଉ ପାଦେ ଆଗେଇ ଯାଇଥିଲେ । ଇଂରେଜ ସରକାର ଯେତେବେଳେ ଭାରତୀୟମାନଙ୍କୁ ନିରସ୍ତ୍ର କରିବାପାଇଁ Arms Act (ଅସ୍ତ୍ର ଆଇନ) ର ପ୍ରବର୍ତ୍ତନ କଲେ ଗାନ୍ଧୀଜୀ ଏହାର ଦୃଢ଼ ପ୍ରତିବାଦ କରି କହିଥିଲେ ଯେ—ଏହାଦ୍ୱାରା ଇଂରେଜ ଭାରତୀୟଙ୍କୁ ଅଣପୁରୁଷିଆ (femasculate) କରିଦେଲା । ନବବାବୁ ଗାନ୍ଧୀଜୀଙ୍କର ଏହି ଉକ୍ତିକୁ ଉଦ୍ଧାର କରି ପୋଲିସ ମିଲିଟାରୀର ଯଥେଚ୍ଛା ଶାସନକୁ ମୁକାବିଲା କରିବା ଉଦ୍ଦେଶ୍ୟରେ ଲୋକଙ୍କୁ ଅସ୍ତ୍ରଶସ୍ତ୍ର ରଖିପାରିବାର ଅଧିକାର ପୁନଶ୍ଚ ଦିଆଯାଉ ବୋଲି ଦାବି କରିଥିଲେ । ଭାରତର ଜଣେ ଜଣାଶୁଣା ଗାନ୍ଧୀବାଦୀ ଏବଂ ଜଣେ ପୂର୍ବତନ କଂଗ୍ରେସୀ ମୁଖ୍ୟମନ୍ତ୍ରୀଙ୍କର ଏତାଦୃଶ ଦାବି ସେତେବେଳେ ସମଗ୍ର ଭାରତରେ ହୁଲସ୍ଥୂଲ ପକାଇ ଦେଇଥିଲା । ଓଡ଼ିଶା ସରକାର ସେମାନଙ୍କ ବିରୋଧରେ ଶ୍ୱେତପତ୍ର ମଧ୍ୟ ପ୍ରକାଶ କରିଥିଲେ । ସେମାନଙ୍କ ପରିଚାଳିତ ଆଦିବାସୀ-ହରିଜନ

ସେବା ସଂସ୍ଥା ନବଜୀବନମଣ୍ଡଳ ଓ ତାର ବିଭିନ୍ନ ସାଥି ଅନୁଷ୍ଠାନମାନଙ୍କର ଗ୍ରାଣ୍ଟ ମଧ୍ୟ ବନ୍ଦ କରି ଦେଇଥିଲେ । ଏ କୌଣସିଥିରେ ବିଚଳିତ ନ ହୋଇ ଲୋକଙ୍କର ସ୍ୱାଧିକାର ପାଇଁ ବ୍ୟବସ୍ଥିତ ଉପାୟରେ ଲଢ଼ିବାକୁ ମନସ୍ଥ କଲେ ନବବାବୁ, ମାଲତୀଦେବୀ । ପୂଜ୍ୟ ନବବାବୁଙ୍କ ଆହ୍ୱାନରେ ଗଢ଼ାଗଲା "ଓଡ଼ିଶା ନାଗରିକ ସ୍ୱାଧିକାର ସୁରକ୍ଷା ସମିତି ।" ଏଥିରେ ଶ୍ରୀଯୁକ୍ତା ମାଲତୀଦେବୀ ସଭାନେତ୍ରୀ ରହିଲେ ଏବଂ ଆଡ଼ଭୋକେଟ୍ ଶ୍ରୀ ଶ୍ରୀନିବାସ ମିଶ୍ର (ଜ) ସାଧାରଣ ସମ୍ପାଦକ ରହିଲେ । ଜବ ରବ ସିଂ, ବିଜୟ ଉପାଧ୍ୟାୟ ଓ ରବି ସାହୁ ବିଭିନ୍ନ ସମୟରେ ଏହି ସମିତିର ସଂଗଠନ ସମ୍ପାଦକ ରହିଥିଲେ । ସମିତି ମୁଖ୍ୟତଃ ପାଞ୍ଚୋଟି କାର୍ଯ୍ୟ ହାତକୁ ନେଇଥିଲା । (୧) ପୋଲିସ-ମିଲିଟାରି ତରଫରୁ ଚାଲିଥିବା ବ୍ୟାପକ ନରହତ୍ୟା ଓ ଲୁଟତରାଜ ସମ୍ବନ୍ଧରେ ତଥା ସନ୍ଦିଗ୍ଧ ହୋଇଥିବା (ଅଥବା ଜେଲରେ ବନ୍ଦୀ ଥିବା) ନକ୍ସଲପନ୍ଥୀମାନଙ୍କ ସମ୍ବନ୍ଧରେ ବିଶଦ ତଥ୍ୟ ସଂଗ୍ରହ । (୨) ଜେଲରେ ନକ୍ସଲପନ୍ଥୀମାନଙ୍କୁ ସ୍ୱୈର ଉକାସ୍ତ ପର ନରଖି ସେମାନଙ୍କୁ ରାଜନୈତିକ ବନ୍ଦୀ ପାହ୍ୟା ଦେବାପାଇଁ ଦାବି ଓ ସେ ଦିଗରେ ଜନମତ ସୃଷ୍ଟି, (୩ ସେମାନଙ୍କୁ ଆବଶ୍ୟକ ସ୍ଥଳେ ମାଗଣା ଆଇନଗତ ସାହାଯ୍ୟ ପ୍ରଦାନ, (୪) ଏହି ଆନ୍ଦୋଳନ ତଥା ସରକାରୀ ପ୍ରତିରୋଧ ଫଳରେ ସୃଷ୍ଟି ହୋଇଥିବା ବିଭିନ୍ନ ମାନବୀୟ ସମସ୍ୟା । ଯଥା: (ମୃତ ଓ ବନ୍ଦୀ ନକ୍ସଲପନ୍ଥୀଙ୍କ ପରିବାରର ଭରଣପୋଷଣ ପୋଲିସ ଦ୍ୱାରା କ୍ଷତିଗ୍ରସ୍ତ ଗ୍ରାମବାସୀମାନଙ୍କୁ ରିଲିଫ୍ ଇତ୍ୟାଦି)ର ମୁକାବିଲା, (୫) ନାଗରିକ ସ୍ୱାଧିକାର ସମ୍ପର୍କରେ ଜନସାଧାରଣଙ୍କ ଚେତନା ବୃଦ୍ଧି ଓ ଲୋକଶିକ୍ଷା ।

ଏ ସମସ୍ତ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ନିମିତ୍ତ ଦରକାର ହେଉଥିଲା ଏକ ବିରାଟ ବାହିନୀ ଓ ଅପର୍ଯ୍ୟାପ୍ତ ଟଙ୍କା । ସତ କହିବାକୁ ଗଲେ ସେ ସମୟରେ ଯଦିଓ ନାଗରିକ ସ୍ୱାଧିକାର ସୁରକ୍ଷା ସମିତିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଦୁଇଶତାଧିକ ସଦସ୍ୟ ସଦସ୍ୟା ଥିଲେ, ତାର ବୈଠକଟିଏ ଡକାହେଲେ କୋରମ ପୂରା ହେଉ ନଥିଲା । ସତୁରି ବର୍ଷର ବୁଢ଼ୀ ମାଲତୀଦେବୀ ଅନୁଗୋଳରୁ ଆସି କଟକ ବୈଠକରେ ଠିକ୍ ସମୟରେ ଯୋଗ ଦେଉଥିଲେ, ଅଥଚ କଟକ ସହରର ସଦସ୍ୟଙ୍କୁ ଚିଠି, ତାର ଓ ବାରମ୍ବାର ଫୋନ୍ ସତ୍ତ୍ୱେ ସେମାନଙ୍କ ଭିତରୁ ଅଧିକାଂଶ ଯୋଗଦେଇ ପାରୁନଥିଲେ । ଏଣୁ ଏଥିରେ ବହୁ ଆଇନଜୀବୀ ସଦସ୍ୟ ଥିଲେ ମଧ୍ୟ ଆଡ଼ଭୋକେଟ୍ ଶ୍ରୀନିବାସ ମିଶ୍ରହିଁ ବସ୍ତୁତଃ ଏକକ ଭାବେ ସବୁ କେଶ୍ ମାଗଣା ଲଢ଼ିଥିଲେ ଏବଂ ସମିତିର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟକ୍ରମକୁ ମାଲତୀଦେବୀ ବସ୍ତୁତ ଏକା ଏକା ତୁଲାଇବାକୁ ଚେଷ୍ଟା କରୁଥିଲେ । ଶ୍ରୀଯୁକ୍ତା ରେବତୀ ଅମ୍ମା, ଶ୍ରୀମତୀ ସବିତା ସାହୁ, ଶ୍ରୀମତୀ ସୀତା ଟୁଡୁ, ଶ୍ରୀ ନଟବର ପ୍ରଧାନ ଏବଂ ଶ୍ରୀ ବୈକୁଣ୍ଠ ପାଣିଙ୍କ ପରି ନବଜୀବନ ମଣ୍ଡଳର କେତେକ ନିଷ୍ଠାପର ସହକର୍ମୀ ହିଁ ଯାହା ତାଙ୍କୁ ଏ ଦିଗରେ ସାହାଯ୍ୟ କରୁଥିଲେ । ଅବଶ୍ୟ ସେତେବେଳେ ଏହି ଆନ୍ଦୋଳନର ସଫଳତା ପାଇଁ ଆଉ ଯେଉଁ କେତେକ ବନ୍ଧୁଙ୍କର ସାହାଯ୍ୟ ସର୍ବାଗ୍ରେ ସ୍ମରଣୀୟ ସେମାନଙ୍କ ଭିତରୁ ସର୍ବୋଦୟ ନେତା ରଞ୍ଜନ ଦାସ, ସଦ୍ୟ ଜେଲରୁ ଖଲାସ ହୋଇଥିବା ନକ୍ସଲପନ୍ଥୀ ନେତା ରବିଦାସ ଏବଂ ସମିତିର ଦିଲ୍ଲୀରେ ସଂଯୋଜକ ଭୂମିକା ଗ୍ରହଣ କରିଥିବା ଅଧ୍ୟାପକ ମନୋରଞ୍ଜନ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ତେବେ ପରିଣତ ବୟସରେ ମଧ୍ୟ ମାଲତୀଦେବୀ ଏହି କାର୍ଯ୍ୟରେ ଯେତିକି ବଣ, ଜଙ୍ଗଲ, ପାହାଡ଼ ପାଦରେ ଅତିକ୍ରମ କରିଛନ୍ତି, ନକ୍ସଲପନ୍ଥୀଙ୍କର ପରିବାରକୁ ଅଇଥାନ କରିବା ନିମିତ୍ତ ଯେତିକି ଅର୍ଥ ଖର୍ଚ୍ଚ କରିଛନ୍ତି, ନିଜର ସହକର୍ମୀମାନଙ୍କଠାରୁ ଓ ସରକାରଙ୍କଠାରୁ ଯେତିକି ଲାଞ୍ଛନା ସହିଛନ୍ତି—ସମଗ୍ର ଭାରତର ସ୍ୱାଧିକାର ଆନ୍ଦୋଳନ କ୍ଷେତ୍ରରେ ତାର ତୁଳନା ନାହିଁ ।

ଗୁଣୁପୁର ସବ୍‌ଡିଭିଜନ୍ ଗଠଲପଦର ଗ୍ରାମରେ ଦୀନବନ୍ଧୁ ଚୌଧୁରୀ ନାମକ ଜଣେ ଅତ୍ୟାଚାରୀ ସାହୁକାରଙ୍କୁ ନକ୍ସଲ-ପନ୍ଥୀମାନେ ହତ୍ୟା କରିବା ପରେ ସେ ଆଖପାଖ ଗାଁମାନଙ୍କୁ ସମ୍ପୂର୍ଣ୍ଣ ଲୋକଶୂନ୍ୟ କରିଦିଆଗଲା । ଜର୍ମନ୍ ନାତ୍ସୀ ଅମଳର ଏକ Concentration C.mp ପରି ଏକ କ୍ୟାମ୍ପ କରି ସେଇଠାରେ ଗ୍ରାମବାସୀମାନଙ୍କୁ ରଖି ଅକଥନୀୟ ଅତ୍ୟାଚାର କରାଗଲା । ଗରଣ୍ଡା ନିକଟସ୍ଥ ସିତଲମାଙ୍ଗୀ ଗ୍ରାମର ଅବାଳବୃଦ୍ଧବନିତା ସମସ୍ତଙ୍କୁ ଏପରି ନିଷ୍ଠୁର ପ୍ରହାର କରାଯାଇଥିଲା ଯେ ସମଗ୍ର ଗାଁ ସପ୍ତାହେ କାଳ ଶଯ୍ୟାଶାୟୀ ହୋଇଗଲା । ଶୁକ୍ରି ନାମକ ଏକ ଆଦିବାସୀ ଯୁବତୀର ସ୍ତନରେ ଏବଂ ତାଙ୍କ ସ୍ୱାମୀଙ୍କର ଯୌନାଙ୍ଗରେ ଲୁହା ଚିଅଁ ଦାଗ ଦିଆଯାଇଥିଲା । ନିରୀହ ସ୍ତ୍ରୀଲୋକଙ୍କ ମୁହଁକୁ ପୂରିଥିବା ତତଲ ପାଣିରେ ମାଡ଼ ପୋଲିସକୁ ସୁହାଇଲା ଭଳି ବକ୍ତବ୍ୟ ଦେବାକୁ ବାଧ୍ୟ କରାଯାଉଥିଲା । "କଲିକତା—ମିନ୍ନା" ନାମକ ଆଦିବାସୀର ଆଖି ବେୟୋନେଟ ମୁନରେ ଭାଙ୍ଗିଦିଆଯାଇ

ଥିଲି । ଦରିଦ୍ର ଆଦିବାସୀର କୁଡ଼ିଆରେ ଜଳାଜଳି ବୁଲିଗଲି ।

ଗାଁରେ ଛେଳିଟାଏ ବା କୁକୁଡ଼ାଟାଏ ଅଥବା ପୋଲିସ-ମିଲିଟାରି ହାତରେ ଧର୍ଷିତା ନ ହୋଇଥିବା ସୁନ୍ଦରୀ ସ୍ତ୍ରୀଟାଏ ଦେଖିବା ସାତ ସପନ ହୋଇଗଲା । ଏମିତି ଏକ ସମୟରେ କୋରାପୁଟ-ଆନ୍ଧ୍ର ସୀମାନ୍ତ ଗ୍ରାମ ଗରଣ୍ଡାରେ ମିଲିଟାରି ଛାଉଣୀର ଅନତିଦୂରରେ ଛାଉଣୀ ପଡ଼ିଲା ମାଲତୀ ଦେବୀଙ୍କର । ୧୯୬୮-୬୯ ମସିହାରେ ପ୍ରାୟ ଛଅ ମାସ କାଳ ସେ ଦୁର୍ଭେଦ୍ୟ ଜଙ୍ଗଲରେ ମାଲତୀଦେବୀଙ୍କର ମିଲିଟାରି ସହ ଦୁଃସାହସିକ ମୁକାବିଲା, ଟାଙ୍ଗି ପାହାଡ଼ ଚଢ଼ା, ମହାଦେଇପୁର ଖରସ୍ରୋତା ବନ୍ୟାପ୍ଲାବିତା ଗିରିନଦୀ ଭିତରେ ପଶି ନଦୀ ପାର ହେବା ପରି ଲୋମହର୍ଷଣକାରୀ ଦୃଶ୍ୟ ଦେଖି ଇଂରାଜୀ କମିକ୍ର ସେଇ ଦୁର୍ଦ୍ଦମନୀୟ ଫ୍ୟାଣ୍ଟମ୍ କଥା ମନେ ପଡ଼ିଯାଉଥାଏ । ବହୁମୂତ୍ର, ଅଣ୍ଟୁଟଣ୍ଟୁ ବାତ, ରକ୍ତଚାପ, କାନବନ୍ଦ, ଚକ୍ଷୁରୋଗ ଇତ୍ୟାଦି ବିଭିନ୍ନ ରୋଗରେ ପୀଡ଼ିତା ସତୁରି ବର୍ଷର ଏ ବୁଢ଼ୀ ସେତେବେଳେ ଯେଉଁ ସାହସ, ମନୋବଳ ଓ ଦୈହିକ ଶ୍ରମର ପରାକାଷ୍ଠା ପ୍ରଦର୍ଶନ କରିଥିଲେ, ସେଇଥିରୁ ଯୌବନରେ ସେ କି ଦୁରନ୍ତ ଓ ଦୁର୍ଦ୍ଦମ୍ୟ ଥିବେ ତାହା ଖାଲି କଳ୍ପନା କରିବାକୁ ହୋଇଥାଏ । ତଳେ ପଡ଼ିଥିବା ମଣିଷ ପ୍ରତି ସେତିକି ମମତ୍ୱ-ବୋଧ ନଥିଲେ, ମଣିଷର ମୌଳିକ ଅଧିକାର ପ୍ରତିଷ୍ଠା ପାଇଁ ସେତିକି ସତ୍ୟସଙ୍କଳ୍ପ ନଥିଲେ କେହି କେବେ ଏ ବୟସରେ ଏତେ ତ୍ୟାଗ ସହିପାରେ ? ମାଲତୀଦେବୀ ଗାଁକୁ ଗାଁ ବୁଲି ଅତ୍ୟାଚାରର ଖବର ସଂଗ୍ରହ କରି ବାହ୍ୟଜଗତକୁ ଜଣାଇଛନ୍ତି, ପ୍ରପୀଡ଼ିତ ଲୋକଙ୍କୁ ନୈତିକବଳ ଯୋଗାଇଛନ୍ତି, ଜେଲରେ ଥିବା ଆଦିବାସୀମାନଙ୍କଠାରୁ ସେମାନଙ୍କ ଘର ଠିକଣା ନେଇ ଖୋଜି ଖୋଜି ସେଠି ପହଞ୍ଚି ତାଙ୍କ ଖବର ପୁଣି ବନ୍ଦୀଙ୍କୁ ଜଣାଇଛନ୍ତି, ବନ୍ଦୀ ଅଥବା ମୃତ ନକ୍ସଲପନ୍ଥୀମାନଙ୍କ ପରିବାରର ଭରଣ-ପୋଷଣ ବ୍ୟବସ୍ଥା ଯଥାସାଧ୍ୟ କରିଛନ୍ତି । ସେମାନଙ୍କ ପିଲାଙ୍କୁ ଅନୁକୂଳ ନେଇ ପଢ଼ାପଢ଼ି ଓ ଅନ୍ୟାନ୍ୟ କାମଧନ୍ଦା ଯୋଗାଇବାର ବ୍ୟବସ୍ଥା କରିଛନ୍ତି । ଜେଲ୍‌ରେ ଥିବା ନକ୍ସଲପନ୍ଥୀମାନଙ୍କୁ ଔଷଧ, ଲୁଗାପଟା, ବହି, ଅର୍ଥ ଓ ଅନ୍ୟାନ୍ୟ ଆଇନଗତ ସାହାଯ୍ୟ ଯୋଗାଇଛନ୍ତି । ଏକଦା ମାଲତୀଦେବୀଙ୍କର କାର୍ଯ୍ୟ ଭାରତସାରା ଏପରି ପ୍ରସରିତ ହୋଇଗଲା ଯେ ବଙ୍ଗଳା, ଆନ୍ଧ୍ର ଏପରିକି ଦିଲ୍ଲୀରେ ଥିବା ବନ୍ଦୀ ଥିବା ରାଜନୈତିକ ବ୍ୟକ୍ତିମାନେ ଆଇନ୍ ସହାୟତା ଓ ଅନ୍ୟାନ୍ୟ ସାହାଯ୍ୟ ପାଇଁ ମାଲତୀଦେବୀଙ୍କର ଦ୍ୱାରସ୍ଥ ହେଲେ । ଏହା ତାଙ୍କର କାର୍ଯ୍ୟଭାର ଦ୍ୱିଗୁଣିତ କରିଦେଲା । କୋରାପୁଟର ଗରଣ୍ଡାରୁ ଗଞ୍ଜାମର ହରଡ଼ମରା, କେନ୍ଦୁଝର ଓ ବ୍ରହ୍ମପୁର ଜେଲରୁ ସୁଦୂର ରାଜମହେନ୍ଦ୍ରୀ ଓ ବିଶାଖାପାଟଣା ଜେଲ୍, ଅନୁଗୋଳ ଓ ଭୁବନେଶ୍ୱରରୁ କଲିକତା ଓ ଦିଲ୍ଲୀ ସେ ଘୂରିବୁଲିଛନ୍ତି ଏହି ନିରୀହ ଆଦିବାସୀ ଓ ବୀର ନକ୍ସଲପନ୍ଥୀଙ୍କ ପାଇଁ ନ୍ୟାୟ ଦାବି କରି । ମୁଖ୍ୟତଃ ତାଙ୍କରି ପ୍ରଚେଷ୍ଟାରେ ଆନ୍ତର୍ଜାତିକ ମାନବିକ ଅଧିକାର ସଂସ୍ଥା ( Amnesty International ) ତାଙ୍କ ବର୍ଣ୍ଣିତ ଅତ୍ୟାଚାରର ସତ୍ୟାସତ୍ୟ ନିର୍ଣ୍ଣୟ ପାଇଁ ସୁଦୂର ଲଣ୍ଡନରୁ ଦୁଇଜଣ ପ୍ରତିନିଧି ପଠାଇଛି । ମୁଖ୍ୟତଃ ତାଙ୍କରି ପ୍ରଚେଷ୍ଟାରେ ନାଗଭୂଷଣ ପଟ୍ଟନାୟକଙ୍କର ଫାଶୀଦଣ୍ଡ ବାତିଲ୍ ହୋଇଛି । ମୁଖ୍ୟତଃ ତାଙ୍କରି ପଦଯାତ୍ରା ଓ ତାଙ୍କ ସାରଙ୍ଗନା କର୍ମୀମାନଙ୍କର ଅନବରତ ହସ୍ତକ୍ଷେପ ଫଳରେ ନିରୀହ ଆଦିବାସୀ ଗାଁମାନଙ୍କରେ ସରକାରୀ ଅତ୍ୟାଚାରର ପ୍ରକୋପ କମିଛି । ଏହାର ପୁରସ୍କାର ସ୍ୱରୂପ ମାଲତୀଦେବୀଙ୍କ କର୍ମୀମାନେ ନିଷ୍ଠୁର ମାଡ଼ ଖାଇଛନ୍ତି, ଅଟକ ହୋଇ ଦିନ ଦିନ ଧରି ମିଲିଟାରି କ୍ୟାମ୍ପରେ ନିର୍ଯ୍ୟାତିତ ହୋଇଛନ୍ତି । ତାଙ୍କ ଅନୁଷ୍ଠାନକୁ ସମସ୍ତ ସରକାରୀ ଅନୁଦାନ ବନ୍ଦ କରି ଦିଆଯାଇଛି । ମାଲତୀଦେବୀଙ୍କର ନିଜ ଅନୁଷ୍ଠାନ ଭିତରେ ଏବଂ ଅତି ପ୍ରଗତିଶୀଳ ଦଳ ବୋଲାଉଥିବା ଅନେକ ଦଳ ମଧ୍ୟରେ ସୁଦ୍ଧା ନବବାବୁ ମାଲତୀଦେବୀଙ୍କର ଏ କର୍ମର ଘୋର ସମାଲୋଚନା କରାଯାଇଛି । ନବବାବୁ, ମାଲତୀଦେବୀ ନକ୍ସଲପନ୍ଥୀ ହୋଇଗଲେଣି ବୋଲି ସେମାନେ ଦୁଆ ଉଠାଇଛନ୍ତି ଓ A. B. Patrika ଭଳି ସମ୍ବାଦପତ୍ରମାନେ ଏହି ଗୁଜବକୁ ପ୍ରତିଧ୍ୱନିତ କରି ଲେଖିଛନ୍ତି—"ଓଡ଼ିଶାର ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସ୍ତ୍ରୀ ହିଁ ହେଉଛନ୍ତି ସେଠି ନକ୍ସଲପନ୍ଥୀ ଆନ୍ଦୋଳନର କର୍ଣ୍ଣଧାର (vanguard) । ବିଧିର ବିଚିତ୍ର ଉପହାସ । ନିଜକୁ ସାମ୍ୟବାଦୀ ବୋଲାଉଥିବା, ଓଡ଼ିଶାର କେତୋଟି ବାମପନ୍ଥୀ ଦଳଙ୍କର ଅତି ପ୍ରିୟ, ସପ୍ତମ ଦଶକର ଜଣେ ମୁଖ୍ୟମନ୍ତ୍ରୀ ନକ୍ସଲପନ୍ଥୀ ମାରଣଯଜ୍ଞରେ ସହାୟତା କରୁଥିବା ପୋଲିସ, ସାହୁକାର, ସ୍କୁଲ ମାଷ୍ଟ୍ରଙ୍କୁ ଦରବାର ବସାଇ ପୁରସ୍କାର, ମେଡ଼ାଲ ବାଣ୍ଟୁଥାଆନ୍ତି । ଆଉ ନିଜକୁ ଆଜୀବନ ଜଣେ ଗାନ୍ଧୀବାଦୀ ବୋଲି ଦାବି କରୁଥିବା ଏହି

ନେତ୍ରୀ ସାମ୍ୟବାଦ ସହ ତାଙ୍କର ଆଦର୍ଶଗତ ବୈଷମ୍ୟ ସତ୍ତ୍ୱେ ସାମ୍ୟବାଦୀ ନକ୍ସଲପନ୍ଥୀଙ୍କୁ 'ବୀର' ଆଖ୍ୟା ଦେଇ ସଲାମ୍ କରୁଥାଆନ୍ତି ଓ ସେମାନଙ୍କ ସ୍ୱାଧିକାର ପାଇଁ ଲଢ଼ୁଥାଆନ୍ତି ।

ନକ୍ସଲପନ୍ଥୀ ଆନ୍ଦୋଳନ ଧୀମେଇ ଆସିଲାବେଳକୁ ଇନ୍ଦିରାଙ୍କ ଏକଛତ୍ରବାଦୀ ବଂଶାନୁକ୍ରମିକ ଶାସନ ବିରୋଧରେ ମାଡ଼ିଆସିଲା "ଜେ. ପି. ଆନ୍ଦୋଳନ"ର ଉତ୍ତାଳ ତରଙ୍ଗ । ଏଥିରେ ମଧ୍ୟ ନବବାବୁ ଓ ମାଳତୀଦେବୀ ଓଡ଼ିଶା ଜନସାଧାରଣଙ୍କୁ ନେତୃତ୍ୱ ଦେଲେ । ବହୁ ନିନ୍ଦିତ ଜରୁରୀ ପରିସ୍ଥିତି ଜାରି କରି ଇନ୍ଦିରା ଗାନ୍ଧୀ ସତୁରି କୋଟି ଲୋକଙ୍କ ମୁହଁରେ ଗୁଣ୍ଡି ବାନ୍ଧି ଦେବାକୁ ଚେଷ୍ଟା କଲେ । ବହୁ ପଞ୍ଚ ପାଣ୍ଡବଙ୍କ ମୁହଁରେ ସୁନା ତାଲା ପଡ଼ିଗଲା । ବହୁ ଭୀଷ୍ମ ଦ୍ରୋଣଙ୍କର ସୁନା ମୁଣ୍ଡ ଓ ହୃଦୟ ନିଲାମ ହୋଇଗଲା । ମାତ୍ର ନବବାବୁ, ମାଳତୀଦେବୀ ନିଜର ଓ ଦେଶବାସୀଙ୍କର ଜନ୍ମଗତ ମୌଳିକ ଅଧିକାର ଅକ୍ଷୁର୍ଣ୍ଣ ରଖିବା ପାଇଁ ଆପ୍ରାଣ ସଂଗ୍ରାମ ଚଳାଇଲେ । ଜରୁରୀ ପରିସ୍ଥିତି ଜାରି ହେଉ ହେଉ ନବବାବୁଙ୍କୁ ଗିରଫ କରି ନିଆଗଲା । ମାତ୍ର ମାଳତୀଦେବୀ ଗିରଫ ହେବା ପୂର୍ବରୁ କୌଶଳକ୍ରମେ ଖସିଗଲେ ଓ ଗୋପନରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଇନ୍ଦିରାଙ୍କ ଅନ୍ଧାରି ଶାସନ ବିରୋଧରେ ଲୋକମତ ସୃଷ୍ଟି କଲେ । ସେହି-ଆତ୍ମ-ଗୋପନ ପର୍ଯ୍ୟାୟରେ ସେ "ସଂଗ୍ରାମ" ବୋଲି ଏକ ସାଇକ୍ଲୋଷ୍ଟାଇଲ୍ ହୋଇଥିବା ପତ୍ରିକା ବାହାର କରୁଥିଲେ ଓ ସଂଗ୍ରାମ ସମିତିର ବିଭିନ୍ନ ପ୍ରଚାରପତ୍ର ବିଭିନ୍ନ ସ୍ଥାନରେ ପହଞ୍ଚାଇବାର ବ୍ୟବସ୍ଥା କରୁଥିଲେ । ମାତ୍ର ଦୁଇଖଣ୍ଡ ଶାଢ଼ି ସାଥିରେ ଧରି ଅର୍ଦ୍ଧାହାର ଅବସ୍ଥାରେ ସେ କିପରି ସ୍ଥାନରୁ ସ୍ଥାନାନ୍ତର ବୁଲୁଥିଲେ ସେତେବେଳେ ତାଙ୍କୁ ଘରେ ସ୍ଥାନ ଦେଇଥିବା ଅନେକ ବନ୍ଧୁ ତାହା ପ୍ରକାଶ କରନ୍ତି । ଶେଷରେ ତା ୩-୧-୭୬ରେ ମାଳତୀଦେବୀ ମଧ୍ୟ ଗିରଫ ହେଲେ । ଉପରୋକ୍ତ "ସାମ୍ୟବାଦୀ" ମୁଖ୍ୟମନ୍ତ୍ରୀ ଯାହାଙ୍କୁ ଅତୀତରେ ମାଳତୀ ଦେବୀ ଅନେକ ଉପାୟରେ ସାହାଯ୍ୟ କରିଥିଲେ, ଜରୁରୀ ପରିସ୍ଥିତି ବେଳେ କ୍ଷମତାସୀନ ଥାଇ ନବବାବୁ ଓ ମାଳତୀଦେବୀଙ୍କୁ ପରିଣତ ବୟସରେ ଖାଲି ଜେଲରେ ପୂରାଇ ନ ଥିଲେ, ଜେଲ୍‌ରେ ସେମାନଙ୍କ ପାଇଁ ଏପରି "ସ୍ୱତନ୍ତ୍ର ବ୍ୟବସ୍ଥା" କରିଦେଲେ ଯେ ଜେଲ ଭିତରେ ନବବାବୁଙ୍କର ପକ୍ଷାଘାତ ରୋଗ ହୋଇଗଲା ଓ ମାଳତୀ ଦେବୀଙ୍କୁ ଦୀର୍ଘ ଛଅମାସ କାଳ ଜଣେ ପାଗଳୀ ସହିତ ଏକ ପ୍ରକୋଷ୍ଠରେ ବନ୍ଦୀ ଜୀବନ କଟାଇବାକୁ ପଡ଼ିଥିଲା । ମାଳତୀ ଦେବୀଙ୍କୁ "ମିସା" ବନ୍ଦୀର କୌଣସି ସୁବିଧାସୁଯୋଗ ଦିଆଯାଇନଥିଲା ଓ ଡି. ଆଇ. ଆର. ବନ୍ଦୀ ରୂପେ ତାଙ୍କ ନାଁରେ କେଶ୍ ମଧ୍ୟ ରୁଜୁଥିଲା । କେଶ୍‌ରେ ଯେତେବେଳେ ସେ accused statement ଦେବାକୁ ଚାହିଁଲେ ତାଙ୍କୁ ବିଚାରପତି ସେଥିପାଇଁ ଅନୁମତି ଦେଲେନାହିଁ, କାରଣ ସେ ବକ୍ତବ୍ୟରେ ମାଳତୀଦେବୀ ଜରୁରୀ ପରିସ୍ଥିତିର ଘୋର ସମାଲୋଚନା କରିଥିଲେ । ବିଚାରପତିଙ୍କ ନିର୍ଦ୍ଦେଶ ଅନୁଯାୟୀ ତାହା କୋର୍ଟରେ ଦାଖଲ କରିବା ପାଇଁ ମାଳତୀଦେବୀ ବକ୍ତବ୍ୟଟି ତାଙ୍କ ତରଫରୁ ଲଢୁଥିବା ଓକିଲଙ୍କ ହାତରେ ଦେଲେ । ମାତ୍ର ପରେ ଶୁଣିଲେ ଯେ ତାଙ୍କ ଓକିଲ ମାଳତୀ ଦେବୀଙ୍କୁ ଅଧିକକାଳ ସଜା ହୋଇଯିବା ଭୟରେ ତାହା କୋର୍ଟରେ ଦାଖଲ କରିନଥିଲେ ।

ଜରୁରୀ ପରିସ୍ଥିତି ପରେ ଭୂତପୂର୍ବ ବିଚାରପତି ଶ୍ରୀ ହରିହର ମହାପାତ୍ର ସଭାପତି ରହି ଯେଉଁ ନାଗରିକ ସୁରକ୍ଷା ସମିତି ଗଢ଼ାଗଲା, ସେଥିରେ ମାଳତୀଦେବୀ ଉପସଭାନେତ୍ରୀ ରହିଥିଲେ । ସେଥିରେ ମଧ୍ୟ ମାଳତୀଦେବୀ ସବୁଠାରୁ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ ସମୟରେ ଢେଙ୍କାନାଳ ଠାରେ ବନ୍ଦୀ ହୋଇଥିବା SUCIର କର୍ମୀ ଭଜମୋହନ ବାବୁଙ୍କପାଇଁ ମାଳତୀଦେବୀ ଲଢ଼ିଥିଲେ । ଉକ୍ତ ବନ୍ଦୀଙ୍କ ବିରୋଧରେ RSS କର୍ମୀମାନଙ୍କ କୁତ୍ସାର ତୀବ୍ର ନିନ୍ଦା କରିଥିଲେ ଓ ପରସ୍ପର ଭିତରେ ଆଦର୍ଶଗତ ବିରୋଧ ଥିବା ସତ୍ତ୍ୱେ ନାଗରିକ ସ୍ୱାଧିକାର ମଞ୍ଚରେ କେତେକ ନ୍ୟୂନତମ କାର୍ଯ୍ୟକ୍ରମ ଉପରେ ବିଭିନ୍ନ ଦଳ କିପରି ଓ କାହିଁକି ଏକଜୁଟ୍ ହେବା ଉଚିତ ଓ ପରସ୍ପରର ନାଗରିକ ଅଧିକାରକୁ ସମ୍ମାନ ଦେବା ଉଚିତ ସେ ସମ୍ପର୍କରେ ବହୁ ଚିଠି ବିଭିନ୍ନ ସ୍ଥାନକୁ ଲେଖିଥିଲେ । ତା'ଛଡ଼ା ଜରୁରୀ ପରିସ୍ଥିତିବେଳକୁ ବନ୍ଦୀ ହୋଇ ଯେଉଁମାନେ ଜନତା ଅମଳରେ ମଧ୍ୟ ଖଲାସ ହୋଇନଥିଲେ ସେମାନଙ୍କ ତାଲିକା ପ୍ରସ୍ତୁତ କରିଥିଲେ । ଜନତା ସରକାର ମଧ୍ୟ ନକ୍ସଲପନ୍ଥୀଙ୍କୁ "ରାଜନୈତିକ ବନ୍ଦୀ"ର ପାହ୍ୟା ଦେଇନଥିବାରୁ ସେ ତାର ତୀବ୍ର ନିନ୍ଦାବାଦ କରିଥିଲେ । ମାଳତୀଦେବୀଙ୍କର "ଜଣିକଥା" ସ୍ୱାଧିକାର ସୁରକ୍ଷାବାହିନୀ ଏବେ ବି ବେଶ୍ ସକ୍ରିୟ । ଦିଲ୍ଲୀ ନାଗରିକ ସ୍ୱାଧିକାର ସମିତି PUDRର ସଭ୍ୟ ଅଧ୍ୟାପକ ମନୋରଞ୍ଜନ ମହାନ୍ତି ଏବଂ ଆନ୍ଧ୍ର ନାଗରିକ ସ୍ୱାଧିକାର ସମିତି APCLCର ୩ଜଣ ସଭ୍ୟଙ୍କୁ ଗତ ଏପ୍ରିଲ '୮୫ରେ

ଅନ୍ଧ୍ର ପୋଲିସ ହାଜତରେ ରଖି ଯେପରି ନିର୍ଯାତନା ଦେଲେ ତାର ବିରୋଧ କରି ଓ ଅନ୍ଧ୍ରରେ ଏଯାବତ୍ ନକ୍ସଲପନ୍ଥୀଙ୍କୁ ଯେପରି ବିନା ବିଚାରରେ ହତ୍ୟା କରାଯାଉଛି ତାର ଦୃଢ଼ ପ୍ରତିବାଦ କରି ସେ ଅନ୍ଧ୍ର ମୁଖ୍ୟମନ୍ତ୍ରୀ ଏନ୍. ଟି ରାମାରାଓଙ୍କୁ ଏକାଧିକ ଚିଠି ଲେଖିଛନ୍ତି । ବିଭିନ୍ନ ସମୟରେ ଧର୍ମଘଟକାରୀ ରେଳ-କର୍ମଚାରୀ, ବାଲିମେଳା ଓ ରେଙ୍ଗାଲି ଜଳଭଣ୍ଡାର ପ୍ରକଳ୍ପର କର୍ମଚାରୀମାନଙ୍କ ଅଧିକାର ପାଇଁ ମଧ୍ୟ ସେ ସ୍ୱର ଉତ୍ତୋଳନ କରିଛନ୍ତି । ଏବେ ଯଦିଓ FUCLର ଏକ ଶାଖା ଏବଂ ଆଉ ଗୋଟିଏ ଦୁଇଟି ନାଗରିକ ଅଧିକାର ସୁରକ୍ଷା ଅନୁଷ୍ଠାନର ଶାଖା ଓଡ଼ିଶାରେ ରହିଛି, ତଥାପି ବିଭିନ୍ନ ପ୍ରକାର ସାହାଯ୍ୟ ପାଇଁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଓ ଓଡ଼ିଶା ବାହାରୁ ଅନେକ ଚିଠି ମାଳତୀଦେବୀଙ୍କର ଏହି ଜଣିକିଆ ଅଧିକାର ସୁରକ୍ଷା ସଂଘ ନିକଟକୁ ଏବେବି ଆସୁଛି ଏବଂ ମାଳତୀ ଦେବୀ ଏବେବି ଯଥାସମ୍ଭବ ସେମାନଙ୍କୁ ସାହାଯ୍ୟ କରିବାରେ ଲାଗିଛନ୍ତି ।

ଏହି ସତ୍ୟନିଷ୍ଠ ସେବାବ୍ରତୀର ବ୍ୟକ୍ତିତ୍ୱର ଆଉ ଗୋଟିଏ ଦିଗ ଏଠାରେ ଆଲୋଚନା ନ କଲେ ହୁଏତ ସତ୍ୟର ଅପଲାପ ହେବ । ଚୀନର ମ୍ୟାଡ଼ାମ୍ ସନ୍ୟାତ୍ ସେନ୍ଙ୍କ ସହ ମାଳତୀଦେବୀଙ୍କୁ ଯିଏ ତୁଳନା କରିଥାଆନ୍ତି ଓ ମାଳତୀଦେବୀଙ୍କୁ ନିଜର ମାଆ ବୋଲି ଯିଏ ନିଜର ଛାତ୍ରୀମାନଙ୍କ ନିକଟରେ ପରିଚୟ କରାଇଥାଆନ୍ତି, ସେହି ବିପ୍ଳବୀ ନାଗଭୂଷଣ ପଟ୍ଟନାୟକ ଏ ଲେଖକଙ୍କୁ ତା ୨୩। ୧୧। ୮୧ରେ ଏକ ସାକ୍ଷାତ୍କାର ଦେଇ ମାଳତୀଦେବୀଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ଓ ତା' ସଙ୍ଗେ ସଙ୍ଗେ ଏ ମନ୍ତବ୍ୟ ମଧ୍ୟ ଦେଇଥିଲେ—"Malati Maa is a strong willed lady, a lady with strong likes and dislikes, one who is very frank, sometimes very cruelly frank." ନିଜର ବାକ୍‌ସ୍ୱାଧୀନତା ସମ୍ପର୍କରେ ଅତି ଉଗ୍ରଭାବେ ସଚେତନ । ଏକ ଶିଶୁ ଭଳି ଅତି ଖୋଲା ସରଳ ହୃଦୟ ଏହି କପଟଶୂନ୍ୟା ମହିଳା "ଅଛି ନାହିଁ······ଜାଣ ନାହିଁ······" ନ୍ୟାୟରେ ବେଳେ ବେଳେ ଆଖିବୁଜା ବାକ୍-ବୋମା ନିକ୍ଷେପ କରିଥାଆନ୍ତି । କାହାର ଥାନ ଅଥାନ କେଉଁଠି ବାଜିବ ତାର ବିଚାର ନଥାଏ । ପୁନଶ୍ଚ ଅଧିକାର ସୁରକ୍ଷା ସମିତି ସହ ବିଭିନ୍ନ ଦଳ ଓ ମତର ଲୋକଙ୍କୁ ନେଇ ଗଠିତ ଅନୁଷ୍ଠାନମାନଙ୍କରେ ସେ ଅତ୍ୟନ୍ତ ମାପିଚୁପି, ଗଣତାନ୍ତ୍ରିକ ପଦ୍ଧତିରେ କାମ କରିବାକୁ ଚେଷ୍ଟା କରୁଥିବାବେଳେ ନିଜ ଅନୁଷ୍ଠାନ (ଯଥା: ନବଜୀବନ ମଣ୍ଡଳ) ଭିତରେ ପ୍ରାୟତଃ ନିଜର ସର୍ବମୟ କର୍ତ୍ତୃତ୍ୱ ଜାହିର କରିବାକୁ ଚେଷ୍ଟା କରନ୍ତି ବୋଲି ଅଭିଯୋଗ ଶୁଣିବାକୁ ମିଳିଥାଏ । ଏ କ୍ଷେତ୍ରରେ ବେଳେ ବେଳେ କର୍ମୀର ବାକ୍ ସ୍ୱାଧୀନତା ସମ୍ପୂର୍ଣ୍ଣ ଅପହୃତ ହୁଏ ବୋଲି ଅଭିଯୋଗକାରୀମାନେ କହିଥାନ୍ତି । ସମାଜ କ୍ଷେତ୍ରରେ ବେସାଲିସ ବ୍ୟକ୍ତି ସ୍ୱାଧୀନତାର ପ୍ରଚାର କରୁଥିବା ଏହି ବିପ୍ଳବୀ ବ୍ୟକ୍ତିଗତ ଜୀବନରେ ବେଳେ ବେଳେ କିପରି ସେହି ମୂଲ୍ୟବୋଧକୁ ଯଥୋଚିତ ସମ୍ମାନ ନଦେଉଥିବେ—ଏହା କ'ଣ ସମ୍ଭବ ?

ଏହା ଅତ୍ୟନ୍ତ ବ୍ୟକ୍ତିଗତ ସ୍ତରର ଆଲୋଚନା ଓ ଏହା ଏ ପ୍ରବନ୍ଧର ମୁଖ୍ୟ ଆଲୋଚ୍ୟ ବିଷୟ ଦୃଷ୍ଟିରୁ ଅବାନ୍ତର ବୋଲି କେହି କେହି ସମାଲୋଚନା କରିପାରନ୍ତି । ମାତ୍ର ନବବାବୁ ମାଳତୀଦେବୀଙ୍କ ପ୍ରତିଷ୍ଠିତ ମହାନ୍ ମୂଲ୍ୟ-ବୋଧରେ ଯିଏ ଏବେ ଟିକେ ବି ବିଶ୍ୱାସ କରୁଥିବ ସେ କେବେ ବ୍ୟକ୍ତିଗତ ଜୀବନ ଓ ସାମାଜିକ ଜୀବନକୁ ଭିନ୍ନ ଭିନ୍ନ ତଥା ପରସ୍ପରବିରୋଧୀ ଇଲାକା ବୋଲି ଧରିବ ନାହିଁ, ଦୁଇ ବାହା ଟେକି ନିଜକୁ ଜନତା ଦରବାରରେ ରାଜସାକ୍ଷୀ (approver) ବୋଲି ନିଃସଙ୍କୋଚରେ ଘୋଷଣା କରୁଥିବା ମଣିଷମାନଙ୍କର ଜୀବନ ଚର୍ଯ୍ୟାକୁ କେବେ ଅସତ୍ୟ ଅଥବା ଅର୍ଦ୍ଧସତ୍ୟର କାଦୁଅ ତଳେ ଘୋଡ଼ାଇ ଦେବାର ଅସତ୍ ଚେଷ୍ଟା କରିବ ନାହିଁ । ସ୍ତୁତି ଅଥବା ନିନ୍ଦା ମାଧ୍ୟମରେ କେବଳ ଦେବତା ଅଥବା ଦାନବର ଚିତ୍ର ଅଙ୍କା ଯାଇପାରେ, ଜଣେ ମହାମାନବର ନୁହେଁ । ମହାମାନବତ୍ୱକୁ ଦାନବର ଉତ୍ତରଣ ମ୍ୟାଜିକ୍ ଅଥବା ମନ୍ତ୍ରଜଳ ଦ୍ୱାରା ସମ୍ଭବ ହୋଇ ନଥାଏ । ସେ ମାନବ ଆଜୀବନ ନିଜ ସହ ଯୁଦ୍ଧରତ ଏକ କୃଚ୍ଛ୍ର ସାଧକ । ତାର ଉତ୍ତରଣ ପ୍ରକ୍ରିୟା ଏକ ଅତୀବ କରୁଣ ଅଥଚ ଅତୀବ ପ୍ରେରଣାଦାୟକ ଆତ୍ମହନନକାରୀ, ରକ୍ତକ୍ଷୟୀ ପ୍ରକ୍ରିୟା । ସେହି ମହାମାନବକୁ ଖଟୁଲିରେ ବସାଇ, ଧୂପ, ଦୀପ, ନୈବେଦ୍ୟ ଦେଇ ତାର ପାଦପୂଜା କରିବା ପରିବର୍ତ୍ତେ ତାର ସେହି ଉତ୍ତରଣ ପ୍ରକ୍ରିୟାଟିକୁ ବୁଝିବାପାଇଁ ଯଥାସମ୍ଭବ ନିର୍ମୋହ ପ୍ରଚେଷ୍ଟା ହିଁ ତାକୁ ଠିକ୍‌ଭାବେ ବୁଝିବା ନିମିତ୍ତ ଆମକୁ ଅଧିକ ସକ୍ଷମ କରିବ ଓ ଆମର ଉତ୍ତରଣ ପ୍ରକ୍ରିୟାକୁ ଅଧିକ ସୁଗମ କରିବ ।

ପ୍ରଚଣ୍ଡ ବ୍ୟକ୍ତି ସ୍ୱାଧୀନତାରେ ବିଶ୍ୱାସ କରୁଥିବା ମହାତ୍ମା ଗାନ୍ଧୀ ଯେପରି ନିଜ ସ୍ତ୍ରୀ ଓ ନିଜ କର୍ମୀମାନଙ୍କ ଉପରେ ବେଳେ ବେଳେ ନିଜର ଟିପିକାଲ୍ ଭାରତୀୟ ସ୍ୱାମୀତ୍ୱ ପିତୃତ୍ୱ ଜାହିର କରିଛନ୍ତି, ମାଳତୀଦେବୀଙ୍କ କ୍ଷେତ୍ରରେ ମଧ୍ୟ ସେହିଭଳି ତାଙ୍କର ଟିପିକାଲ୍ ଭାରତୀୟ ମାତୃତ୍ୱ ବେଳେ ବେଳେ ତାଙ୍କର ଉଗ୍ର ସ୍ୱାଧୀନତାବୋଧକୁ ଆଚ୍ଛାଦିତ କରି ଦେଇଛି । ତଥାପି ଆଜିର ବିଭିନ୍ନ ତଥାକଥିତ ଗଣତାନ୍ତ୍ରିକ ଦଳର କୁତ୍ସିତ ଏକଚ୍ଛତ୍ରବାଦୀ ନେତୃତ୍ୱ ସହ ତୁଳନା କରି ଦେଖିଲେ ସେମାନଙ୍କ 'ଏକଚ୍ଛତ୍ରବାଦ' ପରି ମାଳତୀଦେବୀଙ୍କର 'ଏକଚ୍ଛତ୍ରବାଦ' କୁତ୍ସିତ-ମତ୍‌ଲବ୍-ପ୍ରସୂତ ନୁହେଁ । ପୂର୍ବୋକ୍ତ ଦଳୀୟ ନେତୃତ୍ୱ କ୍ଷେତ୍ରରେ 'ଏକଚ୍ଛତ୍ରବାଦ' ନେତାଙ୍କ ପେଟପାଟଣା ଓ ଗଦିର ମୋହରୁ ଜନ୍ମ ନେଇଥିବାରୁ ଅତି କୁତ୍ସିତ ରୂପ ଧାରଣ କରିଥାଏ । ମାତ୍ର ମାଳତୀଦେବୀଙ୍କ "ଏକଚ୍ଛତ୍ରବାଦ"ର ମୂଳ ଉତ୍ସ ତାଙ୍କ ନିଜ ଅନୁଷ୍ଠାନର ମଙ୍ଗଳ ପାଇଁ ଏକ ମୋହଗ୍ରସ୍ତ ଅତ୍ୟଧିକ ବ୍ୟଗ୍ରତା ଏବଂ ନିଜ ପୁତ୍ରକନ୍ୟା ତୁଲ୍ୟ କର୍ମୀମାନଙ୍କ ଉପରେ ମାତୃତ୍ୱ ଜାହିର କରିବାର ଏକ ମାତୃସୁଲଭ ପ୍ରବଣତା । ବହୁ ରାଜନୈତିକ ଦଳ, ଧର୍ମ ଅନୁଷ୍ଠାନ ଏବଂ ସେବା ଅନୁଷ୍ଠାନକୁ ଅତି ପାଖରୁ ଦେଖିବା ସୁଯୋଗ ଏ ଲେଖକ ପାଇଛି । ଜଣେ ବାହାରିଆ ମଣିଷ ରୂପେ ପୁଣି ଏ ଲେଖକ ନିଜ ଅନୁଭୂତିରୁ ଦୃଢ଼ ଭାବେ କହିପାରେ ଯେ ବିଭିନ୍ନ ସମୟରେ ମାଳତୀଦେବୀଙ୍କୁ ସମାଲୋଚନା କରି ଏହି ଲେଖକ ଭଳି ଆହୁରି ଅନେକ ବନ୍ଧୁ ଏଯାବତ୍ ମାଳତୀଦେବୀଙ୍କର ଯେପରି ଶ୍ରଦ୍ଧା ଓ ବିଶ୍ୱାସର ପାତ୍ର ହୋଇ ରହିପାରିଛନ୍ତି ତାହା ଅତ୍ୟନ୍ତ ଅକଳ୍ପନୀୟ । ନବବାବୁ-ମାଳତୀଦେବୀ ଭାରତୀୟ ରାଜନୀତି କ୍ଷେତ୍ରରେ ଅମର ହୋଇ ରହିବେ ନାହିଁ 'ନିର୍ଭୁଲ୍', 'ନିର୍ଦ୍ଦୋଷ' ରାଜନୀତିଜ୍ଞ ରୂପେ । ସେମାନଙ୍କୁ ଗାନ୍ଧୀ ପରି ଭାରତର ରାଜନୈତିକ ଇତିହାସରେ ଅମର କରି ରଖିବ ସେମାନଙ୍କ ଭୁଲ୍ ପାଇଁ ସେମାନଙ୍କର ନିଃସଙ୍କୋଚ ସ୍ୱୀକାରୋକ୍ତି ଓ ନୀରବ ପ୍ରାୟଶ୍ଚିତ୍ତ । ବିରାମହୀନ ଅନ୍ତର୍ଦ୍ୱନ୍ଦ୍ୱ ଏବଂ ନିର୍ମମ ଆତ୍ମ-ସମାଲୋଚନା ହିଁ ଭାରତୀୟ ରାଜନୈତିକ ମୂଲ୍ୟବୋଧକୁ ସେମାନଙ୍କର ଅତୁଳ ଅବଦାନ । ଏହି ପରିସ୍ଥିତିକୁ ବୁଝିଲେ ହିଁ ମାଳତୀଦେବୀଙ୍କ ଜୀବନର ସେହି ବିରୋଧାଭାସଟିର ସୌମ୍ୟଦିଗଟି ଆଖିରେ ପଡ଼ିବ ।

ଆଖି ଦେଖା କଥା । ପ୍ରାୟ ବର୍ଷକ ତଳର ଘଟଣା । ଏକ ବର୍ଷଣ ସନ୍ଧ୍ୟା । ଅନୁଗୋଳ ବାଜିରାଉତ ଛାତ୍ରାବାସରେ ମାଳତୀଦେବୀଙ୍କର ସେହି ଛୋଟ କୁଡ଼ିଆର ବାଘମୁହଁ । ତା ତଳେ ଘମାଘୋଟ ଯୁଦ୍ଧରେ ପ୍ରବୃତ୍ତ ମାଳତୀଦେବୀ ଓ ତାଙ୍କର ଅନ୍ୟତମ ପ୍ରିୟ କର୍ମୀ ତୁଳସୀ ମୁଣ୍ଡା । କୌଣସି ଏକ ଘଟଣାକୁ କେନ୍ଦ୍ର କରି ଉଭୟ ଭୁଲ୍ ବାଛିବାରେ ଲାଗିଛନ୍ତି । କେହି କାହାରିକୁ ଛାଡ଼ିବାର ନୁହେଁ । ଜଣକର ଗର୍ବ ସେ ପୂର୍ବବଙ୍ଗ ଲଳନା, ହୃଦୟ ତାର ଜିଭ ଅଗରେ । ଆଉ ଜଣକ ଗର୍ବ କରେ ଯେ ସେ କଟାମୁଣ୍ଡ ଧରି ଥାନାରେ ହାଜର ହୋଇ ଯାଉଥିବା ଆଦିବାସୀର କନ୍ୟା । ସେହି ବାକ୍‌ଯୁଦ୍ଧ ଏକ ଘଣ୍ଟା ଧରି ଚାଲିବା ପରେ ଅସମାହିତ ଓ ଅସମାପ୍ତ ରହିଲା । ରାତି ବେଶି ହୋଇଯାଉଥିଲା । ଦୁଇ କ୍ଳାନ୍ତ ଅବଶ ଯୋଦ୍ଧା ପରସ୍ପରଠାରୁ ବିଦାୟ ନେଲେ । ଗୁମ୍‌ମାରି ବସିଥିବା ମାଳତୀଦେବୀଙ୍କୁ ତାଙ୍କର ଆଉ ଜଣେ ପ୍ରିୟ ଦାସୀ କର୍ମୀ ଆଶ୍ୱାସନା ଦେଇ କହିଲେ, "ଓଃ, ତୁଳସୀ ଅପାର କି ବାଜେ ବିତଣ୍ଡା ଯୁକ୍ତି !" ମାଳତୀଦେବୀ ସେ କର୍ମୀଅଡ଼କୁ କଟ୍‌ମଟ୍ କରି ଚାହିଁଲେ ଓ କହିଲେ "ଆଉ କଣ ତୁମମାନଙ୍କ ପରି ଖୋସାମଦିଆ କଥା କହୁଆଆନ୍ତା ନା କଣ ?" ତା'ପରେ ଛତାଟିଏ ଧରି ସେଇ ଅନ୍ଧାର ରାତିରେ କାଦୁଅରେ ଗୋଡ଼ ଟିପି ଟିପି ସେହି ବିରାଟ ଆଶ୍ରମଟା ସାରା ଖୋଜି ବୁଲିଲେ— ତୁଳସୀ କାହିଁ ? କ'ଣ ଖାଇଲା ? କୋଉଠି ଶୋଇଲା ?"

ତାଙ୍କ ସଂସ୍ପର୍ଶରେ ଆସୁଥିବା ଯେକୌଣସି ବ୍ୟକ୍ତି ଆଖିରେ ପଡ଼େ ଏହିଭଳି ଶହ ଶହ ଘଟଣା ଯେଉଁଥିରେ ଦେଖାଯିବ ସେ ମାତୃତ୍ୱର ଅହଙ୍କାର ନେଇ କନିଷ୍ଠଙ୍କୁ ନାଲି ଆଖି ଦେଖାନ୍ତି, କଳି କରନ୍ତି, ଅଭିମାନ କରନ୍ତି, ଭର୍ତ୍ସନା କରନ୍ତି, ପୁଣି ଆଲେକ୍‌ଜାଣ୍ଡାର୍ ସାଜି ତାକୁ ପୁରୁର ସମ୍ମାନ ଦିଅନ୍ତି । ସେହି ଅଭାବନୀୟ ଦୃଶ୍ୟ ବହୁବାର ଏ ଆଖିରେ ପଡ଼ିଛି ଆଉ ଗର୍କିଙ୍କର ବିଶ୍ୱବିଶ୍ରୁତ ଉପନ୍ୟାସ "ମା"ର ସ୍ଲୋଗାନ୍ ପରି ଚିତ୍କାର କରି କହିବାକୁ ଇଚ୍ଛା ହୋଇଛି—

"Three Cheers for freedom of speech, and three cheers for the heart of a mother."

( ଶୈଳଜ ରବଙ୍କ ଦ୍ୱାରା ସମ୍ପାଦିତ ଓ ଗ୍ରନ୍ଥମନ୍ଦିର କର୍ତ୍ତୃକ ପ୍ରକାଶିତ 'ମାଳତୀଦେବୀ — ଚହଦଟି ଚଦପଟ'ର ସୌଜନ୍ୟରୁ ଉଦ୍ଧୃତ । )

———

# ସ୍ମୃତିଚାରଣ—ଅପାଶୋରା ମୁହୂର୍ତ୍ତମାନଙ୍କର

□ ଡ. ତପନକୁମାର ମହାନ୍ତି

ତୁମାଙ୍କ ବିରାଟ ବ୍ୟକ୍ତିତ୍ୱ ସହ ମୋର ସମ୍ପର୍କ ସମ୍ପୂର୍ଣ୍ଣ ଏକ ଭିନ୍ନ ସ୍ୱାଦର ଓ ଏକ ଅଜଣା ତାଳର । ଯିଏ ସେତେବେଳର ତୁମାଙ୍କର ଦୈନନ୍ଦିନ ସମ୍ପର୍କରେ ଆସିଛି ସିଏ ହିଁ ଜାଣିଛି ସେ କିପରି ଦୁର୍ଦ୍ଧର୍ଷ, ପରାକ୍ରମୀ, କ୍ଷଣକୋପୀ ଅଗ୍ନିସ୍ଫୁଲିଙ୍ଗ ଭଳି ତେଜସ୍ୱାନ୍ ଥିଲେ । ଟିକେ ଏପଟ ସେପଟ ହେଲେ ପ୍ରଳୟ ସୃଷ୍ଟି କରିଦେବେ । ପ୍ରଜାମଣ୍ଡଳ ଆନ୍ଦୋଳନରେ ରାଜଶକ୍ତିକୁ କମ୍ପିତ, ଅଥର୍ବ କରି ଦେଇଥିବା, ସ୍ୱାଧୀନତା ସଂଗ୍ରାମରେ ବ୍ରିଟିଶ ମହାଶକ୍ତିକୁ ଥରହର କରିପାରିଥିବା ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଣତନ୍ତ୍ରପ୍ରେମୀ ମନ୍ତ୍ରୀ ଓ ଅମଲାତନ୍ତ୍ରୀଙ୍କ ନିଦଭାଙ୍ଗି ଦେଇଥିବା ସେହି ପ୍ରବଳ ପରାକ୍ରମୀ ମନସ୍ୱୀଙ୍କ ସହ ମୋର ସ୍ମୃତି-ସ୍ମରଣ ଆଜି ଦୀର୍ଘ ୪୦ ବର୍ଷ ପରେ, ମତେ କେତେବେଳେ ଲଜ୍ଜିତ କରୁଛି ତ କେତେବେଳେ ଆହ୍ଲାଦିତ କରୁଛି । ଆଜି ତାଙ୍କ ସ୍ମରଣରେ ପ୍ରକାଶିତ ସ୍ମରଣିକାରେ ସେହିପରି କେତୋଟି ମହାର୍ଘ ସ୍ମୃତିର ଉଲ୍ଲେଖ କରିବାର ଲୋଭସମ୍ବରଣ କରି ନ ପାରି ଠିକ୍ କଲି ମୁଁ ସେହିପରି କାହୁଟା "ତିକ୍ତ-ମଧୁର", "ଯୁଦ୍ଧଂ ଦେହି-ସନ୍ଧିସ୍ଥାପନ" ସମ୍ପର୍କର ଅବତାରଣା କରିବି ।

୧୯୫୮ ମସିହାର କଥା । ମୋର ବାପା ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ତୁମାଙ୍କ ପରିଚାଳିତ ଉତ୍କଳ ନବଜୀବନ ମଣ୍ଡଳର ସଚିବ ଭାବେ କାର୍ଯ୍ୟଭାର ଗ୍ରହଣ କରିବା ପରେ ଆମେସବୁ ଅନୁଗୁଳ ଉତ୍କଳ ନବଜୀବନ ମଣ୍ଡଳ ପରିସରରେ ରହୁଥାଉ । ଆମେ କହିଲେ ମୋର ବାପା ଜୟକୃଷ୍ଣ ମହାନ୍ତି, ବୋଉ ସ୍ୱର୍ଗୀୟା କିରଣଲେଖା ମହାନ୍ତି ଓ ମୋର ୩ ଜଣ ଜ୍ୟେଷ୍ଠା ଭଉଣୀ ତଲି, ଗୌରି, ସୋମା ତଥା ଆମର ମାମୁଁ ସୁଭାଷଚନ୍ଦ୍ର । ତୁମା ବାପି ଆମ ଘରେ ବରାବର ଏକ ବେପେଇରେ ଖାଉଥାନ୍ତି । ଖାଇବା ବେଳେ କିଏ କଣ ଛୁଇଁଲା, କାହାକୁ ଭଲ ଜିନିଷ ଅଧିକ ଦିଆହେଲା, କିଏ ଖାଇବାବେଳେ ଗଣ୍ଡଗୋଳ କଲା, ଖାଦ୍ୟ ନଷ୍ଟ କଲା ଇତ୍ୟାଦି ସବୁଥିରେ ତୁମାଙ୍କ ସହ ମୋର ଛକା ପଞ୍ଝା ।

ତୁମାଙ୍କ ବାଘମୁଣ୍ଡି କୁଟୀର ପରିସରରେ ଥାଏ ଏକ ସୁନ୍ଦର ଫୁଲ ଓ ଫଳ ବଗିଚା । ମୁଁ, ମୋର ଭଉଣୀ ତଲି (ଏବେ ରାଜଧାନୀ ନର୍ସିଂହୋମ୍‌ର ଡାକ୍ତର ସବିତା) ଓ ଆମସହ ରହୁଥିବା ମୋର ସମବୟସୀ, ସହପାଠୀ ମାମୁଁ ସୁଭାଷଚନ୍ଦ୍ର ଏକାଠି ମିଶି ତୁମାଙ୍କ ବଗିଚା ସହ ପ୍ରତିଯୋଗିତା କରି ଆମଘର କମ୍ପାଉଣ୍ଡରେ କରିଥାଉ ଏକ ସମାନ୍ତରାଳ ବଗିଚା । ଦିନେ ତାଙ୍କ ବଗିଚାରୁ କିଛି ଫୁଲ କିଏ ଛିଣ୍ଡାଇ ନେଇଥିବାର ଦେଖି ସକାଳୁ ସକାଳୁ ବୁଢ଼ୀ ଅଗ୍ନିଶର୍ମା । ସିଧା ଦୌଡ଼ି ଆସିଲେ । ବାପାଙ୍କ ପାଖରେ ଅଭିଯୋଗ, ତପନ ବଦ୍‌ମାସ୍, ଚୋର । ମୋର ଫୁଲସବୁ ଛିଣ୍ଡାଇଛି । ମାର୍ ନମାର । ଚିତ୍କାର କରି କହିଲେ ଜସ୍ୱୀ ! ତମେ ଏହାର ବିଚାର କର । ସେଥରର ସେହି ଫୁଲଛିଣ୍ଡା ମାମଲାରେ ମୋର କିନ୍ତୁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ କୌଣସି ସମ୍ପର୍କ ନଥିଲା । ତେଣୁ ମୁଁ ମଧ୍ୟ ପାଖରେ ପଡ଼ିଥିବା ଗୋଟେ ବଡ଼ ମାଙ୍କଡ଼ାପଥର ହାତରେ ଉଠାଇ ଆଣି ୨ ଗୁଣ ଚଢ଼ାଗଲାରେ ତାଙ୍କୁ ପ୍ରତିଆକ୍ରମଣ ପାଇଁ ପ୍ରସ୍ତୁତ ହୋଇଗଲି । କହିଲି "ମାଙ୍କିଡ଼ି ବୁଢ଼ୀ—ତୋ ମୁଣ୍ଡ ଫଟାଇ ଛତୁ କରିଦେବି ।" "ଜସ୍ୱୀ ! ଏ ପିଲାକୁ ସମ୍ଭାଳ । ମତେ ମାରିଦେବ ।" ବାପା ଧର୍ମସଙ୍କଟରେ ପଡ଼ିଲେ । ତୁମା ପରେ ଯେତେବେଳେ ଜାଣିଲେ ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ, ସାଙ୍ଗେ ସାଙ୍ଗେ ମତେ ଡକାଇ ସବୁ ରଫା କରିଦେଲେ ।

ସେହିପରି ଆଉ ଦିନକର ଘଟଣା । ଆମଘରେ ଥିବା ଜର୍ସିଗାଈ ପାଇଁ ମୁଁ ଓ ମୋର ମାମୁଁ ଅବସର ବେଳେ ଘାସ ସଂଗ୍ରହ କରୁ । ଗାଈର ରକ୍ଷଣାବେକ୍ଷଣ କାମ ଆମ ଉପରେ ନ୍ୟସ୍ତଥାଏ । ଦିନେ ତୁମାଙ୍କ ବଗିଚାରୁ ଘାସ ଆଣିବା ବାହାନାରେ ତାଙ୍କ ବଗିଚାରେ ଫଳିଥିବା ଲୋଭନୀୟ ବାଇଗଣ ୨, ୩ କିଲୋ ଛିଣ୍ଡାଇ ଘାସ ବସ୍ତାରେ ଲୁଚାଇ ନେଇଆସିଲୁ । ଯୋଜନା ଥିଲା—ପାଖରେ ଥିବା ଏକ କ୍ୟାଣ୍ଟିନ୍ ଦୋକାନରେ ଗଟିକା ବାଇଗଣ ବଦଳଦେଇ ସେଠି ମିଳୁଥିବା ସ୍ୱାଦିଷ୍ଟ ନଡ଼ିଆ ବିସ୍କୁଟ ଖାଇବୁ । ବୁଢ଼ୀର

ବଗିଚ୍ଚ ଲଣ୍ଠାକର ତାକୁ ମଧ୍ୟ ପାନେ ଦେବୁ । ହେଲେ ଏଥର ପରିସ୍ଥିତି ଆମର ପ୍ରତିକୂଳରେ ଗଲା । ଆମ ଅନୁପସ୍ଥିତିରେ ନୁମା ଓ ବାପିଙ୍କର ମିଳିତ ଉଦ୍ୟମରେ ଆମଘରେ ଖୋଲତାଡ଼ ହୋଇ ଗାଈ ପାଇଁ ଉଦ୍ଦିଷ୍ଟ କୁଣ୍ଡା ଚାଉଳକୁ ବାଇଗଣମାନେ ଆବିଷ୍କୃତ ହେବାପରେ ଆମର ଆଉ ଖସିବାର ଉପାୟ ନଥିଲା । ନଞ୍ଜ୍ଆବିଷ୍କୃତ ପଥବର୍ତ୍ତୀ କିଛି ସୁସ୍ୱାଦୁ ଉତ୍ତମ ମଧ୍ୟମ ଗୋପାଳ ହିଁ ସାର ହେଲା । ଏ ଘଟଣାରେ ପୂର୍ବରୁ ଅଗ୍ରଣୀ ସାଜିଥିବା ନୁମା ଆମେ ଦଣ୍ଡିତ ହେବା ଦେଖି ନିଆଁରେ ପାଣି ଧଡ଼ିବା ଭଳି ଶାନ୍ତ ହୋଇ ତାଙ୍କର ଅସୁମାରି ସ୍ନେହମମତାର ପ୍ରଲେପରେ ଆମ ୨ ଜଣଙ୍କର ଶାରୀରିକ ଓ ମାନସିକ ଯନ୍ତ୍ରଣାର ଉପଶମ କରାଇଥିଲେ ।

କିଛି ଗୋଟାଏ ଭଲ ଜିନିଷ ପାଇଲେ ଆଉ ଖୋଜୁଥିଲେ ତପନ କାହିଁ ? ମୁଁ ତା ପାଇଁ ଗୋଟେ ଚମତ୍କାର ଉପହାର ଦେବ । ସନ୍ଧ୍ୟାରେ ବସି ମୋ ଠାରୁ ଖବରକାଗଜ ଶୁଣିବା, ତାଙ୍କସହ ସ୍କ୍ରାବୁଲ୍ (ଇଂରାଜୀ ଶବ୍ଦ ଗଠନଖେଳ) ଖେଳିବା, ବାଳ ପତ୍ରିକା ହାତରେ ଲେଖି ପ୍ରକାଶ କରିବା, ମହୁମାଛି ଧରି ବାକ୍ସରେ ରଖିବା, ଦେଶ ବିଦେଶର ଷ୍ଟାମ୍ପ ସଂଗ୍ରହ କରିବା, ଗୋଲାପ ଗଛରେ ଆଖି କଲମୀ ଶିଖାଇବା, ତାଙ୍କ ସହ ରବୀନ୍ଦ୍ର ସଙ୍ଗୀତ ବୋଲି ନାଚିବା, କୁଦିବା ପାଇଁ ସବୁବେଳେ ମତେ ଓ ମୋର ସାନଭଉଣୀ ଡଲିକୁ ଖୋଜୁଥିଲେ ।

ମୃତ୍ୟୁର ପୂର୍ବ ବର୍ଷ । ବାଳିକାଉଚ୍ଚ ଛାତ୍ରାବାସର ସୁବର୍ଣ୍ଣ-ଜୟନ୍ତୀ ପାଳନ ଉତ୍ସବରେ ଯୋଗ ଦେବାର ଅବସରରେ ମୃତ୍ୟୁ-ପ୍ରତ୍ୟାଶୀ ନୁମାଙ୍କୁ ଦେଖିବାର ଉତ୍କଣ୍ଠା, ଦୀର୍ଘବର୍ଷର ବ୍ୟବଧାନରେ ଆମମାନଙ୍କୁ ଅନୁଗୁଳକୁ ଟାଣି ନେଇଥିଲା । ଆଉ ସେଇଟା ହିଁ ତାଙ୍କସହ ମୋର ଶେଷଦେଖା । ସେଠି ପହଞ୍ଚି ନୁମାଙ୍କର ଦୀର୍ଘ ରୋଗାକ୍ରାନ୍ତ, ଅବସନ୍ନ, ସୁପ୍ତ ତଥା ନିର୍ଲିପ୍ତ ଚେହେରା ଦେଖି ମନଟା ଯେତିକି ଦବିଗଲା ଠିକ୍ ସେହିପରି ତାଙ୍କ କୃତକର୍ମରେ ଗଢ଼ିଉଠିଥିବା ଅନୁଷ୍ଠାନର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗରେ ପୂର୍ବର ସେହି ଜୀବନ, ଯୌବନ, ବିପ୍ଳବ, କର୍ମ ଚଞ୍ଚଳତା ତଥା ଅସୁମାରି କୃତ୍ତିର ଝଲକର ଅନୁପସ୍ଥିତି ଦେଖି ହତାଶା ଓ ଦୁଃଖରେ ଅବସନ୍ନ ଓ କ୍ଳାନ୍ତ ଲାଗିଲା ।

ସେଠି ସିନା ନୁମା ଥିଲେ, ଥିଲା ତାଙ୍କ ଗିରିଜାଭବନ, ଶାନ୍ତିମନ୍ଦିର । ସେଠି ମଧ୍ୟ ଥିଲେ ସର୍ବେଶ୍ୱର, ହରି, ଦିବାକର ଓ ବଂଶୀ ଗୁରୁଜୀବୃନ୍ଦ । ସେଠି ବି ଶୁଭୁଥିଲା ବୀଣାଝଙ୍କାରରେ ରବୀନ୍ଦ୍ର ସଙ୍ଗୀତର ମୂର୍ଚ୍ଛନା । ମହିଳାଶିବିର, କନ୍ୟାଶ୍ରମ ତଥା ଛାତ୍ରାବାସର ଅନ୍ତେବାସୀ ଝିଅ ଅପାମାନେ ଆତଯାତ ହେଉଥିଲେ । ସେଠି ବି ଶୁଭୁଥିଲା ଘଣ୍ଟାଧ୍ୱନି— ଓଁ ତତ୍ସତ୍, ଯେନବା ଅଗରୁ ମୁକ୍ତୋ……ମନ୍ତ୍ର ଉଚ୍ଚାରଣ । ସେଠି ମଧ୍ୟ ଚାଲିଥିଲା ଶ୍ରମଦାନ, ବୈତାଳିକ୍, ସୂତାଯଜ୍ଞ, ଲେଜିମର ତାଳେତାଳେ ନୃତ୍ୟ ଗୀତର ଆସର ତଥା ସଂଭୋଜନ । କିନ୍ତୁ ସେଦିନ ସବୁ ଖାପଛଡ଼ା ଲାଗୁଥିଲେ । ସବୁ ଭିତରେ କିଛି ଗୋଟାଏ ଜୀବନୀଶକ୍ତିର ଅଭାବ—ଶୂନ୍ୟତା ଖୁବ୍ ଅସ୍ୱସ୍ତିକର ମନେହେଲା । ଲାଗିଲା ଯେପରି ପୂର୍ବର ଅଫୁରନ୍ତ ଉତ୍ସାହ, ଉଦ୍ଦୀପନା ସବୁ ମରି ହଜିଗଲେଣି । ପ୍ରାଣଶକ୍ତି ବିହୀନ, ଅଥର୍ବ, ନିର୍ଜୀବ ପାଲଟିଗଲେଣି ।

ଦୀର୍ଘ ୪୦ ବର୍ଷ ତଳର ସ୍ମୃତି ରୋମନ୍ଥନ, ଆହ୍ଲାଦ, ଉନ୍ମାଦନା ପରିବର୍ତ୍ତେ ଆଣିଦେଲା ଅପରନ୍ତ ହତାଶା । ଆଉ ସେହି ହା-ହୁତାଶର ବହ୍ନିରେ ଦଗ୍ଧ ମୁଁ ଏକା ଏକା ଖୋଜିବୁଲିଲି ମୋର ପୂର୍ବ ପରିଚିତ ଆମ୍ବ ବଗିଚାର ବାସ୍ନା, କୃଷ୍ଣଚୂଡ଼ାର ରଙ୍ଗ, ମହୁମାଛିର ଗୁଞ୍ଜରଣ, ମଧୁମାଳତୀର ମହକ ତଥା ଜାମୁଁ, ପଁଳା ଗଛମାନଙ୍କର ଅଝଠାର । ଖୋଜିଲି ମୁଁ କଳାମନ୍ଦିର କାନ୍ଥରେ ଜଗାମାମୁଙ୍କ ହାତଗଢ଼ା ମୂର୍ତ୍ତିମାନଙ୍କର କଥାକୁହା ଚେହେରା । ଖୋଜିଲି ଗୋଶାଳାର କାମଧେନୁ ମାଇକୁ । ଖୋଜିଲି ତନ୍ତଘର, ବଢ଼େଇଶାଳର ଉପକରଣମାନଙ୍କୁ, ଖୋଜିଲି ରବିବାର ହାଟଫେରନ୍ତା ନାଲି କାନ୍ତାର ଅଙ୍କୁ ଓ ସୁଖିଦୁ ବିଡ଼ିଆଳର ପରିବାମାନଙ୍କୁ । ଖୋଜିଲି ବାଧାଙ୍କବାଇ ଓ ଭୂମି ଗୁରୁଜୀଙ୍କ ଅଧାଶୋରା ସ୍ନେହମମତାକୁ । ଏମାନେ ସତେ ଯେପରି ମଧ୍ୟ ହଜି ଯାଇଥିଲେ କିମ୍ବା ତାଙ୍କର ପ୍ରିୟ ସ୍ରଷ୍ଟା ନୁମାଙ୍କ ସହ ତାଳଦେଇ ମୃତ୍ୟୁ ଅପେକ୍ଷାରେ ଦିନ ଗଣୁଥିଲେ । ରାତାରାତି ଆମେ ଭୁବନେଶ୍ୱର ଫେରିଆସିଲୁ ।

———

# ଭାବକୁ ନିକଟ

□ ଦେଶବନ୍ଧୁ ସ୍ୱାଇଁ

ନାରୀନେତ୍ରୀ କହିଲେ ଅସ୍ତରଙ୍ଗ ଅଞ୍ଚଳର ଜନମାନସରେ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ମୁହଁ ଝଲସିଉଠେ । କାରଣ ଏ ଅଞ୍ଚଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପୂର୍ଣ୍ଣାନନ୍ଦ ସ୍ୱାଇଁ ଥିଲେ ମାଳତୀଦେବୀଙ୍କ ସ୍ୱାମୀ ନବକୃଷ୍ଣ ଚୌଧୁରୀଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ତେଣୁ ସ୍ୱାମୀ-ସ୍ତ୍ରୀ ବହୁବାର ଆସି ପୂର୍ଣ୍ଣାନନ୍ଦବାବୁଙ୍କର ଆତିଥ୍ୟ ଗ୍ରହଣ କରିବା ସହ ଏ ଅଞ୍ଚଳରେ ଚାଲିଥିବା ମଠ ମହନ୍ତ ଓ ଜମିଦାରଙ୍କ ଅତ୍ୟାଚାର ବିରୋଧରେ ସଭା ସମିତି କରି ଦରିଦ୍ର କୃଷୀଙ୍କୁ ସଂଗଠିତ କରାଇଥିଲେ ।

ଅସ୍ତରଙ୍ଗ ଅଞ୍ଚଳ ମାଛ-କଙ୍କଡ଼ା ଲାଗି ପ୍ରସିଦ୍ଧ । ନବବାବୁଙ୍କର ଖାଦ୍ୟପେୟ ଉପରେ ବିଶେଷ ଲାଳସା ନ ଥାଏ । ଯାହା ହେଲେ ଚଳିବ । କିନ୍ତୁ ମାଳତୀଦେବୀ ଅସ୍ତରଙ୍ଗ ଆସିଲେ ଅଳିଅଝଟ ତାହାଣୀ ପାଲଟି ଯା'ନ୍ତି । ପହଞ୍ଚୁ ପହଞ୍ଚୁ ପୂର୍ଣ୍ଣାନନ୍ଦବାବୁଙ୍କୁ କହିବେ—ଆଜି ଆମକୁ ମାଛ ଝୋଳ ଖୁଆଇବେ ତ ? ସାରୁ, ଦେଶୀଆଳୁ ପଡ଼ି ହୋଇଥିବା ମାଛ ଘାଣ୍ଟ ବି ତାଙ୍କର ପ୍ରିୟ ବ୍ୟଞ୍ଜନ ଥିଲା । କଙ୍କଡ଼ା ହେଲେ ତ ଅତୁଳ ଖୁସି ।

ଆମ ପାଟଳଦା ଗ୍ରାମର ନାରୀ ସ୍ୱାଧୀନତା ସଂଗ୍ରାମୀ ବିମଳା ଦେଇ ଜଣେ ବ୍ରାହ୍ମଣୀ ବାଳ ବିଧବା । ପୂର୍ଣ୍ଣାନନ୍ଦ ବାବୁଙ୍କ ପ୍ରରୋଚନାରେ ସେ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ ମଧ୍ୟ ମାଳତୀଦେବୀଙ୍କ ଅଗ୍ନିବର୍ଷୀ ଭାଷଣ ତାଙ୍କୁ ଅଧିକ ଅନୁପ୍ରାଣିତ କରିଥିଲା ।

ଅସ୍ତରଙ୍ଗ ଅଞ୍ଚଳର ନାରୀ ଜାଗୃତି ଲାଗି ମାଳତୀଦେବୀଙ୍କ କାର୍ଯ୍ୟକ୍ରମ ସମ୍ବନ୍ଧରେ ମୁଁ ବିମଳା ଦେଈଙ୍କଠାରୁ ଶୁଣିଥିଲି । ତେବେ ତାଙ୍କ ସମ୍ବନ୍ଧରେ ଯଥେଷ୍ଟ କିଛି ଜାଣିବାର ସୁଯୋଗ ଖବରକାଗଜରୁ ମିଳିଲା ଯେତେବେଳେ କି ସେ ନନ୍ଦିନୀ ଶତପଥୀଙ୍କ ସହ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ।

'ଅଗ୍ନିଶିଖା'ର ଏହି ମହିୟସୀ ମହିଳାଙ୍କୁ ଦେଖିବାର ସୁଯୋଗ ମିଳିଲା ଉତ୍ତୀର୍ଣ୍ଣ ଜୈଷ୍ଠର ଏକ ନିଦାଘ ମଧ୍ୟାହ୍ନରେ ତାଙ୍କ ଅନୁଗୁଳସ୍ଥ ବାଜିରାଉତ ଆଶ୍ରମରେ । ମସିହା ୧୯୮୬ ।

ପୂର୍ଣ୍ଣାନନ୍ଦବାବୁଙ୍କ ଦ୍ୱାରା ପ୍ରତିଷ୍ଠିତ ଅସ୍ତରଙ୍ଗ ଅଞ୍ଚଳର ସର୍ବପୁରାତନ ସ୍କୁଲ ରାଜା ବିକ୍ରମଦେବ ସି.ଇ. ସ୍କୁଲର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା ଉଦ୍ଦେଶ୍ୟରେ ଲେଖାଟିଏ ପଠାଇବା ଲାଗି ନବବାବୁଙ୍କୁ ଅନୁରୋଧ ପୂର୍ଣ୍ଣ ଚିଠିଟିଏ ଲେଖା ଯାଇଥିଲା । ଉତ୍ତର ମିଳିଲା ସେ ଶାରୀରିକ ତଥା ମାନସିକ ଅସୁସ୍ଥତା ଯୋଗୁଁ ସେ କିଛି ଲେଖିବା ପାଇଁ ଅସମର୍ଥ । ଯଦି କେହି ତାଙ୍କ ନିକଟକୁ ଯାଏ ତ'ାହେଲେ ସେ ଚେଷ୍ଟା କରିବେ ।

ବିଭିନ୍ନ ଅସୁବିଧା ଯୋଗୁଁ ଜୟନ୍ତୀ ଉତ୍ସବ ପୁଞ୍ଚିଗଲା । ସ୍କୁଲ ସମ୍ପାଦକଙ୍କ ପରାମର୍ଶକ୍ରମେ ବର୍ଷକ ପରେ ନବବାବୁଙ୍କ ଅନୁଗୋଳ ଆଶ୍ରମକୁ ମୋତେ ଯିବାକୁ ହୋଇଥିଲା ।

ଫାଟକ ଡେଇଁ ପ୍ରବେଶ କରିବା ମାତ୍ରେ ପ୍ରଥମେ ଦେଖା ହେଲେ ମାଳତୀଦେବୀ । ଖବରକାଗଜରୁ ଫଟୋ ଦେଖିଥିଲି । ତେଣୁ ପାଦଧୂଳି ମୁଣ୍ଡରେ ନେଇ ମୋର ପରିଚୟ ଦେଲି । ବୁଢ଼ୀ ଆନନ୍ଦରେ ଗଦ୍ ଗଦ୍ ହୋଇ ମୋତେ ପାଛୋଟି ନେଇ ଆଶ୍ରମ ବାରଣ୍ଡାରେ ବସାଇଲେ ।

ଆଶ୍ରମଟି ଅନେକାଂଶରେ ଗାନ୍ଧୀଜୀଙ୍କ ସାବରମତି ଆଶ୍ରମ ଭଳି । ନଡ଼ାଛପର । ଚଟାଣ ମାଟି-ଗୋବରରେ ଲିପାପୋଛା ହୋଇ ବେଶ୍ ସଫାସୁତରା । କିନ୍ତୁ ସେ ଘରେ ଫ୍ୟାନ୍ ଥିଲା, ଫ୍ରିଜ୍‌ଟିଏ ମଧ୍ୟ ଥିଲା । ପରଦା ବି ଟଙ୍ଗା ଯାଇଥିଲା ।

ନବବାବୁ ନଥିଲେ । ଖାଇବାକୁ ଯାଇଥିଲେ । ଏହି ଅବସରରେ ଆମ ପରିବାର ତଥା ଅଞ୍ଚଳର ଭଲ ମନ୍ଦ ଖବର ପଚାରିଲେ ମାଳତୀଦେବୀ । ପ୍ରଥମେ ପଚାରିଲେ ବିମଳା ଦେଈ ସମ୍ବନ୍ଧରେ । ରକ୍ଷଣଶୀଳ ବ୍ରାହ୍ମଣ ପରିବାରର ବିଧବା

ବୋହୂଟିଏ ହୋଇ ସେ କପର ମୁଣ୍ଡରୁ ଓଢ଼ଣା ଖସାଇ ସଂଗ୍ରାମ ଭୂମିକୁ ଡେଇଁ ପଡ଼ିଥିଲେ, ଢାକଟପୁର ନଳଟସ୍ଥ ମୂଳାଗଡ଼ ଆଶ୍ରମରେ ବଡ଼ ସକାଳୁ ବିଳମ୍ବିତ ରାତି ପର୍ଯ୍ୟନ୍ତ ଡେଇଁ ରହି ସନ୍ତାନୀମାନଙ୍କର ପରିଚର୍ଯ୍ୟା କରିବା ସହ ସୂତାକଟା କାର୍ଯ୍ୟକ୍ରମକୁ ପରିଚାଳିତ କରୁଥିଲେ ।

ତା'ପରେ ସ୍କୁଲ କଥା, ଅନ୍ତରଙ୍ଗ ଲୁଣ ସୋସାଇଟି କଥା, ମୂଲିଆଙ୍କ ମୂଲ-ମଜୁରି କଥା, ଛୁଆଁ ଅଛୁଆଁ କଥା···ଏମିତି କ'ଣ ନାହିଁ କ'ଣ ! ମାଳତୀଦେବୀ ସ୍ମୃତିରେ ସ୍ନାନ କରୁଥିଲେ । ଜଙ୍ଘ ଉପରେ ଡୋର ସ୍ପ୍ରିଙ୍ଗ୍ ଟିଏ ପକାଇ ସିଲେଇ କରୁଥିବା ଶିରାବହୁଳ ହାତ ଅଟକ ଯାଉଥାଏ ମଝିରେ ମଝିରେ ।

କି ସୁନ୍ଦର ଶବ୍ଦ ! ଅନ୍ତରଙ୍ଗ ଅଞ୍ଚଳ ତଥା ପୂର୍ଣ୍ଣାନନ୍ଦ ବାବୁଙ୍କ ସହିତ ସେତକ ଭାବ ଥିଲା ବୋଲି ସିନା ସବୁକଥା ତାଙ୍କର ଏଭଳି ପ୍ରାଞ୍ଜଳ ଭାବେ ମନେରହିଥିଲା । ଭାବ ନଥିଲେ ତ ସବୁ କଥା ଦୂର । ବିହ୍ୱଳିତ ହୋଇ ମୁଁ ତାଙ୍କ କଥା ଶୁଣୁଥିଲି ଓ ପ୍ରଶ୍ନ ସବୁର ଉତ୍ତର ଦେଉଥିଲି ।

ଶେଷରେ କଥା ଛୁଡ଼ିଲେ ଇଲିଶି ମାଛଠେଇଁ । —ଆଉ ଇଲିଶି ମିଳୁଛି ନା ?

ଗା ନା ଚମ୍ପଣପୁର, ଖାଇଲେ ବେଳକୁ ଭୁଲା—ଏଇଥା କହି ଉତ୍ତର ଆରମ୍ଭ କରିବାକୁ ଯାଉଥିଲିବେଳେ ମାଳତୀ-ଦେବୀ ଅଗଣା ଆଡ଼କୁ ଚାହିଁ ବଡ଼ ପାଟିରେ ଆନନ୍ଦର ସହ କହି ଉଠିଲେ—ବାପି, ଦେଖିଲଣି, ଅନ୍ତରଙ୍ଗ ପୂର୍ଣ୍ଣାନନ୍ଦ ସ୍ୱାଇଁଙ୍କର ନାତି ଆସିଛନ୍ତି ।

—କଏ, ଅନ୍ତରଙ୍ଗ ପୂର୍ଣ୍ଣାନନ୍ଦ ?—ନବବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

—ହଁ, ହଁ, ଅନ୍ତରଙ୍ଗ ।

ନବବାବୁ ବାରଣ୍ଡାକୁ ଉଠିବା ମାତ୍ରେ ମୁଁ ତାଙ୍କ ପଦ ଧୂଳି ଗ୍ରହଣ କଲି । ପ୍ରଶସ୍ତ ବାରଣ୍ଡାରେ ପଡ଼ିଥିବା ଏକ ଖାଲି ଖଟ ଉପରେ ସେ ଚିତ୍ ହୋଇ ଶୋଇ ପଡ଼ିଲେ ।

ଆସିବାର ଅଭିପ୍ରାୟ ଜଣାଇବା ପରେ ସେ କହିଲେ—କ'ଣ ସବୁ ଲେଖିବ ? ଆଖିକୁ ତ ଆଉ ଦିଶୁନ, ମୁଣ୍ଡ ବି ଆଉ କିଛି କାମ କରୁନ । ଆମ କଥାରେ ଆଉ କି ମୂଲ୍ୟ ଅଛି ଯେ ଆମ କଥା ତୁମେ ନେଇ ଛାପିବ ?—ଅଭିମାନରେ ତାଙ୍କ କଣ୍ଠ ଭରିଉଠୁଥିଲା ।

—ଅଯଥାରେ ଏତେ ବାଟରୁ ଆସିଲ ।

—ଆପଣ ଆଜ୍ଞା ଲେଖିଥିଲେ ଆସିବା ପାଇଁ ।

—ମୁଁ ଲେଖିଥିଲି ? ?

ଏହି ସମୟରେ ମାଳତୀଦେବୀ ତାଙ୍କ କଥାରେ ହସ୍ତକ୍ଷେପ କରି କହିଲେ—ହଁ ଲେଖିଥିବ । ତୁମର ତ କିଛି ଆଉ ମନେ ରହୁନ । ନ ଲେଖିଥିଲେ ପୁଅ କ'ଣ ମିଛ କହୁଥାନ୍ତା ?

ଶୁଣା କଥା ସତ ହେଲା । ମାଳତୀଦେବୀଙ୍କର ଅମୃତ ବଚନ ସେହି ମୁହୂର୍ତ୍ତରୁ ମୋତେ ତାଙ୍କର ଗ୍ରେଟିଆ ପୁଅଟିଏ କରିଦେଲା ।

ନବବାବୁ ଲେଖା ଡାକିବା ଅବସ୍ଥାରେ ନଥିଲେ । ତାଙ୍କ ସହ ହୋଇଥିବା କଥାବାର୍ତ୍ତାର ସାରାଂଶକୁ ମୁଁ ସୁରକ୍ଷିତ ଉଦ୍ଦେଶ୍ୟରେ ଟିପି ଆଣିଥିଲି ।

ଏହି ସମୟରେ ଜଣିଏ ଲୋକ ହାତରେ କିଛି କାଗଜ-ପତ୍ର ଧରି ଆସି କହିଲେ—ଆଜି କିଛି ଚିଠି ଆସିନାହିଁ ଆଜ୍ଞା ।

—କେଉଁଦିନ ଆଉ ଆସୁଛି ଯେ ଆଜି ଆସିବାନ । ଆମକୁ ଆଜିକାଲି କିଏ ଖୋଜୁଛି ? ଆମେ ସବୁ ଅଚଳ ଦୋଅଣି ।

—ଆଜ୍ଞା, ପୂର୍ଣ୍ଣାନନ୍ଦବାବୁ ମରିବାର କେତେ ବର୍ଷ ହେଲା ?

—ବାଇଶି ବର୍ଷ । —ମୁଁ ଉତ୍ତର ଦେଲି ।

—ଶୀଘ୍ର ମରିଯାଇ ଭଲ ହୋଇଛିରେ ବାପା । ମୋ ଭଳି ବେଶୀ ଦିନ ବଞ୍ଚିଥିଲେ ବର୍ତ୍ତମାନ ଦେଶର ଏ ଅବସ୍ଥା ଦେଖି ଭାରି କଷ୍ଟ ପାଉଥାନ୍ତା ।

ତା'ପରେ ନବବାବୁ ଦୀର୍ଘ ସମୟ ଲାଗି ନୀରବ ହୋଇ-ଗଲେ ଓ ତାଙ୍କ ଆଖିରେ ଲୁହ ଭରିଆସିଲା । ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ଖେଦ ମୋତେ ସେଦିନ ଖୁବ୍ ବ୍ୟଥିତ କରିଥିଲା ।

ସମୟ ସାଢ଼େ ଚାରି ହୋଇ ଯାଇଥିଲା । ବୁଢ଼ାଙ୍କଠାରୁ ମୁଁ ବିଦାୟ ନେଲି । ଏହାପରେ ମାଳତୀଦେବୀ ମୋତେ ତାଙ୍କ ଆଶ୍ରମ ବୁଲାଇ ଦେଖାଇଲେ । ତା'ର ମଧ୍ୟରେ ଉପଦେଶ—ସମାଜର ଦରିଦ୍ର, ଅବହେଳିତ ଶିଶୁଙ୍କ ପାଇଁ କିଛି କାମ କରିବା ଲାଗି । ସେମାନଙ୍କ ମୁହଁରେ ଯଦି ହସ ନ ଫୁଟିଲା ତେବେ ଆମ ସ୍ୱାଧୀନତା ପ୍ରାପ୍ତିର ମୂଲ୍ୟ କ'ଣ ?

ମାଳତୀଦେବୀଙ୍କର ଏହି କଥା ଦୀର୍ଘ ଷୋଳ ବର୍ଷ ତଳର । ଏଥିମଧ୍ୟରେ ଆମ ଦେଶର ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳିତ ହୋଇ ଯାଇଛି ମହା ଆଡ଼ମ୍ବରରେ । ହେଲେ ଗାନ୍ଧୀଙ୍କ ସ୍ୱପ୍ନ ଯାହା ମାଳତୀଦେବୀଙ୍କ କଣ୍ଠରେ ସେଦିନ ପ୍ରତିଧ୍ୱନିତ ହୋଇଥିଲା, ତାହା କ'ଣ ସତରେ ପୂରଣ ହୋଇ ପାରିଛି ?

ଗ୍ରାମ / ପୋଷ୍ଟ-ପାଟଲଦା
ଥାନା-ଅନ୍ତରଙ୍ଗ, ଜିଲ୍ଲା-ଅନୁଗୁଳ—୭୫୯୧୦୯

———

# ନୁମାଙ୍କ ମାନସସନ୍ତାନ ବାଜିରାଉତ ଛାତ୍ରାବାସ

☐ କରଣଲେଖା ମହାନ୍ତି

ଆଜି ଅତୀତର ଅନେକ କଥା ମନେପଡ଼େ । ଧୀରେ ଧୀରେ ଛାତ୍ରାବାସର ପଚାଶବର୍ଷ ପୂରିଯାଉଛି । ତେଣୁ ତାର ସୁବର୍ଣ୍ଣଜୟନ୍ତୀ ଉତ୍ସବ ପାଳନ କରାଯାଉଛି । ପ୍ରତିବର୍ଷ ଜନ୍ମଦିନରେ ହାତଲେଖା ବାଜି ପତ୍ରିକାଟିଏ ପ୍ରକାଶ ପାଏ । ଏ ବର୍ଷ ବାଜି ପତ୍ରିକା ଛପାଯିବ । ଏଥିପାଇଁ ସମ୍ପାଦକ ମତେ ଲେଖାଟିଏ ମାଗିଛନ୍ତି । ମୁଁ ଲେଖାଲେଖିରେ ପାରଙ୍ଗମ ନୁହେଁ ।

ବାଜିରାଉତ ଛାତ୍ରାବାସ ନୁମାଙ୍କର ମାନସ ସନ୍ତାନ । ସମସ୍ତେ ଜାଣିବାକୁ ଏହାର ଜନ୍ମ ୧୯୪୭ ମଇମାସ ୧୧ ତାରିଖରେ ହୋଇଥିଲା ସତ୍ୟ, ମାତ୍ର ନୁମାଙ୍କ ମାନସରେ ଏହା ଜନ୍ମ ନେଇଥିଲା କଟକ ଜେଲର ୮ ନମ୍ବର ଓ୍ୱାର୍ଡ଼ରେ, ୧୯୪୨ ମସିହାରେ । ସେତେବେଳେ ମୁଁ ମଧ୍ୟ ତାଙ୍କ ସଙ୍ଗେ ସେଇ କଟକ ଜେଲର ୮ ନମ୍ବର ଓ୍ୱାର୍ଡ଼ରେ ଥାଏ । ମୋର ବୟସ ହୋଇଥାଏ ୧୬ ବର୍ଷ । ନୁମା ମତେ ପଢ଼ାଇବା, ଗୀତ ଶିଖାଇବା, ଖାଇବା ପିଇବା ସବୁକଥା ମାଆଠାରୁ ଅଧିକ ସ୍ନେହରେ କରନ୍ତି । ତାଙ୍କ ସ୍ନେହ ସହାନୁଭୂତିରେ ମୁଁ କିଣି ହୋଇଯାଇଥାଏ । ଦିନେ ସେ ମତେ କହିଲେ 'ଦାଦା' (ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ) ରାମଚନ୍ଦ୍ରପୁରରେ ଯେମିତି ଗୋଟିଏ ମୌଳିକ ବିଦ୍ୟାଳୟ ସ୍ଥାପନ କରିଛନ୍ତି ସେହିଭଳି ବିଦ୍ୟାଳୟଟିଏ ଅନୁଗୁଳରେ କରିବା ମୋର ଇଚ୍ଛା । ଗଡ଼ଜାତ ଆନ୍ଦୋଳନରେ ଜେଲ ଯନ୍ତ୍ରଣା ଭୋଗୁଥିବା ସଂଗ୍ରାମୀମାନଙ୍କର ପିଲା ଏବଂ ଗରିବ ଆଦିବାସୀ, ହରିଜନ ପିଲା ସେଠାରେ ରହିବେ ଓ ପଢ଼ିବେ । ତୁ ଏଥିରେ ମତେ ସାହାଯ୍ୟ କର । ଏହା ମୋର ଇଚ୍ଛା । ତାଙ୍କର ଏ କଥାରେ ମୁଁ ହ ଭରିଥିଲି, ମୋର ପିତୃମାତୃ ସମ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ବାରିଠାରେ ଚଳାଇଥିବା କନ୍ୟାଶ୍ରମରେ ମୁଁ ୧୦ ବର୍ଷ ବୟସରୁ ରହି ମୌଳିକ ଶିକ୍ଷାରେ ତାଲିମ୍ ପାଇଥିଲି ଏବଂ ୧୯୪୨ ଆନ୍ଦୋଳନରେ ସେଇ ଆଶ୍ରମରୁ ଗିରଫ ହୋଇ ଜେଲ ଯାଇଥିଲି । ସମ୍ଭବତଃ ଏଇ କାରଣରୁ ସେ ମୋ ଉପରେ ଏତେ ଭରସା ରଖିଥିଲେ ।

ଜେଲରୁ ଖଲାସ ହେବାପରେ ଘରକୁ ଯାଇ ସେଠାରୁ କଟକ ସ୍ୱରାଜ୍ୟ ଆଶ୍ରମରେ ହେଉଥିବା ସ୍ୱାଧୀନତା ସଂଗ୍ରାମୀ ସମ୍ମିଳନୀରେ ଯୋଗଦେବା ପାଇଁ ମୁଁ ଆସିଥାଏ । ସେହିଠାରୁ ଅନୁଗୁଳ ଚାଲିଆସିଲି । ଏ ଖବର ପାଇ ମୋ ବାପା ବହୁତ ରାଗିଯାଇ ସଙ୍ଗେ ସଙ୍ଗେ ଘରକୁ ଫେରି ଆସିବାକୁ ମତେ ଚିଠି ଲେଖିଲେ । ତାଙ୍କ ଚିଠି ପାଇ ମୁଁ ଖୁବ୍ ଡରିଗଲି । ନୁମା ମଧ୍ୟ ଖୁବ୍ ବ୍ୟସ୍ତ ହୋଇପଡ଼ିଲେ । ମାତ୍ର ବାପିଙ୍କ ଖଣ୍ଡିଏ ଚିଠିରେ ଏ ସମସ୍ୟାଟି ସହଜରେ ସମାଧାନ ହୋଇଯାଇଥିଲା । କଟକର ପ୍ୟାରୀମୋହନ ଏକାଡେମିରେ ମୋ ବାପା ଓ ବାପି ସାଥୀ ହୋଇ ପାଠ ପଢ଼ୁଥିଲେ । ସେଇକଥା ମନେପକାଇଦେଇ ସେ ବାପାଙ୍କୁ ଲେଖିଲେ, ଭାଇ ବୈଦ୍ୟନାଥ, ତମ ଝିଅ କରଣ ମୋର ମଧ୍ୟ ଝିଅ । ତା ବୟସର ମୋର ମଧ୍ୟ ଗୋଟିଏ ଝିଅ ଅଛି । ଉଭୟ ଆମ ଦାୟିତ୍ୱରେ ରହୁଛନ୍ତି । ତେଣୁ ତୁମେ ନିଶ୍ଚିନ୍ତରେ ରହିବ । ମୋ ବାପାଙ୍କର ଚୌଧୁରୀ ପରିବାର ପ୍ରତି ଥିଲା ଅମାପ ଶ୍ରଦ୍ଧା ଓ ସମ୍ମାନ । ବାପିଙ୍କ ଚିଠି ପାଇ ନିଆଁରେ ପାଣି ଢାଳିବା ପରି ସେ ଚୁପ୍ ରହିଗଲେ । ତାଙ୍କ ରାଗ ଶାନ୍ତ ପଡ଼ିବା ଜାଣି ମୁଁ ଅନୁଗୁଳରେ ରହି କାମ ଆରମ୍ଭ କଲି ।

ଅଜା (ଗଡ଼ଜାତ ଆନ୍ଦୋଳନର ପୁରୋଧା ଶ୍ରୀ ସାରଙ୍ଗଧର ଦାସ) ଛାତ୍ରାବାସ କାମରେ ନୁମାଙ୍କୁ ପୂରା ସହଯୋଗ ଦେଇଥାନ୍ତି । ସେ ଗଡ଼ଜାତରୁ ପିଲା ଆଣିଲେ । ନୟାଗଡ଼ରୁ ଆସିଲେ, ଚନ୍ଦ୍ର, ଲକ୍ଷ୍ମଣ ମହାରଣାଙ୍କ ପୁଅ ମହି ଏବଂ ଶୁକ୍ର ବେହେରାଙ୍କ ଝିଅ ସାବି । ଢେଙ୍କାନାଳରୁ ଗୁଲି, ଶୁଲି, ଧନ୍ଦୁଲି, ନିତ୍ୟାନନ୍ଦ, ଗୋଲଖ, ରତ୍ନାକର ପ୍ରଭୃତି । ସମସ୍ତେ ପ୍ରଜାମଣ୍ଡଳର ସଂଗ୍ରାମୀମାନଙ୍କ ପିଲା । ଅନ୍ନ ଓ ଦୁର୍ଗା ଥିଲେ ସ୍ଥାନୀୟ ପିଲା । ନୁମା କିଛି ଆଦିବାସୀ ପିଲା ମଧ୍ୟ

ସଂଗ୍ରହ କରି ଆଣିଲେ । ନୂମାଙ୍କ ସାନଝିଅ ତନୁକୁ ସେତେବେଳେ ମାତ୍ର ସାତବର୍ଷ । ସେ ମଧ୍ୟ ଏହି ପିଲମାନଙ୍କ ସାଙ୍ଗରେ ସାମିଲ ହେଲା । ଏମାନଙ୍କୁ ନେଇ ଛାତ୍ରାବାସ ଆରମ୍ଭ ହେଲା ଗିରିଜା ଭବନରେ । ଅନୁଗୁଳର ପୂର୍ବତନ ବିଧାନସଭା ସଦସ୍ୟ ଶ୍ରୀ ଗିରିଜା ଭୂଷଣ ଦତ୍ତଙ୍କ ନାମାନୁସାରେ 'ଗିରିଜା ଭବନ' ନାମିତ । ସରକାର ଏବଂ ଗଡ଼ଜାତ ରାଜାଙ୍କ ଧମକ ଚମକରେ ଡରି ନଯାଇ ସେ ସ୍ୱାଧୀନତା ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନରେ ସାହାଯ୍ୟ କରୁଥିଲେ । ତାଙ୍କଠାରୁ ଖଣ୍ଡିଏ ଜମି ଓ ତା ଉପରେ ଥିବା ୩ ବଖରା ଘରଟି ନୂମା କିଣି ନେଇଥିଲେ, ଏବଂ ସେଇ ସ୍ଥଳରେ ଛାତ୍ରାବାସ ଓ ବିଦ୍ୟାଳୟର ଶୁଭାରମ୍ଭ । ପ୍ରଥମ ଅବସ୍ଥାରେ ଗିରିଜା ଭବନରେ ହିଁ ରାନ୍ଧିବା, ଖାଇବା, ପଢ଼ିବା, ଶୋଇବା ଆଦି ସବୁକାମ ଚାଲିଲା । ପରେ ସେଇଘର ସାମନାରେ ଜେଲା କୁଡ଼ିଆ ଭଳି ଚାଳପଟର ଏକ ଗୋଲକାର ଗମ୍ବୁଜାକୃତି ଘର ନୂମାଙ୍କ ପାଇଁ କରାଗଲା ଏବଂ ଅଜାଙ୍କ ରହିବା ପାଇଁ ନିକଟରେ ଛୋଟ ଚାଳ ଘରଟିଏ ତିଆରି ହେଲା । ଅଜା ଓ ନୂମା ପିଲଙ୍କର ଖାଇବା ବାସନ, ପିନ୍ଧିବା ଜାମା ପ୍ୟାଣ୍ଟ, ବିଛଣା, ଦରି, ଚାଦର ଆଦି ଜିନିଷ ଚାନ୍ଦାରେ ସଂଗ୍ରହ କରି ଆଣନ୍ତି । ଡାଲିଚାଉଳ ଆଦି ମଧ୍ୟ ସଂଗ୍ରହ କରିଆଣନ୍ତି ଏବଂ ବେଳେବେଳେ ନୂମା କଟକ ଘରୁ ମଧ୍ୟ ଚାଉଳ ଆଣନ୍ତି । ସବୁ ଗୁରୁତ୍ୱପୂର୍ଣ୍ଣ କାମ ଭିତରେ ମଧ୍ୟ ସେ ନିଜି ଦ୍ୱାରି ସନ୍ତାକଡ଼ ଗଛରୁ ଶୁଖିଲା ଡାଳଗୁଡ଼ିକ ଜାଳ ସଂଗ୍ରହ କରନ୍ତି । ମୌଳିକ ଶିକ୍ଷକ ତାଲିମ ନେବାପାଇଁ ନୂମାଙ୍କ ବଡ଼ଝିଅ ବୁବୁ ସେବାଗ୍ରାମ ଯାଇଥାଏ । ତେଣୁ ପିଲଙ୍କୁ ସମ୍ଭାଳିବା ଖୁଆଇବା ପଢ଼ାଇବା ଇତ୍ୟାଦି ସବୁ କାମ ଏକାକ ମତେ କରିବାକୁ ହୁଏ । ସେ ସମ୍ପର୍କୀୟ ଏକ ଘଟଣା ଏବେ ବି ମୋ ସ୍ମୃତିରେ ଧନାଗ ରହିଛି । ଢେଙ୍କାନାଳ ପ୍ରଜାମଣ୍ଡଳ କର୍ମୀ ନବଘନ ବାବୁଙ୍କ ପୁଅ ନିତ୍ୟାନନ୍ଦକୁ ଦିନେ ମୁଁ ଗଣି ଶିଖାଉଥାଏ । ବାରମ୍ବାର ଶିଖାଇଲେ ମଧ୍ୟ ୧୯ ପରେ ୨୦ ନ କହି ସେ ୨୧ ବା ୨୨ କହୁଥାଏ । ଏଥିରେ ବିରକ୍ତ ହୋଇ ମୁଁ ତାକୁ ଦଣ୍ଡ ସ୍ୱରୂପ ଶୀତରେ ଫୁଙ୍ଗୁଳା ଦେହରେ ଠିଆ କରାଇ ଦେଲି । ଯୋଗକୁ ଏ ଦୃଶ୍ୟ ବାପିଙ୍କ ଆଖିରେ ପଡ଼ିଗଲା । ସେ ମୋ ଉପରେ ଖୁବ ରାଗିଗଲେ । ପରମୁହୂର୍ତ୍ତରେ ନୂମାଙ୍କୁ ଯାଇ କହିଲେ କାରଣ ଉପରେ କାମର ଖୁବ ଅଧିକ ପଡ଼ୁଥିବାରୁ ତା'ର ଧୈର୍ଯ୍ୟଚ୍ୟୁତ ଘଟୁଛି । ତେଣୁ ତା ଘରଠାରୁ ରାନ୍ଧିବା ପାଇଁ ଜଣେ ଲୋକଙ୍କୁ ରଖାଗଲା ।

ବୁବୁ ସେବାଗ୍ରାମରୁ ତାଲିମ ନେଇ ଫେରିବା ପରେ ଦୁହେଁ ମିଶି କାମ ଚଳାଇଲୁ । କୌତୁହଳୀ ପାଠକଙ୍କ ପାଇଁ ସେ ସମୟର ଗୋଟିଏ ଦୁଇଟି ଘଟଣାର ବିବରଣୀ ଲେଖୁଛି । ବୁବୁ ଓ ମୁଁ ପଡ଼ୋଶୀ ମଦନବାବୁଙ୍କ ବାଡ଼ିରୁ କମଳା କିଣି ମୁଣ୍ଡରେ ବୋହିନେଇ ବଜାରରେ ବିକି କରି ଛାତ୍ରାବାସ ପାଇଁ ଅର୍ଥ ସଂଗ୍ରହ କରୁ । ଗୌରିଙ୍କ ମାମା (ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଗୌରଙ୍ଗ ଚରଣ ଦାସ) ଙ୍କ ପୁଅ ଶଶୀ ସେତେବେଳେ ଛାତ୍ରାବାସ କାମରେ ସାହାଯ୍ୟ କରୁଥାଏ । ଆମ କମଳାବିକା ଦେଖି ସେ ଲଜ୍ଜାରେ ଆମକୁ ନେହୁରା ହୋଇ ଏ କାମ ବନ୍ଦ କରିବା ପାଇଁ ଅନୁରୋଧ କରିଥିଲା ଏବଂ ସେ ନିଜେ ବରଂ ଚାନ୍ଦା ଆଣିଦେବ ବୋଲି ପ୍ରତିଶ୍ରୁତି ଦେଇଥିଲା । ଅନ୍ୟଦିନକର କଥା, ଗୁଲ୍, ଶୁଲ୍, ବୋଲି ଛାତ୍ରାବାସର ଦୁଇଟି ଝିଅପିଲା ମୋର ଦୁଇଟି ସୁନ୍ଦର ଛିଟ ଶାଢ଼ୀ ଶୁଖୁଥିଲାବେଳେ ତାକୁ କାଟିଦେଲେ । ବୁବୁ ଏଥିରେ ବ୍ୟଥିତ ହୋଇ ପ୍ରାର୍ଥନା ପରେ ସୂଚନା ଦେଲା ଯେ ଏ କାମ ଯିଏ କରିଛି ନ କହିବା ଯାଏ ସେ ଅନଶନ କରିବ । ଗୁଲ୍-ଶୁଲ୍ ମାନିଗଲେ । କାହିଁକି କାଟିଲ ବୋଲି ପଚାରିବାରୁ ସୁନ୍ଦର ଶାଢ଼ୀ ଦୁଇଟି କାଟିଦେଲେ ଏଥିରେ ଆମପାଇଁ ଜାମା କରିବେ ବୋଲି ଭାବି କାଟିଛୁ ବୋଲି କହିଲେ । ତାହାହିଁ ହେଲା ।

ସେମାନଙ୍କ ପାଇଁ ଜାମା ତିଆରିରେ ସେ କଟାଶାଢ଼ି ଲାଗିଲା । ସେତେବେଳେ ଭଲ ଲୋକଙ୍କ ଠାରେ ମଧ୍ୟ ଛୁଆଁ ଅଛୁଆଁ ଧାରଣା କପରି ବଦ୍ଧମୂଳ ଥିଲା ସେ ସମ୍ପର୍କରେ ଗୋଟିଏ ଦୁଇଟି ଘଟଣା ଲେଖୁଛି । କୃଷକ ଆନ୍ଦୋଳନ ଏବଂ ଗଡ଼ଜାତ ପ୍ରଜା ଆନ୍ଦୋଳନର ଶତଶତ କର୍ମୀଙ୍କ ସଙ୍ଗେ ନୂମା ବାପି ଓ ଅଜାଙ୍କର ସମ୍ପର୍କ । ସେମାନେ, ବିଶେଷତଃ ସ୍ୱର୍ଗତ ଗୌରଙ୍ଗ ଚରଣ ଦାସ, ରବି ଘୋଷ, ଜଗ: ଭାଇ, ବୈଷ୍ଣବ ଭାଇ ପ୍ରଭୃତି ବରାବର ଛାତ୍ରାବାସକୁ ଯା'ଆସ କରନ୍ତି । ଏଭଳି କେହି ଅତିଥି ଅବେଳାରେ ପହଞ୍ଚି ଗଲେ ପଡ଼ଶା ମଦନବାବୁଙ୍କ ଘରୁ ଭାତ ତରକାରୀ ମାଗି ଆଣିବାପାଇଁ ନୂମା ଆମକୁ ପଠାନ୍ତି । ମଦନବାବୁ ନୂମାଙ୍କୁ ବହୁତ ସମ୍ମାନ କରନ୍ତି । ନୂମା ତାଙ୍କ ସ୍ତ୍ରୀଙ୍କୁ ଝିଅ କହିଥାନ୍ତି । ତେଣୁ ସେ ବହୁତ ଶ୍ରଦ୍ଧାର ସହ ଖାଦ୍ୟ ଜିନିଷ ଆମକୁ ଦିଅନ୍ତି । ମାତ୍ର ତାଙ୍କ ବାସନରେ ଦିଅନ୍ତି ନାହିଁ । ଆମେ ବାସନ ତଳେ ଥୋଇଦେଲେ ସେ ତା'ରି ଦେହରେ ଅଜାଡ଼ି ଦିଅନ୍ତି । ଆମେ ହରିଜନ ପିଲଙ୍କୁ ରଖିଥିବାରୁ

ଆମକୁ ସେ ଛୁଅନ୍ତି ନାହିଁ । ଚୁରୁ ମଜା ଦେଖିବାପାଇଁ ଦିନେ ତାଙ୍କୁ ଛୁଇଁଦେଲେ ସେ ଗାଧୁଅନ୍ତି । ବାବାଙ୍କ ଭାଇ (ସ୍ୱର୍ଗତ ବଳଭଦ୍ର ମିଶ୍ର) ନୁମାଙ୍କର ଏକ ଅନ୍ତରଙ୍ଗ ଅନୁଗାମୀ, ସମାଜ ହକଂ ସାରି ପ୍ରତିଦିନ ସେ ଛାତ୍ରାବାସକୁ ଆସେ ଏବଂ ଆମର ସୁବିଧା ଅସୁବିଧା ବୁଝେ । ମାତ୍ର ଆମଘରେ ଜଳ ମଧ୍ୟ ସ୍ପର୍ଶ କରେ ନାହିଁ । ଶୋଷ ହେଲେ ଯାଇ ଭରତ ଘରୁ ପାଣିପିଏ । ଏହିଭଳି ତିକ୍ତ ମଧୁର ଅନୁଭୂତି ଭିତରେ ଆମର ଏ ଆଦିପର୍ବ ବା ଉଦ୍‌ଯୋଗ ପର୍ବର କେତେ ମାସ କଟିଗଲା ।

ଏବେ ପିଲାମାନଙ୍କର ବିଧିବଦ୍ଧ ଶିକ୍ଷାଦାନ ବ୍ୟବସ୍ଥା ଉପରେ ନୁମା ବାପି ବିଶେଷ ଗୁରୁତ୍ୱ ଦେଇ ବିଚାରିବାକୁ ଲାଗିଲେ । ନୁମା ଆମ ବିଦ୍ୟାଳୟ ପାଇଁ ଜଣେ ଭଲ ଶିକ୍ଷକ ପଠାଇବାକୁ ବାପା (ଗୋପବନ୍ଧୁ ଚୌଧୁରୀ)ଙ୍କୁ ଅନୁରୋଧ କରି ପତ୍ର ଲେଖିଲେ ଏବଂ ସେ ବରି ଅଞ୍ଚଳରେ ଅନ୍ୟାସପୁର ମୌଳିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଋଷି ବେହେରାଙ୍କୁ ପଠାଇଦେଲେ । ଶ୍ରୀ ଋଷି ବେହେରା ଜଣେ ଦକ୍ଷ ଶିକ୍ଷକ ଏବଂ ନିରଳସ ଅନୁଭବୀ କର୍ମୀ । ସେ ଆସିବା ସଙ୍ଗେ ସଙ୍ଗେ କାମରେ ଲାଗିପଡ଼ିଲେ । ଦିନ କେଇଟା ଭିତରେ ବିଦ୍ୟାଳୟ ପାଇଁ ଘର, ବାଡ଼ି ବଗିଚା ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା ଠିଆ କରାଇଦେଲେ ।

୧୯୪୬ ଏପ୍ରିଲ ମାସରେ ଯେଉଁ ନିର୍ବାଚନ ହେଲା ସେଥିରେ ନୁମା, ବାପି ଏବଂ ଛାତ୍ରାବାସର ଅନ୍ୟତମ ସହଯୋଗୀ ଶ୍ରୀ ହୃଷୀକେଶ ତ୍ରିପାଠୀ ଓଡ଼ିଶା ବିଧାନସଭାର ସଦସ୍ୟ ଭାବେ ନିର୍ବାଚିତ ହୋଇଥାନ୍ତି । ମନ୍ତ୍ରୀମଣ୍ଡଳ ଗଠନ କରାଯାଇଥାଏ ଏବଂ ବାପି ରାଜସ୍ୱ ମନ୍ତ୍ରୀପଦ ଗ୍ରହଣ କରିଥାନ୍ତି । ଦେଶର ସ୍ୱାଧୀନତା ଆଶା ଓ ଆନନ୍ଦର ଲହରୀ ଖେଳୁଥାଏ । ଏହିଭଳି ଆନନ୍ଦ ଉଲ୍ଲାସର ବାତାବରଣ ଭିତରେ ୧୯୪୬ ମଇ ମାସ ୧୧ ତାରିଖ ଦିନ ବିଧିବଦ୍ଧ ଭାବେ "ବାଜିରାଉତ ଛାତ୍ରାବାସ"ର ନାମକରଣ କରାଯାଇ ଉଦ୍‌ଘାଟନ ଉତ୍ସବ ପାଳନ ପାଇଁ ଲାଗିପଡ଼ିଲୁ । ବିପୁଳ ଉତ୍ସାହରେ ସମସ୍ତେ ମିଶି ତାଳ, ପତ୍ର ଫୁଲରେ ସମସ୍ତ ଛାତ୍ରାବାସକୁ ସୁଶୋଭିତ କରିଦେଲୁ । ତୋରଣମାନ ମଧ୍ୟ କରାଯାଇଥାଏ । ସଭାସ୍ଥଳରେ ଚାନ୍ଦୁଆ ଟଣାଯାଇଥାଏ, ମାତ୍ର ଠିକ୍ ଉଦ୍‌ଘାଟନୀ ଉତ୍ସବ ପୂର୍ବରୁ ପ୍ରବଳ ଝଡ଼ବାତ୍ୟା ଉଠି ଆମର ସମସ୍ତ ଉଦ୍ୟମକୁ ଭାଙ୍ଗି ଛିଣ୍ଡାଇ ଉଡ଼ାଇ ନେଇଥିଲା । ଆମର ଆନନ୍ଦରେ ଭଟ୍ଟା ପଡ଼ିଯାଇଥିଲେ ମଧ୍ୟ ଉତ୍ସାହ ମରି ଯାଇ ନ ଥିଲା । ଆମେ ଝଡ଼ର ଆହ୍ୱାନ ଗ୍ରହଣ କଲାଭଳି ଦ୍ୱିଗୁଣ ଉତ୍ସାହରେ ସବୁ ବ୍ୟବସ୍ଥା କରି ଆନନ୍ଦ ଉତ୍ସାହରେ ଉଦ୍‌ଘାଟନୀ ଉତ୍ସବ ପାଳନ କରିଥିଲୁ ।

(ସୁବର୍ଣ୍ଣଜୟନ୍ତୀ ବିଶେଷାଙ୍କ ୧୯୭୬ 'ବାଜି' ପତ୍ରିକାର ସୌଜନ୍ୟରୁ)

———

"ଯଦି ଧରିନିଆଯାଏ ଯେ ଦେଶର ସମୃଦ୍ଧ ସ୍ୱାର୍ଥ ଦୃଷ୍ଟିରୁ ପୋଡ଼ୁଚାଷ ବନ୍ଦ କରାଯିବା ଉଚିତ ; ତେବେ ବର୍ଷ ବର୍ଷ ଧରି ପୋଡ଼ୁଚାଷ କରି ଆସୁଥିବା ଆଦିବାସୀ ଭାଇ ଭଉଣୀମାନଙ୍କୁ ବଞ୍ଚାଇବା ପାଇଁ କି ଉପାୟ ଅବଲମ୍ବନ କରାଯିବ ତାହା ଏକ ବିଷମ ଚିନ୍ତାର କଥା ।"

—ମାଳତୀଦେବୀ

# ଢେଙ୍କାନାଳ ଆନ୍ଦୋଳନ ଓ ମାଳତୀଦେବୀ

☐ ବୈଷ୍ଣବ ଚରଣ ପଟ୍ଟନାୟକ

ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ କଥା କହୁଥିବାବେଳେ, ସାଧାରଣତଃ ବୁଝିବାକୁ ହୋଇଥାଏ ଯେ, ୫୦ ବର୍ଷ ତଳେ, ୧୯୩୮ ମସିହାରେ, ଢେଙ୍କାନାଳରେ ଯେଉଁ ପ୍ରଜା-ଆନ୍ଦୋଳନ ହୋଇଥିଲା—ସେଇ ପ୍ରଜା ଆନ୍ଦୋଳନ । ଅବଶ୍ୟ ଢେଙ୍କାନାଳରେ, ୧୯୪୨ ଭାରତ ଛାଡ଼ ଆନ୍ଦୋଳନ ଓ ୧୯୪୭ରେ ଗଡ଼ଜାତ ମିଶ୍ରଣ ଆନ୍ଦୋଳନର ମହତ୍ତ୍ୱ କମ୍ ନୁହେଁ, ତେବେ ମୁଖ୍ୟତଃ ୧୯୩୮ର ପ୍ରଜା ଆନ୍ଦୋଳନକୁ ଆଧାର କରି ଏହି ଲେଖା ।

୧୯୩୮ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ସଂକ୍ଷିପ୍ତ ଇତିହାସ ହେଉଛି—ଏହା ୧୯୩୮ ମସିହା ସେପ୍ଟେମ୍ବର ୧୨ ତାରିଖ ଦିନ ଫାଟି ପଡ଼ିଥିଲା । ସେଦିନ ଢେଙ୍କାନାଳ ରାଜ୍ୟର ୩ ଲକ୍ଷ ପ୍ରଜାଙ୍କ ମଧ୍ୟରୁ ୫୦ ହଜାର ପ୍ରଜା, ଢେଙ୍କାନାଳ ଗଡ଼ରେ ଆସି, ଠେଙ୍ଗାବାଡ଼ି ଧରି ଜମା ହୋଇ ଯାଇଥିଲେ ଏବଂ ରାଜାର ନଅର ଘେରାଉ କରି ନେଇଥିଲେ । ସେଦିନ ରାଜା ନଅର ଛାଡ଼ି ପଳାୟନ କରିଥିଲା । ସେଦିନ ପ୍ରଜାମାନେ, ନଅର ଭାଙ୍ଗି, ଖଣ୍ଡିଏ ଖଣ୍ଡିଏ ଇଟା ଧରି ଘରକୁ ଫେରିଯିବେ ବୋଲି, ବୈପ୍ଳବିକ ରଡ଼ିକୁହାଟମାନ ଛାଡ଼ୁଥିଲେ । ସେଦିନ ପ୍ରଜାମଣ୍ଡଳର ନେତାମାନେ, ପ୍ରଜା-ମାନଙ୍କୁ ବୁଝାଇ ଗ୍ରାମମାନଙ୍କରେ ଯାଇ, ଶୃଙ୍ଖଳିତ ଭାବେ, ସଂଗଠନ ଗଢ଼ିବାକୁ କହି, ପ୍ରଜାମାନଙ୍କୁ ଫେରାଇ ଦେଇ-ଥିଲେ । ୧୯୩୮ ମସିହାରେ ଅର୍ଥାତ୍ ଆଜକୁ ୫୦ ବର୍ଷ ତଳେ ଢେଙ୍କାନାଳ ଭଳି ଗୋଟିଏ ବଣ ପାହାଡ଼ଭରା ଅନୁନ୍ନତ ଅଞ୍ଚଳରେ, ଯେତେବେଳେ କି ଆଜି ଭଳିପରି ଗାଡ଼ି, ମଟର ଜିପ୍, ବସ୍, ଟ୍ରକ୍, ଟେକ୍ସି, ସାଇକେଲ କିଛି ନଥିଲା—ସେତେବେଳେ ହଜାର ହଜାର ପ୍ରଜା ୨୫।୩୦ ମାଇଲ ବାଟ ପରଜଙ୍ଗ, ପଳାଶୁଣି, ସୌରିଭ ଅଞ୍ଚଳରୁ ପାହାଡ଼ ପର୍ବତ ବଣ ଜଙ୍ଗଲ, ନଈ ନାଳ, ବିଲ ଖମାର ଡେଇଁ, କିପରି ଆସିଲେ ! ଏପରିକି ଖାଲି ପାଦରେ ଚାଲି ଚାଲି ଆସିଲେ ତାହା ଭାବିଲେ ଯେ କେହି ଆଶ୍ଚର୍ଯ୍ୟ ହେବ ।

ଅଥଚ ଆଜିକାଲି ଦିନରେ, ଏତେ ଗାଡ଼ି, ମଟର, ଟ୍ରକ୍ ସାଇକେଲର ସମସ୍ତ ସୁବିଧା ଥାଇ, ଯାନବାହନରେ ଯିବାର ଓ ଖାଇବା ପିଇବାର ସୁବିଧା ଯୋଗାଇ ଦେଲେ ମଧ୍ୟ ଆଜି ୫୭ ହଜାର ଲୋକଙ୍କୁ ଏକଜୁଟ କରାଇବା କଷ୍ଟକର । ତେଣୁ ସେତେବେଳେ ଢେଙ୍କାନାଳରେ ଯେପରି ୫୦ ହଜାର ପ୍ରଜା, ଗୋଟିଏ ରାତି ଭିତରେ, ପ୍ରଜାଭାଇମାନଙ୍କର ଡାକରା ଶୁଣି, ସ୍ୱେଚ୍ଛାରେ ଆସି ଢେଙ୍କାନାଳରେ ପହଞ୍ଚି ଯାଇଥିଲେ, ସେମାନେ ଘରକୁ ଫେରିଯିବାର ଆଶା ନରଖି ଆସିଥିଲେ ଏବଂ ଜୀବନକୁ ପାଣି ଛଡ଼ାଇ ଆସିଥିଲେ—ସେଥିରୁ ଅନୁମାନ କରିହେବ ଯେ ସେତେବେଳେ ପ୍ରଜା-ମାନଙ୍କ ମନରେ କିପରି ନିଆଁ ଜଳୁଥିଲା ।

ଢେଙ୍କାନାଳ ପ୍ରଜାମଣ୍ଡଳ-ଆନ୍ଦୋଳନର ଇତିହାସ ଅତି ବୈପ୍ଳବିକ, ଅତି ରୋମାଞ୍ଚକାରୀ । ଉପରୋକ୍ତ ୧୯୩୮ ସେପ୍ଟେମ୍ବର ୧୨ ତାରିଖ ଘଟଣା ପରେ, ବ୍ରିଟିଶ୍ ସରକାରର ପ୍ରତିନିଧି ମେଜର୍ ବେଜଲଗେଟ୍ ୧୪ ତାରିଖ ଦିନ ଆସି ଢେଙ୍କାନାଳରେ ପହଞ୍ଚି ଯାଇଥିଲେ । ଢେଙ୍କାନାଳର ପ୍ରଜାଜାଗରଣକୁ ଦମନ କରିବା ପାଇଁ, ବ୍ରିଟିଶ ସରକାର ତା'ପରେ K.O.S.B. ନାମକ ଗୋଟିଏ ଖାଣ୍ଟି ଗୋରା ପଲଟଣ ଦଳ ପଠାଇଦେଇଥିଲା । ତା'ପରେ ଢେଙ୍କାନାଳକୁ ଆସିଥିଲେ ଗୋର୍ଖା ପଲଟଣ, ଡୋଗ୍ରା ପଲଟଣ୍, ପଞ୍ଜାବ ପଲଟଣ୍, ହାଇଦ୍ରାବାଦ୍ ପଲଟଣ୍, ଛତିଶ-ଗଡ଼ ପଲଟଣ ଓ ଅନ୍ୟାନ୍ୟ ଗଡ଼ଜାତ ରାଇରାଜ୍ୟମାନଙ୍କର ଅସଂଖ୍ୟ ପୋଲିସ୍ ଫୌଜ । ସେମାନଙ୍କ ସଙ୍ଗରେ ମିଶି ଯାଇଥିଲେ ଖୋଦ୍ ଢେଙ୍କାନାଳର ପୋଲିସ ଫୌଜ, ଅତ୍ୟାଚାରୀ ରାଜକର୍ମଚାରୀ, ଗ୍ରାମ୍ୟ ଦଲାଲ, ଗୁଣ୍ଡା, ଟାହୁଟର ଦଳ । ସେମାନେ ସମସ୍ତେ ଗାଁଗଣ୍ଡା ଭିତରେ ବାହାରି ହୋଇଯାଇ, ଗାଗଣ୍ଡାକୁ ଦଳି ମକ୍ଥି ପକାଇଲେ । ସେମାନେ ଗାଁଗଣ୍ଡାରେ, ଘର ଦ୍ୱାର ଭାଙ୍ଗି ଲୁଟ୍‌ତରାଜ କରି, ସ୍ତ୍ରୀମାନଙ୍କ ଦେହରୁ, କାନରୁ, ନାକରୁ ଗହଣାଗାଣ୍ଠି ଟାଣି ଓଟାରି ନାକ

ଧାନ ଛଡ଼ାଇ ଓ ଖଣ୍ଡିଆ କରି, ସୁନା ରୁପା ଗହଣା ନେଇ ଗଲେ । ଗାଁଗଣ୍ଡାରେ ଶହ ଶହ ସ୍ତ୍ରୀମାନଙ୍କ ଉପରେ ପାଶବିକ ଅତ୍ୟାଚାର କରାଯାଇଥିଲା । ହଜାର ହଜାର ପ୍ରଜାଙ୍କୁ ଅକଥନୀୟ ନିର୍ମମ ମାଡ଼ ଦିଆଯାଇ ପଙ୍ଗୁ କରିଦିଆଯାଇଥିଲା । ଶହ ଶହ ପ୍ରଜାଙ୍କୁ ଜେଲଖାନା ପଠାଇ ଦିଆଯାଇଥିଲା । ଅନ୍ତ ଦମ୍‌ରେ ୭ଟି ଜାଗାରେ ନିର୍ମମ ଗୁଳିକାଣ୍ଡ ଚଳାଇ, ବହୁ ଲୋକଙ୍କୁ ଜୀବନରେ ମାରିଦିଆଯାଇଥିଲା ଓ ବହୁ ଲୋକଙ୍କୁ ଗୁଳି ମାଡ଼ରେ ଅକର୍ମଣ୍ୟ କରିଦିଆଯାଇଥିଲା । ମୋଟାମୋଟି ଆନ୍ଦୋଳନକୁ ଦବାଇ ଦେବା ପାଇଁ ନାନା ପ୍ରକାରର ଅକଥନୀୟ, ଅବର୍ଣ୍ଣନୀୟ, ଅମାନୁଷିକ ଅତ୍ୟାଚାରମାନ ବ୍ରିଟିଶ ସରକାର ତା'ର ରାଜାକୁ ଧରି ପ୍ରଜାମାନଙ୍କ ଉପରେ ଏମିତି ଚଳାଇ ଥିଲା; କିନ୍ତୁ ଢେଙ୍କାନାଳର ପ୍ରଜାମାନେ ସମସ୍ତ ରକମର ଦମନକୁ ଭ୍ରୁକ୍ଷେପ ନକରି, ଦମନକୁ ଯେପରି ସାମନା କରିଥିଲେ, ତାହା ଅତୀବ ରୋମାଞ୍ଚକାରୀ, ଅତୀବ ବୈପ୍ଳବିକ । ବାଜିରାଉତ ନାମକ ଗୋଟିଏ ବାର ବରଷର ବାଳକ, ଗୁଳି ମାଡ଼ ଖାଇ ମରିଗଲା ପଛକେ, ଅତ୍ୟାଚାରୀ ପୋଲିସ ଫୌଜ ଆଗରେ ସେ ଯେପରି ସାହସ ଦେଖାଇଥିଲା, ଯେପରି ମୁଣ୍ଡ ନୁଆଁଇ ନଥିଲା, ସେ ଅମର କାହାଣୀ ଆଜି ପୃଥିବୀ ବିଖ୍ୟାତ ଇତିହାସର ବୈପ୍ଳବିକ କାହାଣୀ ହୋଇ ରହିଛି । ଶହ ଶହ ଗ୍ରାମର, ହଜାର ହଜାର ଜନସାଧାରଣ, ମାସ ମାସ ଧରି ଯେଉଁପରି ନାନା ଦୁଃଖ କଷ୍ଟ ସହି ବୋଇଣ୍ଡା ଖାଲି କରିଦେଇ, ହିଜ୍‌ରତ୍ କରି ବାହାରେ ପଡ଼ି ରହି ସଂଗ୍ରାମ କରୁଥିଲେ ସେ ସମସ୍ତ ଅତି ରୋମାଞ୍ଚକର କାହାଣୀ । ମୋଟାମୋଟି ଢେଙ୍କାନାଳର ପ୍ରଜାମାନେ ସେତେବେଳେ ଯେପରି ଜେଲ, ଜରିମାନା, ମାଡ଼, ସ୍ତ୍ରୀ ଧର୍ଷଣ ଆଦି ବୀଭତ୍ସ ଦମନ ଓ ଅତ୍ୟାଚାରକୁ ଖାତିର ନକରି ନାନା ଦୁଃଖ କଷ୍ଟ, ଯନ୍ତ୍ରଣା ସ୍ୱେଚ୍ଛାରେ ବରଣ କରି, ନାନା ତ୍ୟାଗ ଓ ଆତ୍ମବଳି ଦାନ କରିଥିଲେ, ତାହା ଅତୀବ ରୋମାଞ୍ଚକାରୀ, ଅତୀବ ବୈପ୍ଳବିକ । ଢେଙ୍କାନାଳ ପ୍ରଜା ଆନ୍ଦୋଳନ, ବାଜିରାଉତ ଭଳି ବହୁ ଦୁର୍ଜ୍ଜୟୀ ବିପ୍ଳବୀ, ମହାତେଜସ୍ୱୀ ସଂଗ୍ରାମୀଙ୍କୁ ଜନ୍ମ ଦେଇଥିଲା । ଢେଙ୍କାନାଳ ପ୍ରଜାଆନ୍ଦୋଳନ, ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଅଂଶ ବିଶେଷ । ଢେଙ୍କାନାଳର ଐତିହାସିକ ପ୍ରଜାଜାଗରଣ, ଗୌରବପୂର୍ଣ୍ଣ ସଂଗ୍ରାମ ଅତି ମହିମାମୟ, ଅତି ଗୌରବମୟ । ସେ ସମସ୍ତ ଐତିହାସିକ ଗୌରବପୂର୍ଣ୍ଣ, ମହିମାମୟ, ଗୌରବମୟ କାହାଣୀ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ସୁନାର ଅକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

ଏଭଳି ଗୌରବମୟ, ଗୌରବପୂର୍ଣ୍ଣ ଐତିହାସିକ ପ୍ରଜାଆନ୍ଦୋଳନ ମୂଳତଃ ଯାହାଙ୍କ ପ୍ରେରଣା ଓ ଉତ୍ସାହରେ ହୋଇଥିଲା, ସେମାନେ ଥିଲେ ମାଳତୀଦେବୀ ଓ ନବବାବୁ—ଏହା କହିବା ଅତ୍ୟୁକ୍ତି ହେବ ନାହିଁ । ଯେଉଁ ୧୯୩୮ ମସିହା ସେପ୍‌ଟେମ୍ବର ୧୨ ତାରିଖ ଦିନ ଉପରୋକ୍ତ ମତେ, ଢେଙ୍କାନାଳ ଗଡ଼ରେ ୫୦ ହଜାର ପ୍ରଜା ଏକତ୍ରିତ ହୋଇଯାଇଥିଲେ, ତା'ର ଠିକ୍ ପୂର୍ବଦିନ ଅର୍ଥାତ୍ ୧୯୩୮ ସେପ୍‌ଟେମ୍ବର ୧୧ ତାରିଖ ଦିନ, ଢେଙ୍କାନାଳର ଗୋଟିଏ ଅତି ଅଭ୍ୟନ୍ତରୀଣ ଗ୍ରାମ ମାଣିକମରାରେ ମାଳତୀଦେବୀ, ଭଗବତୀ ପାଣିଗ୍ରାହୀ, ଏବଂ ମୁଁ, ଆମ୍ଭେମାନେ ଯାଇ ଗୋଟିଏ ବିରାଟ ସଭାରେ ଯୋଗଦେଇଥିଲୁ । ସେତେବେଳେ ଭିତରେ ଭିତରେ ଢେଙ୍କାନାଳର ଗ୍ରାମମାନଙ୍କ ଭିତରକୁ ଯାଇ ଆମ୍ଭେମାନେ ପ୍ରଜାମାନଙ୍କୁ ସଙ୍ଗଠିତ କରୁଥିଲୁ । ଉକ୍ତ ୧୧ ତାରିଖ ଦିନ ଉପରବେଳା ଢେଙ୍କାନାଳ ଗଡ଼ରେ ଢେଙ୍କାନାଳ ରାଜା କେତେକ ପ୍ରଜାମଣ୍ଡଳ ନେତାଙ୍କୁ ଗିରଫ କରିନେଇ ପ୍ରଜାମଣ୍ଡଳ ଉପରେ ଆକ୍ରମଣ ଆରମ୍ଭ କରି ଦେଇଥିଲା ଏବଂ ବନ୍ଧୁକ ସଙ୍ଗୀନ୍ ମାଡ଼ରେ କେତେକଙ୍କୁ ଆହତ କରିଥିଲା । ଢେଙ୍କାନାଳ ଗଡ଼ରୁ ପ୍ରଜାଭାଇମାନେ ୧୧ ତାରିଖ ରାତି ରାତି ଗାଁ ଗାଁମାନଙ୍କୁ ଖବର ଦେଇଥିଲେ, ସେ ରାଜାର ଆକ୍ରମଣର ଜବାବ ଦେବା ପାଇଁ ପ୍ରଜାଭାଇମାନେ ଢେଙ୍କାନାଳ ଗଡ଼କୁ ମାଡ଼ିଆସନ୍ତୁ । ତେଣୁ ୧୨ ତାରିଖ ଦିନ ପ୍ରଜାଭାଇମାନେ ଆସି ଢେଙ୍କାନାଳ ଗଡ଼ରେ ଜମାହୋଇଥିଲେ । ୧୧ ତାରିଖ ଦିନ ମାଳତୀ ଦେବୀ ପ୍ରଭୃତି ଆମ୍ଭେମାନେ ଢେଙ୍କାନାଳର ଅତି ଅଭ୍ୟନ୍ତରୀଣ ଗ୍ରାମରେ ଥିବାରୁ ଆମେ ସେଦିନ ପ୍ରଜାଭାଇଙ୍କ ଡାକରା ପାଇ ନ ଥିଲୁ । ୧୨ ତାରିଖ ଦିନ ମାଳତୀଦେବୀ, ଭଗବତୀବାବୁ ଏବଂ ମୁଁ ଆମ୍ଭେମାନେ ଢେଙ୍କାନାଳର ମେରାମଣ୍ଡଳୀ ଷ୍ଟେସନରୁ ରେଳରେ ଚଢ଼ି, ଢେଙ୍କାନାଳ ବାଟେ କଟକ ଆସୁଥିଲୁ ଏବଂ ସନ୍ଧ୍ୟା ୫ଟାବେଳେ ଢେଙ୍କାନାଳ ଷ୍ଟେସନରେ ପହଞ୍ଚିଲୁ । ଆମ୍ଭେମାନେ ଢେଙ୍କାନାଳ ଷ୍ଟେସନରେ ପହଞ୍ଚି ଦେଖିଲୁ ଯେ ଷ୍ଟେସନରେ ବହୁ ଉତ୍ୟକ୍ତ ଜନତା ଜମା ହୋଇଛନ୍ତି ଏବଂ ଗୁଳି ମାଡ଼ରେ ଆହତ ବହୁ ସଂଗ୍ରାମୀ, କଟକ ଡାକ୍ତରଖାନାକୁ ଚିକିତ୍ସା ଉଦ୍ଦେଶ୍ୟରେ ଯିବା ପାଇଁ ଅପେକ୍ଷା କରି ରହିଛନ୍ତି । ଆମ୍ଭେମାନେ ଶୁଣିଲୁ ସେଦିନ କିପରି ଢେଙ୍କାନାଳ ଗଡ଼ରେ ୫୦ ହଜାର ପ୍ରଜା ଜମା ହୋଇଛନ୍ତି ଏବଂ ରାଜାର ଗୁଳି ମାଡ଼ରେ କିପରି ବହୁ ପ୍ରଜା ଆହତ ହୋଇଛନ୍ତି ଏବଂ ପ୍ରଜାମାନେ କିପରି ପ୍ରତିଆକ୍ରମଣ

କରିବାରେ ରାଜଶକ୍ତି ପଛଘୁଞ୍ଚା ଦେଇ ପଳାଇଛୁ । ଆମ୍ଭେମାନେ ଗୁଳିମାଡ଼ରେ ଆହତ ଲୋକଙ୍କୁ ଚିକିତ୍ସା ପାଇଁ କଟକ ନେଇ ବୁଲିଯାଇଥିଲୁ ଓ ତହିଁ ପରଦିନ ସକାଳୁ ସକାଳୁ ଆସି ଢେଙ୍କାନାଳ ଗଡ଼ରେ ପହଞ୍ଚିଯାଇଥିଲୁ ।

ଢେଙ୍କାନାଳର ଯେଉଁ ସଂଗ୍ରାମ ବା ଆନ୍ଦୋଳନ ୧୯୩୮ ସେପ୍‌ଟେମ୍ବର ୧୨ ତାରିଖରେ ଫାଟି ପଡ଼ିଥିଲା, ସେ ଆନ୍ଦୋଳନର ଜନ୍ମ ହୁଏତ ୧୨ ତାରିଖରେ ହୋଇପାରେ; କିନ୍ତୁ ଆନ୍ଦୋଳନର ଅସ୍ତିତ୍ୱ ବହୁ ଆଗରୁ ଥିଲି ପାରିଥିଲା । ଯେପରିକି ପିଲାର ଜନ୍ମ ପୂର୍ବରୁ ମଧ୍ୟ ତାର ଅସ୍ତିତ୍ୱ ଥାଏ । କାରଣ ସେ ମାତୃଗର୍ଭରେ ଅନ୍ତତଃ ୧୦ ମାସ ଥାଏ ଓ ନାନା ଲାଳନପାଳନ ମଧ୍ୟ ଅବଶ୍ୟକ କରିଥାଏ । ସେହିପରି ଢେଙ୍କାନାଳ ଆନ୍ଦୋଳନ ଯଦିଓ ୧୯୩୮ ସେପ୍‌ଟେମ୍ବର ୧୨ରେ ବିସ୍ଫୋରିତ ହୋଇ ଦେଖାଦେଲା, ତାର ସଙ୍ଗଠନ ଭିତରେ ଭିତରେ ବହୁ ଆଗରୁ ଚାଲିଥିଲା ଏବଂ ଏହି ସଙ୍ଗଠନର ପୁରୋଭାଗରେ ଥିଲେ ମାଳତୀଦେବୀ ଓ ନବବାବୁ । ସେଥିପାଇଁ ଦେଖାଯିବ ଯେ ୧୯୩୮ ସେପ୍‌ଟେମ୍ବର ୧୧ ତାରିଖରେ, ଢେଙ୍କାନାଳର ଅଭ୍ୟନ୍ତରର ଗୋଟିଏ ଗାଁ ଭିତରେ ମାଳତୀଦେବୀ ପ୍ରଜା ସଙ୍ଗଠନରେ ବ୍ୟସ୍ତ ।

ଢେଙ୍କାନାଳ ପ୍ରଜାମଣ୍ଡଳ ସଙ୍ଗଠନ ସମ୍ପର୍କରେ ଆଉ ଗୋଟିଏ ବଡ଼ ଘଟଣା ଘଟି ଯାଇଥିଲା ୧୯୩୮ ମସିହା ସେପ୍‌ଟେମ୍ବର ମାସ ୧ ଓ ୨ ତାରିଖରେ । ଏହି ଘଟଣାର ମୁଖ୍ୟ ଭୂମିକାରେ ଥିଲେ ମାଳତୀଦେବୀ ଓ ନବବାବୁ । ସେତେବେଳେ ମୋଗଲବନ୍ଦୀ ଅଞ୍ଚଳରେ ଗୋଟିଏ ବିଶେଷ ପରିସ୍ଥିତି ଥିଲା । ଗଡ଼ଜାତମାନଙ୍କରେ କୌଣସି ପ୍ରକାରର ଗଣତାନ୍ତ୍ରିକ ଅଧିକାର ନଥିବାବେଳେ ଏବଂ ଗଡ଼ଜାତର ଲୋକେ ଜଣେ ଜଣେ ସ୍ୱେଚ୍ଛାଚାରୀ ଏକଛତ୍ରବାଦୀ ଅତ୍ୟାଚାରୀ ରାଜାର ଶାସନରେ ହନ୍ତସନ୍ତ ହେଉଥିବାବେଳେ, ମୋଗଲବନ୍ଦୀ ଅଞ୍ଚଳରେ ଲୋକମାନଙ୍କୁ ଅତି ସୀମିତ ପରିମାଣରେ ହେଲେ ମଧ୍ୟ ଗଣତାନ୍ତ୍ରିକ ଅଧିକାର ଦିଆଯାଇଥିଲା ଏବଂ ଏହି ପ୍ରକାର ଭୋଟ ଅଧିକାର ଓ କ୍ଷମତା ବଳରେ ଓଡ଼ିଶାରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହୋଇଥିଲା । ନବବାବୁ ଆସେମ୍ବ୍ଲି ମେମ୍ବର ହୋଇ ନିର୍ବାଚିତ ହୋଇଥିଲେ । ସେତେବେଳେ ଓଡ଼ିଶାରେ ମାଳତୀଦେବୀ ଓ ନବବାବୁଙ୍କ ନେତୃତ୍ୱରେ ସମାଜବାଦର ଆଦର୍ଶ ଓ କାର୍ଯ୍ୟର ପ୍ରଚାର ପାଇଁ ସମାଜବାଦରେ ବିଶ୍ୱାସୀ ବହୁ କର୍ମୀ ଲାଗିପଡ଼ିଥିଲେ । କମ୍ୟୁନିଷ୍ଟମାନେ ମଧ୍ୟ ମାଳତୀଦେବୀ ଓ ନବବାବୁଙ୍କ ନେତୃତ୍ୱରେ ସମାଜବାଦ ପ୍ରଚାର କାର୍ଯ୍ୟରେ ଲାଗିପଡ଼ିଥିଲେ । ମୋଗଲବନ୍ଦୀରେ "କୃଷକ ସଂଘ" ନାମକ ଏକ ସଂଗଠନ ଗଢ଼ାଯାଇ, କୃଷକଙ୍କୁ ସଙ୍ଗଠିତ କରାଯାଉଥିଲା । ଏହି "କୃଷକସଂଘ" ୧୯୩୮ ସେପ୍‌ଟେମ୍ବର ୧ ଓ ୨ ତାରିଖକୁ କଟକ ଜିଲ୍ଲାର ଯେନାପୁରଠାରେ (ଯାହାକି ଢେଙ୍କାନାଳ ରାଜ୍ୟର ସୀମାରେ ଅବସ୍ଥିତ) ଗୋଟିଏ ବିରାଟ କୃଷକ ସମାବେଶ ପାଇଁ ଆହ୍ୱାନ ଦେଇଥିଲା ଏବଂ ଏହି କୃଷକ ସମାବେଶକୁ ଢେଙ୍କାନାଳ ରାଜ୍ୟର ଅତ୍ୟାଚାରିତ ନିପୀଡ଼ିତ ପ୍ରଜାମାନେ ଯୋଗ ଦେବାକୁ ମଧ୍ୟ ଆହ୍ୱାନ ଦେଇଥିଲା । ଯେନାପୁର କୃଷକସଭାରେ ମୋଗଲବନ୍ଦୀ ଅଞ୍ଚଳର ପ୍ରାୟ ୩୦।୩୫ ହଜାର କୃଷକ ଯୋଗ ଦେଇଥିଲେ ଏବଂ ଢେଙ୍କାନାଳର ପ୍ରାୟ ୧୫।୨୦ ହଜାର ପ୍ରଜା ଯୋଗ ଦେଇଥିଲେ । ସେପ୍‌ଟେମ୍ବର ୧ ତାରିଖରେ, ସାଧାରଣଭାବେ କୃଷକମାନଙ୍କର ଦାବି ଓ ସମସ୍ୟା ଉପରେ ଆଲୋଚନା ହୋଇଥିଲା । ମୋଗଲବନ୍ଦୀ ଅଞ୍ଚଳରେ ବିଶେଷକରି ଜମିଦାର ଓ ମହାଜନମାନଙ୍କର କୃଷକମାନଙ୍କ ଉପରେ ଚାଲିଥିବା ଅନ୍ୟାୟ ଅତ୍ୟାଚାର ଜୁଲୁମ, ନାନାପ୍ରକାରର ଶୋଷଣ, ପୂଜାଅଁ ଭେଟି, ବେଆଇନ ପାଉଣା ବେଠି, ବେଗାରି, ଦାଖଲ, ଖାରଜ, ରେସମ ଆଦି ବିରୋଧରେ ଓ ପ୍ରଜାସ୍ୱତ୍ୱ ଆଇନ୍‌କାରପାଇଁ ଆଲୋଚନା ହୋଇଥିଲା; କିନ୍ତୁ ସେପ୍‌ଟେମ୍ବର ୨ ତାରିଖ ଦିନ ଖାସ୍‌କରି ଢେଙ୍କାନାଳ ପ୍ରଜାମାନଙ୍କର ଦାବି ଓ ସମସ୍ୟା ଏବଂ ଢେଙ୍କାନାଳ ପ୍ରଜାମଣ୍ଡଳ ଗଠନ ଉପରେ ଆଲୋଚନା ହୋଇଥିଲା । ସେଦିନ ଯେନାପୁରରେ ପ୍ରଥମ କରି ବିଧିବଦ୍ଧ "ଢେଙ୍କାନାଳ ପ୍ରଜାମଣ୍ଡଳ" ଗଠନ କରାଯାଇଥିଲା ଓ ତା'ର କର୍ମକର୍ତ୍ତା ବଛାଯାଇଥିଲା । "କୃଷକ" ନାମକ ଗୋଟିଏ ଖବରକାଗଜ ଯାହାକି ମୋଗଲବନ୍ଦୀର କୃଷକ ସଂଗଠନର ମୁଖପତ୍ରରୂପେ କାମ କରୁଥିଲା ଏବଂ ସେହି "କୃଷକ" ଖବରକାଗଜ ଢେଙ୍କାନାଳ ସମେତ ଅନ୍ୟାନ୍ୟ ଗଡ଼ଜାତ ପ୍ରଜାମାନଙ୍କର ମୁଖପତ୍ରରୂପେ ମଧ୍ୟ ନାନା ଭାବେ ଲୁଚିଛପି କାମ କରୁଥିଲା, ତା'ର ପ୍ରଚାର ପାଇଁ ମଧ୍ୟ ବିଶେଷ ଆଲୋଚନା ହୋଇଥିଲା । ଯେନାପୁରର କୃଷକ ସମ୍ମିଳନୀ, ବିଶେଷତଃ ଜାଗି ଉଠିଥିବା ଢେଙ୍କାନାଳର ପ୍ରଜାଜାଗରଣକୁ ସଂଗଠିତ କରିବାପାଇଁ ଡକାଯାଇଥିଲା । ଏ କୃଷକ ସମ୍ମିଳନୀ ତଥା

ଢେଙ୍କାନାଳ ପ୍ରଜାମାନଙ୍କର ସମ୍ମିଳନୀର ପ୍ରେରଣାଦାତା ବା ଉତ୍ସ ଥିଲେ ମାଳତୀଦେବୀ ଓ ନବବାବୁ ।

ଦେଶର ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ଭିତରେ, ସେତେବେଳେ ଦୁଇଟି ଚିନ୍ତାଧାରା କାମ କରୁଥିଲା । ସେଥିରୁ ଗୋଟିଏ ହେଉଛି ପୁଞ୍ଜିବାଦୀ ଚିନ୍ତାଧାରା ଓ ଅନ୍ୟଟି ହେଉଛି ସମାଜବାଦୀ ଚିନ୍ତାଧାରା । ଦେଶର ସର୍ବୋଚ୍ଚ ନେତୃତ୍ୱ ଭିତରେ ପୁଞ୍ଜିବାଦୀ ଚିନ୍ତାଧାରାର ପ୍ରତୀକ ଥିଲେ ସରଦାର୍ ବଲ୍ଲଭଭାଇ ପଟେଲ, ରାଜଗୋପାଳଚାରୀ ଇତ୍ୟାଦି ଏବଂ ସମାଜବାଦୀ ଚିନ୍ତାଧାରାର ପ୍ରତୀକ ଥିଲେ—ପଣ୍ଡିତ ଜବାହରଲାଲ, ଜୟପ୍ରକାଶ ନାରାୟଣ ଇତ୍ୟାଦି । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ବେଆଇନ ଥିବାରୁ ସେମାନେ ସମାଜବାଦୀଙ୍କ ନେତୃତ୍ୱରେ କାମ କରୁଥିଲେ । ଓଡ଼ିଶାରେ ପୁଞ୍ଜିବାଦୀ ଚିନ୍ତାଧାରାର ପ୍ରତୀକ ଥିଲେ ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ ଇତ୍ୟାଦି ଏବଂ ସମାଜବାଦୀ ଚିନ୍ତାଧାରାର ପ୍ରତୀକ ଥିଲେ ନବବାବୁ, ମାଳତୀଦେବୀ ଇତ୍ୟାଦି । କମ୍ୟୁନିଷ୍ଟ ଭଗବତୀବାବୁ ପ୍ରଭୃତି ନବବାବୁ ଓ ମାଳତୀ ଦେବୀଙ୍କ ନେତୃତ୍ୱରେ କାମ କରୁଥିଲେ ।

ମାଳତୀଦେବୀ ନବବାବୁ ପ୍ରଭୃତି ଓଡ଼ିଶାରେ ସମାଜବାଦ ଆଦର୍ଶକୁ ପ୍ରସାର କରିବା ପାଇଁ ଯେଉଁ କୃଷକ ସଙ୍ଗଠନ ଚଳାଉଥିଲେ, ସେ କୃଷକ ସଙ୍ଗଠନରେ ଗଡ଼ଜାତର ନିଷ୍ପେଷିତ ଓ ଅତ୍ୟାଚାରିତ ପ୍ରଜାମାନେ ଏକତ୍ର ହୋଇ କାମ କରିବାପାଇଁ ଯୋଜନାମାନ ଦେଇ କାମ କରୁଥିଲେ । ସେଥିପାଇଁ ଭିତରେ ଭିତରେ ବହୁଦିନୁ ମାଳତୀଦେବୀ ଓ ନବବାବୁ ପ୍ରଭୃତି ଢେଙ୍କାନାଳ ପ୍ରଜାମାନଙ୍କ ସଙ୍ଗେ ସଙ୍ଗଠନ ସମ୍ପର୍କରେ ସଂପର୍କ ରଖି ଆସିଥିଲେ । ଏହି ସମ୍ପର୍କର ବଡ଼ ନିଦର୍ଶନ ହେଉଛି "କୃଷକ" ଖବରକାଗଜ, ଯାହାର ସମ୍ପାଦକ ଥିଲେ ମାଳତୀଦେବୀ ଏବଂ "କୃଷକ" ଖବରକାଗଜରେ ଢେଙ୍କାନାଳର ଅତ୍ୟାଚାର ମୂଳକ କାହାଣୀ ବିସ୍ତୃତ ଭାବେ ପ୍ରକାଶ ପାଉଥିଲା ।

୧୯୩୮ରେ ଢେଙ୍କାନାଳରେ ଯେଉଁ ପ୍ରଜା ଆନ୍ଦୋଳନ ହେଲା, ତା'ର ପ୍ରକୃତ ଉତ୍ସ ଥିଲେ ମାଳତୀଦେବୀ-ନବବାବୁ । ସାରଙ୍ଗଧରବାବୁ ଢେଙ୍କାନାଳର ଲୋକ; କିନ୍ତୁ ସବୁ ଗଡ଼ଜାତମାନଙ୍କର ଏକ ବିଶିଷ୍ଟ ନେତା ଥିଲେ । ମାତ୍ର ସାରଙ୍ଗଧରବାବୁଙ୍କର ପ୍ରେରଣାର ଉତ୍ସ ଥିଲେ ମାଳତୀଦେବୀ ନବବାବୁ । ଢେଙ୍କାନାଳର ଯେତେ ବିଶିଷ୍ଟ ନେତା, ଯଥା—ମହେଶ୍ୱର ସୁବାହୁସିଂହ, ପୂର୍ଣ୍ଣବାବୁ ପ୍ରଭୃତି, ସମସ୍ତଙ୍କର ପ୍ରେରଣାର ଉତ୍ସ ଥିଲେ ମାଳତୀଦେବୀ-ନବବାବୁ । ମୁଁ ଢେଙ୍କାନାଳ ଆନ୍ଦୋଳନରେ ଯେଉଁ କ୍ଷୁଦ୍ର ଅଂଶ ନେଇ ଥିଲି, ସେଥିରେ ମାଳତୀଦେବୀ ଓ ନବବାବୁଙ୍କର ମୋତେ ଭଲପାଇବା, ତାଙ୍କର ସ୍ନେହ, ଆଦର, ଯତ୍ନ, ମୋର କାମ ପାଇଁ ମୋତେ ପ୍ରେରଣା ଦେଉଥିଲା ।

ଭାରତର ଗଡ଼ଜାତମାନଙ୍କରେ "କଂଗ୍ରେସ" ନାମରେ ସଙ୍ଗଠନ ଗଢ଼ିବାର ଯେପରି ସୁବିଧା ନ ଥିଲା, ସେହିପରି ଭାରତୀୟ ଜାତୀୟ "କଂଗ୍ରେସ" ତରଫରୁ "କଂଗ୍ରେସ" ନାମରେ ଗଡ଼ଜାତମାନଙ୍କରେ ସଙ୍ଗଠନ ଗଢ଼ିବା ପାଇଁ ଉତ୍ସାହ ଦିଆଯାଇନଥିଲା । ବରଂ ୧୯୩୮ ମସିହାରେ ହରିପୁରା କଂଗ୍ରେସରେ ବିଧିବଦ୍ଧ ପ୍ରସ୍ତାବ ନିଆଯାଇଥିଲା ଯେ, ଭାରତର କୌଣସି ଗଡ଼ଜାତରେ ପ୍ରଜାମାନେ ଯେପରି "କଂଗ୍ରେସ" ନାମରେ କିଛି ସଙ୍ଗଠନ ନ ଗଢ଼ନ୍ତି । ତେବେ ଅନ୍ୟ କୌଣସି ନାମରେ, ଗଡ଼ଜାତମାନଙ୍କରେ ସଙ୍ଗଠନ ଗଢ଼ାଗଲେ ବା ଆନ୍ଦୋଳନ ହେଲେ ସେ ସଙ୍ଗଠନ ବା ଆନ୍ଦୋଳନକୁ କଂଗ୍ରେସ ଆନୁଷ୍ଠାନିକଭାବେ ପରିଚାଳନା କରୁ ନଥିଲେ ମଧ୍ୟ, କଂଗ୍ରେସର ବ୍ୟକ୍ତିବିଶେଷ କେହି ଗଡ଼ଜାତର ଆନ୍ଦୋଳନକୁ ପରିଚାଳନା କରିବାରେ ସମ୍ପୂର୍ଣ୍ଣ ସୁଯୋଗ "କଂଗ୍ରେସ"ର ବ୍ୟକ୍ତିବିଶେଷ ପାଉଥିଲେ । କଂଗ୍ରେସର ଏପରି ବାରଣନୀତି ଠିକ୍ ଥିଲା କି ଭୁଲ୍ ଥିଲା ସେ କଥା ଅଲଗା, କିନ୍ତୁ ଏପରି ଯେ ବାରଣ ଥିଲା ଏହା ସତ୍ୟ । ତେଣୁ ଢେଙ୍କାନାଳ ପ୍ରଭୃତି ଗଡ଼ଜାତରେ "ପ୍ରଜାମଣ୍ଡଳ" ନାମରେ ଯେଉଁ ଆନ୍ଦୋଳନ ଚାଲିଥିଲା, ସେ ଆନ୍ଦୋଳନକୁ ସମାଜବାଦୀମାନେ ଚଳାଉଥିଲେ । ଦେଖାଯାଇଛି ଯେ, ଯେତେବେଳେ ପୁଞ୍ଜିବାଦୀ ମତର "କଂଗ୍ରେସ" ଲୋକେ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନକୁ କେବେ କେବେ ଖୋଲି ଖୋଲି ନିନ୍ଦା କରିଛନ୍ତି । ମାଳତୀଦେବୀ ଓ ନବବାବୁ ପ୍ରଭୃତି ପୂରାଦମ୍‌ରେ ଜୀବନ ପ୍ରାଣ ଦେଇ ଢେଙ୍କାନାଳ ଆନ୍ଦୋଳନ ପରିଚାଳନା କରିଛନ୍ତି । ଢେଙ୍କାନାଳ ଆନ୍ଦୋଳନରେ ଯେତେବେଳେ ଭଟ୍ଟା ପଡ଼ି ଆସିଛି, ସେତେବେଳେ ମୋଗଲବନ୍ଦୀ ଅଞ୍ଚଳରୁ କିପରି ଶହ ଶହ ଲୋକ ସତ୍ୟାଗ୍ରହୀ ଭାବେ ଯାଇ ଢେଙ୍କାନାଳ ଆନ୍ଦୋଳନକୁ ସାହାଯ୍ୟ ଦେବେ, ସେଥିପାଇଁ ନବବାବୁ, ମାଳତୀଦେବୀ ପ୍ରାଣମୂର୍ଚ୍ଛା ସଙ୍ଗଠନ ଓ କାର୍ଯ୍ୟ କରିଛନ୍ତି । ଏହିଭାବେ ବାହାରୁ ଢେଙ୍କାନାଳକୁ ଯେଉଁ ସତ୍ୟାଗ୍ରହୀ ଦଳ ସବୁ ଯାଇଥିଲେ ସେ ଦଳର ପ୍ରଥମ ଦଳରେ ନିଜେ ନବବାବୁ ନେତୃତ୍ୱ ନେଇ ଢେଙ୍କାନାଳକୁ ସତ୍ୟାଗ୍ରହ କରି ଯାଇଥିଲେ । ଭଗବତୀବାବୁ

ଦ୍ୱିତୀୟ ଦଳର ନେତୃତ୍ୱ ନେଇ ଯାଇଥିଲେ । ଏଠାରେ ଲକ୍ଷ୍ୟକରିବାର କଥା ଯେ, ଯେତେବେଳେ ଢେଙ୍କାନାଳ ରାଜାଙ୍କ ଅତ୍ୟାଚାରରେ ରାଜ୍ୟ ଅତିଷ୍ଠ ହେଉଥିଲା, ଢେଙ୍କାନାଳ ରାଜ୍ୟରେ ମାଛି ପଡ଼ିଲେ ନବଖଣ୍ଡ ହେଉଥିଲା, ଯେତେବେଳେ ଢେଙ୍କାନାଳରେ ଦିନ ଦ୍ୱିପ୍ରହରରେ ଚାରିଆଡ଼େ ଭୂତପ୍ରେତ ଡିଆଁ ମାରୁଥିଲେ ଏବଂ ଯେଉଁ ରାଜ୍ୟ ଗୋଟିଏ ଯମପୁର ଥିଲା, ଏପରି ଯମପୁରକୁ ମୋଗଲବନ୍ଦୀରୁ ଜଣେ ପ୍ରତ୍ୟାହ୍ୱାନ କରିବାକୁ ଗଲେ ଜଣଙ୍କର ଛାତିରେ କେତେ ସାହସ ଦରକାର ତାହା ସହଜେ ଅନୁମେୟ । କିନ୍ତୁ ନବବାବୁଙ୍କର ସେ ସାହସ ଥିଲା ।

ଢେଙ୍କାନାଳ ଆନ୍ଦୋଳନର ଆଖି, ନାକ, କାନ ସବୁ କିଛି ଥିଲେ ମାଳତୀଦେବୀ ଓ ନବବାବୁ । ଢେଙ୍କାନାଳ ଆନ୍ଦୋଳନ ସମାଜବାଦୀ ରାସ୍ତାରେ ଚାଲିଥିଲା । ଢେଙ୍କାନାଳ ଆନ୍ଦୋଳନ କୃଷକସଂଘର ଲାଲଝଣ୍ଡାର ନେତୃତ୍ୱରେ ଚାଲିଥିଲା । ସେଥିପାଇଁ ସବୁଠାରୁ ପ୍ରିୟ ଗୀତ ଥିଲା—

ମୂଲକ ଯାକର ମାଲିକ ଚାଷୀ
ମଜୁରିଆ କାହିଁ ହେବ ଉପବାସୀ
ତୋଳି ଧର ତୋ'ର ପତାକା ଆସି
ତୋହରି ରକତେ ନାଲି;
ଚାଲ୍‌ରେ, ଚାଲ୍‌ରେ ଚାଲ ।

ଗାଁ ଗଣ୍ଡାର ଅଣ୍ଡା, ବଚ୍ଚା, ବୁଢ଼ା, ପିଲା, ଯୁବକ, ବୃଦ୍ଧ ସମସ୍ତେ ଏହି ଗୀତ ଉନ୍ମାଦନା ସହକାରେ ବୋଲୁଥିଲେ— ପାଳି ଧରି ବୋଲୁଥିଲେ । ମାଳତୀଦେବୀଙ୍କର ମଧ୍ୟ ଏହା ପ୍ରିୟ ଗୀତ ଥିଲା ଓ ପିଲାମାନଙ୍କୁ ସେ ପାଳି ଧରାଇ ବୋଲୁଥିଲେ । ଏହା ବ୍ୟତୀତ ନାନାରକମର ଚାଷୀ ମୂଲିଆର ବୈପ୍ଳବିକ ଗୀତରେ, ଚାଷୀମାନଙ୍କୁ କିପରି ଉନ୍ମାଦିତ କରାଯାଇ ପାରିବ, ସେଥିପାଇଁ ନାନା ବୈପ୍ଳବିକ ଗୀତ ନିଜେ ମାଳତୀଦେବୀ ବୋଲୁଥିଲେ ।

ସ୍ୱାଧୀନତା ସଂଗ୍ରାମବେଳେ ଓ ପରେ ଯେଉଁମାନେ ସାମାନ୍ୟ ଭାବେ ମାଳତୀଦେବୀଙ୍କ ସମ୍ପର୍କରେ ଆସିଛନ୍ତି, ଏପରିକି ମାଳତୀଦେବୀଙ୍କ କଥା ଶୁଣିଛନ୍ତି, ସେମାନଙ୍କଠାରୁ ଗୋଟିଏ କଥା ନିଶ୍ଚୟ ଶୁଣିବାକୁ ମିଳିବ ଯେ—"ଯଦି କାହାର ପ୍ରାଣ ଗରିବଙ୍କ ପାଇଁ କାନ୍ଦୁଥାଏ, ଦୁଃଖୀ ଦୀନଙ୍କ ପାଇଁ, ଆଦିବାସୀ ହରିଜନଙ୍କ ପାଇଁ, ଦଳିତ ମଥିତଙ୍କପାଇଁ, ଅତ୍ୟାଚାରିତ ନିଷ୍ପେଷିତଙ୍କ ପାଇଁ କାନ୍ଦୁଥାଏ, ତେବେ ସେ ହେଉଛନ୍ତି ନବବାବୁ ଓ ମାଳତୀଦେବୀ ।" ଆଜି ନବବାବୁ ନାହାନ୍ତି—କିନ୍ତୁ ତାଙ୍କର ଆତ୍ମା ରହିଛି ।

ମାଳତୀଦେବୀ ଆସିଥିଲେ ଗୋଟିଏ ଅଭିଜାତ ବଙ୍ଗାଳୀ ପରିବାର ମଧ୍ୟରୁ । ସେ ବିବାହ କରିଥିଲେ ଆଉ ଗୋଟିଏ ଅଭିଜାତ ଓଡ଼ିଆ ପରିବାରରେ । କିନ୍ତୁ ପ୍ରଚଳିତ ସମାଜ ବ୍ୟବସ୍ଥା ତାଙ୍କ ହୃଦୟ ଭିତରେ ଝଡ଼ ସୃଷ୍ଟି କରିଥିଲା— ଏହାର ପରିବର୍ତ୍ତନ ପାଇଁ ତାଙ୍କର ବିରାଟ ବ୍ୟାକୁଳତା ଦେଖାଦେଇଥିଲା । ସମାଜବାଦୀ ବ୍ୟବସ୍ଥାରେ ଏହାର ପରିବର୍ତ୍ତନ ହୋଇପାରିବ ବୋଲି ସେ ବୁଝିଥିଲେ ଏବଂ ସମାଜବାଦୀ ବ୍ୟବସ୍ଥା ଚେଷ୍ଟାଦ୍ୱାରା ଆଣିହେବ ବୋଲି ମଧ୍ୟ ସେ ବୁଝିଥିଲେ । ସେଥିପାଇଁ ସେ କୋରାପୁଟ ଓ ଗଞ୍ଜାମ ମାଳଅଞ୍ଚଳରେ, ଆଦିବାସୀ ହରିଜନ ପରିବାର ମଧ୍ୟରେ, ସୁକିନ୍ଦା, ପଞ୍ଚକୋଟ, କନିକା ଆଦି ଜମିଦାରୀ ଅଞ୍ଚଳର କୃଷକମାନଙ୍କ ମଧ୍ୟରେ, ଢେଙ୍କାନାଳ, ନୀଳଗିରି, ନୟାଗଡ଼ ଆଦି ଗଡ଼ଜାତର ନିଷ୍ପେଷିତ ଅତ୍ୟାଚାରିତ ପ୍ରଜାମାନଙ୍କ ମଧ୍ୟରେ ଯେପରି ତ୍ୟାଗମୂଳକ ଜୀବନ କଟାଇଛନ୍ତି, ସେମାନଙ୍କ ସଙ୍ଗରେ ହସି ହସି ଗୀତ ଗାଇ ଗାଇ ଦିନ କଟାଇଛନ୍ତି, ତାହା କୌଣସି ଅନୁଭବୀ ପୁରୁଷ କଲେ ବା ଗବେଷକ ଗବେଷଣା କଲେ ସ୍ତମ୍ଭୀଭୂତ ନ ହୋଇ ରହିପାରିବ ନାହିଁ । କେଉଁ ବଣ, ଜଙ୍ଗଲ, ପାହାଡ଼ ଭିତରେ, କେଉଁ ନଈ, ନାଳ, ବିଲ, ଖମାର ଭିତରେ ମୁଣ୍ଡରେ କାନ୍ଧରେ ନିଜର ଗଣ୍ଠିଲି ବୋହି, ପାଦରେ ମାଇଲ ମାଇଲ ବାଟ ଚାଲି ଚାଲି ଗରିବ ଅତ୍ୟାଚାରିତଙ୍କ ପାଇଁ କାମ କଲାବେଳେ ସେ ଯେଉଁ ଉନ୍ମାଦନାର ସହ କାମ କରିଛନ୍ତି, ସେ ଉନ୍ମାଦନା ଯେ ଦେଖିଛି ସେ ସ୍ତମ୍ଭୀଭୂତ ହୋଇଛି । ଦୁଃଖୀଙ୍କୁ ସେ ଯେଉଁ ସ୍ନେହବୋଳା କଥା କହିଛନ୍ତି, ତାଙ୍କୁ ଆଉଁସିଛନ୍ତି, ତାହା ଯେ ଦେଖିଛି ସେ ସ୍ତମ୍ଭୀଭୂତ ହୋଇଛି । ଦେଶପ୍ରେମୀ ଓ ଦେଶପ୍ରେମୀଙ୍କ ପିଲାଙ୍କ ପାଇଁ ତାଙ୍କର ଆଦର ଯତ୍ନ ଯେ ଦେଖିଛି ସେ ମଧ୍ୟ ସ୍ତମ୍ଭୀଭୂତ ହୋଇଛି । ଅନ୍ୟ ଦିଗରେ ଏହା ମଧ୍ୟ ସତ୍ୟ ଯେ, ଅନ୍ୟାୟ, ଅତ୍ୟାଚାର, ଜୁଲୁମ ବିରୋଧରେ ତାଙ୍କର ଉଗ୍ର ମୂର୍ତ୍ତି ଯେ ଦେଖିଛି ସେ ଥରହର ହୋଇଛି ।

ମାଳତୀଦେବୀ ଏକାଧାରରେ ହେଉଛନ୍ତି ଲହୁଣି ଠାରୁ କୋମଳ, ଇସ୍ପାତ ଠାରୁ ଟାଣ ।

(ଶୈଳଜ ରବିଙ୍କ ଦ୍ୱାରା ସମ୍ପାଦିତ ଓ ଗ୍ରନ୍ଥମନ୍ଦିର କର୍ତ୍ତୃକ ପ୍ରକାଶିତ 'ମାଳତୀଦେବୀ ଜନ୍ମଶତି ଚିତ୍ରପଟ'ର ସୌଜନ୍ୟରୁ)

———

# ନୀଳଗିରି ଆନ୍ଦୋଳନ

□ ବନମାଳୀ ଦାସ

ମାଳତୀଦେବୀ ବହୁଙ୍କ ଜାତୀୟତାବାଦର ଜଣେ ସଂଗ୍ରାମୀ ନେତ୍ରୀ । ନବବାବୁ ବିବାହ କରି ଓଡ଼ିଶାକୁ ଆସିବା ପରଠାରୁ ଏପର୍ଯ୍ୟନ୍ତ ତାଙ୍କର ଏହି ଚରିତ୍ର ଅମଳିନ ରହି ଆସିଛି । ଏ ଦୃଷ୍ଟିରୁ ତାଙ୍କ କାର୍ଯ୍ୟ ଓ ଭୂମିକା ସହିତ ସମାନ ହୋଇଥିବା କାର୍ଯ୍ୟ ଓ ଭୂମିକା ଗତ ୫୦ ବର୍ଷ ଭିତରେ ଓଡ଼ିଶାର ଅନ୍ୟ କୌଣସି ନାରୀନେତ୍ରୀଙ୍କଠାରେ ଦେଖାଯାଏ ନାହିଁ । ସ୍ୱାଧୀନତା ସଂଗ୍ରାମ ଠାରୁ ଆରମ୍ଭ କରି ଶ୍ରେଷ୍ଠ-ବଡ଼ ବହୁ ସଂଗ୍ରାମ ଓ ରଚନାତ୍ମକ କାର୍ଯ୍ୟରେ ତାଙ୍କର କିଛି ନା କିଛି ଅବଦାନ ରହିଛି । ନୀଳଗିରି ପ୍ରଜା ଆନ୍ଦୋଳନ ପାଇଁ ତାଙ୍କର ଅବଦାନ ସେହି ଅଗଣିତ କାର୍ଯ୍ୟାବଳୀ ମଧ୍ୟରୁ ମାତ୍ର ଗୋଟିଏ ।

ନୀଳଗିରି ପ୍ରଜା ଆନ୍ଦୋଳନ ସମ୍ପର୍କରେ ବହୁତଗୁଡ଼ିଏ ଭୁଲ କଥା ବଡ଼-ସାନ ବହୁ ଲେଖକ ଲେଖିଛନ୍ତି ଓ ଏବେ ମଧ୍ୟ ଲେଖୁଛନ୍ତି । ତା' ଫଳରେ ଗୁଡ଼ାଏ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଯାଇଛି । ସେ ଧରଣର ପ୍ରଚାରମୂଳକ ଲେଖା ନୀଳଗିରି ପ୍ରଜାଆନ୍ଦୋଳନରେ ମାଳତୀଦେବୀଙ୍କ ଭୂମିକାକୁ ପୁରାପୁରି ଉଡ଼ାଇ ଦେଇଛି ।

୧୯୩୮ ପୂର୍ବରୁ ନୀଳଗିରିରେ ଯେଉଁସବୁ ମେଳି-ମାଦଳ ହୋଇଥିଲା ତା' ସହିତ ମାଳତୀଦେବୀ ସମ୍ପୃକ୍ତ ନଥିଲେ । ମାତ୍ର ତା' ପରବର୍ତ୍ତୀ ଆନ୍ଦୋଳନଗୁଡ଼ିକ ସହିତ ତାଙ୍କର ସମ୍ପର୍କକୁ ଅସ୍ୱୀକାର କରାଯାଇପାରେନା ।

### ସଂଗ୍ରାମୀ ଯୁବଗୋଷ୍ଠୀର ନୀଳଗିରି ପ୍ରବେଶ :

ଓଡ଼ିଶାର ସଙ୍ଗଠିତ ଗଡ଼ଜାତ ପ୍ରଜାଆନ୍ଦୋଳନର ପ୍ରଥମ ବିସ୍ଫୋରଣ ନୀଳଗିରିରେ ୧୯୩୮ ମଇ ପହିଲା ଦିନ ଦେଖାଦିଏ । ଏହା ପ୍ରଜାମଣ୍ଡଳଦ୍ୱାରା ହୋଇନଥିଲା । ଏହା ଆରମ୍ଭ ହୋଇଥିଲା "ନୀଳଗିରି ଯୁବକ ସଖା ସମିତି" ଦ୍ୱାରା । ଏହି ସମିତି ୧୯୩୭ ମସିହାରୁ ଅଯୋଧ୍ୟା ଗ୍ରାମକୁ କେନ୍ଦ୍ର କରି ଗାନ୍ଧୀଜୀଙ୍କର କେତେକ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୩୮ ମାର୍ଚ୍ଚ-ଅପ୍ରେଲ ମାସରେ ବାଲେଶ୍ୱରରୁ ରାଜନୈତିକ ଭାବେ ଜାଗ୍ରତ ଗୋଟିଏ ଶ୍ରେଷ୍ଠ ଯୁବ ଗୋଷ୍ଠୀ ଆସି ଏହି ସମିତି ସହିତ ଯୋଗସୂତ୍ର ପ୍ରତିଷ୍ଠା କଲେ । ସେମାନଙ୍କ ମଧ୍ୟରେ ଥିଲେ କଟକ ଜିଲ୍ଲାର ✓ ଗିରିଧାରୀ ପଣ୍ଡା ଓ ଚକ୍ରଧର ରଥ, ଦଶପଲ୍ଲାର ଚୈତନ୍ୟ ମିଶ୍ର, ନୀଳଗିରିର ବୃନ୍ଦାବନ ଷଡ଼ଙ୍ଗୀ ଓ ମୁଁ । ଆମ୍ଭମାନଙ୍କୁ ଏହି ଯୋଗସୂତ୍ର ପ୍ରତିଷ୍ଠା କରିବାରେ ସାହାଯ୍ୟ କରିଥିଲେ ସେତେବେଳର ନୀଳଗିରିର ପ୍ରଖ୍ୟାତ ନିର୍ଭୀକ ସଂଗ୍ରାମୀ ✓ ପ୍ରାଣବନ୍ଧୁ ଅଗସ୍ତି । ଏହି ମିଳନ ଯୁବକ ସଖା ସମିତିକୁ ରାଜାବିରୋଧୀ ପ୍ରଚାର ଓ ଆନ୍ଦୋଳନ ଭିତରକୁ ନେଇ ଆସିଥିଲା । ଚୈତନ୍ୟ ମିଶ୍ର ଓ ପ୍ରାଣବନ୍ଧୁ ଅଗସ୍ତିଙ୍କ ଗିରଫର ପ୍ରତିବାଦରେ ୧୯୩୮ ମଇ ୨୧ ତାରିଖ ଓ ୨୩ ତାରିଖର ଐତିହାସିକ ଆଇନ ଅମାନ୍ୟ ଆନ୍ଦୋଳନ ଏହି ଯୁବକ ସଖା ସମିତି ସଙ୍ଗଠିତ କରିଥିଲେ । ତାହା କେବଳ ନୀଳଗିରି ନାହିଁ ସମଗ୍ର ଓଡ଼ିଶାର ଗଡ଼ଜାତ ରାଜମହଲରେ ଶିହରଣ ସୃଷ୍ଟି କରିଥିଲା । ସେ ସମୟର ଗାନ୍ଧୀବାଦୀ ସମ୍ପାଦକ ଶ୍ରୀଯୁକ୍ତ ରାମଚନ୍ଦ୍ର ମହାପାତ୍ର ଏବେ ମଧ୍ୟ ଜୀବିତ, କିନ୍ତୁ ଇତିହାସ ଲେଖକମାନେ ଏହି ଗୁରୁତ୍ୱପୂର୍ଣ୍ଣ ଘଟଣାଟିକୁ ଇତିହାସର ପୃଷ୍ଠାରୁ ଏ ପର୍ଯ୍ୟନ୍ତ ଉଡ଼ାଇ ଦେଇ ଆସିଛନ୍ତି ।

ବାଲେଶ୍ୱରର ଏହି ଯେଉଁ ଯୁବ ଗୋଷ୍ଠୀ ନୀଳଗିରିକୁ ପ୍ରବେଶ କଲେ ଓ ଯୁବକ ସଖା ସମିତିକୁ ଆନ୍ଦୋଳନର ଭୂମିକାକୁ ନେଇଆସିଥିଲେ; ସେମାନେ ଥିଲେ ତତ୍କାଳୀନ ଛାତ୍ର ଆନ୍ଦୋଳନର କର୍ମୀ । ସେମାନଙ୍କର ଆଦର୍ଶଗତ ଶିକ୍ଷାଦାତା ଥିଲେ ବାଲେଶ୍ୱର ଜିଲ୍ଲା ସ୍କୁଲର ଶିକ୍ଷକ ✓ ଗୋପାଳ କାନୁନ୍‌ଗୋ ଓ ସେମାନଙ୍କ ରାଜନୈତିକ କାର୍ଯ୍ୟକଳାପର ପ୍ରାଣକେନ୍ଦ୍ର ଥିଲା କାଠଯୋଡ଼ି କୂଳର ବାଖରାବାଦ କୋଠୀଟି । ନବବାବୁ ଓ ମାଳତୀଦେବୀ ଏହିଠାରୁ ସେମାନଙ୍କର ଭାବନା ଓ ପ୍ରେରଣା ଦ୍ୱାରା ଏହି ଯୁବଗୋଷ୍ଠୀ ତଥା ଅନ୍ୟମାନଙ୍କୁ ସଜିବ ଓ ପରିଚାଳିତ କରୁଥିଲେ ।

**ପ୍ରଜାମଣ୍ଡଳରେ ବାମପନ୍ଥୀ ଗୋଷ୍ଠୀର ଅସ୍ଥାନ—**

ଆଲୋଚନା ଓ ଗୁହାମଣା ପରେ ଯୁବକ ସଖା ସମିତି ଏଇନ୍ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିଲେ । ୰ ସାରଙ୍ଗଧର ଦାସ ଓ ୰ ମହତାବ ବାବୁଙ୍କ ମଧ୍ୟସ୍ଥତା ଭିତରେ ନୀଳଗିରି ପ୍ରଜାମଣ୍ଡଳ ଗଢ଼ାଗଲା । ଯୁବକ ସଖା ସମିତିର ସବୁ ପଦାଧିକାରୀଙ୍କୁ ଓ ଉପରଲିଖିତ ବାହାରୁ ଆସିଥିବା ଯୁବଗୋଷ୍ଠୀ ମଧ୍ୟରୁ କେତେକଙ୍କୁ ପ୍ରଜାମଣ୍ଡଳର କାର୍ଯ୍ୟକାରୀ କମିଟିରେ ରଖାଗଲା । ଦକ୍ଷିଣପନ୍ଥୀ ଗୋଷ୍ଠୀ ପକ୍ଷରୁ ମୁଁ ହେଲି ସମ୍ପାଦକ ।

ଏହା ଫଳରେ ଆମ୍ଭମାନଙ୍କ ଜରିଆରେ ମାଳତୀଦେବୀ ପ୍ରଭୃତି ବାମପନ୍ଥୀ ନେତାମାନେ ନୀଳଗିରି ପ୍ରଜାମଣ୍ଡଳର ଯାବତୀୟ ଆଲୋଚନା, ଭାବନା ଓ କାର୍ଯ୍ୟକ୍ରମକୁ ପ୍ରଭାବିତ କରି ଚାଲିଲେ । ନୀଳଗିରିରେ ମାଳତୀଦେବୀ ପ୍ରଭୃତିଙ୍କ ଦ୍ୱାରା ପ୍ରକାଶିତ ''କୃଷକ'' ସାପ୍ତାହିକ ପତ୍ରିକା ହେଲା ଜନଗଣଙ୍କ ମଧ୍ୟରେ ବିଦ୍ରୋହୀ ଚେତନା ପ୍ରସାରର ପ୍ରଧାନ ମାଧ୍ୟମ । ନୀଳଗିରିର ଲୋକେ ସେତେବେଳେ ମାଳତୀ ଦେବୀଙ୍କୁ "ରଣଚଣ୍ଡୀ" ବୋଲି ଗର୍ବ ଓ ଆନନ୍ଦର ସହିତ ନାମକରଣ କରିଥିଲେ । ଉଡ଼ଜାତ ପ୍ରଜାଆନ୍ଦୋଳନ ପରିଚାଳନା ସମ୍ପର୍କରେ ସେତେବେଳେ କଂଗ୍ରେସର ମହତାବ ଗୋଷ୍ଠୀ ଓ ନବବାବୁଙ୍କ ଗୋଷ୍ଠୀ ଭିତରେ ସମାନ ଚିନ୍ତାଧାରା ନଥିଲା । ସେ ସବୁ ବିଷୟରେ ଆମ୍ଭେମାନେ ବାଖରବାଦରୁ ଜାଣୁଥିଲୁ, ତଦନୁସାରୀ ସତର୍କ ରହୁଥିଲୁ ।

**ସଙ୍ଗଠନ ଭିତରେ ଶକ୍ତି ପରୀକ୍ଷା :**

ଆନ୍ଦୋଳନ ମଝିରେ ଏକ ସାଲିଶ ପ୍ରସ୍ତାବ ମହତାବବାବୁ ପ୍ରଜାମଣ୍ଡଳର ଏକ ବିଶେଷ ବୈଠକରେ ଉପସ୍ଥାପନ କରିଥିଲେ । ଦଶହରାବେଳେ ଗୋଟିଏ "ଶିକାର" । ରାଜାଙ୍କ ପୁଅ-ଝିଅ ବିବାହର ପାଇଁ ''ମାଗଣ'' (ବାଧ୍ୟତାମୂଳକ ଚାନ୍ଦା) ଓ କେତେକ ବିଶେଷ ଧରଣର ଉନ୍ନୟନମୂଳକ କାମରେ "ବେଠି"କୁ ଗ୍ରହଣ କରି ନେବା ପାଇଁ ମହତାବବାବୁ ପ୍ରସ୍ତାବ କଲେ । ଏହା କଲେ ରାଜାଙ୍କର ପ୍ରଥମ ପରାଜୟ ଘଟିବ, ପ୍ରଜାମାନଙ୍କର ଭବିଷ୍ୟତ ଆନ୍ଦୋଳନ ପାଇଁ ଉତ୍ସାହ ଓ ପ୍ରେରଣା ରହିବ—ନୋହିଲେ ଆନ୍ଦୋଳନ ନିଷ୍ଫଳ ହୋଇଯିବ ଓ ଲୋକଙ୍କର ଉତ୍ସାହ କମିଯିବ—ଏହା ଥିଲା ତାଙ୍କର ଯୁକ୍ତି ।

ଆମ୍ଭେମାନେ ଜେଲରେ ଥିଲୁ । ସ୍ୱତନ୍ତ୍ର ଆଦେଶକ୍ରମେ ଆମ୍ଭମାନଙ୍କୁ ଏହି ବୈଠକରେ ଯୋଗ ଦେବାର ସୁଯୋଗ ଦିଆଯାଇଥିଲା । ବୈଠକ ପରେ ଆମ୍ଭମାନଙ୍କର ଜେଲକୁ ଫେରିଯିବାର ସର୍ତ୍ତ ଥିଲା ଓ ଫେରି ମଧ୍ୟ ଗଲୁ । ମାତ୍ର ଏହି ବୈଠକରେ ମାଳତୀଦେବୀ ପ୍ରଭୃତିଙ୍କ ଦ୍ୱାରା ଅନୁପ୍ରେରିତ ଯୁବଗୋଷ୍ଠୀ ଏହି ସାଲିସ ସର୍ତ୍ତଗୁଡ଼ିକର ତୀବ୍ର ବିରୋଧ କରିଥିଲେ—''ବେଠି'', ''ମାଗଣ" ଓ "ଶିକାର"କୁ କୌଣସି ସର୍ତ୍ତରେ ଗ୍ରହଣ କରାଯିବ ନାହିଁ । ରାଜା ଲୋକଙ୍କଠାରୁ ପୁରାପୁରି ବିଚ୍ଛିନ୍ନ, ତେଣୁ ଆନ୍ଦୋଳନ ବିପର୍ଯ୍ୟସ୍ତ ହେବାର ଆଶଙ୍କା ନାହିଁ—ଏହା ଥିଲା ଏହି ଯୁବ ଗୋଷ୍ଠୀର ଯୁକ୍ତି । ବହୁ ଆଲୋଚନା ପରେ ଭୋଟ ହେଲା । ଯୁବଗୋଷ୍ଠୀର କଥା ବହୁ ସଂଖ୍ୟାଧିକ ଭୋଟରେ ଗୃହୀତ ହେଲା । ମହତାବବାବୁ କ୍ଷୁବ୍ଧ ହୋଇ ସଙ୍ଗେ ସଙ୍ଗେ ବାଲେଶ୍ୱର ଚାଲିଗଲେ । କିନ୍ତୁ ପରେ ସେତେବେଳର କେତେକ ଗୁରୁତ୍ୱପୂର୍ଣ୍ଣ କାରଣରୁ ପଲିଟିକାଲ ଏଜେଣ୍ଟ ବେଠି, ଶିକାର ଓ ମାଗଣ ସମ୍ପୂର୍ଣ୍ଣରୂପେ ଲୋପ କରିଦେବା ପାଇଁ ଘୋଷଣା କଲେ । ତାହାହିଁ ହେଲା । ପ୍ରଜାମଣ୍ଡଳ ଭିତରେ କାର୍ଯ୍ୟ କରୁଥିବା ଯୁବଗୋଷ୍ଠୀର ଦୃଢ଼ତା ପଛରେ ଥିଲା ମାଳତୀ ଦେବୀଙ୍କର ବିଭିନ୍ନ ସଭା ସମିତିରେ ଓ କର୍ମୀ ବୈଠକରେ କୌଶଳପୂର୍ଣ୍ଣ ସଂଗ୍ରାମ ପାଇଁ ଆହ୍ୱାନ ଓ ପରାମର୍ଶ ।

**ବାମପନ୍ଥୀମାନଙ୍କର ପ୍ରଜାମଣ୍ଡଳ ଭିତରେ ଦୃଢ଼ୀକରଣ :**

ନୀଳଗିରି ଆନ୍ଦୋଳନ ପରେ ଏହି ଯୁବ ଗୋଷ୍ଠୀର କର୍ମୀମାନେ ଢେଙ୍କାନାଳ ଆନ୍ଦୋଳନରେ ଯୋଗ ଦେବାକୁ ଗଲେ । ସେଠାରେ ନବବାବୁ, ଭଗବତୀ ବାବୁ ଓ ମାଳତୀ ଦେବୀ ପ୍ରଭୃତିଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । ସେମାନଙ୍କଠାରୁ ଉନ୍ନତତର ଚେତନା ଓ ପ୍ରେରଣା ଅର୍ଜନ କରି ନୀଳଗିରି ଫେରିଲେ ।

ପ୍ରଜାମଣ୍ଡଳରେ ବାମପନ୍ଥୀ ଓ ସମାଜବାଦୀ ଦୃଷ୍ଟିଭଙ୍ଗୀର କର୍ମୀମାନେ ଉଣା ଅଧିକେ ମାଳତୀଦେବୀଙ୍କ ଅଜ୍ଞାତସାରରେ ତାଙ୍କର ବିଶେଷ ଭୂମିକା, ନିର୍ଭୀକତା ଓ ସଂଗ୍ରାମର ଆହ୍ୱାନଦ୍ୱାରା ପ୍ରଭାବିତ ହେଉଥିଲେ । ସେହିମାନେ ନୀଳଗିରି ପ୍ରଜା ଆନ୍ଦୋଳନ ଭିତରେ ମଜୁରି ଓ କର୍ମୀ ଆନ୍ଦୋଳନ ପ୍ରଭୃତି ଶ୍ରେଣୀ ସଂଗ୍ରାମକୁ ପୁରାଇ ପାରିଥିଲେ । ପ୍ରଜାମଣ୍ଡଳର ସଂଗଠନଗୁଡ଼ିକୁ ବ୍ୟାପକ ଭାବେ ଗଣଭିତ୍ତିକ କରିଦେଇଥିଲେ । ନାନା ଭାବେ ସର୍ବସ୍ୱ କରି ରଖିଥିଲେ । ଫଳରେ ନୀଳଗିରିରେ ରାଜା ନାମମାତ୍ର ଶାସକରେ ପରିଣତ

ହେଲେ । ପ୍ରକୃତ ରାଜନୈତିକ ନେତୃତ୍ୱ ଓ କର୍ତ୍ତୃତ୍ୱ ପ୍ରଜାମଣ୍ଡଳଠାରେ ରହିଲା । ଏ ଅବସ୍ଥା ୧୯୩୮ରୁ ୧୯୪୮ ଯାଏ ବିଦ୍ୟମାନ ରହିଲା । ଓଡ଼ିଶାର ଅନ୍ୟ କୌଣସି ଗଡ଼ଜାତରେ ଏ ପ୍ରକାର ଦ୍ୱୈତ କର୍ତ୍ତୃତ୍ୱ ସମ୍ଭବପର ହୋଇ ନଥିଲା । ଏପରିକି କଚେରୀରେ ସରକାରୀ କର୍ମଚାରୀମାନେ ପ୍ରଜାମଣ୍ଡଳ କର୍ମୀଙ୍କୁ ଦେଖିଲେ ଲାଞ୍ଚ ଇତ୍ୟାଦି ବ୍ୟାପାରରେ ଶୋଷଣ ଭୟ କରୁଥିଲେ ।

**ମିଶ୍ରଣ ଆନ୍ଦୋଳନବେଳେ :**

୧୯୪୭ରେ ଦେଶ ସ୍ୱାଧୀନ ହେବାପରେ ନୀଳଗିରି ରାଜା ସର୍ବପ୍ରଥମେ ହାଇଦ୍ରାବାଦ ଢାଞ୍ଚାରେ ଆଦିବାସୀ—ଓଡ଼ିଆ ଦଙ୍ଗାର ସୂତ୍ରପାତ କଲେ । ଏହା ବିରୋଧରେ ପ୍ରଜାମଣ୍ଡଳ ଓ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ପ୍ରତିରୋଧ ଆନ୍ଦୋଳନ ଆରମ୍ଭ ହୋଇଗଲା । ୧୯୪୭ ସେପ୍ଟେମ୍ବର-ବେଳକୁ କମ୍ୟୁନିଷ୍ଟ ଓ ପ୍ରଜାମଣ୍ଡଳ ଦଳ ଭିତରେ କିଛିଟା ମିତ୍ରତା ସେତେବେଳେ ଥିଲା । ମହତାବବାବୁ ଓ ନବବାବୁ ପ୍ରଭୃତିଙ୍କ ଚେଷ୍ଟାରେ ସେ ଉଗ୍ରତାକୁ ଊଣା କରିଯାଇ ପ୍ରତିରୋଧକୁ ଶକ୍ତିଶାଳୀ କରିବା ପାଇଁ ଚେଷ୍ଟା ହେଉଥାଏ । ସଂଘର୍ଷ ଟିକିଏ ଭଲଧରଣର ନହେଲେ ଭାରତ ସରକାରଙ୍କ ହସ୍ତକ୍ଷେପ ସମ୍ଭବ ହେବ ନାହିଁ, ସେ ପାଇଁ ସେମାନେ ଏହା କରୁଥିଲେ ।

କମ୍ୟୁନିଷ୍ଟ ପାର୍ଟିର ଏକ ସଂଗଠିତ ଓ ସଶସ୍ତ୍ର ସ୍ୱେଚ୍ଛା-ସେବକ ବାହିନୀ କାର୍ଯ୍ୟ କରୁଥାଏ । ସେମାନଙ୍କ ପାଖରେ କାଣ୍ଡ, ଖଣ୍ଡା, ଠେଙ୍ଗା ଓ କିଛି ବୋମାକୁ ଛାଡ଼ିଦେଲେ ଅନ୍ୟ କୌଣସି ଅସ୍ତ୍ର ନଥିଲା । ରାଜଭକ୍ତମାନେ ସେହିପରି କିଛି ଅସ୍ତ୍ର ଶସ୍ତ୍ର ଧରି ଓଡ଼ିଆମାନଙ୍କ ଗ୍ରାମ ଉପରେ ଆକ୍ରମଣ କରୁଥାନ୍ତି । ଲୁଟତରାଜ ଓ ଘରେ ନିଆଁ ଲଗାଇବା ଇତ୍ୟାଦି କାର୍ଯ୍ୟ କରୁଥାନ୍ତି । ପ୍ରଜାମଣ୍ଡଳର ଅହିଂସା ନୀତି ସେମାନଙ୍କ ଆକ୍ରମଣ ଆଗରେ ପୁରାପୁରି ଅକାମୀ ହୋଇପଡ଼ୁଥାଏ ।

ଏହି ସମୟରେ ନବବାବୁଙ୍କ ସହିତ ମାଳତୀଦେବୀ ଆସି ପହଞ୍ଚିଲେ ବ୍ରହ୍ମପୁର ଗାଁରେ । ସେଠାରୁ ପ୍ରାୟ ଏକ କିଲୋମିଟର ଦୂରରେ ରାଜଭକ୍ତ ଦଳ ଓ କମ୍ୟୁନିଷ୍ଟ ଦଳ ସଂଘର୍ଷ ପାଇଁ ପରସ୍ପର ମୁହାଁମୁହିଁ ହୋଇ ରହିଥାନ୍ତି । ଅବସ୍ଥାର ସମ୍ୟକ ପର୍ଯ୍ୟାଲୋଚନା କରି ଓ ଘଟଣାସ୍ଥଳ ପରିଦର୍ଶନ କରି ମାଳତୀଦେବୀ ସ୍ଥାନୀୟ କଂଗ୍ରେସ ନେତା ୰ କାଶିନାଥ ବେହେରାଙ୍କୁ ପରାମର୍ଶ ଦେଲେ ତାଙ୍କ କାର୍ତ୍ତିଜ ବନ୍ଧୁକଟିକୁ ଅସ୍ଥାୟୀଭାବେ କମ୍ୟୁନିଷ୍ଟ ସ୍ୱେଚ୍ଛାସେବକମାନଙ୍କୁ ଦେବା ପାଇଁ । ଏହି ପଦକ୍ଷେପର ଫଳ ସଂଘର୍ଷ ଦୃଷ୍ଟିରୁ ଯାହା ହେଉନା କାହିଁକି, ରାଜନୈତିକ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱ-ପୂର୍ଣ୍ଣ ଥିଲା ।

ତା'ପରେ କମ୍ୟୁନିଷ୍ଟମାନଙ୍କ ପକ୍ଷରୁ କଂଗ୍ରେସର ସମର୍ଥନକ୍ରମେ ଆରମ୍ଭ ହେଲା ଆକ୍ରମଣାତ୍ମକ ଅଭିଯାନ । ମାତ୍ର ତିନିଦିନର ଲଢ଼େଇ । ରାଜଭକ୍ତମାନେ ଛିନ୍ନଛତ୍ର ହୋଇଗଲେ । ଭାରତ ସରକାର ଓଡ଼ିଶା ସରକାରଙ୍କ ଜରିଆରେ ନୀଳଗିରିର ଶାସନ ଦାୟିତ୍ୱ ନିଜ ହାତକୁ ନେଲେ ୧୯୪୭ ନଭେମ୍ବର ମାସରେ । ଏଇ ହେଲା ଭାରତରେ ଗଡ଼ଜାତ ବିଲୋପ ପ୍ରକ୍ରିୟାର ଶୁଭାରମ୍ଭ ।

ଏଥିରେ ମାଳତୀଦେବୀଙ୍କ ଅବଦାନ ଖୁବ୍ ପରୋକ୍ଷ ନିଶ୍ଚୟ । ମାତ୍ର ନିଆଁ ଓ ଦଙ୍ଗା ବିଧ୍ୱସ୍ତ ଅଞ୍ଚଳକୁ ତାଙ୍କର ସେ ବେଳର ଗସ୍ତ; ସାଧାରଣ ଜନତାଙ୍କ ମନରେ କିପରି ଉତ୍ସାହ ଉଦ୍ଦୀପନା ସୃଷ୍ଟି କରୁଥିଲା ତାହା ସଚେତନ କର୍ମୀମାନଙ୍କ ବ୍ୟତୀତ ଅନ୍ୟ କେହି ଅନୁଭବ କରି ପାରିବେ ନାହିଁ ।

ଆଜି ମାଳତୀଦେବୀ ଜୀବିତ । ଅନ୍ୟାୟ ଅନୀତି ବିରୋଧରେ ବିଦ୍ରୋହର ବହ୍ନି ତାଙ୍କ ଭିତରେ ଜୀବନ୍ତ । ଏ ଦୃଷ୍ଟିରୁ ବାର୍ଦ୍ଧକ୍ୟ ତାଙ୍କ ପାଖରେ ପରାସ୍ତ । ମାତ୍ର ରାଜ୍ୟର ପ୍ରଚାର ମାଧ୍ୟମ ଗୁଡ଼ିକର ଭିନ୍ନ ଦୃଷ୍ଟି ଭଙ୍ଗୀ ଯୋଗୁଁ ମାଳତୀଦେବୀଙ୍କ କଣ୍ଠସ୍ୱର ଆଜି ଦେଶର ଜନଗଣ ଶୁଣି ପାରୁ-ନାହାନ୍ତି ।

ଓଡ଼ିଶାରେ ସମସ୍ତ ପ୍ରକାର ରକ୍ଷଣଶୀଳତା ଓ ଗତାନୁ-ଗତିକତାର ଗ୍ରୀବା ଉପରେ ପାଦ ରଖି ନ୍ୟାୟ ଓ ସତ୍ୟ ପାଇଁ ନିର୍ଭୀକ ଭାବରେ ସ୍ୱାଧୀନ ଚିନ୍ତା ଓ କାର୍ଯ୍ୟର ବୈଜୟନ୍ତୀ ତୋଳି ଧରିଥିଲେ ନବବାବୁ ଓ ମାଳତୀଦେବୀ । ନବବାବୁ ଚାଲିଗଲେ । ମାତ୍ର ମାଳତୀଦେବୀ ସେ ଆସ୍ଥାନ ଏପର୍ଯ୍ୟନ୍ତ ପରିତ୍ୟାଗ କରି ନାହାନ୍ତି । କାଶୀଦ୍ୱାଙ୍କା ପରି ପୋଡ଼ି ଜଳି ପାଉଁଶ ହୋଇଗଲେ ମଧ୍ୟ ସେ ସେହି ଆସ୍ଥାନ ଛାଡ଼ିବେ ନାହିଁ । ସେଥିପାଇଁ ତାଙ୍କ ନାମ ଶୁଣିଲେ ଆଜି ମଧ୍ୟ ନୀଳଗିରିର ବହୁ ବୟସ୍କ ବ୍ୟକ୍ତି ମୁଣ୍ଡ ନୁଆଁଇଦିଅନ୍ତି ।

(ଶୈଳଜ ରବିଙ୍କ ଦ୍ୱାରା ସଂପାଦିତ ଓ ଛତ୍ରମଧର କର୍ତ୍ତୃକ ପ୍ରକାଶିତ 'ମାଳତୀଦେବୀ—ଚଉଦଟି ଚିତ୍ରପଟ'ର ସୌଜନ୍ୟରୁ )

———

# ମାଳତୀ ଚୌଧୁରୀ ସ୍ମରଣେ

□ ପ୍ରେମ ଭସୀନ୍

ନିକଟରେ ଇହଲୋକ ତ୍ୟାଗ କରିଥିବା ମାଳତୀ ଚୌଧୁରୀ ଥିଲେ ଜଣେ "କିମ୍ବଦନ୍ତୀ ବ୍ୟକ୍ତିତ୍ୱ" । ଆମର ପ୍ରଚାରତନ୍ତ୍ର ତାଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧୀବାଦୀ ବୋଲି ପ୍ରଚାରିତ କରେ । ସେ ତ ଥିଲେ, କିନ୍ତୁ ସେ ଏହାଠାରୁ ମଧ୍ୟ ଅଧିକ ଥିଲେ । ୧୯୩୪ରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଜନ୍ମଲାଭ କରିବା ପୂର୍ବରୁ ବି ସେ କଂଗ୍ରେସ ସୋସିଆଲିଷ୍ଟ ଥିଲେ । ଆମ ଇତିହାସର ଏହା ଏକ ଗୁରୁତ୍ୱ-ପୂର୍ଣ୍ଣ ଅଧ୍ୟାୟ, ଯାହାକୁ ଆମଦେଶର ପ୍ରଚାରତନ୍ତ୍ର ସଦା-ସର୍ବଦା ଚାପି ଦେବାରେ ଚେଷ୍ଟିତ ଏବଂ ଏ ସମ୍ବନ୍ଧରେ ବହୁସଂଖ୍ୟକ ସମାଜବାଦୀ ସମ୍ପୂର୍ଣ୍ଣ ଘଟଣା କ'ଣ ତାହା ମଧ୍ୟ ଜାଣନ୍ତି ନାହିଁ ।

ଏହା ହେଉଛି ୧୯୩୩ ମସିହାର ଘଟଣା । ୧୯୩୩ ମସିହାରେ ଗାନ୍ଧୀଜୀ ସତ୍ୟାଗ୍ରହ ଆନ୍ଦୋଳନକୁ ସ୍ଥଗିତ ରଖି କେବଳ ହରିଜନ ସେବା କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣରୂପେ ସମ୍ପୃକ୍ତ କରିବା ଦ୍ୱାରା କଂଗ୍ରେସ କର୍ମୀଙ୍କ ମଧ୍ୟରେ ବିଭ୍ରାନ୍ତି ସୃଷ୍ଟି ହେଲା ଏବଂ ଏମାନଙ୍କ ମଧ୍ୟରେ ଥିବା ଯୁବଗୋଷ୍ଠୀ ଅଧୈର୍ଯ୍ୟ ହୋଇ ଏହି ଅନିଶ୍ଚିତ ଅବସ୍ଥାକୁ ଭାଙ୍ଗି ଆଗେଇ ଯିବା ପାଇଁ ଏକତ୍ରିତ ହେଲେ । ଏହା ସମ୍ପୂର୍ଣ୍ଣ ସ୍ୱାଭାବିକ ଥିଲା ଯେ, ସେମାନେ ମାର୍କସବାଦ—ସମାଜବାଦ ଦିଗକୁ ଆକର୍ଷିତ ହୋଇଥିଲେ । ଏହି ସମୟରେ ଓଡ଼ିଶାର ଜଣେ ଆଦର୍ଶବାଦୀ ଯୁବ ଜମିଦାର ନବକୃଷ୍ଣ ଚୌଧୁରୀ ଓ ବୈପ୍ଳବିକ ଦୃଷ୍ଟିରୁ ତାଙ୍କର ସମାସ୍ତର ଏପରିକି କେତେକ କ୍ଷେତ୍ରରେ ଅଧିକ ଆଦର୍ଶବାଦୀ ପତ୍ନୀ ମାଳତୀ ଚୌଧୁରୀ ପ୍ରାୟ ବାରଜଣ ଉତ୍କଣ୍ଠିତ ଯୁବକଙ୍କୁ ଏକତ୍ରିତ କରି ରାଷ୍ଟ୍ରୀୟ ଏବଂ ଅନ୍ତଃରାଷ୍ଟ୍ରୀୟ ବିଷୟ ଉପରେ ଏକ ଆଲୋଚନା ଗୋଷ୍ଠୀ ଗଢ଼ିଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ଏହି ଗୋଷ୍ଠୀରୁ ଜଣେ ଥିଲେ । ୧୯୩୩ ମସିହା ଫେବୃଆରୀ ମାସରେ ଏହି ଗୋଷ୍ଠୀ ନିଜକୁ ଓଡ଼ିଶାରେ "ଉତ୍କଳ କଂଗ୍ରେସ ସୋସିଆଲିଷ୍ଟ କର୍ମୀସଂଘ" ନାମରେ ସଙ୍ଗଠିତ ହେବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ ଓ ଏହି ସଙ୍ଗଠନର ନିଜସ୍ୱ ସମ୍ବିଧାନ, ଲକ୍ଷ୍ୟ ଓ ସାଧନ, କାର୍ଯ୍ୟ ଶୈଳୀର ପଦ୍ଧତି ଏବଂ ରାଜନୈତିକ ସିଦ୍ଧାନ୍ତ ନିର୍ଦ୍ଧାରିତ କରାଗଲା । ପୂର୍ବ ସମୟ ଦେଇ କାମ କରୁଥିବା କର୍ମୀଙ୍କୁ ସଦସ୍ୟ ରୂପେ ଗ୍ରହଣ କରାଗଲା ଓ ସଦସ୍ୟତା ପାଇଁ ଆଗ୍ରହୀ ବ୍ୟକ୍ତିଙ୍କ ପକ୍ଷରେ ସଂଘର ଦୁଇଜଣ ପୁରୁଣା ସଦସ୍ୟଙ୍କ ଠାରୁ ସୁପାରିସ ସହ କାର୍ଯ୍ୟକାରୀ କମିଟିର ସର୍ବସମ୍ମତ କ୍ରମେ ସ୍ୱୀକୃତି ଅନୁସାରେ ହିଁ କେହି ସଦସ୍ୟ ହୋଇପାରିବ, ଏହି ବିଧାନ ରଖାଗଲା । ପାର୍ଟିର ସମ୍ବିଧାନ ଅନୁସାରେ ଏକ କାର୍ଯ୍ୟକାରୀ କମିଟି ଗଢ଼ାଗଲା ଯେଉଁଥିରେ ଜଣେ ସାଧାରଣ ସମ୍ପାଦକ, କୋଷାଧ୍ୟକ୍ଷ ଓ ସାତଜଣ ସଭ୍ୟ ରଖାଯିବା ସ୍ଥିର ହେଲା । ନବକୃଷ୍ଣ ଚୌଧୁରୀ ସାଧାରଣ ସମ୍ପାଦକ ଓ ମାଳତୀ ଚୌଧୁରୀ କୋଷାଧ୍ୟକ୍ଷା ନିର୍ବାଚିତ ହେଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ରାଜନୈତିକ ପରିଚାଳନା ସମିତିର ସଦସ୍ୟ ଥିଲେ ।

ନୂତନରୂପେ ଗଠିତ ଏହି ପାର୍ଟି ସ୍ଥିର କଲା ଯେ, କୌଣସି ସଦସ୍ୟ ନିଜର ବ୍ୟକ୍ତିଗତ ସମ୍ପତ୍ତି ରଖିବେ ନାହିଁ । ଏହି ନିଷ୍ପତ୍ତି ଅନୁସାରେ ନବକୃଷ୍ଣ ଚୌଧୁରୀ ତାଙ୍କର ବଡ଼ କୃଷି ଫାର୍ମଟିକୁ ପାର୍ଟିକୁ ସମର୍ପଣ କଲେ । ଏହି ଫାର୍ମର ଆୟକୁ ପାର୍ଟିର କାର୍ଯ୍ୟକଳାପ ବୃଦ୍ଧିରେ ସାହାଯ୍ୟ କରିବା ସହ "ସାରଥି" ପତ୍ରିକା ପ୍ରକାଶନରେ ମଧ୍ୟ ବ୍ୟୟ କରିବା ସ୍ଥିର ହେଲା ଏବଂ ମାଳତୀ ଚୌଧୁରୀ ନିଜର ଅଳଙ୍କାରଗୁଡ଼ିକୁ ପାର୍ଟି କାର୍ଯ୍ୟ ପାଇଁ ଦାନ କରିଥିଲେ । ୧୯୩୩ ମସିହାରେ ସେହି ଅଳଙ୍କାରଗୁଡ଼ିକର ମୂଲ୍ୟ ପ୍ରାୟ ଛଅହଜାର ଟଙ୍କା ହୋଇଥିଲା ।

ପରବର୍ତ୍ତୀ କାଳରେ ଏହି ପାର୍ଟି "ଅଖିଳଭାରତ-କଂଗ୍ରେସ ସୋସିଆଲିଷ୍ଟ ପାର୍ଟି"ର ଓଡ଼ିଶା ଶାଖା ରୂପେ ପରିଚିତ ହେଲା । କ୍ଷେତ ମୂଲୀ ଓ ଭୂମିହୀନ ଶ୍ରମିକଙ୍କ ଦାବି-ପୂରଣ ପାଇଁ ଲଢ଼େଇ କରିବାକୁ ପ୍ରାଦେଶିକ କୃଷକ ସଂଘ ଗଢ଼ିବା ସ୍ଥିରହେଲା । ମାଳତୀ ଚୌଧୁରୀ ଓ ସୁରେନ୍ଦ୍ରନାଥ

ଦ୍ୱିବେଦୀ ଏହି ସଙ୍ଗଠନର ଯୁଗ୍ମ ସମ୍ପାଦକ ହେଲେ । ମାଳତୀ ଚୌଧୁରୀ ଗାଁ ଗହଳରେ ବ୍ୟାପକ ପଦଯାତ୍ରା କରିବାରେ ଲାଗିଲେ, କେତେକ ସ୍ଥାନକୁ ଗରୁଗାଡ଼ିରେ ଯାଉଥିଲେ । କୃଷକ ସଂଘ ପକ୍ଷରୁ "କୃଷକ" ନାମରେ ଏକ ପତ୍ରିକା ବାହାର କରାଗଲା ଯେଉଁଥିରେ କୃଷକସଂଘର ବାର୍ତ୍ତା ସହିତ ସରକାର ଓ ଜମିଦାରଙ୍କର କୃଷକ-କୃଷିଜୀବୀ ଶୋଷଣର ସମସ୍ତ ଘାରସାତମାନ ପ୍ରକାଶ ପାଇଲା । ବ୍ରିଟିଶଙ୍କର ପ୍ରଜାସ୍ୱତ୍ୱ [illegible] ବିରୋଧରେ କୃଷକ-ସଂଘ ଓ କୃଷକ ସାପ୍ତାହିକ ପତ୍ରିକା ଅବିରତ ସଂଗ୍ରାମ ଚଳାଇଲେ । ଶହ ଶହ ସତ୍ୟାଗ୍ରହୀ ଆନ୍ଦୋଳନ କରି ଗିରଫ ହେଲେ । ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଅନ୍ୟମାନଙ୍କ ନେତୃତ୍ୱରେ କୃଷକମାନଙ୍କର ଏହି ସବୁ ସଂଗ୍ରାମ ଯୋଗୁ କୃଷକ ସଂଘ ଏକ ଶକ୍ତିଶାଳୀ ଗଣସଙ୍ଗଠନ ରୂପେ ଉଭାହେଲା ଓ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରେ ଏହାର ଶାଖାମାନ ଖୋଲିଲା । ଯେହେତୁ ଓଡ଼ିଶାରେ ଶିଳ୍ପ ଓ କଳକାରଖାନାର ବ୍ୟାପକ ଭିତ୍ତିଭୂମି ନଥିଲା, ତେଣୁ "ଦୁନିଆର ଶ୍ରମିକ ଏକ ହୁଅ" ସ୍ଲୋଗାନ ଓଡ଼ିଶାରେ ବିଶେଷ ପ୍ରଭାବ ସୃଷ୍ଟି କରି ପାରୁ ନଥିଲା । ଏହା ବଦଳରେ କୃଷକ ସଂଘ "କୃଷୀ, ମୂଲିଆ ଏକହୁଅ" ଡାକରା ଦେଇ ସଙ୍ଗଠନକୁ ଯଥେଷ୍ଟ ବଳଶାଳୀ କରିପାରିଲା ।

୧୯୩୪ ମସିହା ନଭେମ୍ବର ମାସରେ ବମ୍ବେଠାରେ ଅନୁଷ୍ଠିତ କଂଗ୍ରେସ ସୋଶାଲିଷ୍ଟ ପାର୍ଟିର ସ୍ଥାପନ ସମ୍ମିଳନୀରେ ନବବାବୁ (ନବକୃଷ୍ଣ ଚୌଧୁରୀ)ଙ୍କ ଏହାର ରାଷ୍ଟ୍ରୀୟ କାର୍ଯ୍ୟକାରୀ ସମିତିରେ ନିଆଗଲା ।

ନବବାବୁ ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ନେତା ଓ ପ୍ରେରଣାର ଉତ୍ସ ଥିଲେ । ଜଣେ ମାର୍କସବାଦୀ ରୂପେ ତାଙ୍କର ଅନେକ କମ୍ୟୁନିଷ୍ଟ ବନ୍ଧୁ ଥିଲେ । ସେମାନଙ୍କ ମଧ୍ୟରୁ ଅନେକଙ୍କୁ ସେ ପ୍ରଭାବିତ କରି କଂଗ୍ରେସ ସୋଶାଲିଷ୍ଟ ପାର୍ଟିକୁ ଆଣି ପାରିଥିଲେ । କଂଗ୍ରେସ ସୋଶାଲିଷ୍ଟପାର୍ଟିରୁ କମ୍ୟୁନିଷ୍ଟମାନଙ୍କୁ ବହିଷ୍କାର କରାଯିବାରେ ସେ ସନ୍ତୁଷ୍ଟ ନଥିଲେ, ତେଣୁ ନିଜେ ବିଶେଷ ସକ୍ରିୟ ନଥିବାରୁ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କୁ ଓଡ଼ିଶା କଂଗ୍ରେସ ସୋଶାଲିଷ୍ଟ-ପାର୍ଟିର ନେତୃତ୍ୱ ଅର୍ପଣ କଲେ । ବହୁବର୍ଷପରେ ସେ ଏହି ପାର୍ଟିରୁ ସମ୍ପୂର୍ଣ୍ଣ ଦୂରେଇ ଯାଇ ନିଜର ସମସ୍ତ ଶକ୍ତି ଓ ସମୟ କଂଗ୍ରେସ ଦଳ ନିମନ୍ତେ ସମର୍ପଣ କଲେ । କଂଗ୍ରେସ ଦଳରେ ମିଶି ସେ ପ୍ରଥମେ ମନ୍ତ୍ରୀ ଓ ପରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ପାରିଥିଲେ । କିନ୍ତୁ ତାଙ୍କର ପତ୍ନୀ ଓ କଂଗ୍ରେସ ସୋଶାଲିଷ୍ଟପାର୍ଟିର ସଂସ୍ଥାପକମାନଙ୍କ ମଧ୍ୟରୁ ଜଣେ ମାଳତୀ ଚୌଧୁରୀ କଂଗ୍ରେସ ସୋଶାଲିଷ୍ଟ ପାର୍ଟିରେ ସକ୍ରିୟ ରହିଲେ ଓ ଏହି ଦଳର ଶୀର୍ଷସ୍ଥ ନେତାମାନଙ୍କ ଭିତରୁ ଜଣେ ହିସାବରେ ତାଙ୍କୁ ଗଣନା କରାଯାଉଥିଲା । ଐତିହାସିକ ୧୯୪୨ ଅଗଷ୍ଟ ଅଧିବେଶନ ପୂର୍ବରୁ ୟୁସୁଫ୍-ମେହେର ଅଲ୍ଲୀଙ୍କ ବାସଭବନରେ ଅନୁଷ୍ଠିତ କଂଗ୍ରେସ ସୋଶାଲିଷ୍ଟପାର୍ଟିର ରାଷ୍ଟ୍ରୀୟ କାର୍ଯ୍ୟକାରୀ କମିଟି ବୈଠକରେ ସେ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ଯୋଗ ଦେଇଥିଲେ । କଂଗ୍ରେସର "ଭାରତଛାଡ଼" ପ୍ରସ୍ତାବ ଗ୍ରହଣର ଠିକ୍ ପରେ ପୁଣି ଯେଉଁ ବୈଠକ ବସିଲା ସେଥିରେ ପୁଙ୍ଖାନୁପୁଙ୍ଖ ରୂପେ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରାଯାଇଥିଲା । ସେଠାରେ ଏହା ନିଷ୍ପତ୍ତି କରାଯାଇଥିଲା ଯେ, ଜନସାଧାରଣଙ୍କୁ ଆନ୍ଦୋଳନ କାର୍ଯ୍ୟକ୍ରମ ପ୍ରତି ପ୍ରଣୋଦିତ କରିବା ପାଇଁ କେତେକ ଜଣାଶୁଣା ନେତା ଗିରଫଦାରୀ ଦିଅନ୍ତୁ, କିନ୍ତୁ ଅଧିକାଂଶ ନେତୃସ୍ଥାନୀୟ ବ୍ୟକ୍ତି ଗିରଫ ନ ହୋଇ ପ୍ରଶାସନକୁ ଅଚଳ କରିବା ପାଇଁ ଗୁପ୍ତ ସଙ୍ଗଠନମାନ ସଙ୍ଗଠିତ କରନ୍ତୁ । ଏହା ସ୍ଥିର ହେଲା ଯେ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓଡ଼ିଶାରେ ଭୂମିଗତ ଆନ୍ଦୋଳନକୁ ସଙ୍ଗଠିତ କରିବେ ଓ ମାଳତୀ ଚୌଧୁରୀ କଟକରେ ଏକ ସାଧାରଣ ସଭାରେ ବକ୍ତୃତା ଦେଇ ଗିରଫ ହେବେ ।

ନିର୍ବିଘ୍ନରେ କଟକ ପହଞ୍ଚିବା ସେତେବେଳେ ଏକ ପ୍ରଧାନ ସମସ୍ୟା ଥିଲା । ବମ୍ବେରୁ ରାୟପୁର ବାଟେ ବିଜୟନଗରମ୍ ଦେଇ ଶେଷରେ ସେମାନେ ଭୁବନେଶ୍ୱରରେ ପହଞ୍ଚିଲେ ଓ ସେଠାରୁ କଟକ ଅଭିମୁଖେ ଯାତ୍ରା କଲେ । କାଠଯୋଡ଼ି ନଦୀ ପୋଲରେ କଡ଼ା ପୁଲିସ ପହରା ଯୋଗୁ ସେବାଟେ ଯିବାକୁ ନିରାପଦ ନ ମଣି ଏକ ଦେଶୀ ଡଙ୍ଗାରେ ବଢ଼ିଲା ନଈ ପାରିହେଲେ । କେତେଥର ପ୍ରଖର ସୁଅରେ ଡଙ୍ଗାଟି ଟଳମଳ ହୋଇଯାଉଥାଏ, କିନ୍ତୁ ସେମାନଙ୍କର ମନୋବଳ ଟାଣଥାଏ । ମାଳତୀ ନଜରୁଲଙ୍କ ଏକ ପ୍ରେରଣାଦାୟୀ ଗୀତ ଗାଉଥାନ୍ତି । ନଈ ପାରି ହୋଇ କଟକରେ ପହଞ୍ଚି ସେମାନେ ଅଲଗା ଅଲଗା ଗନ୍ତବ୍ୟ ପଥରେ ଆଗେଇଗଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ଭୂମିଗତ ଆନ୍ଦୋଳନର ଏକ ସୁରକ୍ଷିତ କେନ୍ଦ୍ରରେ ପହଞ୍ଚିଲେ ଓ ମାଳତୀ ପହଞ୍ଚିଲେ ନିଜ ଘରେ । ପରଦିନ ତାଙ୍କୁ ଗିରଫ କରି ନିଆଗଲା ।

ବିଶ୍ୱଯୁଦ୍ଧ ସରିବାର ପରବର୍ତ୍ତୀକାଳରେ କଂଗ୍ରେସ ଭିତରେ ଏକ ପକ୍ଷରେ ସୋଶାଲିଷ୍ଟ, ପ୍ରଗତିବାଦୀ ନେତା ଓ ଅନ୍ୟ ପକ୍ଷରେ ପୁରାତନ ପନ୍ଥୀଙ୍କ ମଧ୍ୟରେ ସଙ୍ଗଠନର ନେତୃତ୍ୱ ପାଇଁ ଦ୍ୱନ୍ଦ୍ୱ ଉପୁଜି ଆସେ । ମାଳତୀଦେବୀ କଂଗ୍ରେସ ଦଳୀୟ ପ୍ରତିନିଧିଙ୍କ ବିରୋଧରେ ସଭାପତି ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ବିଜୟୀ ହୋଇ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ ଓ ସୁରେନ୍ଦ୍ର ଦ୍ୱିବେଦୀ ହେଲେ ସାଧାରଣ ସମ୍ପାଦକ ।

ମହାତ୍ମାଗାନ୍ଧୀ ଓ ନୋଆଖାଲି ଘଟଣା ତାଙ୍କୁ ଅଭିଭୂତ କଲା ଓ ସେ ମହାତ୍ମାଗାନ୍ଧୀଙ୍କ ସହିତ ଯୋଗଦେବା ପାଇଁ ନୋଆଖାଲି ଗଲେ । ସେ କଂଗ୍ରେସର ସଭାପତି ପଦରୁ ଓ ସୁରେନ୍ଦ୍ର ଦ୍ୱିବେଦୀ ସାଧାରଣ ସମ୍ପାଦକ ପଦରୁ ଇସ୍ତଫା ଦେଲେ ।

୧୯୫୦ ପୂର୍ବରୁ ମାଳତୀଦେବୀ ଓ ସାରଙ୍ଗଧର ଦାସ ଆଦିବାସୀ ଓ ହରିଜନମାନଙ୍କ ଭିତରେ ସେବା କାର୍ଯ୍ୟ କରିବାକୁ ଉତ୍କଳ ନବଜୀବନ ମଣ୍ଡଳ ଗଠନ କରିଥିଲେ । ଏହି ସଙ୍ଗଠନ ମାଳତୀଙ୍କ ନେତୃତ୍ୱରେ ଦୀର୍ଘ ତିରିଶ ବର୍ଷଠାରୁ ଊର୍ଦ୍ଧ୍ୱ ସମୟ ଧରି ଭଲ କାମ କରି ଆସିଲା ।

ତାଙ୍କ ସମ୍ବନ୍ଧରେ ସୁରେନ୍ଦ୍ରନାଥ ଦ୍ୱିବେଦୀ ନିଜର ୧୯୮୪ରେ ପ୍ରକାଶିତ ପୁସ୍ତକ "Quest for Socialism"ରେ କହିଛନ୍ତି—

"ମାଳତୀ ଚୌଧୁରୀଙ୍କର ଶିକ୍ଷିତ ଉଚ୍ଚଶ୍ରେଣୀର ପାରିବାରିକ ପୃଷ୍ଠଭୂମି ଥିଲେ ମଧ୍ୟ ସେ ନିଜର ସମସ୍ତ ପ୍ରକାରର ସୁଖ ସୁବିଧାକୁ ଜଳାଞ୍ଜଳି ଦେଇ ନିଜର ବିଛଣା-ପତ୍ର ସଙ୍ଗରେ ଧରି ଦେଶାତ୍ମବୋଧ ସଙ୍ଗୀତ ଗାଇ ଗାଇ ନାନା ସ୍ଥାନ ବୁଲୁଥିଲେ । ସେ ଏବଂ ଗୌରାଙ୍ଗଭାଇ (ଗୌରାଙ୍ଗଚରଣ ଦାସ) ଗାଁ'କୁ ଗାଁ ବୁଲୁଥିଲେ । ଲୋକେ ସେମାନଙ୍କୁ ସ୍ୱୀକୃତି ଦେଲେ । ସେମାନଙ୍କ ପ୍ରତି ଲୋକମାନଙ୍କର ବିଶ୍ୱାସ ଦିନକୁ ଦିନ ପ୍ରଗାଢ଼ ହେବାରେ ଲାଗିଲା । ମାର୍କସ ଲେଖିଥିଲେ—"ଯେଉଁମାନେ ଶ୍ରେଣୀବିହୀନ ସମାଜ ଗଠନ ପାଇଁ କାମ କରୁଛନ୍ତି ସେମାନେ ଆଗ ନିଜକୁ ଉନ୍ନତ କରନ୍ତୁ । ଏହା କେବଳ ବାକ୍ୟ ଏବଂ ବକ୍ତୃତାରେ ନ ହୋଇ କାର୍ଯ୍ୟରେ ମଧ୍ୟ ହେବା ଉଚିତ୍ ।"

ମାଳତୀ ଚୌଧୁରୀ ବିଗତ ପଚାଶ ବର୍ଷଧରି ନିଜ ଜୀବନରେ ଏହାକୁ ପ୍ରୟୋଗ କରି ଆସୁଛନ୍ତି ଏବଂ ନିଜ ଜୀବନ ଚଳଣିରେ ଏହି ଅଭ୍ୟାସ ରଖିଛନ୍ତି । କ୍ଷମତାଠାରୁ ଦୂରରେ ରହି ଜନସାଧାରଣଙ୍କ ସମସ୍ୟା ସହିତ ସେ ନିଜକୁ ସଂପୂର୍ଣ୍ଣ ରୂପେ ଜଡ଼ିତ କରିଦେଲେ । ଏବେ ବୃଦ୍ଧି-ମୂଲ୍ୟ ଆନ୍ଦୋଳନ ମୃତ । ରାଜନୀତି ଆଉ ସେବା-ତ୍ୟାଗର ବଶବର୍ତ୍ତୀ ନ ହୋଇ ପେସା ପାଲଟି ଗଲାଣି । କିନ୍ତୁ ନିଜର ଦୁର୍ବଳ ସ୍ୱାସ୍ଥ୍ୟ ଓ ବୟସର ତାଡ଼ନାକୁ ଏଡ଼ାଇ ମାଳତୀ ଚୌଧୁରୀ ଏବେ ଗଞ୍ଜାମ ଓ କୋରାପୁଟର ବଣ, ଜଙ୍ଗଲ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରଖିଛନ୍ତି । ଶୋଷିତ, ନିଷ୍ପେଷିତ ଜନସମୂହ ଭିତରେ କାମ କରିବା ପାଇଁ ଯେତେ କଷ୍ଟ ଓ ଜଞ୍ଜାଳ ସହିବାକୁ ପଡ଼ିଲେ ମଧ୍ୟ ସେ ଏଥିପାଇଁ ଦୃଢ଼ପଣ କରିଛନ୍ତି । ଦେଶର ଅନ୍ୟ କୌଣସି ସ୍ଥାନରେ ଏଭଳି ଉଦାହରଣ ବିରଳ ।

( ସାପ୍ତାହିକ "JANATA", April, 19,1998 ସଂଖ୍ୟାରୁ ଉଦ୍ଧୃତ ଓ ଅନୂଦିତ

———

## ଯାହା ମୁଁ ଦେଖିଲି—

# ଶ୍ରୀମତୀ ମାଳତୀ ଚୌଧୁରୀ

☐ ସ୍ୱଃ ମିନୁ ମସାଣୀ

ବେଳେ ବେଳେ କୌଣସି ସ୍ୱତନ୍ତ୍ର ପୁରୁଷ କିମ୍ବା ମହିଳାଙ୍କର ସାହସିକ କାମ ଯୋଗୁ ଦେଶର ଭବିଷ୍ୟତ ସମ୍ବନ୍ଧରେ ଆଶା ଜାଗ୍ରତ ହେଉଛି, ଅନ୍ୟଥା ଭବିଷ୍ୟତ ଅନ୍ଧକାରଚ୍ଛନ୍ନ ହୋଇଯାନ୍ତା । ମୋର କଂଗ୍ରେସ ସୋଶାଲିଷ୍ଟ ପାର୍ଟି ବେଳର ପୁରୁଣା ବନ୍ଧୁ ଓ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କ ବିଧବା ପତ୍ନୀ ଶ୍ରୀମତୀ ମାଳତୀ ଚୌଧୁରୀ ହେଉଛନ୍ତି ସେଭଳି ସାହସିକ କାମ କରିଥିବା ଜଣେ, ଯାହାଙ୍କୁ କି ମୁଁ ୧୯୩୦ ଦଶକରେ ଜାଣିଥିଲି, କିନ୍ତୁ ତା ପରଠାରୁ ତାଙ୍କୁ ଆଉ ଭେଟି ନାହିଁ । ଏକ ସମ୍ଭ୍ରାନ୍ତ ପରିବାରରୁ ଆସିଥିବା ବଙ୍ଗଲଲନା ମାଳତୀ ସେବାଗ୍ରାମ ଆଶ୍ରମର ନିଃଶେଷ ଗାନ୍ଧୀବାଦୀ ଗୋଷ୍ଠୀର ଜଣେ ଅଗ୍ରଣୀ କର୍ମୀ ଥିଲେ ।

ନିକଟରେ ସେବାଗ୍ରାମରେ ପ୍ରଦତ୍ତ ବଜାଜ ପୁରସ୍କାର ପାଇଁ ତାଙ୍କର ମଧ୍ୟ ନାମ ଥିଲା । ଦୁର୍ଭାଗ୍ୟବଶତଃ ପ୍ରଧାନମନ୍ତ୍ରୀ ତାଙ୍କୁ ଏହି ପୁରସ୍କାର ପ୍ରଦାନ କରିଥାନ୍ତେ । କିନ୍ତୁ ପ୍ରଧାନ-ମନ୍ତ୍ରୀ ରାଜୀବ ଗାନ୍ଧୀ ଏଭଳି ପୁରସ୍କାର ପ୍ରଦାନ ପାଇଁ ଅଯୋଗ୍ୟ ହୋଇଥିବାରୁ ତାଙ୍କ ହାତରୁ ପୁରସ୍କାର ଗ୍ରହଣ କରିବା ପାଇଁ ଅସ୍ୱୀକାର କରି ମାଳତୀ ଠିକ୍ କଲେ । ସାବାସ୍ ମାଳତୀ ।

[ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱଃ ମିନୁ ମସାଣୀଙ୍କର ପ୍ରକାଶିତ ଲେଖା—"As I see it" The Statesman, March, ৩—1989ର ଓଡ଼ିଆ ଅନୁବାଦ ]

———

# ଅନ୍ତ୍ୟୋଦୟରୁ ସର୍ବୋଦୟ

□ ମଦନମୋହନ ସାହୁ

ସର୍ବୋଦୟର ଯଥା ଅର୍ଥ ଅନ୍ତ୍ୟୋଦୟ । ସର୍ବୋଦୟର ଏହି ସହି ଅର୍ଥରେ ବିଗତ ସ୍ୱଳିଶ ବର୍ଷ ଧରି ପୂଜ୍ୟା ମାଲତୀ ଦେବୀଙ୍କର ସମାଜ ସେବାର ଲକ୍ଷ୍ୟ ଓ କାର୍ଯ୍ୟକ୍ରମ ଅନ୍ତ୍ୟୋଦୟ ହିଁ ହୋଇଛି ।

ଭାରତୀୟ ସମାଜ ସ୍ତରର ଅନ୍ତରେ ଗିରିଜନ, ହରିଜନ, ପଲ୍ଲୀଜନ ଓ ନାରୀଜନ ରହିଛନ୍ତି, ରହିଥିଲେ ଓ ଭବିଷ୍ୟତରେ କେତେ ଯୁଗ ରହିବେ ତାହା ଭବିଷ୍ୟତ କହିବ ।

ସତ୍ୟାଗ୍ରହ, ଅସହଯୋଗ, ଅହିଂସ-ସଂଗ୍ରାମ, ଜୀବନ ଶିକ୍ଷା ପରି ସର୍ବୋଦୟ ମଧ୍ୟ ଗାନ୍ଧୀ ବିଚାର ଧାରାର ପ୍ରଚଳିତ ଶବ୍ଦ ବିଶେଷ ଓ ମାନବତାର ସମୃଦ୍ଧି ପାଇଁ ସୁଚିନ୍ତିତ କର୍ମ ପନ୍ଥା । କ୍ଷୁଦ୍ରାଦପିକ୍ଷୁଦ୍ର ଆତ୍ମିକ ପରିବାର ହେଉ ବା ବିରାଟ ବିଶ୍ୱ ପରିବାର ହେଉ, ଶାନ୍ତି ମୈତ୍ରୀ ପୂର୍ଣ୍ଣ ସହାବସ୍ଥାନସହ ସୁଖସ୍ୱାଚ୍ଛନ୍ଦ୍ୟରେ ବଞ୍ଚିବା ପାଇଁ ସର୍ବୋଦୟ ବିଚାର କର୍ମଧାରା ସର୍ବଶ୍ରେଷ୍ଠ କାର୍ଯ୍ୟକ୍ରମ । ଏହା ହେଉଛି ମହାତ୍ମା ଗାନ୍ଧୀଙ୍କର ଜୀବନର ସାଧନା ଓ ମାନବ ସମାଜକୁ ମହାନ ଅବଦାନ ।

ଦକ୍ଷିଣ ଆଫ୍ରିକାରେ ଗୋଟିଏ ରେଳଯାତ୍ରାରେ ସମୟ କଟାଇବାପାଇଁ ଜଣେ ଇଂରାଜ ବନ୍ଧୁ "ଅନ୍ ଟୁ ଦିସ୍ ଲାଷ୍ଟ" ନାମକ ଯେଉଁ ପୁସ୍ତକ ଖଣ୍ଡିକ ଦେଇଥିଲେ, ଗାନ୍ଧୀଜୀଙ୍କ ହୃଦୟ କନ୍ଦରରେ ତାହାହିଁ ଥିଲା ସର୍ବୋଦୟ ବିଚାରର ଉନ୍ମେଷକ । ସେହି ତରଳ ସରଳ ବିଚାର ଯେତେବେଳେ ଘନୀଭୂତ ହେଲା ଓ ପୁସ୍ତକର ଆକାର ନେଲା, ତାହାର ନାମ ହେଲା 'ସର୍ବୋଦୟ' । ପୁସ୍ତକର ନାମକରଣ 'ଅନ୍ତ୍ୟୋଦୟ' ରଖିଥିଲେ ଅନୁବାଦଟି ଅଧିକ ଆକ୍ଷରିକ ହୋଇଥାନ୍ତା । କିନ୍ତୁ ସର୍ବୋଦୟ ଚିନ୍ତା ତାହାଠାରୁ ଅଧିକ ଭାବଗର୍ଭକ, ବ୍ୟାପକ ଓ ସାର୍ବଜନୀନ । ସମାଜର ଅନ୍ତରେ ଥିବା ଶ୍ରେଣୀଙ୍କର ବଞ୍ଚିତ ଓ ପ୍ରବଞ୍ଚିତହୋଇ ଅସ୍ତ ହୋଇଥିବା ମାନବ ସୁଲଭ ସୁଗୁଣଗୁଡ଼ିକର ଯେପରି ଉଦୟ ଆବଶ୍ୟକ, ସମାଜର ଅଗ୍ରରେ ଥିବା ସଭ୍ୟଭବ୍ୟ ମାନ୍ୟ ବ୍ୟକ୍ତିଙ୍କର ଯେଉଁ ସୁଗୁଣାବଳୀ ଅସ୍ତ ହୋଇଛି ତାହାର ଉଦୟ ପାଇଁ ସେମାନଙ୍କୁ ଅହିଂସ ଓ ଅପରିଗ୍ରହୀ ହେବାକୁ ହେବ । ଏହି ଦୃଷ୍ଟିରୁ ସର୍ବୋଦୟ ସର୍ବଗ୍ରାହୀ ନ ହେଲେ ଭାବୀ ମନୁଷ୍ୟ ସମାଜର ଅସ୍ତିତ୍ୱ ଆଶଙ୍କିତ । ବର୍ତ୍ତମାନ ସମାଜରେ ଅନ୍ୟର ବିପତ୍ତିରେ ଯେଉଁ ସମ୍ପତ୍ତି ଅର୍ଜନର ପ୍ରବୃତ୍ତି ଧ୍ୱଂସାତ୍ମକ ଭାବରେ ବୃଦ୍ଧି ପାଉଛି ତାହାର ଅବସାନ ଘଟାଇ ସର୍ବୋଦୟର ମୂଳବୀଜ 'ସମସ୍ତଙ୍କର ମଙ୍ଗଳରେ ନିଜର ମଙ୍ଗଳ' ଏହି ଚିନ୍ତାରେ ମନୁଷ୍ୟକୁ ଉଦ୍‌ବୁଦ୍ଧ କରିବା ସର୍ବୋଦୟର ମୂଳ ଲକ୍ଷ୍ୟ ଓ କାର୍ଯ୍ୟକ୍ରମ । ପୂଜ୍ୟା ମାଲତୀଦେବୀ ସମାଜର ଅନ୍ତରେ ଥିବା ଜନତାର ଚେତନା ସୃଷ୍ଟିର ଓଡ଼ିଶାରେ ଅଗ୍ରଦୂତିକା, ସନ୍ଦେଶବାହିକା ଓ ଅଭିଯାତ୍ରୀ ନାୟିକା ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ, ଗାନ୍ଧୀଜୀଙ୍କ ନିଧନ ପରେ ପରେ ସର୍ବୋଦୟ ସମାଜର ସ୍ଥାପନା ଓ ସର୍ବୋଦୟ ଶବ୍ଦର ସର୍ବସାଧାରଣରେ ବ୍ୟାପକ ପ୍ରଚାର ହେବା ପ୍ରାୟ ତିନିବର୍ଷ ପୂର୍ବରୁ, ଅନୁଗୁଳରେ ନବଜୀବନ ମଣ୍ଡଳର ସ୍ଥାପନା ଦିନରୁ ନୁମା, ଜ୍ଞାତ ବା ଅଜ୍ଞାତରେ ଓଡ଼ିଶାର ଦୁର୍ଗମ୍ୟ ଗିରି କନ୍ଦରର ଆଦିବାସୀ ବହୁଳ ଅଧ୍ୟୁଷିତ ଅଞ୍ଚଳରେ ଅନ୍ତ୍ୟୋଦୟ କାମ ଆରମ୍ଭ କରିଦେଇଥିଲେ ଓ ନାନା ବାଧାବିଘ୍ନ ସତ୍ତ୍ୱେ ତାହା ଆଜି ପର୍ଯ୍ୟନ୍ତ ଅବ୍ୟାହତ ଭାବରେ ଚାଲିଛି । ଅବ୍ୟାହତ ଭାବରେ ଚାଲିଛି କହିବା ଠିକ୍ ନୁହେଁ, ଏପରି କହିବାରେ ସତ୍ୟର ଅପଳାପ ହେବ । ଅନ୍ତ୍ୟୋଦୟର ପ୍ରତିକୂଳ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ, ଏହି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ମଧ୍ୟରେ ଲାଞ୍ଚଖୋର, ଲାଭଖୋର, ସୁଧଖୋର ସହିତ ଲୋକଙ୍କୁ ଅଜ୍ଞାନ ରଖି ଶାସନ ଗାଦୀ ଅଧିକାର କରୁଥିବା ଶାସନଖୋର ଅନ୍ତର୍ଗତ । ଅନ୍ୟ କଥାରେ ସାମ୍ରାଜ୍ୟବାଦୀ, ପୁଞ୍ଜିବାଦୀ ଓ ସାମନ୍ତବାଦୀ ମନୋବୃତ୍ତିର ଶାସକ ଶୋଷକ ଦଳ ସମୂହ । ରାଜନୈତିକ ସ୍ୱାଧୀନତା ପ୍ରାପ୍ତିର ସ୍ୱଳିଶ ବର୍ଷ ପରେ ଗୋଟିଏ ସମାଜବାଦୀ ଲୋକତାନ୍ତ୍ରିକ ପଦ୍ଧତିରେ ଖୋଲାଖୋଲି ଭାବରେ ଅର୍ଦ୍ଧସାମ୍ରାଜ୍ୟବାଦ, ଅର୍ଦ୍ଧପୁଞ୍ଜିବାଦ ଓ ଅର୍ଦ୍ଧସାମନ୍ତବାଦ କାଏମ ରହି ଅନ୍ତରାଳରେ ଏକଛତ୍ରବାଦକୁ

ଗତ କରୁଥିବାରୁ ସର୍ବୋଦୟ ସମାଜର ମଙ୍ଗଳତା ପାଇଁ ଅନ୍ତ୍ୟୋଦୟ କାର୍ଯ୍ୟକ୍ରମ ବ୍ୟାହତ ହେଉଛି । ଏହି ବ୍ୟାହତକାରୀ ଯେ ହେଉନ୍ତୁ ପ୍ରକାରାନ୍ତରେ ମାନବଦ୍ରୋହୀ, ଦେଶଦ୍ରୋହୀ ଓ ସାକ୍ଷାତରେ ଅସ୍ୱଧଃସ୍ଥ ଆତ୍ମଦ୍ରୋହୀ, ଏକଥା ବୁଝିବା ଉଚିତ । ଏକଥା ସମସ୍ତଙ୍କୁ ବୁଝାଇବା କାମରେ ଲାଗିଛନ୍ତି ମାଳତୀଦେବୀ । କାରଣ ସେ କାହାରି ପ୍ରତି ଉତ୍ପ୍ରୋଧ ନ ରଖି ଯାହା ଠିକ୍ ଭାବନ୍ତି କହନ୍ତି ଓ କରନ୍ତି । ପୁଣି ସେ ଠିକ୍‌କୁ ବେଠିକ୍ ମନେକଲେ ସହଜରେ ସଜାଡ଼ି ନିଅନ୍ତି । ଏହା ହେଉଛି ସର୍ବୋଦୟକୁ ସର୍ବଗ୍ରାହ୍ୟ କରିବାର ଏକମାତ୍ର ରାହା । ସତ୍ୟର ଅନୁସନ୍ଧାନ ଓ ସତ୍ୟର ନିର୍ମମ ପ୍ରକାଶ ସର୍ବୋଦୟର ଅମୋଘ ଅହିଂସକ ଅସ୍ତ୍ର । ମିଥ୍ୟା ଛଳନାମୟୀ, ମିଥ୍ୟା କଥନ ଓ ଛଳନା ପ୍ରଦର୍ଶନ ହିଂସାର ନାମାନ୍ତର ମାତ୍ର । ଅନୁଭୂତ ହେଉଛି ସତ୍ୟର ଗୋପନକୁ ଅହିଂସା ଧର୍ମ ବୋଲି ସର୍ବୋଦୟ କ୍ଷେତ୍ରରେ ଥିବା ଅନେକ ମନେକରନ୍ତି ଓ ଏହାର ପରିଣାମରେ ସର୍ବୋଦୟ ପରିବର୍ଗରେ ଦ୍ୱନ୍ଦ୍ୱ ଘଟିଛି । ଶ୍ରୀଯୁକ୍ତା ମାଳତୀଦେବୀ ବ୍ୟକ୍ତିଗତ ଆଚରଣରେ ଏହାର ବ୍ୟତିକ୍ରମ କରୁଥିବାରୁ ସମୟ ବିଶେଷରେ ସ୍ଥାନ ବିଶେଷରେ ତାହାଙ୍କର ଅଭିକ୍ରମ ବିଶେଷ ପ୍ରକାଶ ପାଇଥାଏ ।

ସର୍ବୋଦୟ ହେଉଛି ମାତୃ ଧର୍ମ । ସନ୍ତାନ ପାଇଁ ମା'ର ଅଦେୟ କିଛି ନ ରହିଲା ପରି ମାତୃଧର୍ମୀ କର୍ମ ବିନା ସର୍ବୋଦୟ ଅସମ୍ଭବ । ସୁଖର କଥା ଲୁମା ଏହି ମାତୃଧର୍ମ ଅନୁସରଣ କରିଥିବାରୁ କେତେକ ଭଗିନୀ ତାହାଙ୍କର ଅନୁଗାମିନୀ ହୋଇ ଅନ୍ତ୍ୟୋଦୟ କାମରେ ଲାଗିଛନ୍ତି ।

ଅନ୍ତ୍ୟୋଦୟ କରିବାକୁ ହେଲେ ସମାଜର ଅନ୍ତରେ ଥିବା ଶ୍ରେଣୀ ମଧ୍ୟରେ ରହି, ସେମାନଙ୍କର ଦୁଃଖ ସୁଖରେ ଭାଗୀ ହେବାକୁ ହେବ । ତାଙ୍କର ରହନ ସହନକୁ ଘୃଣା ନ କରି ତାଙ୍କରି ସହ ସହାବସ୍ଥାନ କରି ମୈତ୍ରୀ ଓ ସହିଷ୍ଣୁତାପୂର୍ବକ ସଂସ୍କାର ଆଣିବାକୁ ହେବ । ରାଜକୋଟ ରାଜ୍ୟର ଦେବାନ ପୁତ୍ର, ବିଲାତ ଫେରନ୍ତା ବାରିଷ୍ଟର ଗାନ୍ଧୀ ଆଫ୍ରିକାର ଶ୍ରମିକଙ୍କୁ ନେଇ ଟଲଷ୍ଟୟ ଫାର୍ମ ଏବଂ ଫୌନିକ୍ସ ଆଶ୍ରମ ଗଢ଼ି ତାଙ୍କ ଗହଣରେ ଥିଲେ ଓ ଭାରତକୁ ଫେରି ଅହମେଦାବାଦ ସହର ଉପକଣ୍ଠରେ ସାବରମତୀ ଆଶ୍ରମ ଓ ପରବର୍ତ୍ତୀ ଜୀବନରେ ୧୯୩୪ରୁ ଓ୍ୱାର୍ଦ୍ଧା ନିକଟବର୍ତ୍ତୀ ହରିଜନ ବସ୍ତି ସେଓଗ୍ରାମରେ ଗରିବ ହରିଜନଙ୍କ ପରି ସାମାନ୍ୟ କୁଡ଼ିଆଘରେ ରହି ପ୍ରବଳ ପ୍ରତାପୀ ବ୍ରିଟିଶ କେଶରୀଙ୍କୁ ଭାରତରୁ ହଟାଇ ପାରିଲେ । ଏହା ଥିଲା ତାହାଙ୍କର ସର୍ବୋଦୟ ସମାଜ ଗଠନର କାର୍ଯ୍ୟକାରୀ ଆଦର୍ଶ । ମାଳତୀଦେବୀ ଏହି ଆଦର୍ଶର ଅନୁକରଣରେ ଗଡ଼ଜାତ ରାଜାମାନଙ୍କର ଅନ୍ୟାୟ ଅତ୍ୟାଚାର ବିରୋଧରେ ଲଢ଼ାଇ କରିବାକୁ ବୃଦ୍ଧଦଶରେ ବିଭିନ୍ନ ଗଡ଼ଜାତ ପରିବେଷ୍ଟିତ ଅନୁଗୁଳର ଅନତିଦୂରରେ ଅବସ୍ଥିତ ସୁସୁଡ଼ା ଗ୍ରାମରେ ରହିଲେ ଓ ଗଡ଼ଜାତରୁ ବିତାଡ଼ିତ ବିପ୍ଳବୀଙ୍କର ସନ୍ତାନମାନଙ୍କର ଶିକ୍ଷା ଉଦ୍ଦେଶ୍ୟରେ ଯେଉଁ ଅନୁଷ୍ଠାନ କଲେ ତାହା କ୍ରମେ ବାଜିରାଉତ ଛାତ୍ରାବାସ ନାମରେ ପରିଚିତ ହୋଇ, ନବଜୀବନ ମଣ୍ଡଳର ମୁଖ୍ୟ କାର୍ଯ୍ୟାଳୟ ହେଲା ଓ ଅନ୍ତ୍ୟୋଦୟ କାର୍ଯ୍ୟ ଆରମ୍ଭ କଲା । ଗାଁଲୋକଙ୍କୁ ନେଇ ସର୍ବୋଦୟ ସମାଜ ସ୍ଥାପନ କରିବାକୁ ହେଲେ ଗାଁକୁ କର୍ମସ୍ଥଳୀ କରିବାକୁ ହେବ । ଗାନ୍ଧୀଜୀ କର୍ମୀଙ୍କୁ ଗାଁକୁ ପଠାଉଥିଲେ । ସମସ୍ତଙ୍କୁ ଗାଁକୁ ଫେରିବାକୁ କହୁଥିଲେ । ପରସ୍ପର କୁହାକୁହି ହେଉଥିଲେ ବେକ୍ ଟୁ ଭିଲେଜ୍ (Back to Village) । ମାତ୍ର ଗାନ୍ଧୀଙ୍କ ତିରୋଧାନ ପରେ ସମସ୍ତେ ଗାଁକୁ ବେକ୍ ବା ପିଠି ଦେଖାଇଦେଇ ସହର ମୁହାଁ ହେଲେ । ଯେଉଁ ଗ୍ରାମାଭିମୁଖୀ ଗଠନମୂଳକ କାମର ଯାବତୀୟ କାର୍ଯ୍ୟାଳୟ ପୂର୍ବର ଅନାମଧେୟ ସେଓଗାଁରେ ରହିଥିଲା, ତାହା ଗାନ୍ଧୀ ଯୋଗୁଁ ସେବାଗ୍ରାମ ନାମରେ ବିଶ୍ୱରେ ପରିଚିତ ହେଲା । ମାତ୍ର ଏହି ସବୁ ଗଠନମୂଳକ କାର୍ଯ୍ୟର ପ୍ରାଣକେନ୍ଦ୍ର ସବୁ ସେବାଗ୍ରାମରୁ ଦିଲ୍ଲୀ, ବମ୍ବାଇ, ବନାରସ ଆଦି ସହରକୁ ସ୍ଥାନାନ୍ତରିତ ହେବାରୁ କ୍ରମେ ନିର୍ଜୀବ ହୋଇପଡ଼ିଛି । କିନ୍ତୁ ମାଳତୀଦେବୀଙ୍କ କର୍ମକେନ୍ଦ୍ର ସ୍ଥାନାନ୍ତରିତ ହୋଇ ନାହିଁ । ସର୍ବୋଦୟର ସ୍ୱରୂପ ପ୍ରକାଶ ପାଇଁ ଗାଁରେ ପଡ଼ିରହିଛନ୍ତି । ସର୍ବୋଦୟ ପ୍ରତି ତାହାଙ୍କର ନିଷ୍ଠା ଓ କାସ୍ଥାର ଏହା ପରିଚାୟକ । ସମାଜର ସମସ୍ତଙ୍କୁ ଯେଉଁ ସର୍ବନିମ୍ନ ଆବଶ୍ୟକତା ଉପଲବ୍ଧ ନୁହେଁ ତହିଁରୁ ଅଧିକ ଗ୍ରହଣ କରିବା ସମାଜଦ୍ରୋହ ଅଟେ । ମାତ୍ର ଭାରତକୁ ସମାଜବାଦୀ ରାଷ୍ଟ୍ର ଭାବରେ ଘୋଷଣା କରି ଧୃତରାଷ୍ଟ୍ରମାନେ କ୍ଷମତାର ଯେପରି ନିର୍ଲଜ୍ଜ ଅପପ୍ରୟୋଗ କରିଯାଉଛନ୍ତି ତାହା ଦ୍ୱାରା ସମାଜର ସର୍ବନିମ୍ନ ସ୍ତରରେ ଥିବା ଶ୍ରେଣୀଙ୍କର ଦୁଃଖ ଦାରିଦ୍ର୍ୟ ବର୍ଷକୁ ବର୍ଷ ବହୁଗୁଣରେ ବଢ଼ୁଛି । ମାଳତୀଦେବୀଙ୍କ ନିମ୍ନତମ ଆବଶ୍ୟକ କୁଟୀର ନିବାସ ଏହାର ନୀରବ ପ୍ରତିବାଦ ନୁହେଁ ତ ଆଉ କ'ଣ ? ସାମାଜିକ ଜୀବନରେ ଯେଉଁ ଆର୍ଥିକ ବିଷମତା ବଢ଼ିବାରେ ଲାଗିଛି ତହିଁପାଇଁ ଆରମ୍ଭରୁ ସ୍ୱାଧୀନ ଭାରତର ସଂଗ୍ରାମୀ କ୍ଷମତାଧୀଶଗଣ ଦାୟୀ ।

ସ୍ୱାଧୀନତା ପ୍ରାପ୍ତି ପୂର୍ବ ସବୁ ଆଚାର ପ୍ରଚାର ବିଚାର ସମ୍ପୂର୍ଣ୍ଣ ଭାବରେ ଭୁଲିଗଲେ । ଜାତିର ପିତା ଦେଶର ଅବସ୍ଥା ଭଲ ଭାବରେ ହୃଦୟଙ୍ଗମ କରି କହିଥିଲେ ସ୍ୱାଧୀନ ଭାରତରେ କୁଡ଼ିଆ ଓ ମହଲଘର ଭିତରେ ପ୍ରଭେଦ ରହିବ ନାହିଁ । କାରଣ ଦେଶର ଆର୍ଥିକ ସ୍ଥିତି ଯାହା ସମସ୍ତଙ୍କ ପାଇଁ ଅଟ୍ଟାଳିକା ତିଆରି କରିଯାଇ ପାରିବ ନାହିଁ । ତେଣୁ ସେ ସମସ୍ତଙ୍କୁ ମିଳିପାରିବା ଭଳି କୁଡ଼ିଆରେ ରହୁଥିଲେ । ମାଳତୀ ଦେବୀ ଏହି ସର୍ବୋଦୟ ବିଚାରରେ କୁଟୀରରେ ଆଜି ପର୍ଯ୍ୟନ୍ତ ରହିଛନ୍ତି । ସେ ମଧ୍ୟ ଅଭିଜମୀ ସଂଗ୍ରାମୀ ଥିଲେ । ଯେ କୌଣସି କ୍ଷମତାଧାରୀ ହେବାର ଯୋଗ୍ୟତା ଥିଲା । ସର୍ବୋଦୟ ବିଚାର ତ ଅନ୍ତରର ସୃଷ୍ଟି, ଅନ୍ତର ମହତ୍ତ୍ୱପୂର୍ଣ୍ଣ । ଲୋକତନ୍ତ୍ରର ସାଧାରଣ ମାନ୍ୟତା ଓ ଭଦ୍ରତା ହେଲା ନିଜକୁ ପଛକୁ ରଖି ଅନ୍ୟକୁ ଅଗ୍ରାଧିକାର ଦେବା । ସ୍ୱାଧୀନତା ପ୍ରାପ୍ତି ପରେ ସ୍ୱାଧୀନତା ସଂଗ୍ରାମୀଙ୍କର ଏତିକି ସୌଜନ୍ୟ ରହିଲା ନାହିଁ । ଅନ୍ୟକୁ ସୁବିଧା ଦେବା ପାଇଁ ମାଳତୀଦେବୀ ସମ୍ବିଧାନ ସଭାର ସଭ୍ୟପଦ ଛାଡ଼ିଦେଲେ । କ୍ଷମତା ଲୋଭ ଓ ସମ୍ପତ୍ତି ଲୋଭ ତ୍ୟାଗରେ ସର୍ବୋଦୟର ମୂଳଭିତ୍ତି ରହିଛି । ତ୍ୟାଗରେ ଭୋଗ ସର୍ବୋଦୟର ଯୋଗ । ଉପନିଷଦର ଉପଦେଶ ହେଲା ତ୍ୟାଗରେ ଭୋଗ କର । ମାଳତୀଦେବୀଙ୍କ ତ୍ୟାଗରେ ଭୋଗ ସ୍ପୃହା ହିଁ ସର୍ବୋଦୟର ଜୀବନ୍ତବିଚାର, ଆଚାର ଓ ପ୍ରଚାର । ମହାତ୍ମା ଗାନ୍ଧୀ କହିଥିଲେ ତାହାଙ୍କର ଜୀବନ ହିଁ ତାହାଙ୍କର ସନ୍ଦେଶ । ମୋ ବିଚାରରେ ନୁମାଙ୍କ ଚଳନି ନୁମାଙ୍କର ଅନ୍ତ୍ୟୋଦୟର କରଣୀ ।

ସମ୍ମାନନୀୟା ମାଳତୀଦେବୀଙ୍କ ନାମ ଛାତ୍ର ଜୀବନରୁ ଶୁଣିଥିଲି । କଟକରେ ଶିକ୍ଷକ ତାଲିମ ନେବା ସମୟରେ ଅନେକ ସମୟରେ ତାଙ୍କୁ ଦେଖିବାର ସୁଯୋଗ ଘଟିଛି—ବିଶେଷ କରି ହଷ୍ଟେଲରୁ ସନସାଇନ୍ ପଡ଼ିଆକୁ ଫୁଟବଲ ଖେଳି ଯିବା ସମୟରେ । ଏହି ଅବଧି ମଧ୍ୟରେ ଗଡ଼ଜାତ ଆନ୍ଦୋଳନ ତେଜସ୍ୱାନ୍ ହେଲା ଏବଂ ବାଜିରାଉତକୁ ମାରିଗଲା । ଏହି ସମୟରେ ମାଳତୀଦେବୀଙ୍କର ବିପ୍ଳବୀ ଜୀବନର ଖ୍ୟାତି ଖୁବ୍ ଶୁଣାଗଲା । କିନ୍ତୁ ପରିଚୟ ଘଟିବାର ସୁଯୋଗ ନଥିଲା । ଏହି ମନସ୍ୱିନୀଙ୍କ ସହ ବାସ୍ତବ ପରିଚୟ ଘଟିଲା ୧୯୪୭ରେ । ଛ'ବର୍ଷର ବଡ଼ ଝିଅ ମୀରାକୁ ମୌଳିକ ତାଲିମ ପାଇଁ ବାଜିରାଉତ ଛାତ୍ରାବାସରେ ପ୍ରଥମ ଥର ଛାଡ଼ିବାକୁ ଗଲି । ତାପରେ ବଡ଼ପୁଅ ମିହିର, ସାନ ଭାଇର ବଡ଼ପୁଅ ସୁଶୀଲ ମଧ୍ୟ ସେଠାକୁ ଗଲେ । ୧୯୩୮ରେ ମହାତ୍ମା ଗାନ୍ଧୀଙ୍କର ନୂତନ ଶିକ୍ଷାପ୍ରଣାଳୀ ପ୍ରକାଶ ପାଇଲା । ଏହି ଶିକ୍ଷାପ୍ରତି ଆକୃଷ୍ଟ ହୋଇ ଯଥାଶୀଘ୍ର ତହିଁରେ ଯୋଗଦେବା ସୁଯୋଗ ମୋର ପିତାଙ୍କ ଅକାଳ ମୃତ୍ୟୁ ଯୋଗୁଁ ୧୯୪୯ ପର୍ଯ୍ୟନ୍ତ ଜୁଟିଲା ନାହିଁ । ତେଣୁ ମୁଁ ପ୍ରଚଳିତ ସାଧାରଣ ସ୍କୁଲରେ ଶିକ୍ଷକତା କରୁଥିଲେ ମଧ୍ୟ ଝିଅପୁଅଙ୍କୁ ମୌଳିକ ଶିକ୍ଷାପାଇଁ ଅତି ଶ୍ରେଷ୍ଠ ଅବସ୍ଥାରେ ଦୂରଦୂରାନ୍ତକୁ ପଠାଇଥିଲି ଓ ସେମାନେ ସେବାଗ୍ରାମ ପର୍ଯ୍ୟନ୍ତ ପଢ଼ିବାକୁ ଯାଇଥିଲେ । ସର୍ବୋଦୟର ସଫଳତା ମୌଳିକ ଶିକ୍ଷା ଉପରେ ନିର୍ଭର କରେ ଓ ମାଳତୀଦେବୀ ଏପର୍ଯ୍ୟନ୍ତ ତାହାର କିଛି ନୀତି-ନିଷ୍ଠା ରଖିପାରିଛନ୍ତି । ଜାତୀୟ କଂଗ୍ରେସ ମୌଳିକ ଶିକ୍ଷାକୁ ଗ୍ରହଣ କରି ମଧ୍ୟ ସ୍ୱାଧୀନତାପରେ ଦାସତ୍ୱ ଦୀକ୍ଷା ଦେଉଥିବା ଇଂରାଜୀ ଶିକ୍ଷାକୁ ପାଶ୍ଚାତ୍ୟ ମୋହାନ୍ଧ ନେତୃବର୍ଗ ଛାଡ଼ି ପାରିଲେ ନାହିଁ । ୧୯୪୯ରେ ଓଡ଼ିଶାରେ ପୂର୍ବ ମୌଳିକ ବିଦ୍ୟାଳୟ ଚଳାଇବା ପାଇଁ ଶିକ୍ଷକମାନଙ୍କ ତାଲିମ ନିମନ୍ତେ ଉତ୍କଳ ମୌଳିକ ଶିକ୍ଷା ପରିଷଦ ପକ୍ଷରୁ ସେବାଗ୍ରାମକୁ ତାଲିମ ପାଇଁ ଗଲି । ୧୯୫୦ରେ ଅନୁଗୁଳରେ ସର୍ବୋଦୟ ସମାଜର ଦ୍ୱିତୀୟ ସମ୍ମିଳନୀ ହୋଇଥିଲା ଓ ସମ୍ମିଳନୀରେ ମୌଳିକ ଶିକ୍ଷାର ଗୋଟିଏ ପ୍ରଦର୍ଶନୀ କରାଯିବାର ସ୍ଥିର ହେବାରୁ ସମ୍ମିଳନୀର ଦେଢ଼ମାସ ଆଗରୁ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ସପରିବାର ରହିଲି । ଏଠାରେ ସର୍ବୋଦୟ ପରିକଳ୍ପିତ ବିବାହ ନିରପେକ୍ଷ, ରକ୍ତ ନିରପେକ୍ଷ ସମାଜର କିଛି ମଧୁର ଆସ୍ୱାଦ ମିଳିଥିଲା । ଏପରି ଭାବରେ ନୁମାଙ୍କ ସହିତ ସର୍ବୋଦୟ ବିଚାରଧାରାର ବାହକ ନଈତାଲିମ ମାଧ୍ୟମରେ ଘନିଷ୍ଠତା ସ୍ଥାପିତ ହେଲା ।

ମାଳତୀଦେବୀଙ୍କର ସମ୍ପର୍କରେ ଆସିବା ବିଗତ ତ୍ରିଶ ବର୍ଷ ଧରି ଗଡ଼ି ଆସିଥିଲେ ମଧ୍ୟ ତାହା ଅନେକଟା ସଭା ସମ୍ମିଳନୀ ଶିବିର ମଧ୍ୟରେ ସୀମିତ ଅବଧିପାଇଁ । ୧୯୫୦ରେ ସର୍ବୋଦୟ ସମ୍ମିଳନୀର ପ୍ରସ୍ତୁତି ପାଇଁ ପ୍ରାୟ ଦେଢ଼ମାସ ଓ ୧୯୫୭-୫୮ରେ ଭୂଦାନ ପଦଯାତ୍ରାରେ ଦେବଗଡ଼ କୋଟଣ୍ଡା ଅଞ୍ଚଳରେ ଏକାଧିକ୍ରମେ ତିନି ସପ୍ତାହ ହେଉଛି ଦୀର୍ଘକାଳୀନ ସହଚାରିଣୀ । ଭୂଦାନ ପଦଯାତ୍ରାରେ ମୁଖ୍ୟମନ୍ତ୍ରୀତ୍ୱରୁ ସଦ୍ୟ ବିଦାୟ ନେଇଥିବା ନବବାବୁ ପ୍ରମୁଖ ଅଂଶ ନେଇଥିଲେ । ଏହି ପଦଯାତ୍ରାରେ, କେତେକ ଉଲ୍ଲେଖନୀୟ ଘଟଣା ମୋ'ଦ୍ୱାରା ଲିଖିତ ଭୂଦାନ ସ୍ମୃତି ଲେଖାରେ ସର୍ବୋଦୟ ପତ୍ରିକାରେ ପ୍ରକାଶିତ ହୋଇଛି । ପଦଯାତ୍ରାରେ ମାଳତୀଦେବୀ ଓ ନବବାବୁଙ୍କ ବ୍ୟକ୍ତିତ୍ୱ ଜନମାନସକୁ ଆକୃଷ୍ଟ କରୁଥିଲା । ସେମାନଙ୍କର ସର୍ବୋଦୟୋଚିତ ନିରାଡ଼ମ୍ବରଶୂନ୍ୟ ସମାଜ ଜୀବନ ଓ

ମହାନୁଭବ ଉଚ୍ଚ ଚିନ୍ତା ଜନସାଧାରଣଙ୍କୁ ଆକୃଷ୍ଟ କରୁଥିଲା । ମାଳତୀଦେବୀଙ୍କର ମାତୃସୁଲଭ ବ୍ୟବହାରରେ ଆବାଳ ବୃଦ୍ଧବନିତା ଭୂମିବାନ୍ ଭୂମିହୀନ ହରିଜନ୍ସକୁଳ ବିମୁଗ୍ଧ ହେଉଥିଲେ । ମାଳତୀଦେବୀ ଓ ନବବାବୁ ଗୋଟିଏ ଆଦର୍ଶ ଯୋଡ଼ି । ତଥାପି, ସର୍ବୋଦୟ ବିଚାର ପରିପୂର୍ଣ୍ଣ ଓ ପରସ୍ପର ପରିପୂରକ । ସର୍ବୋଦୟ ବିଚାରଧାରାରୁ ବିଚ୍ୟୁତ ହେବାକୁ କେହି କାହାକୁ ସୁଯୋଗ ଦେଇ ନାହିଁ । ସର୍ବୋଦୟର ଅନେକ କର୍ମୀ ଯୁବକଙ୍କର ଏହି କାରଣରୁ ଅନେକ ସ୍ଖଳନ ହୋଇଛି । ଯାହାଦ୍ୱାରା ସର୍ବୋଦୟ ବିଚାର ଓ ଅନୁଷ୍ଠାନର ବିଷମ କ୍ଷତି ସାଧନ କରିବା ସଙ୍ଗେ ନିନ୍ଦିତ କରିଛନ୍ତି । ସର୍ବୋଦୟ ଢୋଲ ଭିତରେ କିଛି ମୂଷା ପଶିଯିବାରୁ କେତେକ ସ୍ୱୋଦୟ କରି ସର୍ବୋଦୟର ସର୍ବନାଶ କରିଗଲେ । ଏ ଦୁଃଖଦ ଅନୁଭୂତ ଅନିଚ୍ଛାସତ୍ତ୍ୱେ ବାହାରିପଡ଼ୁଥିବାରୁ ପାଠକମାନଙ୍କ-ଠାରୁ କ୍ଷମାଭିକ୍ଷା କରୁଛି ।

୧୯୫୫ରେ ବିନୋବାଜୀଙ୍କର ପଦଯାତ୍ରାର ବ୍ୟବସ୍ଥା ଦେଖିବାପାଇଁ ତେଲଙ୍ଗ ରହଣୀ ପରେ ମତେ ଆଗୁଆ ଯିବାକୁ ହେଉଥିଲା । ପୁରୀ ଜିଲ୍ଲାପରେ ଗଞ୍ଜାମ ଜିଲ୍ଲା ଓ ବ୍ରହ୍ମପୁରରେ ଅନୁଷ୍ଠିତ ଅର୍ଦ୍ଧବାର୍ଷିକ କଂଗ୍ରେସ ସମ୍ମିଳନୀ ପରେ ଗଞ୍ଜାମ ମାଳ ଅଞ୍ଚଳରେ ଯାତ୍ରା ଆରମ୍ଭ ହେଲା । ତପ୍ତପାଣି ରହଣୀ ପରେ ଅଗ୍ନାଅର୍ଗ୍ନି ବନସ୍ତ ମଧ୍ୟରେ ମାଳତୀ-ଦେବୀଙ୍କ ସେବାକେନ୍ଦ୍ରମାନ ଦେଖି ତାହାଙ୍କର ଧୈର୍ଯ୍ୟ ଓ ସାହାସ ଜାଣି ମଥା ସ୍ୱତଃ ନଇଁପଡ଼ିଲା । ଚକ୍ଷୁ ବିସ୍ମୟ ବିସ୍ଫାରିତ ହେଲା । ଅବଶ୍ୟ ଆଜି ଅରଣ୍ୟ ସମ୍ପଦ ଯେପରି ନଷ୍ଟ ହୋଇଛି ଓ ରାସ୍ତା ପଡ଼ିଛି ତାକୁ ଦେଖିଲେ ଏ କଥା କେହି ବିଶ୍ୱାସ କରିବେ ନାହିଁ । ସେତେବେଳର ବାସ୍ତବ ଆଜି ସ୍ୱପ୍ନର । ସେହି ଘନ ଅରଣ୍ୟ ମଧ୍ୟରେ ଯେତେବେଳେ କାଠୁରିଆର କୁଠାର ଶବ୍ଦ ଶୁଭି ନ ଥିଲା ବା ବାଟୋଇର ଚଲାବାଟର ଚିହ୍ନ ପଡ଼ିନଥିଲା, ମାଳତୀଦେବୀ ଦୁଃସାହସିକତା ଦେଖାଇ ଯାଉଥିଲେ ମନରେ ତମସାଚ୍ଛନ୍ନ ଆଫ୍ରିକା ମହାଦେଶର ଲିଭିଙ୍ଗଷ୍ଟୋନଙ୍କ କଥା ମନେମନେ ଗୁଣିହେଉ । ଲିଭିଂଷ୍ଟୋନ (ଜୀବନ୍ତ ପଥର) ଆଫ୍ରିକାକୁ ଯାଉଥିଲେ ଧର୍ମର ଅଫିମ ଖୁଆଇ ସେଠାକାର ୟେଲୋ-ଷ୍ଟୋନ (yellow stone) ବା ସୁନା ଆଦି ଲୁଣ୍ଠନ ନିମନ୍ତେ ପଥ ପରିଷ୍କାର କରିବାକୁ ।

କିନ୍ତୁ ସର୍ବୋଦୟୀ ମୁଭିଂଷ୍ଟୋନ (Moving stone) ବା ଚଳନ୍ତ ପଥର ମାଳତୀ ମା ମାତୃବୃତ୍ତି ନେଇ ସମାଜର ଅନ୍ତ୍ୟବାସୀଙ୍କୁ ଲୁଣ୍ଠନରୁ ରକ୍ଷା କରିବାକୁ ଯାଇ-ଥିଲେ । ପରିଣତ ବୟସରେ ମଧ୍ୟ ମୁଭିଂଷ୍ଟୋନ ଅଚଳ ଆଉ ସଚଳ ଓ ସର୍ବୋଦୟ ଚିନ୍ତାଧାରାରୁ ଅଟଳ । ଆର୍ଥିକ ଦୃଷ୍ଟି-କୋଣରୁ ଓଡ଼ିଶାର ଯେଉଁ ୯୦ ସ୍ୱତ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି ସେହି ସମସ୍ତେ ସମାଜର ଅନ୍ତରେ । ଏମାନେ ସମସ୍ତେ ଶ୍ରମିକ ଓ କୃଷକ ତଥା ଖଟିଖିଆ, ବାକି ଦଶସ୍ୱତ ଲୁଟିଖିଆ । କୃଷକ ଶ୍ରମିକ ଉତ୍ପାଦକ ହେଲେ ସୁଦ୍ଧା ଉପଭୋକ୍ତା ନୁହନ୍ତି । ସମାଜରେ ଏମାନଙ୍କର ଉପଯୋଗିତା ରହିଛି, ମାତ୍ର ଉପଭୋକ୍ତା ହେବାର ଅଧିକାର ନାହିଁ । ସର୍ବୋଦୟର ଲକ୍ଷ୍ୟ ହେଉଛି ଯେ ଉତ୍ପାଦକ ସେ ଉପଭୋକ୍ତା ହେବ । ଉତ୍ପାଦକକୁ ମୁଷ୍ଟିମେୟ ବଞ୍ଚକ ସବୁ ସୁବିଧାରୁ ବଞ୍ଚିତ କରି ରଖିଛନ୍ତି । ସର୍ବୋଦୟର ଅସଲ କାମ ହେଉଛି ବଞ୍ଚିତ ବଞ୍ଚକ ପାର୍ଥକ୍ୟ ଦୂର କରିବା । ଅସ୍ୱାଚ୍ଛନ୍ଦ ଦେଇ ସ୍ୱଦନ ସ୍ୱବନ କରିବା କଥା । ମାଳତୀଦେବୀ ସତତ ଏହି ସ୍ୱବନ ପାଇଁ ଉବନ ସୁଖରୁ ନିଜକୁ ବଞ୍ଚିତ କରିପାରିଛନ୍ତି । ଏଥିପାଇଁ ସେ ସମାଜର ଆଦର୍ଶସ୍ଥାନୀୟା ଓ ପୂଜନୀୟା ଭାବରେ ଚିରଦିନ ରହିବେ । ତାହାଙ୍କର କରଣୀ ଓ ଚଳଣୀରେ ସର୍ବୋଦୟର ଅର୍ଥ ଅନ୍ତ୍ୟୋଦୟରେ ସାର୍ଥକ ହୋଇଛି ।

ମାଳତୀଦେବୀ—ଚଉଦଟି ଚରିତ୍ର (୧୯୮୯) ସମ୍ପାଦକ ଶୈଳଜାରବି, ପ୍ରକାଶକ ଗ୍ରନ୍ଥମନ୍ଦିର ସୌଜନ୍ୟରୁ ।

———

# ଓସ ବନାମ ସରକାର

□ ବଳରାମ ମହାନ୍ତି

୧୯୨୭ ମସିହାରେ ଶ୍ରୀମତୀ ମାଳତୀଦେବୀ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ବିବାହ କରି ଓଡ଼ିଶାରେ ପଦାର୍ପଣ କରିବା ପରେ ତାଙ୍କର କର୍ମମୟ ଜୀବନ ଆରମ୍ଭ ହୋଇଥିଲା ଏବଂ ଦୀର୍ଘ ୭୦ ବର୍ଷ ଧରି ଓଡ଼ିଶାରେ ତାଙ୍କର କର୍ମମୟ ଜୀବନ ଅତିବାହିତ ହୋଇ ସାରିଲଣି । ମାଳତୀଦେବୀ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟର ଶେଷଭାଗରେ ଓଡ଼ିଶାକୁ ଆସିଥିଲେ । ଏହା ପରେ ପରେ ନବକୃଷ୍ଣ ଚୌଧୁରୀ କଟକ ଜିଲାର ବରୀକୁଦ ଗ୍ରାମଠାରେ ନିଜେ ଚାଷ କରି ଉନ୍ନତ କୃଷି ପଦ୍ଧତି ପ୍ରୟୋଗରେ ଲାଗିଲେ ଏବଂ ମାଳତୀଦେବୀ ସେଠାରେ ରହି ଗ୍ରାମ ସଙ୍ଗଠନ, ଅସ୍ପୃଶ୍ୟତା ନିବାରଣ ଭଳି ଗାନ୍ଧୀଜୀଙ୍କ ପ୍ରଦର୍ଶିତ ଗଠନ ମୂଳକ କାମରେ ଆତ୍ମନିୟୋଗ କଲେ । ଏହାପରେ ୧୯୩୦ରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଲବଣ ସତ୍ୟାଗ୍ରହ ଓ ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟ ଭାରତ ଛାଡ଼ ଆନ୍ଦୋଳନରେ ଜଣେ ସକ୍ରିୟ ସଂଗ୍ରାମୀଭାବରେ ଅଂଶ ଗ୍ରହଣ କରିବା ଛଡ଼ା ସେ ଓଡ଼ିଶାରେ ସମାଜବାଦୀ ଚିନ୍ତାଧାରାର ପ୍ରବର୍ତ୍ତିକ, କୃଷକ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଅଗ୍ରଣୀ ହୋଇଥିଲେ । ଅଗଷ୍ଟ ସଂଗ୍ରାମ ଶେଷରେ ୧୯୪୫ ମସିହାରେ କାରାଗାରରୁ ମୁକ୍ତ ହେବା ପରେ ଯେତେବେଳେ ନିର୍ବାଚନରେ ଭାଗ ନେଇ ସ୍ୱାଧୀନତା ସଂଗ୍ରାମୀମାନେ କ୍ଷମତା ରାଜନୀତି ପାଇଁ ପ୍ରସ୍ତୁତ ହେଲେ, ଶ୍ରୀମତୀ ମାଳତୀଦେବୀ କ୍ଷମତା ରାଜନୀତିରୁ ସମ୍ପୂର୍ଣ୍ଣ ଦୂରରେ ରହି ଦୁସ୍ଥ ଓ ଅବହେଳିତଙ୍କ ସେବାପାଇଁ ଆତ୍ମୋତ୍ସର୍ଗ କରିବାପାଇଁ ମନସ୍ଥ କରି ସେତେବେଳର ଅପନ୍ତରା ଜାଗା ଅନୁଗୁଳଠାରେ ବାଜିରାଉତ ଛାତ୍ରାବାସ ସ୍ଥାପନ କରି ସେଠାରେ ରହିଥିଲେ । ଏଠାରେ ସେ ଦୀର୍ଘ ୪୫ ବର୍ଷ ଅତିବାହିତ କରିସାରିଲେଣି ।

ଶ୍ରୀମତୀ ମାଳତୀଦେବୀ ତାଙ୍କ ଦୀର୍ଘ ୭୦ ବର୍ଷର କର୍ମମୟ ଜୀବନ କାଳ ଭିତରେ ଏକ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶ ଅନୁସରଣ କରି, କାର୍ଯ୍ୟ କରିଆସିଥିବାରୁ ସମଗ୍ର ଜାତୀୟ ଇତିହାସରେ ଅମର ହୋଇ ରହିବେ । ଶ୍ରୀମତୀ ମାଳତୀଦେବୀଙ୍କ ଜୀବନ ଦର୍ଶନ ହେଲା ସେ କୌଣସି ଅନ୍ୟାୟ ଆଗରେ ମୁଣ୍ଡ ନୁଆଁଇବେ ନାହିଁ । ଅନ୍ୟାୟ ଓ ଭ୍ରଷ୍ଟାଚାରର ସେ ପ୍ରତିରୋଧ କରିବେ ତାର ପରିଣାମ ଯାହା ହେଉପଛେ । ଏହି ଜୀବନ ଦର୍ଶନ ସେ ତାଙ୍କ ଶିକ୍ଷାଗୁରୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ନିକଟରୁ ଶିକ୍ଷା କରିଥିଲେ ଏବଂ ରାଜନୈତିକଗୁରୁ ମହାତ୍ମାଗାନ୍ଧୀଙ୍କ ଜୀବନାଦର୍ଶରୁ ତାହା ଅଧିକ ମାର୍ଜିତ ହେଲା । ଏହି ଆଦର୍ଶ ଥିଲା ତାଙ୍କ କର୍ମମୟ ଜୀବନର ମୂଳଭିତ୍ତି । ୫୮ ବର୍ଷ ତଳେ ୧୯୩୦ ମସିହାରେ ଦେଶରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଚାଲିଥିଲା ବେଳେ ମହାତ୍ମା ଗାନ୍ଧୀଙ୍କ ଗିରଫର ପ୍ରତିବାଦ ପାଳନ ପାଇଁ ରେଭେନ୍‌ସା କଲେଜର ଛାତ୍ରମାନଙ୍କୁ ବୁଝାଇବାକୁ ଯାଇ ସେତେବେଳର କଟକ ଜିଲା କଲେକ୍ଟର ଗୋରାସାହେବ ମାରିଉଡ୍‌ଙ୍କୁ ନିର୍ଭୀକ ଭାବରେ ଜବାବ ଦେଇ ଯେପରି ତାଙ୍କ ମୁଣ୍ଡ ତଳକୁ କରିଦେଇଥିଲେ, ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ତାହା ଏକ ସ୍ମରଣୀୟ ଘଟଣା ହୋଇ ରହିବ । କଲେକ୍ଟର ମାରିଉଡ୍ ଯେତେବେଳେ କହିଲେ ଯେ ପିଲାମାନଙ୍କୁ କ'ଣ ଆପଣମାନେ ଫୁଟବଲ ଖେଳିବାକୁ ମଧ୍ୟ ଦେବେ ନାହିଁ, ଏହା କି ଆନ୍ଦୋଳନ ! ଏହାର ଉତ୍ତରରେ ମାଳତୀଦେବୀ ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲେ—ଆୟର୍ଲାଣ୍ଡରେ ସିନ୍‌ଫେନ୍ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲାବେଳେ ଆପଣମାନେ କ'ଣ ଫୁଟବଲ ଖେଳୁଥିଲେ । ମାରିଉଡ୍ ସାହେବଙ୍କର ମୁଣ୍ଡ ତଳକୁ ହୋଇଯାଇଥିଲା । ସେ ଥିଲେ ଜଣେ ଆୟର୍ଲାଣ୍ଡ ଅଧିବାସୀ । ଏହାର ୫୮ ବର୍ଷ ପରେ ସେହି ମାଳତୀ କହୁଛନ୍ତି—ମୋର ଇଚ୍ଛା ହେଉଛି ମୁଁ ଏକ ମରଣସେନା ଗଢି ବାଲିଆପାଳ ଅଧିବାସୀଙ୍କ ପାଖରେ ଛିଡ଼ା ହୋଇଯାଆନ୍ତି । ତାଙ୍କର ଶାରୀରିକ ଦୁର୍ବଳତା ସତ୍ତ୍ୱେ ତାଙ୍କର ମନୋବଳ ଯେ କୌଣସି ମତେ ଦୁର୍ବଳ ହୋଇନାହିଁ, ତାହା ହିଁ ଏଥିରୁ ପ୍ରମାଣିତ ହେଉଛି । ଅନ୍ୟାୟ ବିରୋଧରେ ସଂଗ୍ରାମ କରିବା ପାଇଁ ୫୮ ବର୍ଷ ତଳେ ତାଙ୍କର ଯେଉଁ ମନୋବଳ ଥିଲା ଆଜି ତାହା ଅକ୍ଷୁର୍ଣ୍ଣ ରହିଛି । ସେତେବେଳେ ଦେଶର ବିଦେଶୀ ଶାସକ ଥିଲେ

ଅନ୍ୟ ଦେଶରେ ତାଙ୍କର ସରକାର—ମା'ଫ ତାଙ୍କର କିଛି ଯାଏଆସେ ନାହିଁ । ଯିଏ ଶାସକ ଥାଆନ୍ତୁ ସେ ଅନ୍ୟାୟ କଲେ ମାଳତୀଦେବୀ ତାର ପ୍ରତିରୋଧ କରିବେ, କାରଣ ଏହା ହିଁ ତାଙ୍କ ଜୀବନର ଆଦର୍ଶ । ତେଣୁ ଯେ ଶାସନକର୍ତ୍ତା ହେଲେ ମଧ୍ୟ ଯେ ଅନ୍ୟାୟ କଲେ, ଲୋକବିରୋଧୀ କାର୍ଯ୍ୟ କଲେ, ତାକୁ ସେ ବରଦାସ୍ତ କରିପାରନ୍ତି ନାହିଁ । ତାଙ୍କ ଦୀର୍ଘ କର୍ମମୟ ଜୀବନରେ ଏପରି ବହୁ ଦୃଷ୍ଟାନ୍ତ ରହିଛି ।

୧୯୪୭ ମସିହା ଶେଷଭାଗ—ନୀଳଗିରି ପ୍ରଜା-ଆନ୍ଦୋଳନର ଅନ୍ତିମ ପର୍ଯ୍ୟାୟ । ଏକ ପକ୍ଷରେ ନୀଳଗିରିର ପ୍ରଜାମଣ୍ଡଳ ଅତ୍ୟାଚାରୀ ରାଜଶାସନ ଲୋପ କରିଦେବା ପାଇଁ ବଦ୍ଧପରିକର । ସେମାନଙ୍କ ପ୍ରେରଣାରେ ତୀର ଧନୁ ମଧ୍ୟ ଆଦିବାସୀ ଜନତା ରଜାଙ୍କ ପୋଲିସ ସହ ଶେଷ ସଂଗ୍ରାମ ପାଇଁ ମୁହାଁମୁହିଁ । କେତେବେଳେ ଯେ ରକ୍ତାକ୍ତ ସଂଘର୍ଷ ଲାଗିଯିବ ସେଥିପାଇଁ ସମସ୍ତେ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଛନ୍ତି । ତା' ଭିତରେ ପଶି ଏହି ରକ୍ତାକ୍ତ ସଂଘର୍ଷକୁ ବନ୍ଦ କରିବା ଭଳି ସାହସ କାହାର ଅଛି ! ସେ ସାହସ ଥିଲା ଶ୍ରୀମତୀ ମାଳତୀଦେବୀଙ୍କର । ମାଳତୀଦେବୀ ତାଙ୍କ ଭିତରେ ପଶି ଉଭୟ ପକ୍ଷଙ୍କୁ ନିବୃତ୍ତାଇ ଏକ ରକ୍ତାକ୍ତ ସଂଘର୍ଷର ଅବସାନ ଘଟାଇଲେ । ସେତେବେଳେ ଓଡ଼ିଶାରେ ଲୋକ ପ୍ରତିନିଧି-ମୂଳକ ସରକାର । ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଓ ନବକୃଷ୍ଣ ଚୌଧୁରୀ ରାଜସ୍ୱ ମନ୍ତ୍ରୀ । ଯାହା ସରକାର ଅଥବା ସରକାରରେ ଥିବା କୌଣସି ବ୍ୟକ୍ତି କରି ପାରିଲେ ନାହିଁ, ତାହା ଏହି ମହୀୟସୀ ମହିଳା ଏକା ଏକା କରିପାରିଲେ ।

ଆଉ ଏକ ସ୍ମରଣୀୟ ଘଟଣା । ୧୯୫୨-୫୩ ମସିହାର କଥା । ସେତେବେଳେ ଶ୍ରୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ । ଅନୁଗୁଳଠାରୁ ୫ ମାଇଲ ଦୂରବର୍ତ୍ତୀ ରନ୍ତଲେଇ ନାମକ ଏକ ଗ୍ରାମରେ ଗୋଟିଏ ଗାଈ ଜଗୁଥିଲା ପିଲା ନେପାଳି ବାବା ନାମ ଧାରଣ କରି ସର୍ବରୋଗ ନିବାରକ ଏକ ଗଛର ଛେଲି ବିତରଣ କରିବାରେ ଲାଗିଲା । ତାହା ନେବା ପାଇଁ କେବଳ ଓଡ଼ିଶାର ନୁହେଁ, ବହୁ ରାଜ୍ୟର ଅଗଣିତ ଲୋକ ଛୁଟିଲେ । ଏହି ଅପରିସର ପାହାଡ଼ିଆ ଜାଗାରେ ଏତେ ଲୋକଙ୍କ ପାଇଁ ପିଇବା ପାଣିର କୌଣସି ବ୍ୟବସ୍ଥା ନ ଥିଲା କି ହଠାତ୍ କରିବା ମଧ୍ୟ ସମ୍ଭବ ନଥିଲା, ତା' ସତ୍ତ୍ୱେ ବହୁ ଖର୍ଚ୍ଚାନ୍ତ ହୋଇ ଲୋକ ଆସିବାରେ ଲାଗିଲେ । ପାଣି ଅଭାବରୁ ହଇଜା ଲାଗିଲା ଓ ଲୋକେ ପୋକ ମାଛି ପରି ରାସ୍ତା କଡ଼ରେ ମଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏହିଭଳି କୁସଂସ୍କାରର ବିରୋଧୀ ଥିଲେ ମଧ୍ୟ ତତ୍କାଳୀନ ଓଡ଼ିଶାର ବଡ଼ ଅଫିସର ଓ ରାଜନୈତିକ ନେତାମାନଙ୍କର ନେପାଳି ବାବାଙ୍କ ପ୍ରତି ସମର୍ଥନ ଯୋଗୁ ଜବରଦସ୍ତି ଏହାକୁ ବନ୍ଦ କରିବାକୁ ସାହସ କଲେ ନାହିଁ । ସାହସ କଲେ କେବଳ ଶ୍ରୀମତୀ ମାଳତୀଦେବୀ । ସେ ସାହସର ସହିତ ନେପାଳି ବାବାଙ୍କ ନିକଟକୁ ଯାଇ ଏ ଭଣ୍ଡାମି ବନ୍ଦ କରିବା ପାଇଁ ଦୃଢ଼ ଭାବରେ ଦାବି କଲେ । ତା'ପରେ ସେ ପିଲାକୁ ଆଣାକୁ ନିଆଗଲା ଏବଂ ଅଗଣିତ ଲୋକ ମୃତ୍ୟୁମୁଖରୁ ରକ୍ଷା ପାଇଲେ । ରାଜ୍ୟ ସରକାରଙ୍କୁ ତଥା ଅନ୍ଧବିଶ୍ୱାସୀ ଲୋକଙ୍କୁ ସେଦିନ ସେ ଘୋର ବିପତ୍ତିରୁ ରକ୍ଷା କରିଥିଲେ ।

ଅନ୍ୟାୟ ବିରୋଧରେ ସଂଗ୍ରାମ କରିବା ପାଇଁ ଶ୍ରୀମତୀ ମାଳତୀଦେବୀଙ୍କର ସାହସ ଅତୁଳନୀୟ । ଏହିଭଳି ସଂଗ୍ରାମ ବେଳେ କେଉଁ ଦଳ ବା ବ୍ୟକ୍ତି ବିଶେଷ ଶାସନ କ୍ଷେତ୍ରର ଅଧିକାରୀ ହୋଇଛନ୍ତି ସେଥିପ୍ରତି ତାଙ୍କର ଦୃଷ୍ଟି ନଥାଏ ବା ନିଜେ ଯେଉଁ ସଂସ୍ଥାମାନ ପରିଚାଳନା କରୁଛନ୍ତି ସେଥିପ୍ରତି କ'ଣ ପ୍ରତିକ୍ରିୟା ହେବ ତାହା ଚିନ୍ତା କରନ୍ତି ନାହିଁ । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାରେ ଶାସନ ପରିଚାଳିତ ହେଉଥିଲା ବେଳେ ତଥା ଜନତା ସରକାର ଏବଂ ତାଙ୍କ ପରବର୍ତ୍ତୀ କଂଗ୍ରେସ ଶାସନବେଳେ ସେ ଏହିପରି ଅନ୍ୟାୟ ବିରୋଧରେ ସଂଗ୍ରାମ କରିଆସିଛନ୍ତି । କାହାର ଅନୁଗ୍ରହ ପାଇବା ପାଇଁ ସେ ନିଜର ଆଦର୍ଶକୁ ଜଳାଞ୍ଜଳି ଦେଇନାହାନ୍ତି । ନିଜ ପ୍ରତିଷ୍ଠିତ ଅନୁଷ୍ଠାନର କ୍ଷତି କରି ମଧ୍ୟ ସେ ଅନ୍ୟାୟର ପ୍ରତିବାଦ କରିଆସିଛନ୍ତି । କ୍ଷମତା ରାଜନୀତି ପ୍ରତି ତାଙ୍କର ଚରମ ବିତୃଷ୍ଣା ହେତୁ ସେ ନବବାବୁ ମନ୍ତ୍ରୀପଦ ଗ୍ରହଣ କରିବାରେ ଆଦୌ ଆନନ୍ଦିତ ନ ଥିଲେ ଏବଂ ନବବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ତାଙ୍କ ଭଳି ମଧ୍ୟ କେହି ଏତେ ଆଶ୍ୱସ୍ତ ଅନୁଭବ କରି ନଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଶାସନ କାଳରେ ମୁଖ୍ୟମନ୍ତ୍ରୀଙ୍କ ସହଧର୍ମିଣୀ ଭାବରେ ତାଙ୍କ ସାଙ୍ଗରେ ଯାଇ ଯୋଗ ଦେବାକୁ ସେ ପସନ୍ଦ କରିନାହାନ୍ତି । ଏହି ସମୟରେ ବିନୋବାଙ୍କ ଓଡ଼ିଶାରେ ଭୂଦାନ ଯାତ୍ରାରେ ବା ଉଭୟେ ନିମନ୍ତ୍ରିତ ହୋଇଥିବା ଅନୁଷ୍ଠାନ ଛଡ଼ା ଅନ୍ୟତ୍ର ସେ ଯୋଗ ଦେଇ-ନାହାନ୍ତି । ଶ୍ରୀ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ମୌଳିକ ଶିକ୍ଷା, ନିଶା ନିବାରଣ, ତଥା ଶାସନର ଅନ୍ୟ କେତେକ ନୀତି ନେଇ ତାଙ୍କର ଗୁରୁତର ମତଭେଦ ବିଷୟରେ ସେ ଅନେକ ସମୟରେ ଶ୍ରୀ ଚୌଧୁରୀଙ୍କ ସହିତ ଆଲୋଚନା କରୁଥିବା ମୁଁ ଜାଣେ । ତାଙ୍କ ଶାସନର ଶେଷବେଳକୁ ୧୯୫୫-୫୬ରେ ରାଜ୍ୟ ପୁନର୍ଗଠନ କମିସନଙ୍କ ନିଷ୍ପତ୍ତି ବିରୋଧରେ ଓଡ଼ିଶା ସହିତ ସରାଇକଳା ଓ ଖରସୁଆଁର

ମିଶ୍ରଣ ସପକ୍ଷରେ ଓଡ଼ିଶାରେ ଯେଉଁ ଆନ୍ଦୋଳନ ହେଲା ସେତେବେଳେ କଟକଠାରେ ଜନରବ ହେଲା ଯେ କଟକ ରେଲୱେ ଷ୍ଟେସନର ପ୍ରଚୁର ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କରିଥିବା ଯୋଗୁ ସରକାର ଦୁଇଜଣ ଲୋକଙ୍କୁ ମାରି ରେଲୱେ ଷ୍ଟେସନ ଭିତରେ ଲୁଚେଇ ରଖିଛନ୍ତି, ତେଣୁ ରେଲୱେ ଷ୍ଟେସନ ନିକଟରେ ବହୁ ଲୋକ ଭିଡ଼ ହୋଇ ମୃତ ଲୋକଙ୍କୁ ବାହାର କରିବା ନିମନ୍ତେ ଦାବି କରୁଥାନ୍ତି। ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି। ସେତେବେଳକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ସରକାରୀ କାର୍ଯ୍ୟରେ ଯାଇ ଦିଲ୍ଲୀରେ ଥାଆନ୍ତି। ଏହି ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିର ପରିଣାମ କ'ଣ ହେବ କେହି ଚିନ୍ତା କରିପାରୁ ନଥାନ୍ତି। ଏହି ସମୟରେ ମାଳତୀଦେବୀ ଦୁଇଜଣ ପ୍ରିନ୍ସିପାଲ ମନ୍ତ୍ରୀଙ୍କ ସହ ସାକ୍ଷାତ କରି ସେମାନଙ୍କ ନିକଟରୁ ସତ୍ୟାସତ୍ୟ ଜାଣିବା ପାଇଁ ଜନତା ପକ୍ଷରୁ ଦାବି କଲେ। ଜଣେ ମନ୍ତ୍ରୀ ଘରେ ଥାଇ ସେ ନାହାନ୍ତି ବୋଲି ଖବର ପଠାଇଲେ ଓ ଆଉ ଜଣେ ମୁଖ୍ୟମନ୍ତ୍ରୀଙ୍କ ଅନୁପସ୍ଥିତିରେ ଏସବୁ ବ୍ୟାପାରରେ ମୁଣ୍ଡ ନ ଖେଳେଇବା ପାଇଁ ତାଙ୍କୁ ପରାମର୍ଶ ଦେଲେ। ମାତ୍ର ଆଜନ୍ମ ବିପ୍ଳବୀ ମାଳତୀଦେବୀଙ୍କ ପକ୍ଷରେ ଜନତାର ଅନ୍ୟାୟ ଦାବି ନିକଟରେ ମୁଣ୍ଡ ନୁଆଁଇବା ଯେପରି ଅସମ୍ଭବ ଥିଲା ସେହିପରି ନିଜ ସ୍ୱାମୀଙ୍କ ସରକାର ବୋଲି ତାଙ୍କୁ ଘଣ୍ଟ ଘୋଡ଼ାଇବା ମଧ୍ୟ ଅସମ୍ଭବ ଥିଲା। ଅଧିକନ୍ତୁ ନିଜ ଆଖି ଆଗରେ ଘଟିଯାଉଥିବା କୌଣସି ଅନ୍ୟାୟ, ଅତ୍ୟାଚାର ଦେଖି ନିଶ୍ଚୁପ ଅଥବା ନୀରବ ରହିବା ମଧ୍ୟ ତାଙ୍କ ଜାତକରେ ନଥିଲା। ଉକ୍ତ ଘଟଣା ସମ୍ପର୍କରେ ସତ୍ୟାସତ୍ୟ ଜାଣିବା ଜନତାର ମୌଳିକ ଅଧିକାର ବୋଲି ଘୋଷଣା କରି ସେ ଉତ୍ତ୍ୟକ୍ତ ହଜାର ହଜାର ଲୋକଙ୍କୁ ସାଥୀରେ ନେଇ ରେଲୱେ ଷ୍ଟେସନ ଯାଏ ଯାଇଥିଲେ। ଉକ୍ତ ଜନରବ ମିଥ୍ୟା ବୋଲି ପରେ ପ୍ରମାଣିତ ହେଲା; ମାତ୍ର ସେଠାରେ ପହଞ୍ଚି ଉତ୍ତେଜିତ କେତେକ ଯୁବକଙ୍କ ସହ ତାଙ୍କର ଯୁକ୍ତିତର୍କ ଚାଲିଥିବାବେଳେ ଦୂରରୁ ଏ ଦୃଶ୍ୟ ଲକ୍ଷ୍ୟ କରୁଥିବା ପୋଲିସ ଅଫିସରଙ୍କର ଆଶଙ୍କା ହେଲା ଯେ ସେମାନେ ମାଳତୀଦେବୀଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଉଛନ୍ତି। ଉକ୍ତ ପୋଲିସ ଅଫିସର ନିଜର ଏହି ଅମୂଳକ ଆଶଙ୍କାକୁ ଭିତ୍ତିକରି ଗୁଳି ଚଳାଇଲେ। ବାସ୍ତବରେ ସେ ଗୁଳି କିନ୍ତୁ ମାଳତୀ ଦେବୀଙ୍କ ଦେହରେ ହିଁ ବାଜିଥାଆନ୍ତା। ଜଣେ କେହି ତାଙ୍କୁ ପେଲି ଦେବାରୁ ତାଙ୍କ ପଛରେ ଥିବା ସୁନିଲ୍ ନାମକ ଯୁବକ ଏହି ଗୁଳିରେ ପ୍ରାଣତ୍ୟାଗ କଲେ।

୧୯୭୫ରେ ଯେତେବେଳେ ଜରୁରୀକାଳୀନ ଅବସ୍ଥା ଜାରି ହେଲା ଏବଂ ଓଡ଼ିଶାରେ ଡକ୍ଟର ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀଙ୍କ ଭଳି ବୟୋବୃଦ୍ଧ ନେତାମାନଙ୍କୁ ଗିରଫ କରିନିଆଗଲା। ଶ୍ରୀମତୀ ମାଳତୀଦେବୀ ଏହି ଅନ୍ୟାୟ ଓ ଏକଛତ୍ରବାଦୀ ନୀତିର ତୀବ୍ର ପ୍ରତିବାଦ କରି ପ୍ରଚାରପତ୍ର ବଣ୍ଟନ କରାଇଥିଲେ ଏବଂ ତାଙ୍କ ନିର୍ଦ୍ଦେଶରେ ବହୁ କର୍ମୀ ଏହି ସଂଗ୍ରାମରେ ସାମିଲ ହୋଇଥିଲେ। ଏହାଫଳରେ ତତ୍କାଳୀନ ସରକାର ନବଜୀବନ ମଣ୍ଡଳର ଗ୍ରାଣ୍ଟ ବନ୍ଦ୍ କରି ତାଙ୍କ ଦ୍ୱାରା ପରିଚାଳିତ ଅନୁଷ୍ଠାନଗୁଡ଼ିକୁ ବନ୍ଦ କରି ଦେବା ପାଇଁ ଉଦ୍ୟମ କରିଥିଲେ। ସେତେବେଳେ ଏହି ଅନୁଷ୍ଠାନ-ଗୁଡ଼ିକ ଘୋର କ୍ଷତିଗ୍ରସ୍ତ ହୋଇଥିଲା ଏବଂ ଏହି ଅନୁଷ୍ଠାନ-ଗୁଡ଼ିକ ସେହିଦିନଠାରୁ ଅଭାବଗ୍ରସ୍ତ ଅବସ୍ଥାରେ ଚାଲିଛି। ଏହାପରେ ଜନତା ସରକାର ପ୍ରତିଷ୍ଠିତ ହେଲା। ଜନତା ସରକାର ଗଠନ ପାଇଁ ମାଳତୀଦେବୀ ସକ୍ରିୟଭାବେ ସାହାଯ୍ୟ କରିଥିଲେ। ମାତ୍ର ଜନତା ସରକାରଙ୍କ କେତେକ ନୀତିର ସେ ତୀବ୍ର ସମାଲୋଚକ ହୋଇଥିଲେ। ଯଦିଓ ବ୍ୟକ୍ତିଗତ ଭାବରେ ଏହି ସରକାରଙ୍କ ମନ୍ତ୍ରୀମାନଙ୍କ ପ୍ରତି ତାଙ୍କର କୌଣସି ଅସୂୟାଭାବ ନ ଥିଲା। ଶେଷରେ ବର୍ତ୍ତମାନର କଂଗ୍ରେସ ସରକାରଙ୍କ ମୁଖ୍ୟମନ୍ତ୍ରୀ ବା ଅନ୍ୟ ମନ୍ତ୍ରୀମାନଙ୍କ ସହିତ ତାଙ୍କର କୌଣସି ଅସୂୟାଭାବ ନାହିଁ। ମାତ୍ର ଏହି ସରକାରଙ୍କଦ୍ୱାରା ବାଲିଆପାଳଠାରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା ଓ ଗନ୍ଧମାର୍ଦ୍ଦନ ପର୍ବତରୁ ଲୁହାପଥର ଉତ୍ତୋଳନ ପରିକଳ୍ପନାର ତୀବ୍ର ବିରୋଧୀ ଏବଂ ଏହାକୁ ବନ୍ଦ କରିବା-ପାଇଁ ସେ ଜୀବନ ଦେବାକୁ ପ୍ରସ୍ତୁତ ହୋଇଥିବା ଘୋଷଣା କରିଛନ୍ତି। ଶ୍ରୀମତୀ ମାଳତୀଦେବୀଙ୍କୁ ବର୍ତ୍ତମାନ ୮୫ ବର୍ଷ ଏବଂ ତାଙ୍କ ଶରୀର ଅତ୍ୟନ୍ତ ଦୁର୍ବଳ; ମାତ୍ର ତାଙ୍କ ମନର ବଳ ଯେ ଅତୁଟ ରହିଛି ତାହାହିଁ ଏଥିରୁ ପ୍ରମାଣିତ ହେଉଛି। ତାଙ୍କ ପ୍ରତିଜ୍ଞାରେ ସେ ଏବେ ମଧ୍ୟ ଅଟଳ। ତାଙ୍କ ଗୁରୁଦେବ ରବୀନ୍ଦ୍ରନାଥଙ୍କ ବାଣୀକୁ ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପାଳନ କରି ଚାଲିବେ—ସେ ବାଣୀ ହେଲା—"ଅନ୍ୟାୟ ଯେ କରେ ଆଉ ଅନ୍ୟାୟ ଯେ ସହେ, ତବ ଘୃଣା ତାରେ ଯେନ ତୃଣ ସମ ଦହେ।"

[ ମାଳତୀଦେବୀ—ଚଉଦଟି ଚିତ୍ରପଟ, (୧୯୮୯) ସମ୍ପାଦକ ଶୈଳଜରବି, ପ୍ରକାଶକ ଗ୍ରନ୍ଥମନ୍ଦିର ସୌଜନ୍ୟରୁ ]

———

# ଏକ ବିରାଟ ବ୍ୟକ୍ତିତ୍ୱ

□ ଜୟକୃଷ୍ଣ ମହାନ୍ତି

ନୂମା ଏବଂ ତାଙ୍କ ପରିବାର ସହ ମୋର ପ୍ରଥମ ସମ୍ପର୍କ ସ୍ଥାପିତ ହୁଏ ୧୯୩୭ ମସିହାରେ । ସେଇବର୍ଷ ମୁଁ ମାଟ୍ରିକ୍ ପାସ୍ କଲାପରେ କଟକରେ ତାଙ୍କରି ଘରେ ରହି କଲେଜରେ ପଢ଼ିଲି । ସେତେବେଳକୁ ନୂମାଙ୍କ ବଡ଼ଝିଅ ବୁବୁର ବୟସ ନଅବର୍ଷ ଏବଂ ପୁଅ କାଲୁକୁ ଛଅବର୍ଷ ହୋଇଥାଏ । ମୁଁ ଏ ଦୁହିଁଙ୍କ କିଛି ସମୟ ପଢ଼ାଏ ଏବଂ ନିଜେ ପଢ଼େ । ବାପି, ନୂମା ଏବଂ ପିଲା ଦୁଇଟିଙ୍କ ଛଡ଼ା ଘରେ ବାପିଙ୍କର ମାଆ ମଧ୍ୟ ରହୁଥାନ୍ତି । ଦିନର ଅଧିକାଂଶ ସମୟ ତାଙ୍କର ଠାକୁର ଘର ବାରଣ୍ଡାରେ ଜପ, ତପରେ କଟେ । ଠାକୁରଙ୍କ ପାଖରେ ତାଙ୍କ ପାଇଁ ଅଲଗା ରୋଷେଇ ହୁଏ । ପୁଅ ବୋହୂଙ୍କ ପାଖରେ ସେ ଖାଆନ୍ତି ନାହିଁ । ଜଣେ ପୂଜାରୀ ନିନା ଦିଆଡ଼େ ରାନ୍ଧନ୍ତି । ଅନେକ ସମୟରେ ବୁଢ଼ୀମା ନିଜେ ମଧ୍ୟ ରାନ୍ଧନ୍ତି । ମୁଁ ଯେଉଁଦିନ ପ୍ରଥମ କରି ନୂମାଙ୍କ ଘରେ ରହିବାକୁ ଆସେ, ସେଦିନ ମତେ ଆଗରୁ ସତର୍କ କରାଇ ଦେଇ ନୂମା କହିଥିଲେ, "ମୋ ଶାଶୁ ଟିକିଏ ଚିଡ଼ଚିଡ଼ା ସ୍ୱଭାବର । ସେ ତମକୁ କେବେ କିଛି କହିଦେଲେ ତାଙ୍କ କଥା କିଛି ଧରିବ ନାହିଁ ।" ମୁଁ ସେଦିନ ଖୁବ୍ ହୁସିଆରରେ ବୁଢ଼ୀମା'ଙ୍କୁ ଦେଖା କରିବାକୁ ଗଲି । ତାଙ୍କୁ ଜୁହାର କଲି । ମୁଁ ସେଠି ରହିବି ବୋଲି ତାଙ୍କୁ ଆଗରୁ ବାପି ନୂମା ସୂଚନା ଦେଇଥିଲେ । ସେ ମତେ ପଚାରିଲେ, "ତୁ ପରା ଏଠି ରହିବୁ ?" ମୁଁ ହଁ କହିଲି । ସେ ପୁଣି ପଚାରିଲେ, "ତୋ ନାଁ କଣ ?" ମୁଁ କହିଲି, "ମୋ ନାଁ ଜୟୀ ।" ଏତିକିରେ ବୁଢ଼ୀମା ଏକଦମ୍ ଖୁସିରେ ମୋ ହାତ ଧରି ପକାଇ କହିଲେ, "ତାହାହେଲେ ତ ତୁ ମୋ ଭାଇ ।" (ବୁଢ଼ୀମା'ଙ୍କ ଭାଇଙ୍କ ନାମ ଥିଲା ଜୟକୃଷ୍ଣ ମହାନ୍ତି) ସେହିଦିନଠାରୁ ବୁଢ଼ୀମା'ଙ୍କର ମୁଁ ବହୁତ ଅନ୍ତରଙ୍ଗ ହୋଇଗଲି । ବାପି ନୂମା ନଥିଲାବେଳେ ବୁଢ଼ୀମା ମୋ ସଙ୍ଗେ ସୁଖ ଦୁଃଖ ହୁଅନ୍ତି । "ଏଗୁଡ଼ାଙ୍କର ଜାତିପତି ବିଚାର ନାହିଁ । ପାଣ, ପଠାଣଙ୍କ ହାତରେ ଖାଉଛନ୍ତି । ମୁଁ ତାଙ୍କୁ ଛୁଏଁ ନାହିଁ ।" ଏଇ ଭଳି ପୁଅବୋହୂଙ୍କୁ ଆକ୍ଷେପ କରି ନାନା କଥା କହନ୍ତି । ଏମାନଙ୍କ କାର୍ଯ୍ୟକଳାପ ତାଙ୍କ ମନକୁ ଯାଏ ନାହିଁ ।

ବୁଢ଼ୀମା ଥିଲେ ଅତ୍ୟନ୍ତ ରକ୍ଷଣଶୀଳ । ପୁରୁଣାକାଳିଆ ସାମାଜିକ ସଂସ୍କାରଗୁଡ଼ିକ ତାଙ୍କୁ ସର୍ବତୋଭାବେ କବଳାୟିତ କରି ରଖିଥିଲା । ସାନପୁଅ ଟୁକ (ନବକୃଷ୍ଣ)ଙ୍କର ବାହାଘର ଏକ କୁଳୀନ କରଣ ପରିବାରରେ ଜାକଜମକରେ କରାଇବା ଥିଲା ତାଙ୍କର ଏକାନ୍ତ ଇଚ୍ଛା । ମାତ୍ର ତାଙ୍କର ସବୁ ଇଚ୍ଛାକୁ ଧୂଳିସାତ୍ କରି ପୁଅ ଗୋଟାଏ ବଙ୍ଗାଳୀ ବ୍ରାହ୍ମଣ ଝିଅକୁ ବାହାହେବାକୁ ଠିକ୍ କରିବା ଦିନଠାରୁ ତାଙ୍କ ଛାତି ଉପରେ ଗୋଟାଏ ପଥର ଲଦି ହୋଇଗଲା ଭଳି ସେ ଅନୁଭବ କରୁଥିଲେ । ସେ ଏହାର ଦୃଢ଼ ବିରୋଧ କରିଥିଲେ । ବାହାଘର ଭାଙ୍ଗି ଦେବାପାଇଁ ନାନା କୂଟ, କୌଶଳ ପ୍ରୟୋଗ ମଧ୍ୟ କଲେ । ମାତ୍ର କିଛି ଫଳ ହେଲା ନାହିଁ । ଶେଷରେ ବାସନ୍ଦ ଅସ୍ତର ଅସ୍ତ୍ର ନେଇ ବୋହୂ ରନ୍ଧା ବା ଛୁଆଁ ଜିନିଷ କିଛି ଖାଇବେ ନାହିଁ ବୋଲି ପ୍ରତିଜ୍ଞା କରି ବଡ଼ବୋହୂ ରମାଦେବୀଙ୍କୁ ମଧ୍ୟ ତାଙ୍କ ସାଙ୍ଗରେ ରଖିବାପାଇଁ ନିଜ ମୁଣ୍ଡ ଛୁଆଁଇ ପ୍ରତିଜ୍ଞା କରାଇଲେ ଯେ, ସେ ମଧ୍ୟ ସାନବୋହୂ ରନ୍ଧା ବା ଛୁଆଁ ଜିନିଷ ଖାଇବେ ନାହିଁ । ତା ହାତରୁ ପାଣି ପିଇବେ ନାହିଁ । ମାତ୍ର ଏହି ପ୍ରତିଜ୍ଞା ଫଳରେ ବସ୍ତୁତଃ ସେ ନିଜେ ଯେପରି ଏକଘରିକିଆ ହୋଇ ଯାଇଥିଲେ । ବାହାଘରର ଦଶ ବର୍ଷ ପରେ ମୁଁ ଯାଇ ତାଙ୍କ ଘରେ ରହିଲି । ସେତେବେଳେ ମୋର ଏଇଭଳି ଅନୁଭବ ହୋଇଥିଲା । ସେଇ ଅବସ୍ଥାରେ ମଧ୍ୟ ବୁଢ଼ୀମା ନିରସ୍ତ ହେବାର ଲୋକ ନ ଥିଲେ; ଏବଂ ବିଭିନ୍ନ ସମୟରେ ନୂମାଙ୍କ ଉପରେ ନାନା କଟକଣା ପ୍ରୟୋଗ କରୁଥିଲେ । ଏହା ସତ୍ତ୍ୱେ ମୁଁ ଜାଣିବାରେ ନୂମା କେବେ ବୁଢ଼ୀମା'ଙ୍କ ପ୍ରତି ଅଶ୍ରଦ୍ଧା ଭାବ ପ୍ରକଟ କରିନାହାନ୍ତି; ବରଂ ତାଙ୍କର ଯେପରି କୌଣସି ସମୟରେ କୌଣସି ପ୍ରକାର ଅସୁବିଧା ନ ହୁଏ ସେଥିପ୍ରତି ସତତ ଧ୍ୟାନ ଦେଉଥିଲେ । ବୁଢ଼ୀମା'ଙ୍କ ଜୀବନର ଶେଷ ପର୍ଯ୍ୟାୟରେ ତାଙ୍କର ପରିବର୍ତ୍ତନ ହୋଇଥିଲା । ସେ ନିଜର ଭୁଲ ହୃଦୟଙ୍ଗମ କରିପାରିଥିଲେ ଏବଂ ମିନୁ ଆସି ନିଜ ହାତରେ ରାନ୍ଧି ମତେ ଦେଲେ ମୁଁ ଖାଇବି ବୋଲି କହି ଦୁଇଦିନ ଉପାସ କରି ପ୍ରାୟଶ୍ଚିତ୍ତ କରିଥିଲେ । ନୂମା ନିଜ ହାତରେ ରାନ୍ଧି ବୁଢ଼ୀମା'ଙ୍କୁ ଖୁଆଇବାବେଳେ ଉଭୟଙ୍କ

ଅଖିରୁ ଲୁହଧାର ବହି ପଡ଼ୁଥିଲା । ଏହା ଥିଲା ନୂମାଙ୍କର ପ୍ରତିବେଶୀ ପ୍ରେମର ଏକ ନିଦର୍ଶନ ।

ନୂମାଙ୍କ ଦେଢ଼ଶୁର ଗୋପବନ୍ଧୁ ଚୌଧୁରୀ, ବଡ଼ ଯାଆ ରମାଦେବୀ ଏବଂ ତାଙ୍କର ପୁଅ ଝିଅ ବୁଲୁଭାଇ ଏବଂ ଚୁନା ଅପା ସେତେବେଳକୁ କଟକ ସେବାଘରେ ରହୁଥାନ୍ତି । ବୁଲୁଭାଇ ଅନେକ ସମୟରେ ଆସନ୍ତି । ବାପା ବୋଉଙ୍କ ଅପେକ୍ଷା ଦାଦା ନୂଆଁଙ୍କ ପାଖରେ ତାଙ୍କର ଅଧିକ ଜମେ । ଗୋପବାବୁ ମଧ୍ୟ ମଝିରେ ମଝିରେ ଆସନ୍ତି । ନୂମାଙ୍କ ସାଙ୍ଗରେ ତାଙ୍କର ଦେଢ଼ଶୁର-ଭାଇବୋହୂର ସମ୍ପର୍କ ଦେଖାଯାଏ ନାହିଁ । ଦୁହେଁ ଯେପରି ଭଲ ଭଉଣୀ—ସେହିପରି ଚଳାଚଳ ହୁଅନ୍ତି । ନୂମା ଗୋପ-ବାବୁଙ୍କୁ 'ଦାଦା' ବୋଲି ଏବଂ ଗୋପବାବୁ ନୂମାଙ୍କୁ 'ମିନୁ' ବୋଲି ସମ୍ବୋଧନ କରନ୍ତି । ଦୁହିଁଙ୍କ ଭିତରେ ଅନେକ ସମୟରେ ପ୍ରବଳ ଯୁକ୍ତିତର୍କ ମଧ୍ୟ ଲାଗିଯାଏ । ଆମ ଓଡ଼ିଆ ଘରର ସେତେବେଳକାର ସାମାଜିକ ଚଳଣିରେ ଭାଇ-ବୋହୂ ଦେଢ଼ଶୁରଙ୍କ ସଙ୍ଗେ ଯୁକ୍ତିତର୍କ କରିବା ତ ଦୂରର କଥା, ତାଙ୍କ ସାମନାକୁ ମଧ୍ୟ ଆସୁ ନଥିଲେ । ସେଇଭଳି ପତିପତ୍ନୀ ମଧ୍ୟ ଅନ୍ୟମାନଙ୍କ ଆଗରେ ପରସ୍ପର ସହ ଦେଖା-ଚାହାଁ, କଥାବାର୍ତ୍ତା କରିବାର କିମ୍ବା ଜଣେ ଅନ୍ୟଜଣଙ୍କୁ ନାଁ ଧରି ଡାକିବାର ଚଳଣି ମଧ୍ୟ ନଥିଲା । ନୂମା ୧୯୨୭ରେ ଚୌଧୁରୀ ପରିବାରଭୁକ୍ତ ହୋଇଥିଲେ । ତାର ୧୨ ବର୍ଷ ପୂର୍ବରୁ ରମାଦେବୀ ସେ ଘରକୁ ବଡ଼ ବୋହୂ ହୋଇ ଆସି-ଥିଲେ । ରମାଦେବୀଙ୍କ ଜୀବନୀର ଅନୁଶୀଳନରୁ ଦେଖାଯାଏ ଯେ ବିବାହ ପରେ ୧୫ ବର୍ଷ ପର୍ଯ୍ୟନ୍ତ ଲୋକାଚାରର ନିଗଡ଼ ବନ୍ଧନ ଭିତରେ ସେ ନିଜକୁ ଆବଦ୍ଧକରି ରଖିଛନ୍ତି ଏବଂ କେତେକ କ୍ଷେତ୍ରରେ ନିଜର ବିବେକ ବିରୋଧରେ ମଧ୍ୟ ତାଙ୍କୁ କାମ କରିବାକୁ ପଡ଼ିଛି । ମାତ୍ର ଏ କ୍ଷେତ୍ରରେ ନୂମା ଥିଲେ ଏକ ବିରାଟ ବ୍ୟତିକ୍ରମ । ସେ ସାରା ଜୀବନ କୌଣସି ପ୍ରକାର ଅସମୀଚୀନ ସାମାଜିକତାର ବାଧା ବନ୍ଧନକୁ ମାନି ନାହାନ୍ତି—ସବୁ ପ୍ରତିକ୍ରିୟାଶୀଳ ସଂସ୍କାରଗୁଡ଼ିକ ଭାଙ୍ଗି ଖଣ୍ଡବିଖଣ୍ଡିତ କରିଛନ୍ତି । ତାଙ୍କର ଜୀବନ ସଂଗ୍ରାମମୟ ଥିଲା । ଅମଡ଼ା ଭୂଇଁରେ ବାଟ ଫିଟାଇବା ଥିଲା ତାଙ୍କର ବିଶେଷତ୍ୱ । ଏଥିପାଇଁ ପ୍ରତିକ୍ରିୟାଶୀଳ ମହଲରୁ କରିଯାଉଥିବା କୁତ୍ସାରଟନା, ନିନ୍ଦା, ଅପବାଦ ଏବଂ ବିରୋଧକୁ ଖାତିର ନକରି ସେ ଆଗକୁ ଆଗକୁ ମାଡ଼ି ଚାଲିଥିଲେ ।

ସେତେବେଳକାର ସାମାଜିକ ପରମ୍ପରା ଅନୁସାରେ ଝିଅପାଇଁ ବାପ ମା ଜାତି, କାତକ, ଗୌରବ ଭିତ୍ତିରେ ବାହାଘର ଠିକ କରୁଥିଲେ, କିନ୍ତୁ ସେ ପରମ୍ପରା ଭାଙ୍ଗି ନୂମା ନିଜପାଇଁ ନିଜେ ବର ଠିକକରି ନେଲେ । ଜାତି, କାତକ, ଗୌରବ ବିଚାରକୁ ଆସିଲା ନାହିଁ । ରମାଦେବୀଙ୍କ ବାହାଘରରେ ଏକହଜାର ବରଯାତ୍ରୀଙ୍କର ସମାବେଶ ହୋଇଥିଲା, ମାତ୍ର କଲିକତାରେ ତାଙ୍କ ବାହାଘର ଦେଢ଼ଶୁର, ମଲାଶୁର ଆଦି ୬୨ ଜଣଙ୍କ ଉପସ୍ଥିତିରେ ହିଁ ସମାହିତ ହୋଇଥିଲା ଅତ୍ୟନ୍ତ ସାଧାସିଧା ଭାବରେ । ବାହାଘର ପରେ କୁଳୀନ ଘରର ବୋହୂଟିଏ ବାହାରକୁ ବାହାରିବା କଥା ନୁହେଁ—ଓଢ଼ଣା ପକାଇ ଘରଭିତରେ ରହିବା କଥା, ସେ କିନ୍ତୁ ଏପ୍ରକାର ସାମାଜିକ ବାଧାବନ୍ଧନ ମାନିଲେ ନାହିଁ । ସ୍ୱାମୀଙ୍କ ସଙ୍ଗରେ ଯାଇ ଅଣଖିଆ ଗାଁର କୁଡ଼ିଆଘରେ ରହି ଗାଁ କାମରେ ଲାଗିପଡ଼ିଲେ । ଗାଉଁଲି ପିଲାଙ୍କୁ ରାତିରେ ପାଠ ପଢ଼ାଇଲେ । ମୂଲିଆଣୀଙ୍କ ସଙ୍ଗେ ମିଶି କ୍ଷେତକାମ କଲେ । କେଳା, କଣ୍ଡରା ଆଦି ଶ୍ରେଷ୍ଠ-ଜାତିର ଲୋକ-ଯାହାଙ୍କୁ କେହି ଛୁଉଁନଥିଲେ—ତାଙ୍କ ସଙ୍ଗେ ଏକାକାର ହୋଇଗଲେ—ତାଙ୍କ ସାଥିରେ ଖିଆପିଆ କଲେ । ଗାନ୍ଧୀଜୀ ଅସ୍ପୃଶ୍ୟତା ନିବାରଣ କାମ ଚଳାଇବା ଆଗରୁ ସେ ତାହା ଆରମ୍ଭ କରି ଦେଇଥିଲେ । ୧୯୩୦ରେ ଗାନ୍ଧୀ ଗୁଜୁରାଟର ଦାଣ୍ଡୀଠାରେ ଲୁଣମାରି ଲବଣ ଆଇନ ଭଙ୍ଗକଲେ । ଆମ ଓଡ଼ିଶାରେ ଆଚାର୍ଯ୍ୟ ହରିହର ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ିଠାରେ ଲବଣଆଇନ ଭଙ୍ଗର ଶୁଭଦେଲେ । ମାତ୍ର ମାଲତୀ ଚୌଧୁରୀ ଏହାକୁ ଏକ ବିରାଟ ଜନ ଆନ୍ଦୋଳନରେ ପରିଣତ କରିଥିଲେ । ଶହ ଶହ ସ୍ତ୍ରୀଲୋକଙ୍କୁ ଘରକଣରୁ ବାହାର କରି ସେମାନଙ୍କୁ ସଙ୍ଗରେ ଧରି କୁଜଙ୍ଗ ଅଞ୍ଚଳରେ ଲୁଣମାରି ସେ ସରକାରଙ୍କୁ ହତଭମ୍ବ କରିପକାଇ ଥିଲେ । ଏହି ଅପରାଧରେ ଦୁଇବର୍ଷର ଝିଅକୁ ସଙ୍ଗରେ ଧରି ତାଙ୍କୁ ଜେଲଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ଏ ପ୍ରକାର ଅପୂର୍ବ ତ୍ୟାଗର ପଟାନ୍ତର ନାହିଁ । ତାଙ୍କର ସାହସ ଏବଂ ତ୍ୟାଗର କଳନା କରି ହୁଏନାହିଁ । କଲିକତା ସହରର ଏକ ଉଚ୍ଚ ସମ୍ଭ୍ରାନ୍ତ ବଙ୍ଗାଳୀ ପରିବାରରେ ଜନ୍ମ ନେଇଥିବା ଝିଅଟିଏ ଅଲଗା ଦେଶ, ଅଲଗା ଭାଷା, ଅଲଗା ସଂସ୍କୃତି ଏବଂ ସମ୍ପୂର୍ଣ୍ଣ ବିରୋଧୀ ପରିବେଶ ଭିତରେ ଗାଁ ଗଣ୍ଡାର ନିପୀଡ଼ିତ ଜନଗଣଙ୍କ ସେବାରେ ତନ୍ମୟ ହୋଇ ମଜ୍ଜି ଯିବା କମ ବାହାଦୁରୀର କଥା ନୁହେଁ । ସେ ଯେଉଁ ବ୍ରାହ୍ମ ସମାଜରେ ଜନ୍ମ ନେଇଥିଲେ ତହିଁରୁ ଏସବୁ କାମପାଇଁ ସେ ପ୍ରେରଣା ଆହରଣ କରିଥିଲେ । ସ୍ନେହମୟୀ ମାଆଙ୍କର ଅଭୟ, ଉଦାର ଆବରଣ ତଳେ ତାଙ୍କର ନିର୍ଭୀକ, ବିରାଟ

ବ୍ୟକ୍ତିତ୍ୱ ଗଢ଼ି ଉଠିଥିଲା । ଶାନ୍ତିନିକେତନର ମୁକ୍ତ ପରିବେଶ ଭିତରେ ତାଙ୍କର ସ୍ୱାତନ୍ତ୍ର୍ୟ ଏବଂ ସ୍ୱାଧୀନ ଚିନ୍ତା ବିକଶିତ ହୋଇଥିଲା ଏବଂ ସର୍ବୋପରି ଭଙ୍ଗାଗଢ଼ାର ଏକ ବାସନା ତାଙ୍କ ଭିତରେ ରୂପ ନେଇଥିଲା ।

ସେ ସମୟରେ ରାଜା ଓ ଜମିଦାରମାନେ ଇଂରେଜ ସରକାରଙ୍କ ବାହୁଛାୟା ତଳେ ସାରାଦେଶରେ ଅକଥନୀୟ ଅତ୍ୟାଚାର ଓ ଶୋଷଣର ଜାଲ ମେଲି ଦେଇଥିଲେ । ନାନାପ୍ରକାର କର,ଖଜଣା, ଟିକସ, ବେଠି, ଭେଟି, ମାଗଣ ଲୋକଙ୍କଠାରୁ ଜୋର ଜବରଦସ୍ତି ଆଦାୟ କରୁଥିଲେ ଏବଂ ଏଥିପାଇଁ ଲୋକଙ୍କୁ ଜେଲ, ଜରିମାନା, ମାଡ଼, ଗାଳି, ଅପମାନ ଦ୍ୱାରା ଭୟଭୀତ କରାଇ ସେମାନଙ୍କୁ ନାମର୍ଦ ଏବଂ ଅସହାୟ କରି ପକାଉଥିଲେ । ଜମିଦାରଙ୍କ ଦାଣ୍ଡବାଟେ କୌଣସି ଲୋକ ଛତାଟିଏ ଟାଣି ବା ଜୋତାମାଡ଼ି ଯିବା ନିଷିଦ୍ଧ ଥିଲା । ଛତାଟି ମାରଦେଇ ଏବଂ ଜୋତା ଦୁଇଟି ହାତରେ ଧରି ତାଙ୍କୁ ଦାଣ୍ଡଟି ପାରି ହେବାକୁ ପଡ଼ୁଥିଲା । ଅନେକଠାରେ ଝିଅବୋହୂଙ୍କ ଇଜ୍ଜତ ଉପରେ ମଧ୍ୟ ଆକ୍ରମଣ କରାଯାଉଥିଲା । ଏହା କ'ଣ ବିଶ୍ୱାସ କରିହେବ ଯେ ଜଣେ ତତ୍କାଳୀନ ମଠାଧୀଶ ନିୟମ ଜାରି କରିଥିଲେ ଯେ ତାଙ୍କ ଇଲାକାରେ କୌଣସି ଲୋକ ବିବାହ କଲେ ତାର ନବବଧୂ ପ୍ରଥମରାତ୍ରି ମହନ୍ତ ମହାରାଜଙ୍କ ସେବାରେ ନିଯୁକ୍ତ ହେବ ? ଏଇଭଳି ଏବଂ ଏହାଠାରୁ ଅଧିକ ବୀଭତ୍ସ କାରବାର ସାଧାରଣ ଚଳଣିରେ ପରିଣତ ହୋଇଯାଇଥିଲା ଏବଂ ଲୋକେ ଲୁହ ନିଗାଡ଼ି ରକତ ଢାଳୁଥିଲେ ମଧ୍ୟ ନୀରବରେ ମୁଣ୍ଡପାତି ନ ବୋଲ ବୋହି ଚାଲୁଥିଲେ । ମାତ୍ର ସ୍ୱାଭାବିକ ଏହି ଜାଗାର ଲୋକମାନଙ୍କ ଭିତରେ ଚେତନା, ସାହସ ଏବଂ ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସ ଜାଗ୍ରତ କରାଇଥିଲେ ନୃମା-ବାପି ଏବଂ ତାଙ୍କର ଅଗ୍ନିସ୍ନାତ ଯୁବବାହିନୀ । ଖାଲି ଅନ୍ୟାୟ କରିବା ଲୋକକୁ ନୁହେଁ, ଅନ୍ୟାୟ ସହିବା ଲୋକକୁ ମଧ୍ୟ ଭଗବାନଙ୍କର ରୋଷ ଜାଳିପୋଡ଼ି ପାଉଁଶ କରିଦେବାର ଯେଉଁମନ୍ତ୍ର ଗୁରୁଦେବ ରବୀନ୍ଦ୍ରନାଥ ତାଙ୍କୁ ଦେଇଥିଲେ ସେଇ ମନ୍ତ୍ରରେ ସେ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ନୃମାଙ୍କର ଥିଲା ଅସୀମ ସଙ୍ଗଠନଶକ୍ତି । ନଈ, ନାଳ, ବଣ, ପାହାଡ଼ ଡେଇଁ ଓଡ଼ିଶାର କୋଣକୋଣରେ ସେ ସନ୍ତାପିତ ମାନବ ପ୍ରାଣରେ ନବଜୀବନ ସଞ୍ଚାର କରିଥିଲେ । ଅନୁପମ ସାହସ ସହିତ ଭଗବାନ ତାଙ୍କୁ ଦେଇଥିଲେ ବିମୋହନୀ ସ୍ୱରସମ୍ଭାର । ଗାଁ ମଝିରେ ଗଛ ମୂଳରେ ଛିଡ଼ାହୋଇ ସେ ଯେତେବେଳେ ଉଦ୍‌ବୋଧନୀ ଗୀତଟିଏ ଗାଇ ଦେଉଥିଲେ ପଦୁତୋଳା ଶୁଣି ଦାଗ ଗାତରୁ ବାହାରି ଆସିଲା ଭଳି ଗାଁଟାଯାକର ମରଦ ମାଇପେ ଛୁଟିଆସିଲା ସମୟରେ ଆସି ତାଙ୍କ ପୃଷ୍ଠପଟେ ଜମି ଯାଉଥିଲେ ।

"ଦୁନିଆଯାକର ମାଲିକ ସ୍ୱୋଷୀ—
ମନୁଷ୍ୟ ଭୁଲିହେ ଉପବାସୀ
ତୋଳିଧର ତୋର ପତାକା ଆସି—
ତୋହର ରକତେ ଲାଲ
ସ୍ୱଲ୍‌ରେ ସ୍ୱଲ୍‌ରେ ସ୍ୱଲ୍''

ଏଇଭଳି ହୃଦୟସ୍ପର୍ଶୀ, ଉନ୍ମାଦନାଭରା ଗୀତର ତେଉରେ ସେ ସମସ୍ତଙ୍କୁ ଭସାଇ ନେଉଥିଲେ । ଏଇସବୁ ଏହି ମମତା-ମୟୀ ମାଆଙ୍କର ସ୍ନେହ ପରଶରେ ଗଡ଼ଜାତର ପ୍ରଜା ଏବଂ ମୋଗଲବନ୍ଦୀର ଜମିଦାରଙ୍କ ଇଲାକାର ଲକ୍ଷ ଲକ୍ଷ ସ୍ୱୋଷୀ ଜାଗିଉଠିଥିଲେ । ସାରା ଓଡ଼ିଶାରେ ରାଜା ଓ ଜମିଦାରଙ୍କର ଅତ୍ୟାଚାର ଓ ଶୋଷଣ ବିରୋଧରେ ବିଦ୍ରୋହର ନିଆଁ ଜଳିଉଠିଥିଲା । ବେଠି, ଭେଟି, ମାଗଣ, ଜୁଲମ ସବୁ ବନ୍ଦ ହୋଇଯାଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ବାପିନୃମାଙ୍କ ନେତୃତ୍ୱରେ ମୋଗଲବନ୍ଦୀର ସ୍ୱୋଷୀମାନେ ଜମିଦାରୀ ଉଚ୍ଛେଦ ପାଇଁ ଏକ ଅନମନୀୟ ଆନ୍ଦୋଳନ ଗଢ଼ିତୋଳି-ଥିଲେ । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ତତ୍ପରବର୍ଷ ଓଡ଼ିଶା ବିଧାନ ସଭାପାଇଁ ନିର୍ବାଚନ ହୋଇ କଂଗ୍ରେସ ସରକାର ଗଢ଼ାଗଲା । ଏଇ ବିଧାନସଭାରେ ବାପି ଥିଲେ ଜଣେ ପ୍ରଭାବଶାଳୀ ସଦସ୍ୟ । ସେଇଭଳି ୧୯୩୭ଠାରୁ ୧୯୫୭ ପର୍ଯ୍ୟନ୍ତ ଦଶବର୍ଷ ମଧ୍ୟରୁ ମଝିରେ ଦବର୍ଷ ଛାଡ଼ିଦେଲେ ବାକି ସମୟତକ ବାପି ପ୍ରଥମେ ରାଜସ୍ୱମନ୍ତ୍ରୀ ଏବଂ ପରେ ମୁଖ୍ୟମନ୍ତ୍ରୀ ଭାବେ ଶାସନ ଦାୟିତ୍ୱ ବହନ କରିଥିଲେ । ଓଡ଼ିଶାରେ ଭୂସଂସ୍କାର କ୍ଷେତ୍ରରେ ଏହି ସମୟଟି ଥିଲା ସୁବର୍ଣ୍ଣଯୁଗ । ସେହି ସମୟରେ ଓଡ଼ିଶାର ଶ୍ରେଷ୍ଠବଡ଼ ପ୍ରାୟ ଚଉଦଲକ୍ଷ ଜମିଦାର ମଧ୍ୟସ୍ୱତ୍ୱାଧିକାରୀଙ୍କୁ ଉଚ୍ଛେଦ କରା-ଯାଇଥିଲା ଏବଂ ରଇତସ୍ୱୋଷୀ ଓ ଭୂମିହୀନ ସରସ୍ୱୋଷୀମାନଙ୍କୁ ସୁହାଇଲା ଭଳି ପ୍ରଗତିଶୀଳ ରାଜସ୍ୱ ଆଇନମାନ ପ୍ରଣୀତ ହୋଇଥିଲା । ୧୯୪୬ରୁ ୧୯୫୭ ଯାଏ ଦଶବର୍ଷ ମୁଁ ମଧ୍ୟ ଓଡ଼ିଶା ବିଧାନସଭାର ସଦସ୍ୟ ଥିଲି । ପ୍ରତ୍ୟକ୍ଷ ଜ୍ଞାନରୁ ମୁଁ ନିଶ୍ଚିତଭାବେ କହିପାରେ ଯେ ସରକାର ବାହାରେ ପ୍ରବଳ ଜନମତ ସୃଷ୍ଟି କରାଯାଇନଥିଲେ ସେତେବେଳର ପରିସ୍ଥିତିରେ ଜମିଦାରୀ ଉଚ୍ଛେଦ ଆଦି ବିରାଟ ପଦକ୍ଷେପମାନ ନେବା ସମ୍ଭବ ହୋଇନଥାନ୍ତା ।

ଗଡ଼ଜାତମାନଙ୍କରୁ ରାଜୁତା ଶାସନର ବିଲୋପ ଏବଂ ଗଡ଼ଜାତ ମିଶ୍ରଣ ଇତିହାସରେ ମଧ୍ୟ ମାଳତୀ ଚୌଧୁରୀ ଏବଂ ନବକୃଷ୍ଣ ଚୌଧୁରୀଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କର ଯୋଜନା, ପ୍ରେରଣା ଏବଂ ନେତୃତ୍ୱରେ ଦେଶୀୟ ରାଜ୍ୟମାନଙ୍କର, ବିଶେଷତଃ ଢେଙ୍କାନାଳ, ତାଳଚେର, ନୀଳଗିରି ଓ ରଣପୁର ରାଜ୍ୟରେ ୧୯୩୮ ବେଳକୁ ଅଭୂତପୂର୍ବ ଗଣବିଦ୍ରୋହ ସଙ୍ଗଠିତ ହୋଇଥିଲା । ଏହିସବୁ ଆନ୍ଦୋଳନକୁ ଦବାଇ ଦେବାପାଇଁ ପ୍ରଜାମଣ୍ଡଳର କର୍ମୀ ଏବଂ ଜନସାଧାରଣଙ୍କ ଉପରେ ରାଜସରକାରମାନେ ନିର୍ମମ ଅତ୍ୟାଚାର ଚଲାଇଲେ । ମାତ୍ର ଏହା ବୁମେରାଂ ଭଳି ସେଇମାନଙ୍କ ବିରୋଧରେ ହିଁ କାମ କରିଥିଲା । ସମଗ୍ର ଭାରତରେ ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ପ୍ରକ୍ରିୟା ଓଡ଼ିଶାରୁହିଁ ଆରମ୍ଭ ହୋଇଥିଲା । ଏହାର ଶୁଭାରମ୍ଭ ହେଲା ନୀଳଗିରିରୁ । ନୀଳଗିରି ମିଶ୍ରଣର ଇତିହାସ ଅନୁଧ୍ୟାନ କଲେ ଦେଖାଯାଏ ଯେ ୧୯୪୭ ନଭେମ୍ବର ୧୪ ତାରିଖଦିନ ନୀଳଗିରି ରାଜାଙ୍କ ଉପରେ ରାଜତନ୍ତ୍ର ଏବଂ ଲୋକତନ୍ତ୍ରର ଶଣ୍ଢୁଆସି ରୂପ ପ୍ରୟୋଗ କରି କୂଟନୈତିକ ବିଜୟ ହାସଲ କରାଯାଇଥିଲା ଏବଂ ବିନା ସଂଘର୍ଷରେ ତାଙ୍କ ହାତରୁ ଶାସନକ୍ଷମତା କାଢି ନିଆଯାଇଥିଲା । ଏହି ଶଣ୍ଢୁଆସୀର ରାଜତନ୍ତ୍ର ଅଂଶଟିରେ ଥିଲେ ଓଡ଼ିଶା ସରକାରଙ୍କର ତତ୍କାଳୀନ ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏବଂ ଲୋକତନ୍ତ୍ର ଅଂଶର ଶୀର୍ଷସ୍ଥାନରେ ଥିଲେ ତାଙ୍କର ସହଧର୍ମିଣୀ ମାଳତୀ ଚୌଧୁରୀ ; ଯାହାଙ୍କୁ ନୀଳଗିରିର ଲୋକେ ଅତି ଆଦରରେ ରଣଚଣ୍ଡୀର ଆଖ୍ୟା ଦେଇଥିଲେ ଏବଂ ଯାହାଙ୍କ ନାମ ଶୁଣିଲେ ରାଜା ଓ ରାଜାନୁଗତମାନଙ୍କର ହୃତ୍କମ୍ପ ଜାତ ହେଉଥିଲା । ମାଳତୀଦେବୀଙ୍କ ଠାରୁ ପ୍ରେରଣା ଲାଭକରି ପ୍ରଜାମଣ୍ଡଳର ଯୁବଗୋଷ୍ଠୀ ନଭେମ୍ବର ୧୨ ତାରିଖଦିନ ରାଜପକ୍ଷଙ୍କ ବିରୋଧରେ ସଂଗ୍ରାମ ଆରମ୍ଭ କରିଦେଇଥିଲେ । ସେଇଦିନ ଏହି ବିଦ୍ରୋହୀବାହିନୀ ପକ୍ଷରୁ ମାଳତୀଦେବୀ ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀଙ୍କୁ ବେତାରବାର୍ତ୍ତାରେ ଚରମପତ୍ରଦେଇ ଜଣାଇ ଦେଇଥିଲେ ଯେ ସରକାର ଅବିଳମ୍ବେ ନୀଳଗିରି ରାଜାଙ୍କ ଠାରୁ ଶାସନକ୍ଷମତା କାଢି-ନିଅନ୍ତୁ , ଅନ୍ୟଥା ଲୋକମାନେ ୧୬ ତାରିଖରେ ତାଙ୍କୁ ନିକାଲିଦେଇ କ୍ଷମତା ଦଖଲ କରିନେବେ । ଏଭଳି ହେଲେ ସାମ୍ବିଧାନିକ ଜଟିଳତା ଉପୁଜିବ ବୋଲି ଅନୁଭବ କରି ସର୍ଦ୍ଦାର ପଟେଲ ୧୯୪୭ ନଭେମ୍ବର ୧୪ ତାରିଖ ଦିନ ନୀଳଗିରି ରାଜ୍ୟ ଦଖଲ କରିନେବା ପାଇଁ ରାଜ୍ୟ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ରାଜ୍ୟ ଦଖଲପାଇଁ ଶକ୍ତି ପ୍ରୟୋଗର ଆବଶ୍ୟକତା ପଡ଼ିଲା ନାହିଁ । ରାଜା ବିନା ଯୁଦ୍ଧରେ ସ୍ୱଇଚ୍ଛାରେ ନୀଳଗିରି ରାଜ୍ୟ ଭାରତ ସରକାରଙ୍କ ହାତରେ ସମର୍ପଣ କରିଦେଲେ ବୋଲି ଚୁକ୍ତିପତ୍ରରେ ସ୍ୱାକ୍ଷର କରିଦେଲେ । ନୀଳଗିରି ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ପାଇଁ ବାଟ ଫିଟାଇଲା । ଏହାର ଠିକ୍ ଏକମାସ ପରେ ୧୯୪୭ ଡିସେମ୍ବର ୧୪ ତାରିଖଦିନ ଅନ୍ୟ ଦେଶୀୟ ରାଜ୍ୟମାନେ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କଲେ ଏବଂ ୧୯୪୮ ଜାନୁଆରୀ ପହିଲାଠାରୁ ଏ ରାଜ୍ୟଗୁଡ଼ିକ ଓଡ଼ିଶାସହ ମିଶିଗଲେ ।

ଗଡ଼ଜାତଗୁଡ଼ିକ ସାଧାରଣ ଶାସନ ଭିତରକୁ ଆସିଗଲା ପରେ ଆଦିବାସୀମାନଙ୍କର ଦୁଃଖ ଦୈନ୍ୟ ତଥା ଉତ୍ପୀଡ଼ନର କରୁଣ କାହାଣୀମାନ ଅଧିକରୁ ଅଧିକ ଲୋକଲୋଚନକୁ ଆସିବାକୁ ଲାଗିଲା । କାହାର ଦୁଃଖ କଥା ଶୁଣିଲେ ନୂମା ଅତ୍ୟଧିକ ଅସ୍ଥିର ହୋଇପଡ଼ନ୍ତି । ଏହା ଥିଲା ତାଙ୍କର ଏକ ସହଜାତ ଗୁଣ । ଠକ୍କର ବାପା ଏବଂ ଗୋପବାବୁଙ୍କ ପରାମର୍ଶକ୍ରମେ ୧୯୪୮ ଅକ୍ଟୋବର ୨୪ ତାରିଖ ଦିନ ଗଢ଼ାଗଲା ଉତ୍କଳ ନବଜୀବନ ମଣ୍ଡଳ । ଭାଇ ଓ ପଡ଼ୋଶୀ ଭଳି ଆଦିବାସୀମାନଙ୍କୁ ସାହାଯ୍ୟ କରିବା ହେଲା ଏହାର ମୂଳ ଲକ୍ଷ୍ୟ । ଏହି କାମ ପାଇଁ କର୍ମୀ ତାଲିମ ଚାଲିଲା । ସବୁ କାମରେ ନୂମାଙ୍କର ସ୍ୱତନ୍ତ୍ର ଏବଂ ମୌଳିକ ବିଚାର ଥାଏ । ଏ କାମ ପାଇଁ ସେ ବାଛିଲେ ନାରୀ କର୍ମୀ । ବିଧବା ତଥା ପରିତ୍ୟକ୍ତାମାନଙ୍କୁ ଅଗ୍ରାଧିକାର ଦିଆଗଲା । ଏମାନେ ତତ୍କାଳୀନ ସମାଜରେ ଉପେକ୍ଷିତ ଏବଂ ଅରକ୍ଷିତ ଅବସ୍ଥାରେ ଥିଲେ । ଏମାନଙ୍କୁ କର୍ମୀ ରୂପେ ଚୟନ କରି ନୂମା ସମାଜ ଫୋପାଡ଼ି ଦେଇଥିବା ଆବର୍ଜନାକୁ ରତ୍ନରେ ପରିଣତ କଲେ । ବଣେଇ, ଗଞ୍ଜାମ ମାଳ, ଫୁଲବାଣୀ, କୋରାପୁଟ, ଢେଙ୍କାନାଳର କୁଆଁଙ୍ଗପୀଢ଼ ଏବଂ କେନ୍ଦୁଝରର ଭୂୟାଁପୀଢ଼ ପ୍ରଭୃତି ଅଞ୍ଚଳର ବନ୍ୟଜନ୍ତୁସଂକୁଳ ଅଗନାଅଗ୍ନି ବନସ୍ତ ଭିତରେ ପାଦରେ ଚାଲିଚାଲି ନୂମା ଲୋକଙ୍କ ସମସ୍ୟାର ଅନୁଧ୍ୟାନ କରିଥିଲେ ଏବଂ ତାଲିମପ୍ରାପ୍ତ କର୍ମୀମାନଙ୍କ ଜରିଆରେ ଶିକ୍ଷା, ସ୍ୱାସ୍ଥ୍ୟ, ଗ୍ରାମୋଦ୍ୟୋଗ, ନିଶାନିବାରଣ ଆଦି କାମ ମାଧ୍ୟମରେ ଲୋକଶକ୍ତି ଜାଗ୍ରତ କରାଇଥିଲେ । ଏହି ନିରୀହ, ଶୂନ୍ୟାଶ୍ରୟୀ ଲୋକଗୁଡ଼ିକଙ୍କଠାରୁ ମଧ୍ୟ ସେ ଅଞ୍ଚଳର ମୁଖିଆ, ସାହୁକାର ଏବଂ ବାଡ଼ ହୋଇ ମଧ୍ୟ ଫସଲ ଖାଉଥିବା ସରକାରୀ କର୍ମଚାରୀମାନେ ବେଠି, ଭେଟି ଏବଂ ନାନାଦି

ବେଆଇନ ପାଉଣାମାନ ଆଦାୟ କରି ନାନା ଜୁଲମ ଚଳାଇଥିଲେ । ଏହାର ଦୃଢ଼ ମୁକାବିଲା କରିଥିଲେ ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନେ । କୌଣସି ପ୍ରକାର ଅନ୍ୟାୟ ଆଗରେ ମୁଣ୍ଡ ନ ନୁଆଁଇବା ପାଇଁ ଏମାନେ ଲୋକଙ୍କୁ ପ୍ରବୋଧିତ କରିଥିଲେ ।

ଅପରପକ୍ଷେ ଆଦିବାସୀମାନଙ୍କର ସରଳଜୀବନ ଏବଂ ଚାଲିଚଳଣି ମଧ୍ୟ ନୁମାଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ସାନ୍ତାଳମାନଙ୍କ ଭଳି ସେ ନିଜର ନୂଆଁଣିଆ ଘର, ମାଟି କାନ୍ଥ, ମାଟି ଚଟାଣର ଉଚ୍ଚା ଘରଟିର କାନ୍ଥ କଳା, ଗେରୁଆ ଓ ହଳଦିଆ ଆଦି ବିଭିନ୍ନ ରଙ୍ଗର ମାଟିରେ ଲିପାଉଥିଲେ ଏବଂ ସେଇମାନଙ୍କ ଭଳି କାନ୍ଥ ଏବଂ ମେଜିଆରେ ବଡ଼ ଶାଳଗ୍ରାମ ଭଳି ଧାଆଁଳ ପଥର ଘଷି ଚିକ୍‌କଣ ଓ ଚକ୍‌ଚକ୍ କରାଉଥିଲେ । ସେ ଏତେ ବେଶୀ କଳାପ୍ରେମୀ ଥିଲେ ଯେ ବଣ ଜଙ୍ଗଲ ଦେଇ ଯାଉଥିବା-ବେଳେ ଯେଉଁ ଶୁଖିଲା କାଠଖଣ୍ଡି ବା ପଥର ଖଣ୍ଡି କୌଣସି ଚଢ଼େଇ ବା ଜୀବଜନ୍ତୁ ଭଳି ଦେଖାଯାଉଥିଲା, ତାକୁ ବୋହି ବୋହି ଆଣି ଘର ସଜାଉଥିଲେ ଏବଂ ବଣ ଭିତରୁ ଫୁଲଗଛ ସଂଗ୍ରହ କରି ନିଜ ବଗିଚାରେ ଲଗାଉ-ଥିଲେ । ଏଇ ସରଳ ଆଦିବାସୀ ଲୋକଗୁଡ଼ିକୁ ନୁମା ଯେତିକି ଆପଣାର ବୋଲି ଭାବୁଥିଲେ, ସେମାନେ ମଧ୍ୟ ତାଙ୍କୁ ସେଇଭଳି ଆପଣାର ମନେକରୁଥିଲେ । ନୁମା କେନ୍ଦ୍ର ଗାଁରେ ପହଞ୍ଚିଗଲେ ଛୋଟ ବଡ଼ ସମସ୍ତେ ତାଙ୍କ ଚାରିପଟେ ଘେରିଯାଉଥିଲେ । ପିଲାମାନଙ୍କୁ—କାହାକୁ କାଚଗୋଟାଏ ତ କାହାକୁ ପିତଳ କଣ୍ଢେଇଟିଏ—ଏଇଭଳି ନାନା ଖେଳ ଉପକରଣ ମିଳି ଯାଉଥିଲା । ସ୍ତ୍ରୀ-ମାନଙ୍କ ସଙ୍ଗେ ମିଶି ସେ ନାଚ କରୁଥିଲେ; ତାଙ୍କ ଘରେ ଯାଇ ମକା ପୋଡ଼ା, ଝୁଙ୍ଗରାଣୀ ପିଠା ଖାଇବାରେ ସେ ଆନନ୍ଦ ଅନୁଭବ କରୁଥିଲେ । ଲୋକଙ୍କ ସଙ୍ଗେ ମିଶି ଯିବାର ଅଦ୍ଭୁତ କୁଶଳତା ତାଙ୍କର ଥିଲା । ଗରିବଙ୍କ ଦୁଃଖରେ ତରଳି ଯାଇ ସେ ତାଙ୍କ ସଙ୍ଗେ ଏକରୂପ, ଏକାକାର ହୋଇ ଯାଉଥିଲେ । ସେ ତ୍ୟାଗ ଭିତରେ ଭୋଗର ସୁଖ ଅନୁଭବ କରୁଥିଲେ ଏବଂ ତାଙ୍କର କର୍ମୀମାନଙ୍କୁ ସେଇଭଳି ଭାବେ ଗଢ଼ିବା ପାଇଁ ସତତ ଉଦ୍ୟମ କରୁଥିଲେ । ଏହି ଶୁଦ୍ଧ ସରଳ, ସଦାହସ ଆଦିବାସୀମାନଙ୍କ ଭିତରେ କାମ କରିବାକୁ ହେଲେ କର୍ମୀଙ୍କର ଚାଲିଚଳଣି ତାଙ୍କର ଭଳି ହେବାକୁ ହେବ; ନହେଲେ ତାଙ୍କୁ 'ଦିକୁ' ବୋଲି କହି ସେମାନେ ଉପେକ୍ଷା କରିବେ—ଏହା ଥିଲା କର୍ମୀମାନଙ୍କ ପ୍ରତି ତାଙ୍କର ଉପଦେଶ । ଅନୁଷ୍ଠାନର ପଇସାଟିଏ ଖର୍ଚ୍ଚ କଲାବେଳେ ସେ ହାତେ ମାପି ଖର୍ଚ୍ଚ କରନ୍ତି । ଗୋଟିଏ ଦିନର କଥା ମୁଁ କେବେ ଭୁଲି ପାରେ ନାହିଁ ।

ନୁମା ବାପିଙ୍କର ଆଗ୍ରହ ଏଡ଼ି ନପାରି ମୁଁ ସପରିବାର ୧୯୫୮ ଆରମ୍ଭରୁ ଅନୁଗୋଳ ଯାଇ ଉତ୍କଳ ନବଜୀବନ ମଣ୍ଡଳର ଯୁଗ୍ମ ସମ୍ପାଦକ ଦାୟିତ୍ୱ ନେଲି । ନୁମା ଥିଲେ ସମ୍ପାଦିକା । ଦୁହେଁ ଦିନେ ଗଞ୍ଜାମ ଜିଲ୍ଲା ରାମଗିରି-ଉଦୟଗିରି ମାଳ ଅଞ୍ଚଳରେ ଥିବା କେନ୍ଦ୍ର ଦେଖିବା ପାଇଁ ଯାଉଥାଉ । ସେତେବେଳେ ବସ୍‌ରେ ନିମ୍ନଶ୍ରେଣୀ ଓ ଉଚ୍ଚଶ୍ରେଣୀ ଦୁଇ-ପ୍ରକାରର ବ୍ୟବସ୍ଥା ଥାଏ । ଉଚ୍ଚଶ୍ରେଣୀ ଟିକଟ ପାଇଁ ସାମାନ୍ୟ ଅଧିକ ପଇସା ପଡ଼େ ଏବଂ ଆଗ ସିଟ୍‌ରେ ବସିବା ସୁବିଧା ମିଳେ । ମୁଁ ଆମ ଦୁଇଜଣଙ୍କ ପାଇଁ ଉଚ୍ଚଶ୍ରେଣୀର ଦୁଇଟି ଟିକଟ କରି ଆଣିଥିଲି । ଏଥିରେ ନୁମା ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଥିଲେ । ଅନୁଷ୍ଠାନର ଗୋଟିଏ ବି ପଇସା ଅଧିକ ଖର୍ଚ୍ଚ କରିବା ଉଚିତ ନୁହେଁ ବୋଲି ବାଟ ତମାମ ଶାଠ ଥର କହି ଏପରି ବ୍ୟସ୍ତ ହୋଇ ପଡ଼ୁଥାନ୍ତି ଯେ ମୁଁ ସଙ୍କୋଚରେ ନଇଁ ଯାଉଥିଲି ଏବଂ ସବୁଦିନ ପାଇଁ ସବୁ କଥାରେ ସତର୍କ ହୋଇ ଯାଇଥିଲି । ବାପି ମଧ୍ୟ ତଦ୍ରୂପ; ମାତ୍ର ସେ ଭିନ୍ନ ପନ୍ଥା ଧରନ୍ତି । ସେ ଚୁପଚାପ ଯାଇ ପଛସିଟ୍‌ରେ ବସି ପଡ଼ନ୍ତି ଏବଂ ଆମକୁ ଆଗ ସିଟ୍‌କୁ ପଠାଇ ଦିଅନ୍ତି । ଆମେ ସବୁ ଲାଜରେ ମରିଯାଉ ।

ନୁମାଙ୍କ କାରବାରରେ କେହି କେବେ କୃତ୍ରିମତା ବା ଲୋକଦେଖାଣିଆ କଥା ଦେଖି ନାହିଁ । ତାଙ୍କର ଅନ୍ତରଟା ଥିଲା କାଚ ଭଳି ସ୍ୱଚ୍ଛ । ଭିତରର ଭାବନା ସେ ଚପାଇ ରଖି ପାରନ୍ତି ନାହିଁ—ରଖିବାକୁ କେବେବି ଚେଷ୍ଟା କରନ୍ତି ନାହିଁ । ଇଂରେଜୀରେ ଗୋଟିଏ କଥା ଅଛି—କୋଦାଳଟିକୁ କୋଦାଳ ବୋଲି ହିଁ କୁହ । ଏ କାମରେ ନୁମା ଥିଲେ ଅତି ଧୁରନ୍ଧର । ଯେ ଯାହା ତାକୁ ସେଇଆ କହିବାରେ ସେ ବାଛ ବିଚାର ରଖନ୍ତି ନାହିଁ । ହୁସିଅର ନୀତିକାରମାନଙ୍କର 'ମା ବ୍ରୂୟାତ୍ ସତ୍ୟମପ୍ରିୟମ୍' ଉପଦେଶ ସେ ପ୍ରତ୍ୟାଖ୍ୟାନ କରୁଥିଲେ । ଏହା ଫଳରେ ସମାଜରେ ପ୍ରତାରଣା ଏବଂ ମିଥ୍ୟାଚାର ବାହୁ ବିସ୍ତାର କରିଯିବ ବୋଲି ସେ ମତ ଦେଉଥିଲେ ।

ନୁମାଙ୍କର କର୍ମଶକ୍ତି ଥିଲା ଅପୂରନ୍ତ । କୌଣସି କଥା ମନ ଭିତରକୁ ଆସିବା ମାତ୍ରେ ତା ଉପରେ ସାଙ୍ଗେ ସାଙ୍ଗେ କାର୍ଯ୍ୟାନୁଷ୍ଠାନ ନ ହେବା ଯାଏ ସେ ନିଜେ ଅସ୍ଥିର ହୋଇ ପଡ଼ୁଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ବସେଇ ଉଠେଇ ଦେଉ ନ ଥିଲେ । କୌଣସି ପ୍ରକାର ପ୍ରତିକୂଳ ପରିସ୍ଥିତି ତାଙ୍କୁ କର୍ତ୍ତବ୍ୟ କର୍ମରୁ ବିଚ୍ୟୁତ ବା ନିବୃତ୍ତ କରିପାରୁ ନଥିଲା । ମୁଁ ନବଜୀବନ ମଣ୍ଡଳର ଦାୟିତ୍ୱରେ ଥିବା ସମୟରେ ଗଞ୍ଜାମ

ମାଳର ଏକ କାର୍ଯ୍ୟକ୍ରମରେ ଆମ ଉଭୟଙ୍କର ଯୋଗ ଦେବାର କାର୍ଯ୍ୟକ୍ରମ ସ୍ଥିର କରିଥାଏ । ସେ ହଠାତ୍ ଜ୍ୱରରେ ଅସୁସ୍ଥ ହୋଇ ପଡ଼ିବାରୁ ଜାଣି ଏହି କାର୍ଯ୍ୟକ୍ରମଟି ଘୁଞ୍ଚାଇ ଦେବା ପାଇଁ ପ୍ରସ୍ତାବ ଦେଇ ତାଙ୍କୁ ପତ୍ର ଲେଖିଲି । ତାର ଦୁଇପୃଷ୍ଠା ବ୍ୟାପୀ ଉତ୍ତର ସଙ୍ଗେ ସଙ୍ଗେ ପାଇଲି । ଲେଖିଥିଲେ, ''ଅସୁସ୍ଥତା କାରଣ ଦର୍ଶାଇ କାମ ବନ୍ଦ କରିବାର ବୁର୍ଜୁଆ ଭାବଧାରା ତମେ କୋଉଠୁ ଶିଖିଲ ? ସାଧାରଣ କ୍ଷେତ୍ରରେ କାମ କରୁଥିବା ଜଣେ କର୍ମୀ ଅସୁସ୍ଥ ହେବା ଅନୁଚିତ ।'' ମୋର ପ୍ରଥମ ସନ୍ତାନ ଯେପରି ତାଙ୍କରି ତତ୍ତ୍ୱାବଧାନରେ ଜନ୍ମ ହେବ ଏବଂ ସେ ତାକୁ ଦୁଇମାସ ନିଜ ପାଖରେ ରଖି ତାର ଖାଇବା ଶୋଇବା ଆଦି ବାଟରେ ସଚାଚ ଛାଡ଼ିବେ ବୋଲି କିରଣକୁ ନେଇ ନିଜ ପାଖରେ ରଖିଥାନ୍ତି । ଏହି ସମୟରେ ତାଙ୍କର ଏକମାତ୍ର ପୁଅ ଡାକ୍ତର ଆକସ୍ମିକ ବିୟୋଗ ଘଟିଲା । ଏହି ପ୍ରକାର ମର୍ମନ୍ତୁଦ ପରିସ୍ଥିତିରେ ମଧ୍ୟ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ସେ ଅବିଚଳିତ ଭାବେ ସମ୍ପନ୍ନ କରିଥିଲେ ।

ନୁମାଙ୍କର ପର ଆପଣା ଭେଦ ନ ଥିଲା । ଏକଥା କହିଲାବେଳେ ମଧ୍ୟ ମନରେ ଖଟକା ଉପୁଜେ । କାରଣ ପର ବୋଲି କଥାଟି କ'ଣ ସେ ବୋଧହୁଏ ଜାଣି ନ ଥିଲେ । ସମସ୍ତେ ଥିଲେ ତାଙ୍କ ପାଖରେ ଆପଣାର । ରକ୍ତ ସମ୍ପର୍କକୁ ଯଦି ଆପଣାର ଆଖ୍ୟା ଦିଆଯାଏ ତେବେ ମଧ୍ୟ ସେ ସେମାନଙ୍କ ପ୍ରତି ଲେଶ ମାତ୍ର ପକ୍ଷପାତ ବିଚାର ବା ଉପରୋଧ ରଖିବା କଥା ମୁଁ ତାଙ୍କଠାରେ ଦେଖିନାହିଁ । ଅନ୍ୟମାନଙ୍କ ପ୍ରତି ତାଙ୍କର ଆଚରଣ ଦେଖିଲେ 'ବସୁଧୈବ କୁଟୁମ୍ବକମ୍' କଥାଟିର ମର୍ମ ବୁଝିଯିବା ସହଜ ହୋଇ ଯାଇଥାଏ ।

ନୁମା ଥିଲେ ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ସର୍ବପ୍ରଥମ ଅଧ୍ୟକ୍ଷା । ବସ୍ତୁତଃ ଓଡ଼ିଶାରେ ମହିଳା ଓ ଶିଶୁକଲ୍ୟାଣ କାର୍ଯ୍ୟରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ମାତ୍ର ତାଙ୍କ କାମର କୌଣସି ପ୍ରକାର ପ୍ରଚାର ସେ ବା ତାଙ୍କ ଅନୁଷ୍ଠାନମାନେ କରନ୍ତି ନାହିଁ । ପ୍ରେସ୍ କିମ୍ବା କୌଣସି ସାଧାରଣ ଲୋକ ତାଙ୍କର ଫଟୋଟିଏ ଉଠାଇବାକୁ ଚାହିଁଲେ ରାଜିହୁଅନ୍ତି ନାହିଁ; ବରଂ ଉତ୍କ୍ଷିପ୍ତ ହୋଇଉଠନ୍ତି । ଦିନେ ବିଭିନ୍ନ ପ୍ରସଙ୍ଗ ଉପରେ ଆଲୋଚନା କାଳରେ ଜଣେ କର୍ମୀ ସହଜ ଭାବରେ କହିପକାଇଲେ, ''ନୁମା ତ ଓଡ଼ିଶାରେ ଏତେ କାମ କଲେ; ମାତ୍ର କାହିଁ ତାଙ୍କୁ ତ ସ୍ୱୀକୃତିସୂଚକ ପତ୍ରଟିଏ ମଧ୍ୟ ମିଳିଲା ନାହିଁ ।'' କଥାଟି ନୁମାଙ୍କ କାନରେ ପଡ଼ିଗଲା । ସେ କହି ପକାଇଲେ, "ଓଡ଼ିଶାରେ ଅନେକ ଲୋକ ଅଛନ୍ତି ଯେ ନୁମାକୁ ବଙ୍ଗାଳୀ ବୋଲି ଭାବନ୍ତି ।" ଏ କଥାରେ କିଛି ବେଦନାର ଛାପ ଥିଲା । ତାପରେ ତାଙ୍କର ଏକାନ୍ତ ଅଗୋଚରରେ ମୁଁ ବଜାଜ ପୁରସ୍କାର ପାଇଁ ଦରଖାସ୍ତ ପଠାଇଲି । ଏଥିପାଇଁ ଆବଶ୍ୟକ ତାଙ୍କର ଗୋଟିଏ ଫଟୋ ଉଠାଇବାକୁ ମୋର ସାହସ ହେଲାନାହିଁ । ଗୋଟିଏ ଗ୍ରୁପ୍ ଫଟୋଭିତରୁ ତାଙ୍କ ଫଟୋଟି ଅଲଗା କରି ଛାପି ଏଥିସହ ପଠାଇଥିଲି । ମହିଳା ଓ ଶିଶୁକଲ୍ୟାଣ କାମରେ ଉଲ୍ଲେଖନୀୟ ଅବଦାନ ପାଇଁ ସେ ୧୯୮୮ ବଜାଜ ପୁରସ୍କାର ପାଇବାକୁ ମନୋନୀତ ହେଲେ । ସେ କିନ୍ତୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ହାତରୁ ଏ ପୁରସ୍କାର ଗ୍ରହଣ କରିବାକୁ ମନା କରିଦେଲେ । ତେଣୁ ବଜାଜ ଫାଉଣ୍ଡେସନ୍‌ର ସମ୍ପାଦକ ନିଜେ ଅନୁଗୋଳ ଆସି ୧୯୮୯ ମାର୍ଚ୍ଚ ୨୯ ତାରିଖ ଦିନ ଏକ ନିରାଡ଼ମ୍ବର ଉତ୍ସବରେ ତାଙ୍କୁ ଏହି ସମ୍ମାନ ପ୍ରଦାନ କରିଥିଲେ ।

ଏହା ପୂର୍ବରୁ ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନେ ନୁମାଙ୍କ ୮୪ ତମ ଜନ୍ମତିଥିରେ ତାଙ୍କ କାମରେ ଯତ୍‌କିଞ୍ଚିତ ସାହାଯ୍ୟ ସ୍ୱରୂପ ତାଙ୍କ ହାତରେ ଏକଲକ୍ଷ ଟଙ୍କାର ଥଳିଟିଏ ପ୍ରଦାନ କରିବା ସ୍ଥିର କରି ମୁଖ୍ୟତଃ ନିଜ ନିଜ କର୍ମାଞ୍ଚଳରୁ ଟ ୧,୧୧,୮୦୭-୭୫ ସଂଗ୍ରହ କରିଥିଲେ । ନୁମାଙ୍କ ଇଚ୍ଛାକ୍ରମେ ଏହି ଥଳିଟି ତାଙ୍କର ଜନ୍ମତିଥିରେ ଦିଆନଯାଇ ବାପିଙ୍କ ଜନ୍ମତିଥିରେ ୧୯୮୭ ନଭେମ୍ବର ୨୩ ତାରିଖଦିନ ତାଙ୍କ ହାତରେ ଅର୍ପଣ କରାଯାଇଥିଲା । ଉଭୟ ସୂତ୍ରରୁ ମିଳିଥିବା ଅର୍ଥକୁ ମୂଳ ପାଣ୍ଠିକରି ସେ ଏକ ଟ୍ରଷ୍ଟ ଗଠନ କରିଥିଲେ ଏବଂ ଏହି ପାଣ୍ଠିକୁ ବଢ଼ାଇ ଭାରତ ସେବକ ସମାଜ ଓ ଲୋକସେବକ ମଣ୍ଡଳ ଭଳି ଦୃଢ଼ଆର୍ଥିକ ଭିତ୍ତି ଉପରେ ଉତ୍କଳ ନବଜୀବନ ମଣ୍ଡଳକୁ ପ୍ରତିଷ୍ଠିତ କରିବା ଥିଲା ତାଙ୍କର ଇଚ୍ଛା । ଏହି କାମର ଦାୟିତ୍ୱ ସେ କର୍ମୀ ଓ ଶୁଭେଚ୍ଛୁମାନଙ୍କ ଉପରେ ନ୍ୟସ୍ତ କରି ଯାଇଛନ୍ତି ।

ନୁମାଙ୍କ କାର୍ଯ୍ୟ ପରିସର ଥିଲା ବହୁବ୍ୟାପକ । ଏହି କ୍ଷୁଦ୍ର ଲେଖାରେ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ସେ ତାଙ୍କର ଜୀବନକାଳ ମଧ୍ୟରେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ବିପ୍ଳବାତ୍ମକ ପରିବର୍ତ୍ତନମାନ ଭିଆଇଥିଲେ । ଆଜି କାଳ କବଳରେ ତାଙ୍କର ମରଣଶରୀର ବିଲୀନ ହୋଇଯାଇଛି; ମାତ୍ର ତାଙ୍କର କୀର୍ତ୍ତିରାଜି ତାଙ୍କୁ କାଳେ କାଳେ ଅମର ରଖିଥିବ ।

---

# ଶତାବ୍ଦୀର ଶେଷ ବିଦ୍ରୋହିଣୀ

□ ସ୍ନେହାଂଶୁ

ନିରବୀ ଯାଉଛୁ ଆଜି
ଶତାବ୍ଦୀର ଶ୍ରେଷ୍ଠ ବିପ୍ଳବିଣୀ
ରଖିଥିଲା ଜାଗ ଯିଏ ଦିନେ
ଅବିଶ୍ରାନ୍ତ ଅଭିଯାନ
ତମାମ ଜୀବନ ।
ଭ୍ରଷ୍ଟାଚାରୀ ପୁଞ୍ଜି ଖୋର, ଦଲାଲ ବିରୋଧେ
ଗଡ଼ଜାତ ରାଜତନ୍ତ୍ରୀ
ଶୋଷଣର ଗଡ଼ପରେ
ଦେଇଯିଏ ପ୍ରଚଣ୍ଡ ଧକ୍କା
ଭୂଲୁଣ୍ଠିତ କରିଥିଲା
ରାଜ ଅହଂକାର ।
ଭାରତର ସ୍ୱତନ୍ତ୍ରତା ପାଇଁ
ଲଢ଼ି ଯିଏ ଭୀଷଣ ସଙ୍କଟେ
ଧନଲୋଭୀ ଅତ୍ୟାଚାରୀ
ବେପାରୀ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଶକ୍ତିକୁ
ଏ ଦେଶରୁ କରିଲା ଉତ୍ଖାତ ।
ଏ ଦେଶରେ ପୁଣି ସେ ଲଢ଼ିଲା
ଜୀବନର ସବୁ ମୂଲ୍ୟ ଦେଇ
ବରିନେଇ ଚରମ କଷଣ
ଅସହ୍ୟ ଯେ, ସରକାରୀ ସ୍ୱେଚ୍ଛାଚାର
ଆଉ କଂଗ୍ରେସ ଶୋଷଣ ।
ବନାଞ୍ଚଳ, ଜନଜାତି
ଯୁବ-ଛାତ୍ର ଶ୍ରମିକର ଦାବି
କୃଷକର ଅଧିକାର
ନାରୀର ସୁରକ୍ଷା
ଏ ସବୁର ପାଇଁ ଯିଏ
ତୋଳିଥିଲା ଆଜିର ଏ ବ୍ୟବସ୍ଥା ବିରୋଧେ
ସଂଗ୍ରାମ ଅନେକ ସଂଘାତ ।
ଅସହାୟ ଶିଶୁ ମୁଖେ
ଭରିଦେଇ, ଯିଏ ଦିନେ ହସର ଫୁଆର
ସଭିଙ୍କର ପ୍ରିୟ ନୂ···ମା
ସ୍ୱପ୍ନ ଥିଲା ଯାର ମନେ
ସାମ୍ୟ, ସୌମ୍ୟ, ସୁଖୀ ଏକ ରାଷ୍ଟ୍ର ବ୍ୟବସ୍ଥାର
ସେଇଥି ପାଇଁ ତ ଗୁପ୍ତବାସ
ଲଢ଼ି ଲଢ଼ି ଗଢ଼ିଥିଲା ଦଳେ
ଜୀବନର ଶେଷ ସନ୍ଧ୍ୟା ଯାଏ
ସେ ତରୁଣ ସହୃଦ ସ୍ମରଣେ
ବାଜି ରାଉତର ନାମେ ।
ମନେ ଆସେ ଅନେକ ଆଶଙ୍କା
ନୀରବ ନିସ୍ପନ୍ଦ ହେବ
ଆଉ ସେଠି ଶୁଭିବନି
ଜୀବନର ଅଦ୍ଭୁତ ସ୍ପନ୍ଦନ
ଆଉ ବି ତ ହେବନି, ଝଂକୃତ ସେଠି
ଦେଶ ପ୍ରେମର ଅମୃତ ଝଙ୍କାର
ବିପ୍ଳବର ତୂର୍ଯ୍ୟନାଦ
ହୋଇଯିବ ସ୍ତବ୍ଧ ।

କେତେ କାଳ କିଏ ଜାଣେ ଆଜି ଏତେ ବେଳେ
କାନ୍ଦିବ ଅଶ୍ରାନ୍ତ ଆଉ
ଉନ୍ନତ ଉଦାର ପୁରୁଷ
ସର୍ବତ୍ୟାଗୀ ମରମୀ ହୃଦୟ
ରାଷ୍ଟ୍ରର ଏ ସଙ୍କଟର ବେଳେ ।

ସେଇଥି ପାଇଁ ତ ଅତଳାନ୍ତ ପରିତାପେ
ଚେଇଁ ରହୁ ତାର ଜୀବନର ଶେଷ ଦୃଶ୍ୟ ଯାଏ
ଶୋଇ ସେ ଯାଉଛୁ ଏବେ
ବସୁଧାର ବୁକୁ ପରେ
ନିଶ୍ଚିନ୍ତ ସେ ଗଭୀର ନିଦରେ
ଜନତାର ସେ ମହାନ୍ ନେତ୍ରୀ
ଏ ମାଟିର ଅନନ୍ୟା ନାୟିକା
ଶତାବ୍ଦୀର ଶେଷ ବିଦ୍ରୋହିଣୀ ।

ଇନ୍ଦୁ ନିଳୟମ, ରେତୁଆ, ଜଗତ୍ସିଂହପୁର-୭୫୪୧୦୪

## ଫେରିଯାଅ ମହାକାଳ

□ ନିର୍ମଳ କୁମାର ଗିରି

୧

ସାଜନା ସାଜନା ମୁଖ୍ୟ ସାରଥି ମନୋରମ ନୂଆ ରଥ ।
ଏବେ ବି ପୂରିନି ଦୁଃଖିନୀ ଉତ୍କଳ ଜନନୀର ମନୋରଥ ।
ଏବେ ବି ଶୁଖିନି ଲୁହ ।
ଛିନ୍ନବସ୍ତ୍ରା ମୁକୁଳିତ କେଶା ବିଷାଦ ମଳିନ ମୁହଁ ।

୨

ଏବେ ବି ଜନନୀ ଅଙ୍ଗସାରା କ୍ଷତ ଶୋଣିତ ପଡ଼ୁଛି ଝରି ।
ଏବେ ବି ଜନନୀ ମସ୍ତକେ ନତ ବରଷେ ବେଦନାବାରି ।
ବିକୃତ ଶରୀର ନେଇ ।
ଏବେ ବି ଜନନୀ ଆକୁଳେ କାତର ସନ୍ତାନ ଗଣେ ଚାହିଁ ।

୩

ରୋଗ, ଶୋକ, ବ୍ୟାଧି ଛଳ ପରିମାଣ ଏବେ ବି ତ କମିନାହିଁ ।
ବ୍ୟଥା ଜର୍ଜରିତ ନୟନ କୋଣରେ ବିଶ୍ୱାସ ବି ଜମିନାହିଁ ।
ଭିଡ଼ିଥିଲା ଯିଏ ଅଣ୍ଟା
ଶୋଷଣ, ପେଷଣ, ଭଷଣକାରୀର ଥିଲା ଯିଏ ନିଆଁ ଖୁଣ୍ଟା ।

୪

ଯା' ବରଦ ହାତ ପୋଛୁ ଦେଉଥିଲା ଯନ୍ତ୍ରଣା କାଳିମାରେଖା
ଅବହେଳିତର ଥିଲା ଯିଏ ପ୍ରିୟ ସାଥୀ ସହୋଦର, ସଖା ।
ଅଭୟଦାୟିନୀ "ନୃମା"
ବିଗଳିତ ଯା'ର ହୃଦୟ ଦୟାରେ କଲ୍ୟାଣମୟୀ ସେ ଭୂମା ।

୫

ତା ଭଳି ଜନନୀ ଭାଗ୍ୟରେ ଥିଲେ କୋଟିକେ ଗୋଟିଏ ମିଳେ
ଅବତରି ଥିଲେ ଉତ୍କଳବାସୀଙ୍କ କୋଟି ଜନ୍ମ ତପ ଫଳେ ।
ଘୋର ଦଳିତର ବଳ
ଅନାଥ କରନା କୋଟି କୋଟି ସୁତେ ଫେରିଯାଅ ମହାକାଳ ।

ସହକାରୀ ଶିକ୍ଷକ, ରତ୍ନଗିରି ହାଇସ୍କୁଲ,
ରତ୍ନଗିରି, ଯାଜପୁର—୭୫୪୨୩୬

———

## "ନବ ମାଲତୀ"ର ମହକ ପାଇଁ

□ ବୀରକିଶୋର

(ମନସ୍ୱିନୀ ମାଲତୀ ଚୌଧୁରୀଙ୍କ ଶ୍ରଦ୍ଧାଞ୍ଜଳି)

ସେଦିନ ବଙ୍ଗବନ ଭୂଇଁ ତଳେ ସ୍ନିଗ୍ଧ ସୁରମା ନେଇ
ନବ ମାଲତୀର ମହକ ଖେଳାଇ, ଦିଗ ମହକାଇ ଦେଇ,
ତମେ ଫୁଟିଥିଲ, ତମେ ଛୁଟିଥିଲ ଶାନ୍ତିର ନିକେତନେ
ତମେ ଧରିଥିଲ କେତେ ଯେ ସ୍ୱପ୍ନ କୋମଳ ତରୁଣ ମନେ ।
ବାଛି ନେଇଥିଲ ଆପଣା ପନ୍ଥା, କରି ନେଇଥିଲ ବାଟ
ପୁଣ୍ୟ ପୀଠରୁ ପାଇଲ ମନ୍ତ୍ର ମୁକ୍ତ-ଜୀବନ-ପାଠ,
ଆଗରେ ଭେଟିଲ କଣ୍ଟା, ଅରମା, ବନ୍ଧନ ବାଡ଼ ଯେତେ
କାଟିବାକୁ ଗଲ, ଆପେ ଉଠିଗଲ ଜୀବନର ସାଥୀ ପଥେ ।
ଧୂଳିରେ ଧୂସର, ଲହୁରେ ଲୁହାଣ ଅଗଣିତ ଜନଜାତି
ଆବେଗ ତୋଳିଲା ଅନ୍ତର ତଳେ ବିଳପି ଉଠିଲା ଛାତି,
ଭୁଲିଗଲ ତୂଳୀ ତଳ୍ପର ଶେଯ ବଧୂର-ବାସନା-ରାଗ
ଅସନା, ଅଲୋଡ଼ା, ଅଭଗା ଆଉରି ଜଇଁବାର ଅନୁରାଗ—
ଅଜାଡ଼ି ବସିଲ, ସଜାଡ଼ି ବସିଲ ଉଜୁଡ଼ା ଜୀବନ ଯେତେ
କଙ୍କାଳ ଯେତେ ପାଇଲେ ଆଶ୍ରା, ବଖାଣିବ କିଏ କେତେ ?
ଅନାଥ, ଆତୁର ଆଖିର ଅଶ୍ରୁ ବିପ୍ଳବ ଦେଲା ତୋଳି
ଜନନୀଗୋ ତୁମେ ବକ୍ଷ ବିଦାରି, ଦେଇ ଲୁହ ବୋଳିବୋଳି
କୋଳ କରି ନେଲ କୋଟି ପରିବାର ତଳମାଳେ ଘୂରି ଘୂରି
ପଦାଘାତ କରି ମନ୍ତ୍ରୀ ଉଆସ ରାଜଧାନୀ ସୁନାପୁରୀ ।
ଆଜି ଏତେବେଳେ ଶତ ଅବଷ୍ଟରେ ଆତୁର ଅଶ୍ରୁ ଛୁଟେ
ସାରଥି, ଭଗିଅ, ଶୂଦ୍ର ଜାତିର କପାଳେ ହିଂସା ଉଠେ,
ଛଳନାରେ ଚାଲେ ଶାସନ, ସମାଜ ଆପଣା ସ୍ୱାର୍ଥ ପାଇଁ
ଆପେ ଜଳିବାକୁ, ଲୁହ ଢାଳିବାକୁ କାହିଁ ଜଣେ ମିଳୁ ନାହିଁ ।
ସେପାଇଁ ଲେଖନୀ ଗାଁ ଭୂଇଁ କୋଳେ ସେଇ ଛବି ଖୋଜି ଖୋଜି
ରଖିଛି ଭରସା ଆଉ ଥରେ ଏଠି ମାଟିର ବେଦନା ବୁଝି
ନବ ମାଲତୀର ମହକ ଖେଳିବ, ଜଳିବ ସ୍ୱାର୍ଥ ଜୁଇ
ଅଭାବ ପାସୋରି, ମମତା ହଳୁଲା ରୂପ ନେବ ଗାଁ ଭୂଇଁ ।

ଡା-କୋଚପୁର, ଜି-ଯାଜପୁର, ୭୫୫୦୪୫

———

# ଉପବୀତ

□ ନିର୍ମଳା କୁମାରୀ ମହାପାତ୍ର

ପରଚିତ ବ୍ରାହ୍ମଣର ପଇତା କି ଲୋଡ଼ା ?
ପଡ଼ୋଶୀ ପାଖେ ସ୍ତରର ବାଡ଼ିବା ଅଲୋଡ଼ା ।
ଉପବୀତ, ବ୍ରହ୍ମସୂତ୍ର, ଯଜ୍ଞପୀଠ ସଂସ୍କାର ମନ୍ଦର ।
"ବିନ୍ଦୁରେ ସିନ୍ଧୁ ଦର୍ଶନ"—"ବାଜ" ନାମେ
ଅନୁଷ୍ଠାନ ସାର ।।

'ବାଜସହିତ ଗ୍ରନ୍ଥାବାସ' ଅନୁଯୋଗ
ସହର ସଦରେ
'ନୂମା' ଆଉ 'ବାପି'ଙ୍କର
ଆଶ୍ରମ-ଛାୟାରେ
ଫୁଟେ ଯହିଁ ଫୁଲ ମାନବତା
ମୂଲ୍ୟବୋଧ—ମୁକ୍ତ—ସଫଳତା
ଅଶ୍ରାଦ୍ଧଭୋଜୀ ବ୍ରାହ୍ମଣ ଯା'ର ନ ପାଏ ବାରତା
ବ୍ରହ୍ମବାଦୀ ସତ୍ୟନେ ବ୍ୟାବର୍ତ୍ତିନ ସତ୍ୱ
ଏକ ସ୍ୱରୂପ—"ସମାଜବାଦତା ।"

ଯଦି ବ୍ରାହ୍ମଣର ଚିହ୍ନ ଉପବୀତ
ତେବେ ବ୍ରାହ୍ମଣୀର କି ଅଛି ସଙ୍କେତ ?

ବ୍ରାହ୍ମଣୀର ସଦାଚାର
ଗୃହାଙ୍ଗନେ, ବହିରଙ୍ଗେ
ଅନ୍ତରଙ୍ଗେ, ଅନୁସଙ୍ଗେ
ଅଭିମାନେ, ଅଭିମତେ
ନିରନ୍ତର ବିକାଶେ ପ୍ରକାଶ ।

କୁସୁମ ସମ୍ଭାର ଦେଖ,
ଚନ୍ଦନଚୂନ୍ନ ପାଖୁଡ଼ାରେ
ଅଭ୍ୟାଗତ ସମାଦରେ
ଭରପୁର ସୁବାସ କଳସ
ଅସ୍ମିତଣୀ, ଅର୍ଚ୍ଚିତ ପୀୟୂଷ ।
ସରସୁ ସରସ ।

ସ୍ୱର୍ଣ୍ଣ ଯେ ପବିତ୍ର
ବନ୍ଧୁପର୍ବେ ରକ୍ତ-ସ୍ନାତ
ତା'ର ବୁନିୟାଦ୍ ଖୋଜିବାଟା
ସମସ୍ତର ବୃଥା ଅପଚୟ ।
ତଳଶ୍ରେଣୀ ମଣିଷର
ପାହାଡ଼ ଆରପଟର—
ନିଃଶୋଷିତ ଜନତାର
ସିଏ ରକ୍ତେ ପବିତ୍ର
ସେ କେବେ ନୋହିପାରେ ହେୟ;
ସେ ଯେ ଅଗଣନର ଶ୍ରେୟ
ସଦା ମହାଶୟ; ସେ ଯେ ସଦାଶୟ ।
ଅଭ୍ୟନ୍ତର ଖୋଜି ଲୋଡ଼ି ଉପାସନା ଧ୍ୟାନ
ସାର ହୁଏ ପାଇବାଟା ଶୁଦ୍ଧ ଅମ୍ଳାନ ।
"ଅମ୍ଳାନ" ସୁମନ ।
'ନୂମା' ଏଠି ରୂଠର ପଥର
ସହି କେତେ ଝଡ଼ବନ୍ତ
ଦୀପ୍ତ ମୁଖେ ହସ ଢାଳି
ବିପଦକୁ ଉଡ଼ାଇ ଫୁତ୍କାରେ—
ସାହସିନୀ ବିପ୍ଳବିନୀ
ମୁକାବିଲା ସଂହାର ଠାଣିରେ
ଲୋଡ଼ା ହେଲେ ସ୍ୱପୋଢ଼ା ଘାତରେ
ଠାଏ ଠାଏ ପଣତ ବାଦରେ
ଅଥବା ଅହିଂସ୍ରକ ମନ ବଦଳାରେ ।
ବିପ୍ଳବର ନିଆଁ; ସାହସୀର ସ୍ପୃହା
ତ୍ୟାଗର ମହତ୍ତ୍ୱ ପାଇଁ ବିପ୍ଳବରେ ସ୍ୱାହା ।
ଶ୍ରୀ ବିପ୍ଳବାୟ ବଷଟ୍ ।
କ୍ଷମତାର ବିପ୍ଳବକୁ ମାର୍ ତାଳେ
ଶେଷ ହେଉ କୁସଂସ୍କାର ଦୂଷିତ ପାଲିସ୍
ଅନ୍ଧର ବିଶ୍ୱାସ ଭଳେ—
ଯେତେ ଯେତେ ଋଦ୍ର ଖେଳେ

ସେ ସବୁର ମାଝେ ପାଦ 'ନୂମା' ହିଁ ଥୋଇଚ
ଦଳ ମକଚଛୁ; ସହାର କରଛୁ ।
ଗାଦକୁ ଗଦକୁ ଠେଲ
ଧରଣୀରେ ତାଳ ମେଳ
ଗ୍ରସ୍ଥା-ଙ୍ଗଳ ଦେଇ
ସ୍ୱତଃସିଦ୍ଧ ହୁଏ ମହାମାସ୍ତ୍ରୀ ।
ଅଗ୍ନି ତକୁ ଦଏ ବରାଭସ୍ସ; ପରମ ଆଶ୍ରସ୍ସ
"ମା ଶୁଚ, ମା ଭୈଃ ।"
"ଚରୈବେତ, ଚରୈବେତ ।"
ଭସ୍ତ୍ରଭ୍ରାନ୍ତ ନାହିଁ
ସ୍ଖଳ ସ୍ଖଳ ଆଗେଇ ଆଗେଇ
ଅଗ ସାମନାରେ ଅଛୁ 'ଘଣଃ ସଦାଶସ୍ସ'
ଏ ଯେ ବରାଭସ୍ସ; 'ନୂମା' ଙ୍କ ଜସ୍ସ
ଜସ୍ସ 'ନୂମା' ଙ୍କ ଜସ୍ସ ।

ଜୀବନ ଦୀପାଳଠାରୁ ହଜଶିଖା ତୋଳ
ପ୍ରତଶ୍ବ-ପ୍ରଦୀପ ଜଳେ ଅନ୍ଧାର ପ୍ରହାର
'ନୂମା'ର ଜୀବନ ଦୀପ ପ୍ରତଶ୍ବ-ପ୍ରଦୀପ
ବଡାଢ଼ୁଛୁ କେତେ ପାପ-ତାପ ।
ସ୍ୱସ୍ଂପୂର୍ଣ୍ଣ ପ୍ରସ୍ୱୋତ୍ରୀ ପ୍ରତାପ ।
କାର୍ଯ୍ୟଧାରେ—
ସତେ ତ ଶିମ୍ଫୁଡ଼ିଟିଏ ଶୃଙ୍ଖଳାର ଚରମ ନମୂନା
କାର୍ଲମାର୍କସଙ୍କ ସାମ୍ୟବାଦ ଏଠି
ଏଇ 'ବାଘ ମୁହାଁଣି'*ରେ; ଆଶ୍ରମର କୁଟୀକଳ୍ପତଳେ
ସନବନ୍ଧ ଲେଖଇ ରଚନା; କ ଯେ ସରଚନା
ସମାଜ ବଞ୍ଚାଜ ମୁଠି ପାଏନା ତୁଳନା;
ପାରେ ନାହିଁ କର ତା' କଳନା ।
ଏ'ଠି ସାବରମତୀ ରହିଛୁ ଆଉ ଏକ ଗାନ୍ଧୀ
ଗାନ୍ଧୀ ଟୋପି, ଫେଜ୍ ଟୋପି ଦେଇଛୁ ସେ ଫିଙ୍ଗି
ଏଡ଼ାଇଛୁ କ୍ଷମତା ଓ ସ୍ନେହ
ଆଦରଛୁ ସାଦରେ ବୈରାଗ୍ୟ ।
ଜଡଛୁ କାହାକୁ ? ଆଦ୍ୟରେ ନଜକୁ···
ତା'ପରେ ଏ ଜନ-ଜଗତକୁ ।
ଆଜ ଉପସହାର ପବରେ
ମନେ ପଡ଼େ ଦୃପ୍ତ ବାଣୀ
"ବଜାଜ୍" ସମ୍ମାନ ସେ ନେବେ ନାହିଁ
ପ୍ରଧାନମନ୍ତ୍ରୀ ବା କେହ ପଦାଧିକାରୀଠୁ

* ବାପି-ନୂମାଙ୍କ ରହିବା ଘର

ଯେ ନ ଖୋଜଛୁ ପ୍ରପୀଡ଼ତ ମାନବ ଆତ୍ମାକୁ
ଅତଏବ, ସମସ୍ତ ବ୍ୟବସ୍ଥା ହେଉ ମାନବିକତାକୁ ।
ସାଧୁବାଦ ଏ ଚନ୍ତାଧାରାକୁ
ସାଧ୍ୱୀ 'ନୂମା' ପ୍ରଣାମ ତୁମ୍ଭକୁ ।
ନଣାମୁକ୍ତ ସମାଜର ରୂପରେଖ ତୁମର କଳ୍ପନା
ତୁମ ରାଜ୍ୟ—ତୁମ ରାମ ରାଜ୍ୟ
ଆଜ ପ୍ରଦୂଷଣଗ୍ରାନତାରେ ତୁମେ ହିଁ ବରାଜ ।
ତୁମେ ତ' ସ୍ୱରଗ ପଥ ଯାତ୍ରୀ; ଗତାତ୍ମ ମହାତ୍ମା
ଆମେ ସବୁ ସନ୍ତାପିତ ଅଂଶୁଘାତେ, ପୀଡ଼ିତ ଜୀବାତ୍ମା ।
ଆର୍ତ୍ତନାଦ କେ' ଶୁଣିବ ?
ଏକା ପରମାତ୍ମା । ଏ ଦେଶରେ ଏକା ପରମାତ୍ମା ।
ଗୋଟିକ ପରେ ଗୋଟିଏ ପାଖୁଡ଼ା ଝରୁଛୁ
ବୃତ୍ତିଟି ଦଣ୍ଡରେ ରହ ମୁକୁଳ ହସୁଛୁ ।
"ଯାବତ୍ ଜନନଂ, ତାବତ୍ ମରଣଂ
ତାବତ୍ ଜନନୀ ଜଠରେ ଶସ୍ସନଂ ।" (୧)
ଆକାଶରୁ ଝରୁଥିବା ପାଣି
ସ୍ରୋତଧାରେ ନଦୀରେ ମିଶଇ
ନଦୀ ପୁଣି ସମୁଦ୍ରରେ ଝାସ ଦେଉ ଥାଇ ।
ପୁଣି ସମୁଦ୍ରରୁ ଜଳ ଯାଇ ମେଘ ସୃଜୁଥାଇ
ଆକାଶେ ଘୂରଇ, କଳାମେଘ ନାମ ବହୁଥାଇ ।
ଏଇତ ଜୀବନ—ପୁନଃ ଉଦ୍ଧରଣ ।
ମେଘ କଲୁ ବିଦ୍ୟୁତ୍ର କଷାଘାତେ ଜଳେ
ବଜୁଳିର ଅନଳରେ ହୃଦସ୍ସ କୁହୁଳେ ।
ତଥାପି ସେ ଜଳଦ-ବାରଦ
ଇନ୍ଦ୍ରପଦ ସେ ଲଭିଗିସଯୋଗ
ଯଥାର୍ଥରେ ସେ ଯେ ଦେବରାଜ ।
ବାରବାର ବପ୍ଳବୀର ହେଉ ଜନ୍ମାନ୍ତର
ଯେ ପର୍ଯ୍ୟନ୍ତ ଶମି ନାହିଁ ଅନୀତ ଦୁର୍ବାର
ବପ୍ଳବନୀ "ନୂମା" ତୁମେ ଆସ ବାରମ୍ବାର
ସୃଷ୍ଟି-ଶାନ୍ତ ଆନସ୍ସନେ ତୁମ ସ୍ଥିତ ନହାତ ଦର୍କାର ।
କେବଳ ହିଁ ସ୍ଥିତ; ଖାଲ୍ ଉପସ୍ଥିତ—
ଯାହା ଆଣେ ପରଣେ ସଙ୍ଗ୍ରୀତ; ଭସ୍ସ ଆଉ ଭକ୍ତ ।
"Fear to Lord is the
Beginning of wisdom"
ଭକ୍ତ ଜଣାସ୍ସ ଭଲ୍‌ପଟେ ।

"ଅସ୍ତ୍ରେ ଥଲେ ବୋଲ" ତ ଭିକ୍ଷା ମିଳିଥିଲା (୨)
'ଲୁମା' ନାମେ ଅକୃତିମ ଭକ୍ତ-ଭୃତ୍ୟ ଥିଲା
"ଭଲେ ମାଆ, ମାଳତୀ ଚୌଧୁରୀ
ଉଚତରେ ଅଟେ ସବୁଙ୍କର
ଅନ୍ୟାସ୍ତରେ ନୁହଁଇ କାହାର—..."
ମଳବର୍ଣ୍ଣ ଶୃଗାଳଙ୍କ ରଙ୍ଗଛଡ଼ା ସ୍ବର
"  ଆଇଲାରେ ମାଳତୀ ଚୌଧୁରୀ..."
ତେଣୁ ତୁମେ ଆସ ବାରବାର
ଉପବୀତ ଅଳୋଡ଼ା ତୁମର
"ବଧାସ୍ତିକା" ବା "ସାଂସଦ"—ନାହିଁ ପରିଚୟ ।
ସେ ଅଲୋଡ଼ା ହେୟ ।
ସେ ପରିଚୟ ନୁହେଁ ଉପବୀତ ।
ତୁମେ ହିଁ ତ ତୁମ ଉପବୀତ
ଶାଶ୍ୱତ-ସତତ ।
ସଙ୍ଗୀତର ମାଧୁରୀ ଲାଳିତ୍ୟ
ଧରଣୀର ଧୈର୍ଯ୍ୟ-ସେବାବ୍ରତ
ତୁମେ ମୋର ଅତ ପରିଚୟ ।
ଜନ୍ମ ଜନ୍ମାନ୍ତରେ—
ମାତୃବାଦ ଛନ୍ନ କଳେବରେ (୩)
ତୁମର "ସାମ" ଶାସ୍ୱତ
ଏ ପ୍ରପଞ୍ଚେ ବଧିର ବଧାନ
କଲ୍ୟାଣ ନଧାନ;
ପୌରୁଷର ଶୁକ୍ର ବକରଣ ।
"ତ୍ୱମଗ୍ନେ ଯଜ୍ଞାନାଂ ହୋତା
ବଶ୍ୱେଷାଂ ହିତଃ
ଦେବେଭିର୍ମାନୁଷେ ଜନେ ।"
(ସାମବେଦ ୫୦।୧।୨) । (୪)
"ଇନ୍ଦ୍ରୋ ବଶ୍ୱସ୍ୟ ରାଜତ
ଶନ୍ନୋ ଅସ୍ତୁ ଦ୍ୱିପଦେ ଶଂ ଚତୁଷ୍ପଦେ ।" (୫)
(ଯଜୁର୍ବେଦ ୩୬।୮)
।। ଓଁ ତତ୍ସତ୍, ଓଁ ତତ୍ସତ୍ ।।

---

ଟିଚର ଏଡୁକେଟର
ଡି. ଆଇ. ଇ. ଟି., ଖୋର୍ଦ୍ଧା

---

(୧) ଶ୍ରୀ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍ଗର
(୨) ଶ୍ରୀ ରାଜକିଶୋର ରାୟ (ରାଜର୍ଷି)ଙ୍କର ଗଳ୍ପ
'ଅସ୍ତ୍ରେ ଥଲେ ବୋଲ'
(୩) ସାମବେଦ ଓ ସମାନତା ସାମ୍ୟବାଦୀ ଚନ୍ତାଧାରା
(୪) ସାମବେଦ (୫୦।୧।୨)
(୫) ଯଜୁର୍ବେଦ (୩୬।୮)

# ଝର ମାଳତୀ

□ ଅନ୍ନପୂର୍ଣ୍ଣା ଦାସ

ବଣର ମାଳତୀ ନୁହେଁ    ମହାନଗରୀର,
ସ୍ୱରାଜର ବନ୍ଦନୀୟ    ବିଶ୍ୱଭକ୍ତଙ୍କର ।
କଟକର ସର୍ବତ୍ୟାଗୀ    ବଡ଼ ନେତାଙ୍କର,
ଗଡ଼ଜାତେ ନିଷ୍ପୀଡ଼ିତ    ପ୍ରଜା କୃଷକଙ୍କର ।
ସେ ଥିଲେ ଆଦରଣୀୟା    କର୍ମେ ସୁରଭିତା,
ଜନତାର ବନ୍ଦନୀୟା    କର୍ମୀବୃନ୍ଦ ମାତା
ସ୍ୱର୍ଗତା ମାଳତୀଦେବୀ    ଶିକ୍ଷା ସଂସ୍କୃତିର,
କୃତିତ୍ୱ ପୁଣି ସେ ସେବା    ତ୍ୟାଗ ତପସ୍ୟାର ।
ସାଂପ୍ରଦାୟିକ ଝଗଡ଼ା    ଛାତ୍ର ଆନ୍ଦୋଳନ,
ଶାନ୍ତି ରକ୍ଷା ପାଇଁ ସେ ଯେ    ସଦା ଆଗୁଆନ ।
ନିଜ ଶିରେ ମାଟି ଭାଡ଼ି    ସଭିଙ୍କୁ ତତ୍ପର,
କରିବା ଢଙ୍ଗ ତାଙ୍କ    ସର୍ବଥା ଗୋଚର ।
ସତ କଥା କହିବାକୁ    ଥିଲେ ନାହିଁ ଦ୍ୱିଧା,
ଭୟ କେବେ ପାଉନାହିଁ    ଦେଇ ତାଙ୍କୁ ବାଧା ।
ଦୁର୍ଗା ପରି ତେଜସ୍ୱିନୀ    ସରସ୍ୱତୀ ପରି,
ଶିକ୍ଷା ସଂସ୍କୃତି ସଙ୍ଗୀତ    କଳାରେ ସେ ପୁରି ।
କୁଟୀର ନିର୍ମାଣ କଲେ    ଅନୁଗୁଳଠାରେ,
ଛାତ୍ରାବାସ କଲେ 'ବାଜି    ରାଉତ' ନାମରେ ।
'ନବଜୀବନ ମଣ୍ଡଳ'    ନାରୀ କର୍ମୀମାନେ,
ଗ୍ରାମସେବିକା ତାଲିମ    ନେଲେ ସେହି ସ୍ଥାନେ ।
ମୌଳିକ ଶିକ୍ଷା ପାଇଲେ    ଆସି ଛାତ୍ରମାନେ,
ଚମ୍ପତିମୁଣ୍ଡାରେ ଶିକ୍ଷା    ପୂର୍ଣ୍ଣ ହେବା କ୍ଷଣେ ।
ସ୍ୱାମୀ ତାଙ୍କ ନବବାବୁ    ମୁଖ୍ୟମନ୍ତ୍ରୀ ହେଲେ,
ମାଳତୀଦେବୀ ଆଶ୍ରମ    ଆବୋରି ରହିଲେ ।
ବିନୋବାଙ୍କ ଭୂଦାନ    ଗ୍ରାମଦାନ କାମେ,
ନିଜକୁ ଅଜାଡ଼ି ଦେଲେ    ବିପ୍ଳବର ନାମେ ।
ଦେଶେ ଜରୁରୀକାଳୀନ    ପରିସ୍ଥିତି ବେଳେ,
ପଢ଼ପନ୍ତୀ କାରାବାସ    ଦଣ୍ଡ ଭୋଗ କଲେ ।
ସ୍ୱାଧୀନତା ଆନ୍ଦୋଳନ    ସ୍ୱରାଜ୍ୟ ସକାଶେ,
ଏଥରର କାରାବାସ    ସୁବର୍ଣ୍ଣର ଆଶେ ।
ସ୍ୱଜନ ବିୟୋଗ ସାଥେ    ସ୍ୱାସ୍ଥ୍ୟ ଓ ବୟସ,
ଯେତେ କଷ୍ଟ ଦେଲେ ମଧ୍ୟ    ମୁଖେ ସଦା ହସ ।
ସେହି ଭାବ ସେହି ଭାଷା    ଶେଷ କ୍ଷଣ ଯାଏ
ଓଡ଼ିଶାର ନୂଆ ଡାକ    ସୁର ପଲ୍ଲୀ ଗାଏ ।
ସମସ୍ତ ବଦଳି ଯିବ    ପୃଷ୍ଠା ଲେଖିହେବ,
ଇତିହାସେ ମାଳତୀଙ୍କ    ବାସ ଭରି ଥିବ ।
ଜୀବନ୍ତେ ନମସ୍ୟା ଥିଲେ    ନମସ୍ୟା ଦେହାନ୍ତେ,
ନମୀକୁଳେ ଶକ୍ତି ଦେବେ    ସେ ଅଦୃଶ୍ୟ ହାତେ ।

କୁଆଁସ, ଭଦ୍ରକ

———



# ମାଳତୀଦେବୀଙ୍କ ବାର୍ତ୍ତା ଓ ବିଚାର

## ନୂଆ ସମ୍ବିଧାନ

ଆଜକୁ ୧୫ ବର୍ଷ ତଳେ Constituent Assemblyର ପ୍ରଥମ ବୈଠକରେ ସ୍ୱ ପଣ୍ଡିତ ଜବାହରଲାଲ ନେହେରୁ ଯେଉଁ ଐତିହାସିକ ଭାଷଣ ଦେଇଥିଲେ, ସେ ଭାଷଣ ସଙ୍ଗେ ସଙ୍ଗେ ସମ୍ବିଧାନ ସଭାର ସଭ୍ୟ ହିସାବରେ ମୋ ମନରେ ଯେଉଁ ପ୍ରଭାବ ପଡ଼ିଥିଲା; ତାହା ଏହି ଦୀର୍ଘ ଦିନର ସାମାଜିକ କର୍ମକ୍ଷେତ୍ର ଭିତରେ ବାଟ ଚାଲୁ ଚାଲୁ ଜନତାର ଯେଉଁ ଦୁଃଖ ଦୁର୍ଦ୍ଦଶା ଏବଂ ଦାରିଦ୍ର୍ୟ ଉତ୍ତରୋତ୍ତର ବଢ଼ି ଚାଲିବାର ଦେଖୁଛି, ସେଥିରେ ସେ ଗୌରବମୟ ସ୍ମୃତିର ଅତି ଲେଶମାତ୍ର ବି ଦେଖିବାକୁ ପାଉ ନାହିଁ । ମୁଁ ସମ୍ବିଧାନ ସଭାର ସଭ୍ୟ ହୋଇଥିଲି ସତ୍ୟ—କାରଣ ସ୍ୱାଧୀନତା ପରେ ପରେ ଏକ ମୋହର ବଶବର୍ତ୍ତୀ ହୋଇ ସଭ୍ୟପଦ ସ୍ୱୀକାର କରିଥିଲି । କିନ୍ତୁ ଯେତେବେଳେ ଦେଖିଲି ଶ୍ରୀ ଗୋପାଳସ୍ୱାମୀ ଆୟେଙ୍ଗାର, ଶ୍ରୀ ଆମ୍ବେଦକର, ମୁନ୍‌ସିଜୀ, ଦୁର୍ଗାବେନ ଦେଶମୁଖ ପ୍ରଭୃତି ଦେଶର ବଡ଼ ବଡ଼ ଆଇନଜ୍ଞମାନେ ପ୍ରଥମ ଧାଡ଼ିରେ ବସି ସାରା ପୃଥିବୀର ସମ୍ବିଧାନରୁ ଏକାଠି କରି ଆମ ଦେଶର ସମ୍ବିଧାନ ଗଢ଼ିବାରେ ଲାଗିଛନ୍ତି, ସେତେବେଳେ ସବା ପଛ ଧାଡ଼ିରେ ବସିଥିବା ଅଳ୍ପ ପାଠୁଆ ସ୍ଥୂଳବୁଦ୍ଧିଙ୍କ ପରି ନିଜର ଅସହାୟ ଅବସ୍ଥାକୁ ଦେଖି ଏ ସମ୍ବିଧାନ ସଭାରେ ମୋର ସ୍ଥାନ ନାହିଁ ବୋଲି ବୁଝୁଥାଏ । ଅନ୍ୟ ଦେଶର ସମ୍ବିଧାନରୁ କିଛି କିଛି ନେଇ ଆମ ଦେଶର ଏକ ଚୌହଦ୍ଦା ତାଳି ସମ୍ବିଧାନ ତିଆରି କରିବାର ଉଦ୍ୟମ ମଧ୍ୟ ଠିକ୍ ମନେ ହେଉ ନଥାଏ । ଠିକ୍ ସେହି ସମୟରେ ଗାନ୍ଧୀଜୀଙ୍କର ଐତିହାସିକ ନୂଆଖାଲି ଯାତ୍ରା ଆରମ୍ଭ ହେଲା ଏବଂ ଠକ୍କର ବାପାଙ୍କର ଆହ୍ୱାନ କ୍ରମେ ତ୍ରିପୁରା ଜିଲ୍ଲାର ନମଃଶୂଦ୍ରମାନଙ୍କ ଭିତରେ କାମ କରିବାକୁ ଯିବାକୁ ସ୍ଥିର କଲି । ସମ୍ବିଧାନ ସଭାରେ ପଛ ବେଞ୍ଚରେ ବସି ଝିମେଇବା ଅପେକ୍ଷା ମୋ' ପକ୍ଷରେ ଏ ଆହ୍ୱାନ ଅନେକ ମୂଲ୍ୟବାନ ବୋଧ ହେଲା । ମୁଁ ମୋର ଅକ୍ଷମତା ଜଣାଇ ପୂଜ୍ୟ ରାଜେନ୍ଦ୍ର ବାବୁଙ୍କୁ ମୋର ଇସ୍ତଫା ପତ୍ର ପଠେଇଦେଲି । ସୁଖର କଥା ଯେ ମୋର ଦୁର୍ବଳତା ଜାଣିପାରି ତାହା ଗ୍ରହଣ କଲେ ।

ଆଜି ୧୫ ବର୍ଷ ବିତିଯିବା ପରେ ଆମେ ଆଗେଇଛୁ ନା ପଛେଇଛୁ ଏହା ପ୍ରତ୍ୟେକ ଶିକ୍ଷିତ ଭାରତବାସୀ ଚିନ୍ତା କରିବେ । ପ୍ରତ୍ୟେକ ଶିକ୍ଷିତ ଭାରତବାସୀ ଜାଣନ୍ତି ଆମେ ପୁରୁଷ ନାରୀଙ୍କ ସାବାଳକ ମତଦାନଦ୍ୱାରା ଗଣତନ୍ତ୍ର ପ୍ରତିଷ୍ଠା କରିବା ସତ୍ତ୍ୱେ ମଧ୍ୟ ଆଗେଇ ନାହୁଁ, ଅଧିକନ୍ତୁ ପଛେଇ ଚାଲିଛୁ । ତେଣୁ ସମୟ ଆସିଛି, ଆମକୁ ଦେଶର ମଙ୍ଗଳ ସକାଶେ ବାଟ ଖୋଜି ବାହାର କରିବାକୁ ହେବ । ଏବଂ ମୋର ବିଶ୍ୱାସ ଏ ବାଟ ଦେଖାଇବେ, ଦରିଦ୍ର, ଭୋକିଲା, ଅପାଠୁଆ ଜନତା । ସେତେବେଳେ ସେମାନେ ଦେଶର ପରିସ୍ଥିତି ବୁଝି ଯେଉଁ ସମ୍ବିଧାନ ପ୍ରସ୍ତୁତ କରିବେ ତାହାହିଁ ହେବ ଦେଶର ପ୍ରକୃତ ସମ୍ବିଧାନ ।

( 'ଡାକ' ପତ୍ରିକାରେ ପ୍ରକାଶିତ ୧୯୬୧ ମସିହା 'ଡାଏରୀ ପୃଷ୍ଠାରୁ' ସୌଜନ୍ୟ—କୃଷ୍ଣା ମହାନ୍ତି )

# ମୋର ଆର. ଉଦୟଗିରି ଅଭିଜ୍ଞତା

ଶ୍ରଦ୍ଧେୟ ଗୋପବାବୁ ତାଙ୍କର ପଦ-ଯାତ୍ରା ଭିତରେ ଆର. ଉଦୟଗିରିର କେତେକ ଗ୍ରାମ ଭିତର ଦେଇ ଗଲା-ବେଳେ ମୁଠାଦାରମାନଙ୍କର ଅତ୍ୟାଚାରର ଯେଉଁ କାହାଣୀ ଶୁଣିବାକୁ ପାଇଥିଲେ, ତାଙ୍କ ମନରେ ବହୁତ ଦୁଃଖ ଆସି-ଥିଲା । ସେ ମୋତେ ଏବଂ ଅନ୍ୟାନ୍ୟ କେତେକ ବନ୍ଧୁଙ୍କ ପାଖକୁ ଏହାକୁ ନରକ ସଙ୍ଗରେ ତୁଳନା କରି, ଲେଖି ଠକ୍କର ବାପାଙ୍କର ସୁପାରସ କାହିଁକି ଏପର୍ଯ୍ୟନ୍ତ ଏଜେନ୍ସି ଅଞ୍ଚଳରେ କାର୍ଯ୍ୟକାରୀ ହୋଇନାହିଁ, ତାହା ବୁଝିବାପାଇଁ ଲେଖିଥିଲେ । ଏହା ଭିତରେ ଜଳେଶ୍ୱର ଅଞ୍ଚଳର ଶ୍ରୀ ସୁଧାଂଶୁଶେଖର ଦାସ ଯେ କି ସ୍ୱଇଚ୍ଛାରେ ଯାଇ ଉଦୟ-ଗିରି ଅଞ୍ଚଳରେ ବୁଲି କାମ କରୁଛନ୍ତି, ତାଙ୍କଠାରୁ ସେଠାକାର ଅତ୍ୟାଚାରର କାହାଣୀ ସହ ଚିଠି ଓ ଯିବାପାଇଁ ଅନୁରୋଧ ପତ୍ରମାନ ପାଇ ଗତ ଜୁନ୍ ୫ ତାରିଖ ଦିନ ମୁଁ ସୁଧାଂଶୁଶେଖର ଏବଂ ସେବାଗ୍ରାମରୁ ଫେରିଥିବା ଇନ୍ଦ୍ରମଣି ଜେନାଙ୍କ ସହ ଆ.ର. ଉଦୟଗିରି ଅଞ୍ଚଳକୁ ଯାଇଥିଲି । ବ୍ରହ୍ମ-ପୁରଠାରୁ ମୋହନାଯାଏ ମୋଟର ଯୋଗେ ଯାଇ ସେଠାରୁ ପାଦରେ ଚନ୍ଦ୍ରକୋଟ, ଚନ୍ଦ୍ରଗିରି, ମହାନ୍ଦ୍ରଗିରି ଉଦୟଗିରି ଖଜୁରିପଡ଼ା, ରାୟଗଡ଼ା ବାଟେ ପାରଳାଖେମୁଣ୍ଡି ହୋଇ ସେଠାରୁ ରେଳ ଯୋଗେ ଫେରିଲି । ପାଦରେ ଯିବାଦ୍ୱାରା ବାଟରେ ଅନେକ କେତେକ ଗ୍ରାମ ମଧ୍ୟ ଦେଖିବାକୁ ମିଳିଥିଲା ଏବଂ ସେଠାକାର ଅବସ୍ଥା ମଧ୍ୟ ବୁଝିବାପାଇଁ ସୁବିଧା ମିଳିଥିଲା । ଏସବୁ ଅଞ୍ଚଳର ପ୍ରାକୃତିକ ଦୃଶ୍ୟ ଯେପରି ମନୋହର ହୃଦୟାକର୍ଷଣ ଏ ଅଞ୍ଚଳର ଅତ୍ୟାଚାର କାହାଣୀ ସେହିପରି ନିର୍ମମ ଓ ହୃଦୟବିଦାରକ । ଏ ଦେଶରେ ସ୍ୱାଧୀନ ସରକାର ପ୍ରତିଷ୍ଠିତ ହୋଇଛି, ସାଧାରଣ ଲୋକଙ୍କର ମତରେ ଏ ସରକାର ଚାଲିଛି ନା ଜନସାଧାରଣଙ୍କ ହିତ ସକାଶେ ଏ ସରକାର କାର୍ଯ୍ୟ କରୁଛି, ତାହା ଆର. ଉଦୟ-ଗିରି ଅଞ୍ଚଳକୁ ଗଲେ ବିଶ୍ୱାସ କରିବା କଠିନ । ଏ ଅଞ୍ଚଳର ଅଧିବାସୀମାନେ କେତେକ କନ୍ଧ ଏବଂ କେତେକ ଶୁଦ୍ଧ ଶବର ବୋଲି ନିଜକୁ କହନ୍ତି । ଏ ଅଞ୍ଚଳ ଓଡ଼ିଶା ଏଜେନ୍ସି ଅଞ୍ଚଳ ନାମରେ ସୁପରିଚିତ । ବେଠି, ବେଗାର, ମାମୁଲି (କର) ଏପରି ୩୫ ପ୍ରକାରର ନାନା ଭେଟି ପାଉଣା ଏଠାରେ ୫୦।୬୦ ବର୍ଷ ହେଲା ନିୟମିତ ଭାବେ ଚାଲି ଆସୁଛି । ବ୍ରିଟିଶ ସମୟର ଯାହା କିଛି ବ୍ୟବସ୍ଥା ଥିଲା ତାହା ଏପର୍ଯ୍ୟନ୍ତ ବଦଳି ନାହିଁ ବା ସେଆଡ଼କୁ ଦୃଷ୍ଟି ଏ ସ୍ୱାଧୀନ ସରକାର ଏପର୍ଯ୍ୟନ୍ତ ପକାଇ ନାହାନ୍ତି । ଏ ଅଞ୍ଚଳରେ ସେଟଲମେଣ୍ଟ୍ ହୋଇନାହିଁ । ଭୂମି କର ନାହିଁ । ତେଣୁକରି ବେଠି, ବେଗାର ନାନାପ୍ରକାର ମାମୁଲିର ବ୍ୟବସ୍ଥା ଅଛି ବୋଲି ଯୁକ୍ତି ଷ୍ଟେଟଠାରୁ ବଡ଼ ଅଫିସର ପର୍ଯ୍ୟନ୍ତ ସଭିଙ୍କଠୁ ଶୁଣିବାକୁ ପାଇଲି । ଗ୍ରାମମାନଙ୍କ ଉପରେ ଭୂମି କର ବଦଳରେ ଶବର ଏବଂ କନ୍ଧମାନଙ୍କ ମାମୁଲି ଆଦାୟର ଯେଉଁ ସରକାରୀ ଦରର ଦିଆଯାଉଛି ତଦନୁଯାୟୀ ଗୋଟିଏ ଗ୍ରାମ ଅନ୍ତରସିଙ୍ଗିର ସମୁହ କର ଟ ୧୩୫ ଙ୍କା । ତାଛଡ଼ା ପ୍ରତି ଘର ପିଛା ମାମୁଲି ୪୦ଟଙ୍କା । ଏହା ବ୍ୟତୀତ ରାସ୍ତା ତିଆରି ବେଠି ଯାହାକି କୌଣସି ମଣିଷର କଳ୍ପନାତୀତ ତାହା ତ ଅଛି । ସରକାରୀ ହୁକୁମ ମୁତାବକ ରୋଡ଼ ବେଠିକୁ ପ୍ରତି ଗାଁରୁ ଘରପିଛା ଜଣେ ବେଠିଆ ଯିବେ । କୌଣସି ଗ୍ରାମରୁ ୩୦ ତ କୌଣସିରୁ ୪୦ ମଧ୍ୟ । ମାସସାରା କାମ କରି ଏହି ୩୦ ବା ୪୦ ଜଣ ବେଠିଆ ସର୍ବମୋଟ ଟ ୩-୦୦ ବା ଖୁବ୍ ବେଶୀ ଟ୩-୫୦ ପାଇବେ । ହାତରୁ ଖାଇ ଖଟିରେ ପଥର ବୋହି କାମ କରି ମାସ ଶେଷରେ ୪୦ ଜଣ ଲୋକଙ୍କୁ ତିନୋଟି ମାତ୍ର ଟଙ୍କା ! କାମ କରାଇବାର କି ଚମତ୍କାର ଉପାୟ ! ନୂଆ ତହସିଲଦାରବାବୁ ପାରଭିଟା ନାମକ ଯେଉଁ ରୋଡ଼ ବା ରାସ୍ତା ପୁରା ବେଠିରେ ତିଆରି କରାଉଛନ୍ତି ତାହା ଶବରମାନଙ୍କ ଛଡ଼ା କେହି ତିଆରି କରିପାରିବ କି ନାହିଁ ସନ୍ଦେହ । ସିଧା ସଳଖ ଉଚ୍ଚା ପାହାଡ଼ ଉପରେ ଗଢ଼ା-ଯାଇଛି ସେ ରାସ୍ତା ! ମନେହୁଏ ହନୁମାନଜୀଙ୍କର ଦଳ ରାମେଶ୍ୱର ସେତୁବନ୍ଧ ଏହାଠାରୁ ସହଜରେ ବାନ୍ଧିଥିବେ ! ପାରଭିଟା ରୋଡ଼ ଯେ ଦେଖିଥିବ ସେ ଜାଣିବ ଯେ ସମ୍ପୂର୍ଣ୍ଣ

ବେଠିରେ ଏ କାର୍ଯ୍ୟ ଯେଉଁ ମଣିଷ କରାଇଛୁ ତାକୁ ଜିମିଦାରଙ୍କ ଛଡ଼ା ଆଉ କୌଣସି ନାମରେ ଅଭିହିତ କରାଯାଇ ନ ପାରେ । ସାରା ଏଜେନ୍‌ସିରେ ମୁଠାଦାରୀ ପ୍ରଥା ଚାଲିଛି । ମୁଠାଦାର ତଳେ ସବ୍ ମୁଠାଦାର, ହୁଦାଦାର, ପେସିନିଆ, ବେହେରା ଏବଂ ପାଇକ ଏମାନେ ସମସ୍ତେ ଅଣ ଆଦିବାସୀ ବା ସେଠାକାର ଭାଷାରେ 'ଓଡ଼ିଆ । ସବୁଠାରୁ ଦୁଃଖର କଥା ଅଣ ଆଦିବାସୀମାନଙ୍କ ଭିତରୁ କାହାକୁ ମାମୁଲ ଦେବାକୁ ପଡ଼େନାହିଁ ବା ବେଠି କରିବାକୁ ପଡ଼େନାହିଁ । ପ୍ରତ ପରିସ୍ଥିତି ଯେଉଁ ମାମୁଲ ଆଦାୟ କରା-ହୁଏ ତାହା ଏହି କର୍ମଚାରୀମାନଙ୍କୁ ବଞ୍ଚାଇ ରଖିବା ପାଇଁ । ଏହି ଟଙ୍କା ଛଡ଼ା ଇନାମ ଜମି ବିନା ଖଜଣାରେ ଏମାନେ ପ୍ରତ୍ୟେକ କିଛି ନା କିଛି ଭୋଗ କରନ୍ତି । ଏହାଛଡ଼ା ଏହି କର୍ମଚାରୀମାନେ ମୁଠାଦାର ଠାରୁ ପାଇକ ପର୍ଯ୍ୟନ୍ତ ସମସ୍ତେ ଯେତେବେଳେ ଯାହା ଇଚ୍ଛା କରନ୍ତି ସେମାନେ ଯାଇ ଗରିବ କନ୍ଧମାନଙ୍କଠାରୁ ବାରମାସର ବାର ଫସଲ କିଛି ନା କିଛି ଆଦାୟ କରି ଆଣନ୍ତି । କର୍ମଚାରୀମାନଙ୍କ ବ୍ୟତୀତ ସ୍କୁଲ ମାଷ୍ଟର ବା ଯେ ଯେଉଁଆଡ଼ୁ ଆସିଲେ ବେହେରା ଡାକନ୍ତି ମାତ୍ରକେ ବେଠିଆମାନେ ଯାଇ ସେମାନଙ୍କ ଭାର ବୋହିବା-ପାଇଁ ବାଧ୍ୟ ହୁଅନ୍ତି ଏବଂ କ'ଣ ମାଇଲ ବାଟକୁ ଦୁଇ ତିନି ଅଣାରୁ ବେଶୀ ସେମାନଙ୍କ ଭାଗ୍ୟରେ ଜୁଟେ ନାହିଁ । ଏଜେନ୍‌ସି ଗାଁମାନଙ୍କର ଖଜଣା ବ୍ୟବସ୍ଥା ୧୯୦୨ ମସିହାରେ ମୁଦ୍ରିତ ସରକାରଙ୍କ ଟେଲରସ ମେମୟର (Taylor's Memoirs)ରେ ଲିଖିତ ବ୍ୟବସ୍ଥା ଅନୁଯାୟୀ ଏଯା-ପର୍ଯ୍ୟନ୍ତ ଚାଲି ଆସିଛି । ଏଜେନ୍‌ସିର କେତେକ ଅଂଶ, ଜମିଦାରୀ ଇଲାକା ଭିତରେ ପଡ଼ୁଛି । ବାକି କେତେକ ଅଂଶ ସାନଖେମୁଣ୍ଡି ଅଞ୍ଚଳ, ପୁରା ସରକାରୀ ଇଲାକା । ଅନ୍ତତଃ ସରକାରୀ ଇଲାକାରୁ ଅତିଶୀଘ୍ର ଏହି ମୁଠାଦାରୀ ପ୍ରଥା ହଟାଇ ଦେବା ନିହାତି ଉଚିତ ।

ଉଦୟଗିରି ଅଞ୍ଚଳର ଅବସ୍ଥା ନେଇ ରେଭିନ୍ୟୁବୋର୍ଡ୍ ମେମ୍ବର ଶ୍ରୀଯୁକ୍ତ ବୈକୁଣ୍ଠନାଥ ମହାଶୟଙ୍କ ସଙ୍ଗରେ ମୋର ବହୁ ସମୟ ଧରି ଆଲୋଚନା ହୋଇଥିଲା । ଶୀଘ୍ର ଏ ବ୍ୟବସ୍ଥାର ପରିବର୍ତ୍ତନ ହେବା ଉଚିତ୍ ତାହା ତାଙ୍କର ମଧ୍ୟ ମତ ବୋଲି ବୁଝିଲି । ଦୀର୍ଘ ଛ ବର୍ଷ କାଳ କଂଗ୍ରେସ ମନ୍ତ୍ରିମଣ୍ଡଳ ଏ ପ୍ରଦେଶରେ ଚାଲିବା ସତ୍ତ୍ୱେ ଏପର୍ଯ୍ୟନ୍ତ ଏ ଅଞ୍ଚଳ ପ୍ରତି ଦୃଷ୍ଟି ଦିଆଯାଇ ନାହିଁ, ଏହା ଅତି ଅନୁଶୋଚନାର ବିଷୟ । ବିଶ୍ୱସ୍ତ ସୂତ୍ରରୁ ଖବର ମିଳେ ଯେ ସରକାରୀ କର୍ମଚାରୀ ଶ୍ରୀଯୁକ୍ତ ଉଦୟନାଥ ରଥ ଏ ଅଞ୍ଚଳରେ କାର୍ଯ୍ୟକାରୀ କରିବା ଭଳି ଏକ ସୁବ୍ୟବସ୍ଥା ବିଧାନ ସହ ନିଜର ମତ ଦେଇ ଏକ ରିପୋର୍ଟ ସରକାରଙ୍କୁ ଦେଇଥିଲେ । ତାହା କ'ଣ, ତାହା ସାଧାରଣରେ ଶୀଘ୍ର ପ୍ରକାଶିତ ହେବା ଉଚିତ ଏବଂ ଦରକାର ବୋଧ କଲେ ସେଥିରେ ମଧ୍ୟ ସଂଶୋଧନ ଆଣି ଶୀଘ୍ର ଟେଲରସ୍ ମେମୟର (Taylor's Memoirs)କୁ ନାକଚ ସାବ୍ୟସ୍ତ କରି ସେହି ରିପୋର୍ଟ ଅନୁଯାୟୀ ସେଠା ବ୍ୟବସ୍ଥା କରିବା ଉଚିତ ।

୨୦-୭-୧୯୫୨ (ଗ୍ରାମସେବକ)

———

ମୁହଁ ଟାକ ମୋର, ମୁଁ କଥା କହିଲେ ଆପଣମାନେ କ'ଣ କରିବେ ?
ଗୁଳି କରି ଦେବେ ନଚେତ୍ ମୁହଁକୁ ବାନ୍ଧି ଦେବେ, ଏହା ତ······ ।

—ମାଳତୀଦେବୀ

# ଖଡ଼ିଆଳ ଓ ନୂଆପଡ଼ାରେ ଆଦିବାସୀ ଭାଇମାନଙ୍କ ଦୁର୍ଦ୍ଦଶା

ଅନୁଗୋଳ ମହୁଲା ତାଲିମ ଶିବିରରୁ ତାଲିମ ପାଇ ଫେରିଥିବା ଏକ ଭହଣୀର କର୍ମକେନ୍ଦ୍ର ଦେଖିବାପାଇଁ ଗତ ୧୩ ତାରିଖ ଦିନ ନୂଆପଡ଼ା ସବ୍‌ଡିଭିଜନର ଭେଲା ଗ୍ରାମକୁ ଯାଇଥିଲି । ଦିନକ ଭିତରେ ନାନା ଶ୍ରେଣୀର ଲୋକଙ୍କ ସହିତ ପରିଚୟ ଲାଭର ସୁଯୋଗ ଓ ସୌଭାଗ୍ୟ ହଠାତ୍ ମୋତେ ମିଳିଗଲା । ସାଧାରଣ ବ୍ୟବସାୟୀ, ଓକିଲ, କର୍ମୀ ଏବଂ କେତେକ ଗାଁର ଶୁଭଚିନ୍ତକଙ୍କ ସମେତ ସମସ୍ତଙ୍କ ମୁହଁରୁ ଶୁଣିଲି ଯେ ନୂଆପଡ଼ାର 'ବଡ଼ଝାଡ଼ ଜଙ୍ଗଲ ସମସ୍ୟା'ର ସମାଧାନ ଯଦି ଅତିଶୀଘ୍ର ସରକାର ନ କରନ୍ତି, ତେବେ ଲୋକଙ୍କ ଭିତରେ ଅସନ୍ତୋଷ ବଢ଼ି ବିଦ୍ରୋହ ମଧ୍ୟ ହୋଇପାରେ ।

ମୋ ବିଚାରରେ ଏଥିପ୍ରତି ସରକାର ତଥା ଜନସାଧାରଣଙ୍କର ଦୃଷ୍ଟି ପଡ଼ିବା ବିଶେଷ ଦରକାର । ତେଣୁ ବିଷୟଟି ନିମ୍ନରେ ପ୍ରକାଶ କଲି ।

ନୂଆପଡ଼ାରେ ଏପର୍ଯ୍ୟନ୍ତ ମଧ୍ୟପ୍ରଦେଶର ପ୍ରଜାସତ୍ତ୍ୱ ଆଇନ୍ ଚାଲୁ ରହିଛି । ତେଣୁ ଜମିଦାର ଅମଳରୁ କି ଏପର୍ଯ୍ୟନ୍ତ ସରକାରଙ୍କ ରେଭିନ୍ୟୁ ବିଭାଗ ଏଠା ଜମିକୁ ପଟ୍ଟା ଦେବା ସମ୍ବନ୍ଧରେ କଟକଣା ରଖି ଆସିଛି । ରେଭିନ୍ୟୁ-ଇନ୍‌ସପେକ୍ଟର ତଳେ ଥିବା ପଟ୍ଟୱାରୀ ଗ୍ରାମର ସାଧାରଣ ଚାଷୀଙ୍କୁ ଡରେଇଧରେଇ ରଖି ଆସିଛି । ବହୁବର୍ଷରୁ ଖଡ଼ିଆଳର ବହୁ ଅନାବାଦୀ ଜମି 'ବଡ଼ଝାଡ଼ ଜଙ୍ଗଲ' ଜମି ନାଁରେ ପଡ଼ିଆ ରହିଥିଲା । ଅଥଚ ବଡ଼ଝାଡ଼-ଜଙ୍ଗଲର ଏହି ଅନାବାଦୀ ଜମିରେ ଗୋଟିଏ ହେଲେ ବଡ଼ଗଛ ଦେଖିବାକୁ ମିଳେ ନାହିଁ । ନାମକୁ ମାତ୍ର ଏହା ବଡ଼ଝାଡ଼ ଜଙ୍ଗଲ ବୋଲି କଥିତ ଥିଲା । ଆଜକୁ ୧୦ ବର୍ଷ ହେଲା ବର୍ତ୍ତମାନ ଜମିଦାରଙ୍କ ପିତା ରେଭିନ୍ୟୁ ବିଭାଗର ଅନୁମତିକ୍ରମେ ଏହି ଅନାବାଦୀ ଜମିକୁ ହଜାର ହଜାର ଏକର ପ୍ରଜାମାନଙ୍କଠାରୁ ସଲାମୀ ନେଇ ଆବାଦ କରିବାକୁ ଛାଡ଼ି ଦେଇ ଆସୁଥିଲେ । ବର୍ତ୍ତମାନ ଜମିଦାର ମଧ୍ୟ ପୂର୍ବ ସଲାମୀ ନେଇ ବଡ଼ଝାଡ଼ ଜଙ୍ଗଲରୁ ଏହିପରି ହଜାର ହଜାର ଏକର ପ୍ରଜାଙ୍କୁ ଆବାଦ କରାଇ ଦେଇ ତାହା ରେଭିନ୍ୟୁ ବିଭାଗକୁ ଜଣାଇ ଆସିଥିବା ପ୍ରକାଶ । ଗରିବ ନିରୀହ ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ ପ୍ରଜାମାନେ ଜମିଦାରଙ୍କୁ ସନ୍ତୁଷ୍ଟ କରିବାକୁ ସଲାମୀ ଦେଇ ଏହି ଜମି ଉପରେ ଶହ ଶହ ଟଙ୍କା ଖର୍ଚ୍ଚ କରି ତାହାକୁ ଚାଷୋପଯୋଗୀ କରି ଆଜକୁ ୪।୫ ବର୍ଷ ହେଲା ଚଷି ଆସୁଛନ୍ତି । କିନ୍ତୁ ରେଭିନ୍ୟୁ ଡିପାର୍ଟମେଣ୍ଟ ଏ ସମସ୍ତ ପ୍ରଜାଙ୍କ ନାମରେ ଏପର୍ଯ୍ୟନ୍ତ ପଟ୍ଟା କରାଇଦେବା ତ ଦୂରର କଥା, ବର୍ତ୍ତମାନ ଜମିଦାରୀ ସରକାର ହାତକୁ ଚାଲିଯିବା ପରେ ହଠାତ୍ ସାଧାରଣ ଜନତାର ହାତରୁ ଏ ଜମିଗୁଡ଼ିକ ନିର୍ଦ୍ଦୟ ଭାବରେ ଛଡ଼ାଇ ନେଉଛନ୍ତି । ବିଶେଷକରି ସିଲଟପାଣି ନାମକ ଗ୍ରାମର ସମସ୍ତ ଗରିବ ପ୍ରଜା ଏହିପରିଭାବେ ନିଜ ଚାଷଜମିରୁ ବେଦଖଲ ହୋଇଯାଇଥିବାରୁ ସେମାନଙ୍କ ଭିତରେ ହାହାକାର ପଡ଼ିଯାଇଛି । ପଟ୍ଟା ନ ଥିବାରୁ ଏ ଅଞ୍ଚଳର ପ୍ରଜାମାନେ ବିଚାରାଳୟର ଆଶ୍ରୟ ମଧ୍ୟ ନେଇପାରୁ ନାହାନ୍ତି ।

ଜମିଦାରୀ ଉଠିଯିବା ପରେ ସାଧାରଣ ଜନତା ସରକାରୀ କର୍ମଚାରୀମାନଙ୍କଠାରୁ ଏପରି ବ୍ୟବହାର ପାଇ "ଜମିଦାରୀ ଭଲ ଥିଲା" ବୋଲି ଧାରଣା କରିବା ସ୍ୱାଭାବିକ । ଏଥିପ୍ରତି ତୁରନ୍ତ ସରକାରଙ୍କ ଦୃଷ୍ଟି ପଡ଼ିବା ଦରକାର । ନଚେତ୍ ଗରିବ ଆଦିବାସୀ ଓ ହରିଜନ ପ୍ରଜାମାନେ ବହୁତ ହଇରାଣ ହେବେ ଏବଂ କେତେକ ସରକାରୀ କର୍ମଚାରୀ ଲାଞ୍ଚ ଉପବିତ୍ତ ଖାଇ ତେଲିଆ ମୁଣ୍ଡରେ ତେଲ ଢାଳିବା ନୀତି ଧରି ଜମି ଥିବା ଲୋକଙ୍କୁ ଏସବୁ ଜମିର ପଟ୍ଟା ଦେଇଦେବେ ।

ଭୂମିହୀନମାନଙ୍କୁ ଜମି ଦିଆଇବା ପାଇଁ ସନ୍ଥ ବିନୋବାଙ୍କ ଭୂଦାନ ଆନ୍ଦୋଳନ ଚାଲିଥିଲାବେଳେ ଏଭଳି ବେଦଖଲି କାମ ଲୋକହସା ଛଡ଼ା ଆଉ କ'ଣ ହୋଇପାରେ ?

———

୨୭-୧-୧୯୫୩ (ଗ୍ରାମସେବକ)

# ଉତ୍ତର ମୌଳିକ ଶିକ୍ଷା ଓ ଜୀବନ ବିଦ୍ୟାଳୟ

ଉତ୍ତର ମୌଳିକ ବିଦ୍ୟାଳୟ ପଶ୍ଚାତରେ ଗାନ୍ଧୀଜୀଙ୍କର ଯାହା ପରିକଳ୍ପନା ଥିଲା ତାକୁ ଦେଶର କୌଣସି ଶିକ୍ଷାବିତ୍ ରୂପାୟିତ କରିପାରିଲେ ନାହିଁ । ଯଦି ତାଙ୍କର ସେ ପରିକଳ୍ପନା ଯଥାର୍ଥରେ କାର୍ଯ୍ୟକାରୀ ହୋଇ ପାରିଥାନ୍ତା ତେବେ ଆଜି ଭାରତବର୍ଷରେ ସମାଜରେ ଯେଉଁ ବିଶୃଙ୍ଖଳା ଦେଖାଦେଇଛି ତାହା ବୋଧେ ହୋଇ ନ ଥାନ୍ତା । ପ୍ରତ୍ୟେକ ଉତ୍ତର ମୌଳିକ ବିଦ୍ୟାଳୟଗୁଡ଼ିକ ଆଖପାଖର ଗାଁମାନଙ୍କୁ ନେଇ ଗଢ଼ିଉଠିବ, ଏହାହିଁ ଥିଲା ତାଙ୍କର ମୂଳ ବା ମୌଳିକ ଚିନ୍ତାଧାରା । ଦଶ ପନ୍ଦର ଖଣ୍ଡ ଗାଁ ସମାଜ ଏବଂ ତାର ଶିକ୍ଷା ଦୀକ୍ଷା ଅର୍ଥନୈତିକ ସାମାଜିକ ଓ ରାଜନୈତିକ ସବୁ ସମସ୍ୟା ସହିତ ଜଡ଼ିତ ରହି ଥାଆନ୍ତା, ଏହି ବିଦ୍ୟାଳୟଗୁଡ଼ିକ ଏବଂ ଏହାର ଛାତ୍ରଛାତ୍ରୀ ଆଉ ଶିକ୍ଷକ ସମ୍ପ୍ରଦାୟ ।

ଆମର ଏହି ଉତ୍ତର ମୌଳିକ ବିଦ୍ୟାଳୟଟି ଉଦ୍‌ଘାଟନ କରିଥିଲେ ୧୯୫୪ ମସିହାରେ ଗାନ୍ଧୀବାଦୀ ଜ୍ଞାନୀ ପୁରୁଷ ଶ୍ରୀ ଧୀରେନ୍ଦ୍ର ମଜୁମଦାର । ତାଙ୍କର "ସମଗ୍ର ଗ୍ରାମ ସେବାକୀ ଓର" ବହିଖଣ୍ଡିଏ ଯିଏ ପଢ଼ିଛି, ସେ ଜାଣିଥିବ ଭାରତର ଗାଁ ଗହଳକୁ ସେ କେତେ ଗଭୀର ଭାବରେ ଅଧ୍ୟୟନ କରିଥିଲେ ଏବଂ ଭଲ ପାଉଥିଲେ । ଗାଁରେ କାମ କରିବାକୁ ଯିବା ପୂର୍ବରୁ ପ୍ରତ୍ୟେକ ସ୍ତ୍ରୀ ପୁରୁଷଙ୍କର ସେ ବହିଟି ଅଧ୍ୟୟନ କରିବା ଉଚିତ୍ । ସେ ଆମକୁ ବିଶେଷ କରି ଏଠାକାର ସେତେବେଳର ପ୍ରଧାନ ଶିକ୍ଷକଙ୍କୁ ଏବଂ ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ଉଦ୍ଦେଶ୍ୟରେ ଯାହା କହିଥିଲେ ତାହା ଯଦି ସାମାନ୍ୟ ପରିମାଣରେ ଆମେ କାର୍ଯ୍ୟକାରୀ କରିଥାନ୍ତୁ ତାହାହେଲେ ଗାନ୍ଧୀଜୀଙ୍କର ମୌଳିକ ଶିକ୍ଷା କିଛିଟା ଏହିଠାରେ ରୂପାୟିତ ହୋଇ ପାରିଥାନ୍ତା, ସୂତା ଅଭାବରେ ଆମ ପାଖ ଗାଁର ହରିଜନ ତନ୍ତୀକୁଳ ନିଜ ନିଜର ତନ୍ତକୁ ସଙ୍ଗାରେ ସଜାଡ଼ି ରଖି ମୂଲ ଲାଗି ପେଟ ପୋଷୁଥିବା ବିଷୟରେ ଅଧ୍ୟାପକମାନଙ୍କ ଦୃଷ୍ଟି ଆକର୍ଷଣ କଲେ ମଧ୍ୟ ସେ ଆଡ଼କୁ ସେମାନେ ଦୃଷ୍ଟିପାତ କଲେ ନାହିଁ । ଗାଁର ମୃତ ଶିଳ୍ପକୁ ଉଜ୍ଜୀବିତ କରିବାର ଉଦ୍ୟମ କରିବା ଉତ୍ତର ମୌଳିକ ବିଦ୍ୟାଳୟର କାମ । ତାହା ହୋଇ ପାରିଥିଲେ ଗାଁ ପୁନରୁଜ୍ଜୀବିତ ହୋଇ ବହୁ ସମସ୍ୟାର ମୀମାଂସା ହୋଇ ପାରିଥାନ୍ତା । ଗାଁଗୁଡ଼ିକ ପୁନରାୟ ହସିଉଠିଥାନ୍ତେ ।

"ଗାନ୍ଧୀଙ୍କ କଥାକୁ ଅମାନ୍ୟ କରି ସ୍ୱାଧୀନସମାଜ ବା ପ୍ରଶାସକ ଦଳ ଶିକ୍ଷାନୀତିରେ କୌଣସି ପରିବର୍ତ୍ତନ କରି ପାରିଲେ ନାହିଁ । ବରଂ ମୌଳିକ ଶିକ୍ଷାନୀତିକୁ ବିଲୁପ୍ତ କରାଗଲା । ସେ ବିଲୁପ୍ତିର ପ୍ରଭାବ ଆସି ଶିକ୍ଷକ ଏବଂ ଛାତ୍ରଛାତ୍ରୀ ଉଭୟ ସମ୍ପ୍ରଦାୟ ଉପରେ ଏପରି ଭାବରେ ପଡ଼ିଲା ଯେ ସେମାନଙ୍କ ପକ୍ଷରେ ଏହି ବିପରୀତ ସ୍ରୋତ ଭିତରେ ତିଷ୍ଠି ରହିବା କାଠିକର ପାଠ ହେଲା ।

ଆମ ଏଠାର ଉତ୍ତର ମୌଳିକ ଶିକ୍ଷାର ସମାପ୍ତି ପରେ ଛାତ୍ରମାନଙ୍କ ପାଇଁ ସବୁ କ୍ଷେତ୍ରରେ ପ୍ରବେଶ ଦ୍ୱାର ବନ୍ଦ୍ ରଖାଗଲା । ପ୍ରତିଯୋଗିତାରେ ପ୍ରାୟ ସବୁ କ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରିଥିଲେ ମଧ୍ୟ ସେମାନଙ୍କୁ କୌଣସିଠାରେ ସ୍ଥାନ ମିଳିଲା ନାହିଁ । ସେମାନଙ୍କ ପାଇଁ ଏହା ଏକ ପ୍ରଚଣ୍ଡ ଆଘାତ ଏବଂ ହତାଶା ଏବଂ ଅବମାନନାର କାରଣ ହେଲା, ତଥାପି ସେମାନେ ହଟିଲେ ନାହିଁ । ପ୍ରତିଯୋଗିତାମୂଳକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ମଧ୍ୟ ପ୍ରଶ୍ନ ଉଠିଲା ଏମାନେ ବୁଣ୍ଟ ବିଦ୍ୟାଳୟର ସାର୍ଟିଫିକେଟ ଧାରୀ ନୁହନ୍ତି । ଉପରସ୍ତର ଯାଏ ବହୁତ ଓଜର ଆପତ୍ତି କରିବା ପରେ ସେତେବେଳର ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଆଦେଶ କଲେ ଯେ ଏମାନଙ୍କୁ ବେସିକ ଟ୍ରେନିଂ କଲେଜରେ ସର୍ବାଧ୍ୟକ୍ଷ ଶ୍ରଦ୍ଧେୟ ଶତ୍ରୁଘ୍ନନାଥବାବୁ ପରୀକ୍ଷା କରି ଦେଖିବେ । ତାଙ୍କଦ୍ୱାରା ଉପଯୁକ୍ତ ବିବେଚିତ ହେଲେ ଅନ୍ୟାନ୍ୟ କ୍ଷେତ୍ରରେ ପ୍ରବେଶଦ୍ୱାର ଉନ୍ମୁକ୍ତ ହୋଇ ବିବେଚିତ ହେବ । ଏପରି ପରିସ୍ଥିତିରେ ଛାତ୍ରମାନଙ୍କ ମନରେ ଏକ ହୀନମନ୍ୟତା ବୋଧ ଜାତ ହେଲା ଏବଂ ଅଭିଭାବକମାନେ ମଧ୍ୟ ବିଚଳିତ ହୋଇପଡ଼ିଲେ । ଶତ୍ରୁଘ୍ନବାବୁ ଅବଶ୍ୟ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କୁ ପରୀକ୍ଷା କରିବା ପରେ ଅତି ଉଚ୍ଚମାନର ବୋଲି ଘୋଷଣା କରି ଉତ୍ତୀର୍ଣ୍ଣ କରିଥିଲେ । ତଥାପି ସରକାରୀ କଳ ଭିତରେ ଏହି ଛାତ୍ରଦଳ ନାନା ବାଧା ବିଘ୍ନ ସହି ମୁଣ୍ଡ ନ ନୁଆଇଁ ବାଟ ଚାଲିଲେ । ମାତ୍ର ଶିକ୍ଷା ଜଗତର ମୁଣ୍ଡଥିବା ବ୍ୟକ୍ତିମାନେ ମୌଳିକ ଶିକ୍ଷାକୁ ପଣ୍ଡ କରି ଦେବାପାଇଁ ଯେଉଁ ନୀତିସବୁ କାଢ଼ି ଓ ବାଢ଼ି ବସିଲେ ସେଥିରେ ଅଭିଭାବକମାନଙ୍କର ଘୋର ଆପତ୍ତି ମିଶି ମୌଳିକ ଶିକ୍ଷା ଧୂଳିସାତ୍ ହେବାକୁ ବସିଲା ଏବଂ ହୋଇଗଲା

ମଧ୍ୟ । ତେଣୁ କେବଳ ସରକାରୀ ଲୋକେ ଯେ ଦେଶର ମୌଳିକ ଶିକ୍ଷାକୁ ହେୟଜ୍ଞାନ କରି ତଳେ ପକେଇ ଦେଲେ ତା ନୁହେଁ, ଦେଶର ନ୍ୟସ୍ତ ସ୍ୱାର୍ଥ ଲୋକେ ଜାଣି ଶୁଣି ଏ ଶିକ୍ଷାକୁ ହେୟଜ୍ଞାନ କରି ଦେଲେ । ଆଜି ଛାତ୍ର ସମାଜ ଭିତରେ ନାନା ବିଭ୍ରାଟ ସୃଷ୍ଟି ହେବାର ଦେଖି ସୁଧିଜନ ଚିନ୍ତିତ ହୋଇ ନାନା ବାଟ ଖୋଜିବାକୁ ବସିଛନ୍ତି । ସରକାର କମିଶନ ବସାଇ ଚାଲିଛନ୍ତି ଶିକ୍ଷାର ନୂଆ ପ୍ରଣାଳୀ ଖୋଜିବାକୁ । ଯେଉଁଥିରେ ନୂଆ ଭାବରେ ନୂଆ ମଣିଷ ଗଢ଼ି ଉଠିବ । ସବୁ ବୃଥା ହୋଇଯାଇଛି । ଗାନ୍ଧୀଜୀଙ୍କର ପରିକଳ୍ପନା ଅନୁଯାୟୀ ଉକ୍ତର ମୌଳିକ ପାଠ୍ୟକ୍ରମରେ ଛାତ୍ର ଗାଁର ସମାଜ ସହିତ ଜଡ଼ିତ ହୋଇ ଏକ ନୂଆ ସମାଜ ଗଢ଼ିବାରେ ଅଗ୍ରଣୀ ହୁଅନ୍ତା ଏବଂ ତାହାହିଁ ହୁଅନ୍ତା ସମାଜ ଗଠନର ସମ୍ପୂର୍ଣ୍ଣ କ୍ରାନ୍ତି ବିଦ୍ୟାଳୟ କିନ୍ତୁ ତାହା ଆମର ଏହି ପ୍ରଶାସକମାନେ କରେଇ ଦେବେ ନାହିଁ ବା ସମାଜର ନ୍ୟସ୍ତସ୍ୱାର୍ଥର ଲୋକମାନେ ବିରୋଧ କରି ବସିବେ ।

ଶ୍ରଦ୍ଧେୟ ନବବାବୁ ଗାନ୍ଧୀଜୀଙ୍କର ମୌଳିକ ଶିକ୍ଷାକୁ ହୃଦୟରେ ଖୁବ୍ ଉଚ୍ଚସ୍ଥାନ ଦେଇଥିଲେ ଏବଂ ମନ୍ତ୍ରୀତ୍ୱ ଛାଡ଼ିବାପରେ ମୌଳିକ ଶିକ୍ଷାର ନିର୍ଦ୍ଦେଶକ ଭାବରେ ଦୁଇ ବର୍ଷ କାମ କରିଥିଲେ । ସେ ନିର୍ଦ୍ଦେଶକ ଥିବା ସମୟରେ ଅନୁଗୋଳର ଆଖପାଖ ବ୍ଳକଗୁଡ଼ିକରେ ମୌଳିକ ସ୍କୁଲ୍‌ଗୁଡ଼ିକ ସୁନ୍ଦର ଭାବରେ ଫୁଲ ପରିବା ବଗିଚାରେ ଶୋଭା ପାଉଥିଲା । ପିଲାମାନେ ଏବଂ ଶିକ୍ଷକମାନେ ନିଜେ ପରିଶ୍ରମ କରି ନାନାଦି ଫସଲ ଉତ୍ପାଦନ କରୁଥିଲେ । ମୌଳିକ ନିର୍ଦ୍ଦେଶକ ଥିବା ଭିତରେ ପୁନରାୟ ଆବଶ୍ୟକ ହେବାରୁ ସେ ମନ୍ତ୍ରୀପଦ ନେବାକୁ ଫେରିଗଲେ । ଶାସନ ଭିତରେ ରହି ନାନା ପରିସ୍ଥିତି ଏବଂ ବାଧାବିଘ୍ନ ଭିତରେ ବିପରୀତ ମନୋଭାବାପନ୍ନ ବନ୍ଧୁମାନଙ୍କ ସହଯୋଗ ନ ପାଇବାରୁ ହତାଶ ହୋଇ ଛାଡ଼ି ଚାଲିଆସିଲେ । ବିପ୍ଳବୀ ମନୋଭାବରେ ପରିପୂର୍ଣ୍ଣ ନବବାବୁ ଚୁପ୍ ହୋଇ ବସନ୍ତେ ବା କିପରି ? ତ୍ୟାଗ ବିଛଣା କାନ୍ଧରେ ପକାଇ ବରପାଲିର ତ୍ୟାଗୀବୃନ୍ଦ ଲାଗୀରଥିବାବୁ, ବନ୍ଧୁ ମଦନମୋହନ ସାହୁ ଓରେର ତେତେ ବନ୍ଧୁ ଏବଂ ମୋତେ ସାଙ୍ଗରେ ଧରି ଗାଁ ଗାଁ ବୁଲିଲେ ଭୂଦାନ ଗ୍ରାମଦାନ ମାଗି । ଆମର ପ୍ରଥମ ପଦଯାତ୍ରା ଆରମ୍ଭ ହେଲା, ଚଣ୍ଡୀ ଅଞ୍ଚଳର ସର୍ବସ୍ୱଦାନ କରିଥିବା ଶ୍ରୀ ଉଲେଶ୍ୱର ଗୌନ୍ତିଅଙ୍କ ଅଞ୍ଚଳରେ । ସେଥିପାଇଁ ସେ ସେଉଁ ଗ୍ରାମମାନଙ୍କୁ ଆମ ସହିତ ଗଲେ ସେ ମିଟିଂକୁ ଅଧିବାସୀମାନେ ଆସିଲେ ନାହିଁ । ଏହିପରି ଭାବରେ ଏକ ପ୍ରକାର ବିନୋବାଜୀଙ୍କର ଏହି ଗ୍ରାମଦାନ ସ୍ରୋତକୁ ବନ୍ଦ କରି ଦେବାକୁ ବସିଲେ । ଏହାପରେ ଶ୍ରଦ୍ଧେୟ ନବବାବୁ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଛାତ୍ରମାନଙ୍କୁ ନେଇ ଅଧ୍ୟାପନା କାମରେ ଲାଗିପଡ଼ିଲେ । ସାଧାରଣ ହାଇସ୍କୁଲରେ ଜଣେ ଶିକ୍ଷକ ପରି ସମୟ ଅନୁଯାୟୀ ପ୍ରତିଦିନ ପାଠ ପଢ଼େଇ ଚାଲିଲେ । ବିବାହିତ ଜୀବନରେ ସବୁଠାରୁ ଆନନ୍ଦମୟ ଦିନହେଲା ଅଣଖିଆ ଗ୍ରାମରେ ତାଙ୍କର ସ୍ୱପ୍ନ ଜମି ଉପରେ ଶିଶୁକନ୍ୟା ଉର୍ବଶୀକୁ ନେଇ ଯେତେବେଳେ ଆମେ ସାଧାରଣ ଚାଷୀ ଦମ୍ପତି ପରି ଚାଷ କାମରେ ଲାଗି ପଡ଼ୁଥାଉ । ତା ସାଙ୍ଗରେ ଆଖ ପାଖ ଗାଁର ଗାଈଜଗୁଆଳ ପିଲାଙ୍କୁ ନେଇ ଗୌରୀ ଭାଇଙ୍କ ସହିତ ରାତି ପାଠଶାଳା ଚଳାଉଥାଉ । ଚମ୍ପତିମୁଣ୍ଡାରେ ୬ ବର୍ଷ ରହଣୀ ବେଳେ ପୂର୍ବର ସେହି ଆନନ୍ଦ ଆମେ ଦୁହେଁ ଅନୁଭବ କରୁଥାଉ । କଥାବାର୍ତ୍ତା ମଧ୍ୟ ବରାବର ହେଉ । ଠିକ୍ ଅଣଖିଆରେ ରହିବା ଦିନଭଳି ଏଠି ଲାଗୁଥାଏ । ବାପି ପିଲାମାନଙ୍କ ଭଳି ପିଲାଙ୍କ ସାଙ୍ଗରେ ମିଶି ସବୁଦିନ "ଭଲି" ଖେଳୁଥାନ୍ତି । ମୁଁ ଏବଂ ସୀତା ଝିଅ ମିଶି ରୋଷେଇବାସ କରୁ, ଭାଇ ରବି ସାହୁ ଏବଂ ଭାଇ ପ୍ରଫୁଲ୍ଲ ସେନାପତି ଆସି ଆହାର ବେଳେ ଆମ ସହିତ ଯୋଗଦାନ କରନ୍ତି । ସାମନା ଝରଣାରେ ସମସ୍ତେ ମିଶି ବାସନ ମାଜିବାକୁ ଠିକ୍ ଅଣଖିଆ ନାଳରେ ଯେମିତି ମାଜୁଥିଲୁ । ଚାରିଆଡ଼େ ପାହାଡ଼ ଘେରିହୋଇ ଥିବା ଏହି ସ୍ଥାନଟି ଏପରି ମନୋରମ ବୋଧହୁଏ ସେ ସ୍ମୃତି ଭୁଲିବାର ନୁହେଁ । ଭୂମିଗତ ନକସଲ ପନ୍ଥୀ ଭାଇମାନେ ମଧ୍ୟ ସୁବିଧା ସୁଯୋଗ ଦେଖି ଆସି ପହଞ୍ଚି ଯାଆନ୍ତି । ବାପି ସହିତ ଆଲୋଚନା ଚାଲେ ଅନୁକରଣରେ ପ୍ରିୟ ନକସଲପନ୍ଥୀ ଭାଇମାନେ ମନେକରନ୍ତି ମାଓ-ସେ-ତୁଙ୍ଗଙ୍କପରି ସେମାନେ Liberated area ବା ମୁକ୍ତାଞ୍ଚଳ ତିଆରି କରିବାରେ ପ୍ରାୟ ସଫଳ ହୋଇ ପାରିଛନ୍ତି । ଧନ୍ୟ ସେମାନଙ୍କର ଇଚ୍ଛା, ଶକ୍ତି, ଧନ୍ୟ ସେମାନଙ୍କର ଅଭୂତପୂର୍ବ କଳ୍ପନା । ସେମାନଙ୍କର ଏହି ସାହାସ ମନୋବଳ ଏବଂ ଜନତା ସହିତ ଏକରସ ହୋଇ ତ୍ୟାଗର ନମୁନା ନବବାବୁଙ୍କୁ ଏବଂ ମୋତେ ବହୁତ ଆକର୍ଷିତ କରିଥିଲା । ତାଙ୍କର ହିଂସାବାଟ ଆମକୁ ଆଦୌ ଭଲ ଲାଗୁ ନଥିଲେ ମଧ୍ୟ ତାଙ୍କର ସାହସିକତା ଯୋଗୁଁ ଆମ ହୃଦୟରେ ତାଙ୍କର ସ୍ଥାନ ଜମି ଯାଇଥିଲା । ଭୀରୁର ଅହିଂସା ଠାରୁ ସାହସିକର ହିଂସା ବରଂ ବାଞ୍ଛନୀୟ ।

ଏଠାରେ ରହିବାର ଏହି ଦୁଇବର୍ଷ ଭିତରେ ନବବାବୁ ମନ୍ତ୍ରୀ ବନ୍ଧୁମାନଙ୍କ ସାହାଯ୍ୟରେ ଜୀବନ ବିଦ୍ୟାଳୟର ମଙ୍ଗଳ ଏବଂ ସ୍ଥାୟିତ୍ୱ ଦୃଷ୍ଟିରୁ କିଛି କରି ନେବାକୁ ବହୁତ ଚେଷ୍ଟା

କରୁଥିଲେ ଏବଂ D.P.I. ଅଫିସକୁ ନିଜେ ଦୁଇ ତିନି ଥର ଦୌଡ଼ାଦୌଡ଼ି କରି କୌଣସି ସୁଫଳ ପାଇ ପାରିଲେ ନାହିଁ । ତାଙ୍କର ମନ ଭାଙ୍ଗିଯାଇଥିଲା, ଯେଉଁ ଶିକ୍ଷକମାନେ ସରକାରୀ ବିଦ୍ୟାଳୟରୁ ଆସି ଚମ୍ପତିମୁଣ୍ଡାରେ ଯୋଗ ଦେଇଥିଲେ ଜରୁରୀକାଳୀନ ପରିସ୍ଥିତି ବେଳେ ସେମାନେ ପୁନରାୟ ସରକାରୀ ବିଦ୍ୟାଳୟକୁ ଫେରିଗଲେ ।

ଉତ୍ତର ମୌଳିକ ବିଦ୍ୟାଳୟର ମାନଦଣ୍ଡ ହେବ କଲେଜ ଶିକ୍ଷାର ଅନୁରୂପ । ଅବଶ୍ୟ ବେଞ୍ଚ ଉପରେ ବସି ଜ୍ଞାତବ୍ୟ ବିଷୟମାନ ଶିକ୍ଷକଙ୍କ କଣ୍ଠରୁ ବୁଝିଲୁ ବା ନ ବୁଝିଲୁ ଘଣ୍ଟା ଦିଘଣ୍ଟା ବସି ଘରକୁ ଫେରିବା ଏଭଳି ଶିକ୍ଷା ନୁହେଁ । ମାତ୍ର ବାପୁଜୀଙ୍କର ଏବଂ ଆଶାଦେବୀ ଆର୍ଯ୍ୟ ନାୟକମଙ୍କର ମତରେ କୌଣସି ବିଶେଷ ବିଷୟ ଉପରେ ଛାତ୍ରଛାତ୍ରୀମାନେ ଅଧ୍ୟୟନ କରିବେ । ବିଶେଷ କୌଣସି ବହିଘୋଷା ପାଠ ନୁହେଁ । ଛାତ୍ରଛାତ୍ରୀମାନଙ୍କ ପାଖରେ ଲାଇବ୍ରେରୀ ଉନ୍ମୁକ୍ତ ରହିବ ଏବଂ ବିଶେଷ ବିଷୟ ବସ୍ତୁର ଅଧ୍ୟୟନ ସେମାନେ ସେ ବିଷୟର ବହିମାନ ନିଜେ ଖୋଜି ନିଜେ ଅଧ୍ୟୟନ କରିବେ ଏହି ପଦ୍ଧତିରେ ଅଧ୍ୟାପକ ଚିତ୍ତରଞ୍ଜନ ଦାସ ଏଠାରେ ଉତ୍ତର ମୌଳିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ପଢ଼େଇଛନ୍ତି । ଉତ୍ତର ମୌଳିକ ବିଦ୍ୟାଳୟର ପରିକଳ୍ପନା ମନରେ ଆସିବା ମାତ୍ରେ ଆଗେ ପ୍ରଶ୍ନ ଉଠିଲା ଏହାକୁ ଚଳେଇବ କିଏ ? ବହୁତ ଚିନ୍ତା ଏବଂ ପରିକଳ୍ପନା ପରେ ସ୍ଥିରହେଲା ଯେ ଶାନ୍ତିନିକେତନରେ ପାଠ ପଢ଼ୁଥିବା ଶ୍ରୀମାନ ଚିତ୍ତରଞ୍ଜନ ଦାସ ଡେନମାର୍କ Folk school ରେ ଅନ୍ତତଃ ବର୍ଷେ ରହି ଆସିଲେ ଉପଯୁକ୍ତ ଶିକ୍ଷକ ମିଳିବା ସମ୍ଭବ ହେବ । ମାତ୍ର ଆମ ପାଖରେ ତ ଅର୍ଥ ନାହିଁ ଶୂନ୍ୟ ହସ୍ତରେ କାମ ଆରମ୍ଭ ହେବ କିପରି ? ବିଜୁ ପଟ୍ଟନାୟକ ସେତେବେଳେ ରାଜନୀତି ସହ ସଂପୃକ୍ତ ନ ଥାନ୍ତି । ଉଦାସୀ ଦେଶଭକ୍ତ ମଣିଷଟିଏ । ତାକୁ ସବୁ ବୁଝେଇ କହିବା ମାତ୍ରେ ରାଜି ହୋଇଗଲେ ଏବଂ ଚିତ୍ତରଞ୍ଜନ ଡେନମାର୍କ ଗଲେ ।

ଚିତ୍ତବାବୁ ଫେରି ଆସିବା ମାତ୍ରେ ସ୍ଥାନ ଖୋଜା ଚାଲିଲା । ଏହି ସ୍ଥାନଟି Ex-Military ଲୋକମାନଙ୍କୁ ବସେଇବା ପରିକଳ୍ପନା ଶାସକ ସମ୍ପ୍ରଦାୟଙ୍କର ଥିଲା ଏବଂ ଏମାନଙ୍କୁ ନେଇ ଏକ Co-Operative ବା ସମବାୟ ଫାର୍ମ ଚଳେଇବାର ପରିକଳ୍ପନାରେ ଏହାକୁ ସମବାୟ ବିଭାଗର ହାତରେ ସମର୍ପଣ କରାଗଲା । ସମବାୟ ବିଭାଗର ଯେପରି ପ୍ରବଞ୍ଚନା ପୁଲେ ଆମସହିତ ରହିଲେ ତାହା ଚାଲିବ ନାହିଁ ଜାଣି ଲୋକଙ୍କୁ ଶିଖେଇ ଆମଠାରୁ ସେମାନଙ୍କୁ ଅଲଗା କଲେ । ତାଙ୍କ ପାଖକୁ ବରାବର ଯିବାଆସିବା କଥାବାର୍ତ୍ତା ଚାଲୁଥିବା ଭିତରେ ହଠାତ୍ ତାଙ୍କ ଭିତରେ କେତେକ ପ୍ରଧାନ ବ୍ୟକ୍ତି ନାନା କାରଣ ଦେଖାଇ ଆମ ସହିତ ଅଂଶୀଦାର ହେବା-ପାଇଁ ବା ଆମକୁ ତାଙ୍କର ଅଂଶୀଦାର କରିବା ପାଇଁ ମନା କରିଦେଲେ । ଡେନମାର୍କରେ ଦେଖି ଆସିଥିବା ସମବାୟ ଫାର୍ମର ଯେଉଁ ପରିକଳ୍ପନା ଚିତ୍ତବାବୁଙ୍କ ମୁଣ୍ଡରେ ଥିଲା, ତାହା ଧୂଳିସାତ ହୋଇଗଲା । ମାତ୍ର ସ୍ଥାନଟି ସବୁ ଦିଗରୁ ଉପଯୁକ୍ତ ବିଚାରି ସେତେବେଳର ରାଜସ୍ୱ ମନ୍ତ୍ରୀ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ ନିଜେ ଯାଇ ସେ ସ୍ଥାନ ଦେଖି ଏ ସ୍ଥାନଟା ଉପଯୁକ୍ତ ବୋଲି ସ୍ଥିରକରି ଉତ୍ତର ମୌଳିକ ବିଦ୍ୟାଳୟ ପାଇଁ ଚିହ୍ନଟ ହେଲା । ସ୍ୱୀକୃତ ହୋଇ ଯିବା ପରେ ଜଙ୍ଗଲ ସଫାକରି ଘର ତୋଳିବା, ପାଣିର ବ୍ୟବସ୍ଥା ଆଦିର ଆୟୋଜନ ଚାଲିଲା ।

ଏତେ ବଡ଼ ଜାଗାଟାରେ ଜଙ୍ଗଲ ସଫାକରି ଜାଗାଟା ସମତଳ କରାଇବା କମ୍ କଷ୍ଟକର କଥା ନୁହେଁ । ଅର୍ଥ କାହିଁ ? ମୋତିଲାଲ ପଣ୍ଡିତଙ୍କ ସ୍ତ୍ରୀ ଶ୍ରୀମତୀ ରୂପ କୁମାରୀଙ୍କ-ଠାରୁ ଅର୍ଥ ସାହାଯ୍ୟ ମିଳିଲା । କୃଷି ବିଭାଗରୁ ବୁଲ୍‌ଡୋଜର ଅଣାଯାଇ ଜଙ୍ଗଲ ସଫା କରାଗଲା ।

ଅବସ୍ଥା କ୍ରମେ ନାନା କାରଣରୁ ଚିତ୍ତରଞ୍ଜନ ଦାସ ସ୍କୁଲ ପରିତ୍ୟାଗ କଲେ । ତାଙ୍କ ପରେ ନବବାବୁ ବରାବର ଇଚ୍ଛା କରୁଥିଲେ ଜୀବନ ବିଦ୍ୟାଳୟକୁ ଯାବତୀୟ ଉନ୍ନୟନ ମୂଳକ କାମ ପାଇଁ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ବୈଦ୍ୟନାଥ ମିଶ୍ର ମୁଖ୍ୟ ପରାମର୍ଶ ଦାତା ଓ ବ୍ୟବସ୍ଥାପକ ଭାବେ ମାର୍ଗ ଦର୍ଶନ କରିବେ । × × ×

(ଚମ୍ପତିମୁଣ୍ଡା ଉତ୍ତର ମୌଳିକ ବିଦ୍ୟାଳୟ (ଜୀବନ ବିଦ୍ୟାଳୟ) ଆନୁକୂଲ୍ୟରେ ପ୍ରକାଶିତ "ବିକାଶ" ପତ୍ରିକାର ୧୯୮୯ ଏପ୍ରିଲ ସଂଖ୍ୟାରୁ ସଂଗୃହୀତ) ।

# ସହିଦ ବାଜି ରାଉତକୁ ଇତିହାସରୁ ଲୋପ କରିବା ଚେଷ୍ଟା

ସହିଦ ବାଜି ରାଉତ ଢେଙ୍କାନାଳ ପ୍ରଜାଆନ୍ଦୋଳନରେ ଫୌଜର ଗୁଳି ମାଡ଼ରେ ପ୍ରାଣବଳି ଦେଇଥିଲା । ସେ ଆଜି ସାରା ଭାରତର ମୁକ୍ତି ସଂଗ୍ରାମ ତଥା ଦେଶାତ୍ମବୋଧର ଅମର ପ୍ରତୀକ ରୂପେ ଇତିହାସରେ ଅମର ହୋଇ ରହିଛି ଏବଂ ରହିବ । ତାର 'ସହିଦତ୍ୱ' ଲୋପ କରି ତାକୁ ଏକ ସାଧାରଣ ବାଳକର ସ୍ତରକୁ ଟାଣି ଆଣିବା ପାଇଁ ରାଜାରାଜୁଡ଼ା ଏବଂ ତାଙ୍କ ପାଖଲୋକଙ୍କ ତରଫରୁ ବରାବର ଅପଚେଷ୍ଟା ହୋଇ ଆସୁଛି । ମାତ୍ର ସେମାନେ ସଫଳ ହୋଇପାରିନାହାନ୍ତି । ଇତିହାସକୁ ବିକୃତ କରିବାକୁ ଯିବା ଏବଂ ସହିଦମାନଙ୍କ ଆତ୍ମବଳିକୁ ଏକ ଆକସ୍ମିକ ଘଟଣା ବୋଲି ଚିତ୍ରଣ କରିବା ଦେଶଦ୍ରୋହ ବୋଲି ମୋର ମତ । ସମ୍ପ୍ରତି ବାଜି ରାଉତର ଆତ୍ମବଳିକୁ ଏହିପରି ବିକୃତ କରିବା ଅପଚେଷ୍ଟା ଏକ ଦୁଃଖ ଦାୟକ ଘଟଣା ରୂପେ ମୋତେ ବ୍ୟଥିତ ଓ ମର୍ମାହତ କରିଛି ।

> "ବାଜି ରାଉତ ଇତିହାସ ନା କିମ୍ବଦନ୍ତୀ ?
> ସତ୍ୟ ନା ଅର୍ଦ୍ଧସତ୍ୟ ? ଏହି ପ୍ରଶ୍ନର ସାମ୍ନା
> କରିବାକୁ ପଡ଼ୁଛି ଅନେକ ସମୟରେ
> ଅନେକଙ୍କୁ । ରାଜନୀତିର ଏହି ଅପଚେଷ୍ଟା
> ଇତିହାସକୁ କବଳିତ କରିବାକୁ ପ୍ରୟାସ
> କରିଛି—ମାତ୍ର ପାରି ନାହିଁ । ସେହିଭଳି
> ଏକ ପ୍ରୟାସର ପ୍ରତିବାଦ କରିଛନ୍ତି
> ଶ୍ରୀଯୁକ୍ତା ମାଳତୀ ଚୌଧୁରୀ ।"

ବାଜି ରାଉତ ଢେଙ୍କାନାଳର ଭୁବନ ନିକଟସ୍ଥ ନୀଳକଣ୍ଠପୁର ଗ୍ରାମର ଅଧିବାସୀ ଥିଲା । ତାର ବୟସ ଥିଲା ମାତ୍ର ବାରବର୍ଷ । ୧୯୩୮ ମସିହା ଅକ୍ଟୋବର ମାସ ୧୧ ତାରିଖ ରାତି ଅଧରେ ଡଙ୍ଗା ଜଗି ଶୋଇଥିଲା । ଢେଙ୍କାନାଳ ରାଜା ଓ ବ୍ରିଟିଶ ସରକାର ମିଳିତ ଫୌଜ ତାକୁ ନଦୀପାରି ହେବା ପାଇଁ ଡଙ୍ଗା ମାଗିଥିଲେ । ମାତ୍ର ସେ ଡଙ୍ଗା ନ ଦେବାରୁ ତାକୁ ନିର୍ମମ ପ୍ରହାର କଲେ । ସେ ଚିତ୍କାର କରିବାରୁ ପ୍ରଜାମଣ୍ଡଳର ଅନ୍ୟାନ୍ୟ କର୍ମୀ ଯଥା ନଟ, ହୁରୁଳି, ଫଗୁ, ଗୁରୁ ଏବଂ ଅନ୍ୟାନ୍ୟ ଗ୍ରାମବାସୀମାନେ ସେଠାରେ ପହଞ୍ଚି ଡଙ୍ଗା ଦଉଡ଼ି ଧରି ଡଙ୍ଗା ଅଟକାଇଲେ । ଫୌଜ ଗୁଳି କରିବାରୁ ସେମାନେ ଅକାଳ ମୃତ୍ୟୁ ମୁଖରେ ପଡ଼ିଲେ । ଏ ସମସ୍ତ ଘଟଣା ସେହି ମାସରେ 'କୃଷକ' ପତ୍ରିକାରେ ପ୍ରକାଶ ପାଇଥିଲା । ସେ ପତ୍ରିକାର ସମ୍ପାଦକ ଥିଲେ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ସେ ମଧ୍ୟ ଏ ଘଟଣା ଉପରେ ଏକ ଲେଖା ଲେଖି ଆଲୋକପାତ କରିଥିଲେ । ଏସବୁ କଥା ମୋ ଅନୁଭୂତିର ବିଷୟ ।

ମୁଁ ସେତେବେଳେ ଆସନ୍ନପ୍ରସବା ଥିଲି । ମୁଁ ମୂଳରୁ ଢେଙ୍କାନାଳ ଏବଂ ଗଡ଼ଜାତ ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ଥିଲେ ମଧ୍ୟ ସେ ସମୟରେ ମୋର ଶାଶୁଙ୍କ ନିର୍ଦ୍ଦେଶ କ୍ରମେ ବାହାରକୁ ଯାଇ ନ ଥିଲି । ମାତ୍ର ପ୍ରଜାମଣ୍ଡଳର ବହୁ ନେତା ଓ କର୍ମୀମାନଙ୍କଠାରୁ ଏ ସମସ୍ତ କଥା ଶୁଣିଛି ଏବଂ ଆନନ୍ଦ ତଥା ଗର୍ବ ଅନୁଭବ କରିଛି ।

ଢେଙ୍କାନାଳର ଏହି ବୀର ସହିଦ୍‌ମାନଙ୍କର ଶବ ସାଥୀ ପ୍ରଭୃତିଙ୍କ ଦ୍ୱାରା ଯେନାପୁର ଅଣାଯାଇଥିଲା ଏବଂ ସେଠାରୁ ରେଲରେ କଟକ ପଠାଯାଇଥିଲା । ଏହି ସହିଦମାନଙ୍କର ଶବ ଶୋଭାଯାତ୍ରାରେ ଲକ୍ଷାଧିକ ଲୋକ ଯୋଗ ଦେଇଥିଲେ । ଏଭଳି ବିରାଟ ଶୋଭାଯାତ୍ରା କଟକ ସହରରେ ଲୋକେ ଏଥି ପୂର୍ବରୁ ଦେଖି ନ ଥିଲେ । ପ୍ରତ୍ୟେକ ଶବକୁ ପୁଷ୍ପାଚ୍ଛାଦିତ କରି ଏକ ଏକ ଶଗଡ଼ରେ ରଖା ଯାଇଥିଲା ଏବଂ ପ୍ରତ୍ୟେକ ଶଗଡ଼ରେ ଜଣେ ଜଣେ ସାଥୀ ସାରଥୀ ଥିଲେ । ସେମାନେ ହେଲେ ଭଗବତୀ ପାଣିଗ୍ରାହୀ, ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ରବି ଘୋଷ ଏବଂ ମୋତିଲାଲ ତ୍ରିପାଠୀ ପ୍ରଭୃତି । ଏହି ବିରାଟ ଶୋଭାଯାତ୍ରାରେ ଶବମାନଙ୍କୁ ନେଇ ଖାନନଗର ମଶାଣିରେ ଗୋଟିଏ ଚିତାରେ ଦାହ କରାଯାଇଥିଲା । ସେସବୁ ସ୍ମୃତି ଏବେ ବି ମନେପଡ଼େ ।

ସମ୍ପ୍ରତି ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ତାଙ୍କ ପ୍ରଣୀତ "ପଥ ଓ ପୃଥିବୀ" ନାମକ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି

ଯେ ବାଜି ରାଉତ ପ୍ରଜାମଣ୍ଡଳ ଆନ୍ଦୋଳନରେ ଶହୀଦ ହୋଇ ନାହିଁ । ବାଜି ରାଉତର ମାଆ ସେ ଥରେ ନିର୍ବାଚନ ପ୍ରଚାର ପାଇଁ ନୀଳକଣ୍ଠପୁର ଗ୍ରାମକୁ ଏବଂ ବାଜି ରାଉତ ଘରକୁ ଯାଇଥିବା ବେଳେ ଶ୍ରୀ ମହାନ୍ତିଙ୍କୁ କୁଆଡ଼େ କହିଥିଲେ ଯେ ବାଜି ଡଙ୍ଗାଘାଟକୁ ଯାଇ ନ ଥିଲେ କି ଡଙ୍ଗା ଦଉଡ଼ି ଧରି ଡଙ୍ଗା ଅଟକାଇ ନଥିଲେ । ସେ ତାଙ୍କ ବାଡ଼ିରେ ପଣସ ଗଛ ମୂଳରେ ନଈ ଅଡ଼ଡ଼ାରେ ଛିଡ଼ା ହୋଇ ଲୋକମାନେ ଡଙ୍ଗାଦଉଡ଼ି ଧରି ଡଙ୍ଗା ଅଟକାଇବା ଦୃଶ୍ୟ ଦୂରରୁ ଦେଖୁଥିଲେ । ଫୌଜ ଗୁଳି କଲେ ଗୋଟାଏ ଗୁଳି ଛିଟିକି ବାଜି ଦେହରେ ଲାଗିଗଲା । ବାଜି ସେଠାରେ ଟଳିପଡ଼ିଲେ । ଶ୍ରୀ ମହାନ୍ତିଙ୍କର ଏଭଳି ଲେଖାର ପରିଣାମ ସମ୍ବନ୍ଧରେ ସେ ସଚେତନ ଥିଲାପରି ଜଣାଯାଏ । ବାଜି ରାଉତ ଆଜି ଏକ ଜାତୀୟ ଅନୁଷ୍ଠାନ ଏବଂ ସେ ଥିଲେ ଭାରତର ମୁକ୍ତି ସଂଗ୍ରାମ ଓ ସାମନ୍ତବାଦୀ ଶାସନ ତଥା ସାମନ୍ତବାଦ ବିରୋଧରେ ଏକ ସଚେତନ ସୈନିକ । ଆଗାମୀ ବଂଶଧରଙ୍କ ପାଇଁ ସେ ଶକ୍ତି ଓ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ଓ ରହିବେ । ବାଜି ରାଉତ ଦେହରେ ଅଲକ୍ଷ୍ୟରେ ଗୁଳି ବାଜିଥିଲେ ତା ବାପ, ମା' ତା ଶବକୁ ଅନ୍ୟମାନଙ୍କ ହାତରେ ଛାଡ଼ି ଦେଇଥାନ୍ତେ କି ? ତା ଛଡ଼ା ଅନ୍ଧାର ରାତିରେ ଝଡ଼ବର୍ଷା ଲାଗି ରହିଥିବାବେଳେ ୧୨ ବର୍ଷର ଛୋଟ ପିଲା ବାଜି, ବାଡ଼ିରେ ଛିଡ଼ା ହୋଇ ନଈ କୂଳରେ କଣ ହେଉଥିଲା ତାହା ଦେଖିବା ସମ୍ଭବ କି ? ଏହା ବ୍ୟତୀତ ବାଜି ରାଉତର ମାଆ ମରିବାର ଏକ ଯୁଗ ବିତି ଯିବା ପରେ ଏସବୁ କଥା ଲେଖିବା ଅଯୌକ୍ତିକ ଏବଂ ଅବିଶ୍ୱାସୀ ମନେହେବା ସ୍ୱାଭାବିକ । ବର୍ତ୍ତମାନ କିଏ ତାଙ୍କ କଥାର ଜବାବ ଦେବ ? ଓଡ଼ିଶାର ଜନମତ ଏଭଳି ଅପପ୍ରଚାରରେ ବିଭ୍ରାନ୍ତ ହେବେ ନାହିଁ ବୋଲି ମୋର ବିଶ୍ୱାସ ଓ ଅନୁରୋଧ ।

("ବାଜି" ପତ୍ରିକା-ସୁବର୍ଣ୍ଣ ବିଶେଷାଙ୍କ ୧୯୯୭ରୁ ଉଦ୍ଧୃତ)



"କର୍ମୀ ଭାଇ-ଭଉଣୀମାନେ ଘର ଘର ବୁଲି ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ଯେଉଁ ଅର୍ଥ ତାଙ୍କର କାମକୁ ଆଗେଇ ନେବା ପାଇଁ ସଂଗ୍ରହ କରିଛନ୍ତି ତାହା ସରକାରଙ୍କ ଏହି ଅଯାଚିତ Award ବା ପୁରସ୍କାରଠାରୁ ସହସ୍ର ଗୁଣରେ ମୂଲ୍ୟବାନ । ଏଥିରେ କଳାଧନର ଟିକେମାତ୍ର ବାସନା ନାହିଁ । ସରକାରଙ୍କ ପାଖରେ କଳାଧନର ବୋଝ ଅଧିକ ହୋଇଗଲେ ସେଥିରୁ ଏ Award ବା ପୁରସ୍କାର ରୂପରେ ଦାନ ଦେଇ ମୁକ୍ତିଲାଭ କରନ୍ତୁ—ନିରୀହ ଲୋକମାନଙ୍କ ଉପରେ ଲଦି ଦେଇ ।"

—ମାଳତୀଦେବୀ

# ସେବା ମାର୍ଗର ପଥିକ

( ୧୯୮୭ ନଭେମ୍ବର ୨୩ ତାରିଖ ଦିନ ଆମର ପରମ ପ୍ରିୟ ନବକୃଷ୍ଣ ଚୌଧୁରୀଙ୍କର ଜନ୍ମତିଥିରେ ଭୁବନେଶ୍ୱର-ଠାରେ ଅନୁଷ୍ଠିତ ଏକ ବିରାଟ ଜନ ସମାବେଶରେ ଉତ୍କଳ ନବଜୀବନ ମଣ୍ଡଳର କର୍ମୀ, ଏବଂ ସହଯୋଗୀମାନଙ୍କ ଦ୍ୱାରା ସଂଗୃହୀତ ଲକ୍ଷାଧିକ ଟଙ୍କାର ଥଳି ଭେଟି ଆଦରଣୀୟା ନୁମା (ମାଳତୀ ଦେବୀ ଚୌଧୁରୀ)ଙ୍କ ହାତରେ ଏହି ଅନୁଷ୍ଠାନର ପରମ ହିତୈଷୀ ବନ୍ଧୁ ଶ୍ରୀ ଗୋପୀନାଥ ମହାନ୍ତି ଅର୍ପଣ କରିଥିଲେ । ଏହି ଉପଲକ୍ଷେ ନୁମା ଦେଇଥିବା ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା । )

ଆଜି ଶ୍ରଦ୍ଧେୟ ନବବାବୁଙ୍କର ଜନ୍ମତିଥି । ସେ ଉପଲକ୍ଷେ ଆମେ ଏଠାରେ ସମବେତ ହୋଇଛେ । ତାଙ୍କ ସହିତ ମୋର ମିଳିତ ହେବା ଏକ ଅଭିନବ ଘଟଣା, ଏକ ଆଶ୍ଚର୍ଯ୍ୟ ମୁହୂର୍ତ୍ତ । ସେ ଉତ୍କଳୀୟ ମୁଁ ବଙ୍ଗୀୟ । ମାତ୍ର ଦୀର୍ଘକାଳର ଏକତ୍ର ବସବାସରେ ଏହି ଅବିସମ୍ବାଦିତ ସତ୍ୟଟା ଆମ ଦୁହିଙ୍କର କାହାରି ମନରେ ତିଳେମାତ୍ର ରେଖାପାତ କରି ନାହିଁ କେବେହେଲେ । ପରସ୍ପରକୁ ଏକ ଏବଂ ସମାନ ପଥର ପଥିକ ବୋଲି ଭାବି ବାଟ ଚାଲିଛୁ । ପ୍ରାଦେଶିକତାର କ୍ଷୁଦ୍ର ଗଣ୍ଡି ଭିତରେ ଆମେ କେବେ କାତର ହୋଇ ପଡ଼ି ନାହୁଁ । ମୋର ଜନ୍ମତିଥି ଦିନ ମୁଁ ସୁଜରାଟରେ ଅବସ୍ଥାନ କରୁଥିବା ବେଳେ ସ୍ନେହାସ୍ପଦ ଜୟକୃଷ୍ଣ ତାର ପଠେଇଲେ ଥଳିଟିଏ ସଭାରେ ଅର୍ପି ପଠାଇବାକୁ; ମୋର ମନ ମାନିଲା ନାହିଁ । ମୁଁ ଯେ ଆଜି ଦିନଟିର ଅପେକ୍ଷାରେ ଥିଲି ! ଯେଉଁ ଦିନଟି ଉଭୟଙ୍କ ପାଇଁ ଏକ ସ୍ମରଣୀୟ ଦିନ ହେବ; ଯେଉଁଦିନ କର୍ମୀ ଭାଇ ଭଉଣୀ-ଙ୍କର ସଂଗୃହୀତ ଅର୍ଥ ଦେଶର ମଙ୍ଗଳ କାର୍ଯ୍ୟର ବ୍ୟୟାର୍ଥେ ଉଭୟେ ମିଶି ଗ୍ରହଣ କରିପାରି ଲାଗିବ । ଏହି ଦିନଟି ସେହିଦିନ ଯେଉଁ ଦିନଟି ଆପଣମାନଙ୍କର ସ୍ନେହଶ୍ରଦ୍ଧା ଉଭୟ ନୁମା ବାପିଙ୍କର ସ୍ନେହ ଶ୍ରଦ୍ଧା ସହିତ ମିଳିତ ହୋଇ ଏକ ହୋଇଯିବ । ନବବାବୁଙ୍କୁ ସମସ୍ତେ 'ବାପି' ବୋଲି ଡାକନ୍ତି । ମୁଁ ମଧ୍ୟ ସମୟେ ସମୟେ 'ବାପି' ସମ୍ବୋଧନ କରୁଥିଲି । ତାଙ୍କର ବିନା ସହଯୋଗ ଏବଂ ସାହଚର୍ଯ୍ୟରେ ମୋର ଦେଶ ସେବା କାମ ଆଗେଇ ପାରି ନ ଥାନ୍ତା । ଝିଅକୁ ଟାଇମରେ ଦୁଧ ଖୁଆଇବା, କାନ୍ଦିଲାବେଳେ ନ ଧରିବା ଏସବୁ ଶିକ୍ଷା ସେ ମୋତେ Truly Kingଙ୍କର ଶିଶୁ ପାଳନ ବହି ପଢ଼ି ଶିଖାଇଥିଲେ ଏବଂ ଏହା ମଧ୍ୟ କହୁଥିଲେ ଯଦି ଦେଶରେ କାମ କରିବାକୁ ଚାହଁ ତେବେ ସମସ୍ତ ଧର ପିଲାଙ୍କ କାମ କଲେ ଦେଶ କାମ କରିପାରିବ, ନଚେତ୍ ପିଲା କାମରେ ହିଁ ନିଜକୁ ବ୍ୟାପୃତ ରଖିବ । ତାଙ୍କର ଏ ଶିକ୍ଷା ମୋତେ କାମ କରିବାକୁ ଯଥେଷ୍ଟ ସୁବିଧା ଦେଇଛି ।

ଏବେ ମୁଁ ଯେତେବେଳେ ବାଟ ଚାଲିବାକୁ ଶାରୀରିକ ଅକ୍ଷମତା ଉପଲବ୍ଧି କରେ ସେତେବେଳେ ଶ୍ରଦ୍ଧେୟ ରାଧାନାଥ ବାବୁଙ୍କର ଅସୀମ ଶାରୀରିକ ଶକ୍ତି ମୋତେ ବାଟ ଚାଲିବା ପାଇଁ ସାହସ ଓ ଶକ୍ତି ଦିଏ । ସେ ଏ ବୟସରେ ମଧ୍ୟ ଯୁବକ ସୁଲଭ ଚାଲି ଚଳନ ବଜାୟ ରଖିପାରିଛନ୍ତି, ତାହା ଆମମାନଙ୍କ ପକ୍ଷରେ ଏକ ଅତ୍ୟାଶ୍ଚର୍ଯ୍ୟ ଘଟଣା । ସେ ୯୦ ବର୍ଷ ପାର ହୋଇ ଯାଇଥିଲେ ମଧ୍ୟ ବହୁ ସମସ୍ତ ଧରି ଠିଆହୋଇ ଏବେ ବି ତାଙ୍କର ବକ୍ତବ୍ୟ ଲଗେଇ ଦେଇ ପାରୁଛନ୍ତି । ଆଜି ଏହି ସଂଗୃହୀତ ଅର୍ଥର ମୂଲ୍ୟ ଏକ ଅମୂଲ୍ୟ ସମ୍ପଦ ପରି ମୋ ବିଚାରରେ ପରିଗଣିତ ହୋଇଛି । କାରଣ ଏହି ଥଳିରେ ଗଞ୍ଜାମ, ଫୁଲବାଣୀ, କୋରାପୁଟ, କେନ୍ଦୁଝର, ସୁନ୍ଦରଗଡ଼ ଓ ଢେଙ୍କାନାଳ ଜିଲ୍ଲାର ଅଗଣିତ ଆଦିବାସୀ, ହରିଜନ ଓ ଅନ୍ୟ ଗରିବ ଶ୍ରେଣୀର ଲୋକ ଏବଂ ଅତ୍ୟନ୍ତ ଛୋଟ ଛୋଟ ଦୋକାନୀ ଓ ବେପାରୀମାନଙ୍କର ଝାଳବୁହା ଧନ ଟଙ୍କାଏ ବା ପାଞ୍ଚ ଟଙ୍କାର ଚାନ୍ଦା ରୂପେ ସନ୍ନିହିତ ରହିଛି । ଏହା କର୍ମୀ ଭାଇ-ଭଉଣୀମାନଙ୍କ ଦ୍ୱାରା କେବଳ ଏକ ପରିଶ୍ରମ ନୁହେଁ ମାତ୍ର ଏହାଦ୍ୱାରା ଆମ ଅନୁଷ୍ଠାନର ଉଦ୍ଦେଶ୍ୟ ଓ କାର୍ଯ୍ୟାବଳୀ ଏ ରାଜ୍ୟର ଗାଁଗହଳି ଓ ସହରବଜାରର ଅଗଣିତ ଲୋକଙ୍କ ନିକଟରେ ପହଞ୍ଚି ପାରିଛି ଏହା କିଛି କମ୍ କଥା ନୁହେଁ । ହୁଏତ ଅନେକେ ମୋର ନାଁ ସେମାନଙ୍କ ପାଖରୁ ପ୍ରଥମ କରି ଶୁଣିଲେ । ଉତ୍ସାହିତ ହୋଇ ଅର୍ଥଦାନ ମଧ୍ୟ କଲେ ।

ଆମର କର୍ମ ଏବଂ ସାଧନା କିଛିଟା ଯେ ସାର୍ଥକ ହୋଇ ପାରିଛି ତାହା ଏହି ସଂଗୃହୀତ ଅର୍ଥ ଜଣେଇ ଦେଉଛି । ସମ୍ବାଦ ପତ୍ରରେ ପ୍ରକାଶିତ ସମ୍ବାଦରୁ ଦେଖୁଛି ଯେ ଆମର ଦେଶସେବା କାର୍ଯ୍ୟ ସକାଶେ କିଛି ଅର୍ଥ ଆମକୁ ପ୍ରତିଦାନ

ସ୍ୱରୂପ ଦେବାକୁ ଏ ସରକାର କୁଆଡ଼େ ସ୍ଥିର କରିଛନ୍ତି । କର୍ମୀ ଭାଇ-ଭଉଣୀମାନେ ଘର ଘର ବୁଲି ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ଯେଉଁ ଅର୍ଥ ତାଙ୍କର କାମକୁ ଆଗେଇ ନବା ପାଇଁ ସଂଗ୍ରହ କରିଛନ୍ତି ତାହା ସରକାରଙ୍କ ଏହି ଅଯାଚିତ Award ବା ପୁରସ୍କାରଠାରୁ ସହସ୍ର ଗୁଣରେ ମୂଲ୍ୟବାନ । ଏଥିରେ କଳାଧନର ତିଳେମାତ୍ର ବାସନା ନାହିଁ । ସରକାରଙ୍କ ପାଖରେ କଳାଧନର ବୋଝ ଅଧିକ ହୋଇଗଲେ ସେଥିରୁ ଏ Award ବା ପୁରସ୍କାର ରୂପରେ ଦାନ ଦେଇ ମୁକ୍ତିଲାଭ କରନ୍ତୁ—ନିରୀହ ଲୋକମାନଙ୍କ ଉପରେ ଲଦି ଦେଇ । କର୍ମୀ ଭଉଣୀମାନେ କାଲି ସଂକଳ୍ପ କରିଛନ୍ତି ଯେ ଏହିଠାରେ ତାଙ୍କର ସଂଗ୍ରହ କରିବାର କାମ ଇତି ହେବ ନାହିଁ । ପ୍ରତିବର୍ଷ କିଛି କିଛି ସଂଗ୍ରହ କରି ନବଜୀବନ ମଣ୍ଡଳ ପାଣ୍ଠିକୁ ସମୃଦ୍ଧ କରିବେ । ତାଙ୍କର ଏ ସଂକଳ୍ପ ନିଶ୍ଚୟ ଫଳବତୀ ହେବ ଏବଂ ଭାରତ ସେବକ ସମାଜ ଓ ଲୋକ ସେବକ ମଣ୍ଡଳ ପରି ଏକ ସ୍ଥାୟୀ ଆର୍ଥିକ ଦୃଢ଼ ସଂସ୍ଥା, ସେମାନେ ଆଦିବାସୀ ଓ ହରିଜନଙ୍କ ମଙ୍ଗଳ ପାଇଁ ଗଢ଼ି-ପାରିବେ । ସେମାନଙ୍କର ଏ ସଂକଳ୍ପ ପୂର୍ଣ୍ଣ ହେବ ବୋଲି ମୋର ଆଶା ଏବଂ ପୂର୍ଣ୍ଣ ବିଶ୍ୱାସ ।

ସେମାନେ ଯେପରି ଅସୀମ କଷ୍ଟ ସ୍ୱୀକାର କରି ଆଜି-ପର୍ଯ୍ୟନ୍ତ କାମ କରି ଆସିଛନ୍ତି ତାର ପଟାନ୍ତର ନାହିଁ । ଖଣି ଅଞ୍ଚଳରେ କାମ କରୁଥିବା ତୁଳସୀ ମୁଣ୍ଡା ଓ ଜହ୍ନଅପା, ସରକାର ନବଜୀବନ ମଣ୍ଡଳର ଗ୍ରାଣ୍ଟ କାଟି ଦେଲାବେଳେ ମୁଠି ଭିକ ଭାବୁ ଶ୍ରମିକମାନଙ୍କ ଭିତରେ ବନ୍ଦୋବସ୍ତ କରି ତାଙ୍କର ଗୁଜରାଣ ମେଣ୍ଟାଉଥିଲେ । ବାଲୱାଡ଼ି ପାଇଁ ଗ୍ରାଣ୍ଟ ବନ୍ଦ୍ ହୋଇଯିବାରୁ ବଛିଆ ଅପା କେନ୍ଦ୍ର ବଗିଚାରେ ଶାଗ, ପରିବା ଉପୁଜାଇ ହାଟରେ ବିକି କରି ବାଲୱାଡ଼ି ଖର୍ଚ୍ଚ ତୁଲାଉଥିଲେ । ସେଦିନ ସବୁ କର୍ମୀ ଭଉଣୀମାନଙ୍କ ପାଖରେ କି ଆନନ୍ଦର ଦିନ ଥିଲା । ଆଜି ଯେତେବେଳେ ସମାଜ ମଙ୍ଗଳ ବୋର୍ଡ଼ (Social Welfare Board) ପାଖରେ ନବଜୀବନ ମଣ୍ଡଳ କାମର କୈଫିୟତ ଦେବାପାଇଁ ନିର୍ଦ୍ଦେଶ ଆସେ—ହସ ମାଡ଼େ ? ଶିଶୁ ମଙ୍ଗଳ କାର୍ଯ୍ୟ ପାଇଁ ଯେଉଁ ଅନୁଦାନ ମିଳିବ ବୋଲି ଘୋଷଣା କରାଯାଇଛି କେତେକ ହିତୈଷୀ ବନ୍ଧୁ ସରକାରର ଏହି ଅନୁଦାନକୁ ଗ୍ରହଣ ନ କରିବା ପାଇଁ ପରାମର୍ଶ ଦେଇ ପତ୍ର ଲେଖିଛନ୍ତି । ଏହି ପରାମର୍ଶକୁ ଶିରୋଧାର୍ଯ୍ୟ କରିନବା ପାଇଁ ମୁଁ ଦ୍ୱିଧା ବୋଧ କରୁଛି । କାରଣ ମୁଁ ଦେଖିଛି ଯେ ସେହି ହିତୈଷୀ ବନ୍ଧୁ-ମାନେ ନିଜେ ସାମାନ୍ୟ ପ୍ରୟୋଜନରେ ସରକାର ପାଖରେ ଠିଆହୋଇ ପଡ଼ୁଛନ୍ତି । ଏହି ଅର୍ଥଦାନର ଯଦି କିଛି ସର୍ତ୍ତ ଥିବ ଆମର ଟ୍ରଷ୍ଟି ବନ୍ଧୁମାନେ ଆଦୌ ଗ୍ରହଣ କରିବେ ନାହିଁ, ଏ ବିଶ୍ୱାସ ମୋର ଅଛି । ସେହିମାନଙ୍କ ଉପରେ ଅନୁଦାନ ଗ୍ରହଣ କରିବା ନ କରିବା ନିର୍ଭର କରିବ, ମୋ ନାଁରେ ଦିଆଯାଉଥିଲେ ମଧ୍ୟ ମୋ ଉପରେ ନୁହେଁ ।

ଆଜିକାଲି ମୋର ଶକ୍ତି ସୀମିତ । ମୋ ମନର ସବୁକଥା ପ୍ରକାଶ କରି କହିବାର ଶକ୍ତି ମୋର ନାହିଁ । ଯାହା ଅବ୍ୟକ୍ତ ରହିଲା ତାହା ଆପଣମାନେ ନିଜ ନିଜ ବିଚାର ଶକ୍ତିରେ ଗ୍ରହଣ କରି ନେବେ । ମୁଁ ତ ଅକିଞ୍ଚନ, ଜନତାର ଏହି ସ୍ନେହ ଶ୍ରଦ୍ଧା ମୋ ପାଖରେ ଠିକ୍ ଅମୂଲ୍ୟ ସମ୍ପଦ, ଏହାର ପଟାନ୍ତର ନାହିଁ । ମୋ ହୃଦୟର ଏତିକି କୃତଜ୍ଞତା ଜଣାଉଛି ।

ପରିଶେଷରେ ମୋର ଭଉଣୀ କର୍ମୀମାନଙ୍କୁ ନିବେଦନ ଏହି ଏକଲକ୍ଷ ଟଙ୍କାର ମୋହ ଯେପରି ସେମାନଙ୍କୁ ନ ଘାରୁ । ଲୋକଙ୍କ ଭିତରେ କାମ କରିବାକୁ ଗଲେ ଏକଲକ୍ଷ ଟଙ୍କା ସମୁଦ୍ରକୁ ଗଣ୍ଡେ ପାଣି ପରି । ପ୍ରକୃତ କଥା କହିବାକୁ ଗଲେ ଲୋକ ସେବାରେ ପ୍ରାଣ ପ୍ରାଚୁର୍ଯ୍ୟର ପ୍ରୟୋଜନ ଅର୍ଥ-ଠାରୁ ଅଧିକ ଆବଶ୍ୟକ । ପ୍ରାଣରେ ସରସତା ଥିଲେ ସେ ବାଧାକୁ ବାଧା ବୋଲି ଗଣ୍ୟ କରିବ ନାହିଁ । ସେ ପ୍ରକାର ସରସତା, ପ୍ରାଣ ପ୍ରାଚୁର୍ଯ୍ୟ ପ୍ରତ୍ୟେକ ଭଉଣୀ କର୍ମୀଙ୍କ ଭିତରେ ପରିପୂର୍ଣ୍ଣ ହୋଇ ରହୁ । ବିଶେଷ କରି କାର୍ଯ୍ୟା-ଳୟରେ କାର୍ଯ୍ୟ କରୁଥିବା ପ୍ରତ୍ୟେକ ନିର୍ଦ୍ଦେଶକଙ୍କ ଭିତରେ । ସବୁ ଦିଗରୁ ପରିପୂର୍ଣ୍ଣତା ଆସିଲେ ଏ କାମ ଚାଲିବ, ନଚେତ ଶୁଖିଯିବ । ସେତେବେଳେ ପରସ୍ପରକୁ ଦୋଷାରୋପ କରୁଥିବ ସିନା କାମ ଆଗେଇବ ନାହିଁ ।

ଶେଷରେ ପ୍ରାର୍ଥନା, ଭଉଣୀମାନଙ୍କର ସାଧନା ପରିପୂର୍ଣ୍ଣ ହେଉ ।

———

# ସେବା ଓ ସଂଘର୍ଷ ସରିନାହିଁ

ପ୍ରଥମରୁ କହିରଖୁଛି, ଏଇ ପ୍ରଶ୍ନୋତ୍ତର ଶୈଳୀର ସାକ୍ଷାତ୍କାର ନୁହେଁ, ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସହ କେତୋଟି ନିବିଡ଼ ମୁହୂର୍ତ୍ତର ମନଖୋଲା ଆଳାପ ଆଲୋଚନାର ଅଂଶବିଶେଷ । ଠକ୍କର ବାପାଙ୍କ ପରାମର୍ଶ କ୍ରମେ ସେ ବିଧାନସଭାରୁ ଇସ୍ତଫା ଦେଇ ସେବା କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଦେବା ପରେ କୌଣସି ସାମ୍ବାଦିକଙ୍କୁ ସାକ୍ଷାତ୍କାର ଦେଇ ନାହାନ୍ତି । ଅରୁଣ ସୌରୀଙ୍କ ଭଳି ସାମ୍ବାଦିକଙ୍କ ସହ ତାଙ୍କର ଭଲ ସମ୍ପର୍କ ଥିଲେ ମଧ୍ୟ ସାକ୍ଷାତ୍କାର ପାଇଁ ତାଙ୍କର ଅନୁରୋଧକୁ ଏଡ଼ାଇ ଦେଇଛନ୍ତି । ମା' ରମାଦେବୀଙ୍କ ସହ ଏକତ୍ର ସେବା କାର୍ଯ୍ୟ ଆରମ୍ଭ କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ରମାଦେବୀ କଟକରେ ଆଶ୍ରମ ପ୍ରତିଷ୍ଠା କରିଥିଲେ । ମାତ୍ର ମାଳତୀଦେବୀ ୧୯୪୫ରେ ଜେଲରୁ ଫେରି ଅନୁଗୁଳରେ ଯେଉଁ 'ବାଜି ରାଉତ ଛାତ୍ରାବାସ' ଗଢ଼ିଥିଲେ ସ୍ୱାମୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ସହ ମିଶି, ତାକୁ ହିଁ କର୍ମକେନ୍ଦ୍ର କଲେ । ୧୯୪୬ରେ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ସହ ମିଶି ସେ ସେଠାରେ ନବଜୀବନ ମଣ୍ଡଳର ଆଶ୍ରମ ତିଆରି କଲେ । ସେହିଦିନଠାରୁ ପ୍ରଚାର ଓ ପୁରସ୍କାରଠାରୁ ନିଜକୁ ଯଥେଷ୍ଟ ଦୂରତାରେ ରଖି ପ୍ରାୟତଃ ଓଡ଼ିଶାର ଦୁର୍ଗମ ଅଞ୍ଚଳର ଅବହେଳିତ ଲୋକଙ୍କ ସମସ୍ୟା ଓ ସଂଗ୍ରାମ ଭିତରେ ସେ ଜୀବନକୁ ଅନୁଭବ କରିଛନ୍ତି । କୋରାପୁଟ, ଗଞ୍ଜାମ, ଢେଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲାରେ ବେଠି, ଭେଟି, ପାହୁଣୀ ଓ ମୁଠାଦାରୀ ଆଦି ଶୋଷଣ ପ୍ରଥାର ବିଲୋପ ତାଙ୍କ ଉଦ୍ୟମର ଫଳ ।

କବି ବନ୍ଧୁ ଖଗେଶ୍ୱର ମହାପାତ୍ରଙ୍କ ସହ ସେଦିନ ସନ୍ଧ୍ୟାରେ ଅନୁଗୁଳସ୍ଥିତ ବାଜି ରାଉତ ଛାତ୍ରାବାସରେ ପହଞ୍ଚିଲା ବେଳକୁ ନୁମା ( ମାଳତୀଦେବୀଙ୍କୁ ସମସ୍ତେ ଏହି ନାଁରେ ଡାକନ୍ତି ) ଖବର କାଗଜ ପଢ଼ୁଥାନ୍ତି । ୮୩ ବର୍ଷ ବୟସରେ ବି ସେ ନିୟମିତ ଖବରକାଗଜ ପଢ଼ନ୍ତି । ନିଜେ ନ ପାରିଲେ ଅନ୍ୟକୁ କହନ୍ତି ପଢ଼ି ଶୁଣାଇବା ପାଇଁ । ପ୍ରତିଦିନ ପ୍ରାୟ ୧୦।୧୨ଟି ଚିଠି ଲେଖନ୍ତି ନିଜ ହାତରେ । ଆଶ୍ରମର ପିଲାଙ୍କ ପଢ଼ାପଢ଼ି ଓ ଭଲମନ୍ଦ ପ୍ରତି ସଜାଗ ଦୃଷ୍ଟି ରଖିଥାନ୍ତି । କିନ୍ତୁ ଏପଟେ ନାନା ପ୍ରକାର ରୋଗର ଶିକାର ହୋଇ ତାଙ୍କର ସ୍ୱାସ୍ଥ୍ୟ ଖୁବ୍ ଭାଙ୍ଗି ପଡ଼ିଛି । ବେଶୀ ସମୟ କଥା ହୋଇ ପାରୁନାହାନ୍ତି । ଚାଲି ଚାଲି ବୁଲିଡ଼େ ବାହାରିଲେ ଅନ୍ୟ କାହାରି ସାହାଯ୍ୟ ନେବାକୁ ପଡ଼ୁଛି । ଅଥଚ ଆଶ୍ରମ, ଏଇ ଛୋଟ ଛୋଟ ପିଲାଙ୍କ ଭବିଷ୍ୟତ ଚିନ୍ତା ଓ ସେବା ତାଙ୍କୁ ଏତେ ଘାରିଛି ଯେ, ଝିଅ ପାଖରେ ମଧ୍ୟ ସେ ରହି ନ ପାରି ଆଶ୍ରମକୁ ଚାଲି ଆସିଲେ ।

ନୁମାଙ୍କ ଜୀବନକୁ ଖୁବ୍ ପ୍ରଭାବିତ କରିଛନ୍ତି ରବୀନ୍ଦ୍ର ନାଥ ଠାକୁର । ତାଙ୍କର ଜନ୍ମ କଲିକତାର ଏକ ବଙ୍ଗାଳୀ ପରିବାରରେ । ୧୯୦୪ ମସିହା ଜୁଲାଇ ୨୬ରେ । ସେତେ-ବେଳର ବ୍ରିଟିଶ୍ ଶିକ୍ଷା ପଦ୍ଧତିକୁ ବର୍ଜନ କରିବାକୁ ଗାନ୍ଧୀଜୀଙ୍କ ଆହ୍ୱାନକ୍ରମେ ସେ ଶାନ୍ତିନିକେତନରେ ପାଠ ପଢ଼ିଥିଲେ । ନୁମା କହନ୍ତି "ବେଳେ ବେଳେ ବସିଛି, ମନ ଖରାପ ହେଉଛି । ହଠାତ୍ ଗୁରୁଦେବଙ୍କର ପୋଶ୍‌ଟର ମନ ଭିତରକୁ ଆସିଯାଉଛି । ତାପରେ ଆଉ ଦୁଃଖ କ'ଣ ? କି ଅଦ୍ଭୁତ ପ୍ରେରଣା । ସେ ମତେ ନାତୁଣୀ ପରି ଭଲ ପାଉଥିଲେ । "ତାପରେ ଦୀର୍ଘ ଶ୍ୱାସଟିଏ ଛାଡ଼ି ନୀରବି ଗଲେ ନୁମା । ଗୁରୁଦେବଙ୍କ ପ୍ରଭାବରେ ନୁମାଙ୍କର ସଙ୍ଗୀତ ପ୍ରତି ଖୁବ୍ ଆଗ୍ରହ । ସେ ଆଗେ ନିଜେ ବୀଣା ବଜାଇ ଗୀତ ଗାଉଥିଲେ ମଧ୍ୟ । ଏବେ ବୀଣାଟି ଥୁଆ ହୋଇଛି ଗୋଟିଏ ଘର ଭିତରେ । ଅତୀତ ଅତୀତ ହୋଇଯାଇଛି । ଏବେ କେବଳ ସ୍ମୃତିସ୍ମରଣର ନିଷ୍ପ୍ରଭ ସମୟ । ତାଙ୍କ ମତରେ—"ସମାଜ ସେବା ମଧ୍ୟ ଭିକ୍ଷା ନୁହେଁ, ଏଇମିତି ଏକ କଳା ସଙ୍ଗୀତ ଭଳି ।"

ଜୀବନରେ କିଛି ଗୋଟେ ହେବାକୁ ଚିନ୍ତା କରି ନଥିଲେ ନୁମା । "ଦୁଃଖ ପାଉଚି, ଲୋକଙ୍କର ଦୁଃଖ ଦେଖି । ଶୋଷଣ ଦେଖି । କଷ୍ଟ ଦେଖି । ସେମାନଙ୍କୁ ନେଇ ସେମାନଙ୍କ ପାଇଁ କିଛି କରିବାକୁ ମନସ୍ଥ କରିଛି । ବାସ୍ ।" ନୁମା—ସମାଜବାଦୀ (Socialist) ଚିନ୍ତାଧାରା; ପୁଣି ସେ ଗାନ୍ଧୀଜୀଙ୍କ ଅହିଂସା ନୀତିର ଉପାସିକା ହେଲେ ମଧ୍ୟ

ସେତେଟା ନରମ ନୁହଁନ୍ତି । ଅତିମାତ୍ରାରେ ସ୍ପଷ୍ଟବାଦୀ, ଦୁଃସାହସିକ, କ୍ରୋଧୀ ସ୍ୱଭାବର ସେ । କେବେ ଠାକୁରଙ୍କୁ ଜୁହାର ହେଇ ନାହାନ୍ତି ବା ସେଥିରେ ବିଶ୍ୱାସ ମଧ୍ୟ କରନ୍ତି ନାହିଁ । ୧୯୫୦/୫୧ର କଥା । ନବବାବୁ ମୁଖ୍ୟମନ୍ତ୍ରୀ ଥାଆନ୍ତି । ଅନୁଗୁଳ ନିକଟରେ ଉତ୍କଳେଇ ଠାରେ 'ନେପାଳୀ ବାବା' ନାମରେ ୧୬/୧୭ ବର୍ଷର ପିଲାଟିଏ ଚେରମୂଳିକା ଔଷଧ ବାଣ୍ଟୁଥାଏ । ହଜାର ହଜାର ଲୋକ ତାର ହୁକୁମ ଔଷଧ ନେବାକୁ ଏମିତି ଗହଳି ଜମେଇ ଅପରିଷ୍କାରରେ ପଡ଼ି ରହୁଥାନ୍ତି ଯେ, ହଇଜା ଓ ଅନ୍ୟାନ୍ୟ ରୋଗରେ ସେତେବେଳେ ପ୍ରାୟ ୧୬୦୦ ଲୋକ ପ୍ରାଣ ହରାଇଥିଲେ । ଏପରିକି ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ ମଧ୍ୟ ସେଇ ତଥାକଥିତ ବାବାଙ୍କ ନିକଟକୁ ଆସିଥିଲେ । ସେଠି ୧୪୪ ଧାରା ଜାରି କରିବାକୁ ନୁମା ନବବାବୁଙ୍କୁ ବାଧ୍ୟ କଲେ । ନବବାବୁ 'ଧର୍ମ ନିରପେକ୍ଷ ରାଷ୍ଟ୍ର' ଆଳରେ ଆଇନଗତ ଅସୁବିଧା ଦେଖାଇଲେ କିନ୍ତୁ, ନୁମା କର୍ମୀମାନଙ୍କୁ ସାଥୀରେ ନେଇ ସେଠାରେ ପହଞ୍ଚି ନେପାଳୀ ବାବାଙ୍କୁ ଘୋଷାରି ଆଣି ସେ ଜାଗା ଛାଡ଼ିବାକୁ ନିର୍ଦ୍ଦେଶ ଦେଇଥିଲେ "ଅନ୍ଧବିଶ୍ୱାସରେ ଲୋକମାନେ ମରିବେ, ଇଏ କି ଧର୍ମନିରପେକ୍ଷତା ?" ନୁମା ବିରକ୍ତ ହୋଇଉଠିଲେ ।

ଏମିତି ଅନେକ ଦୃଷ୍ଟାନ୍ତ ଅଛି । ନୀତି ଓ ଆଦର୍ଶ ଦୃଷ୍ଟିରୁ ନୁମା ଯାହା ଥରେ ସ୍ଥିର କରନ୍ତି ସେଥିରେ ତିଳେ ମାତ୍ର ବ୍ୟତିକ୍ରମ ହେଲେ ଭୀଷଣ ଉତ୍ତ୍ୟକ୍ତ ହୋଇପଡ଼ନ୍ତି । ସେଥିପାଇଁ ତାଙ୍କ ପାଖରେ କେହି କର୍ମୀ ବେଶିଦିନ ତିଷ୍ଠିବା ଏକରକମ ଦୁଃସାଧ୍ୟ ବୋଲି ତାଙ୍କର କେତେକ ସହକର୍ମୀ କହନ୍ତି । ସେମାନେ ପୁଣି କହନ୍ତି ଯେ, ଏସବୁ ସତ୍ତ୍ୱେ ନୁମାଙ୍କ ଭିତରେ ସ୍ନେହ ଓ ସମବେଦନାପୂର୍ଣ୍ଣ ନିର୍ମଳ ହୃଦୟଟିଏ ଅଛି । ନୁମା ବିପ୍ଳବୀ । ପାଦରେ ବୁଲି ବୁଲି ସେ କୋରାପୁଟ, ସୁନ୍ଦରଗଡ଼, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳ ବୁଲିଛନ୍ତି । ତାଙ୍କର କାମ ଦେଖିଲେ ସେ ଗାଳି ଦେଇଥିବା କଥା ଭୁଲି ହୋଇଯାଏ । ଏବେ ପ୍ରତି ସନ୍ଧ୍ୟାରେ ଛୋଟ ଛୋଟ ପିଲାଙ୍କ ସହ କିପରି ଗେଲ ହୁଅନ୍ତି ଓ ଗଛରେ ଚଢିଥିବା ବା ଦୁଷ୍ଟାମୀ କରୁଥିବା ପିଲାଟି ଉପରେ କିପରି ବିରକ୍ତ ହୁଅନ୍ତି ତାହା ଦେଖିଲେ ଏକଥା ବେଶ୍ ବୁଝି ହୁଏ ।

ନୁମାଙ୍କ ସେବା ଜୀବନର ଯଥେଷ୍ଟ ପ୍ରଭାବ ପଡ଼ିଛି, ନବବାବୁଙ୍କ ଉପରେ । "ତା ନ ହୋଇଥିଲେ ସେ ରାଜନୀତି ଛାଡ଼ିଦେଲେ କେମିତି ? ଏଇ ଯୋଉ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନ ବଦଳାଇ, ଆଉ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ନବଜୀବନ ମଣ୍ଡଳ କାର୍ଯ୍ୟରେ ଲାଗିଲେ, ସେ ସବୁ ପୁଣି ହେଲା କେମିତି ? ସେତେବେଳେ ଜବାହରଲାଲ ନେହେରୁ ମୋ ପାଖକୁ ବହୁତ ଚିଠି ଦେଇଛନ୍ତି । ମତେ ଦୋଷୀ କରି ଲେଖିଥିଲେ, "ତମେ ନବବାବୁଙ୍କୁ ଏମିତି ମତାଇଛ ଯେ ଏଠିକି କେନ୍ଦ୍ରକୁ ଆସିବା ଠିକ୍ ହବ"— ନୁମା ତାପରେ ନବବାବୁଙ୍କ କଥା ମନେ ପକେଇଲେ— "ସେ ଜଣେ Perfect gentleman ଥିଲେ ।" ଭଙ୍ଗା ଭଙ୍ଗା କଣ୍ଠସ୍ୱରରେ ଯଥେଷ୍ଟ ଆର୍ଦ୍ରତା ।

୮ ନୁମା ସ୍ୱାଧୀନତା ପୂର୍ବରୁ ଓଡ଼ିଶା କଂଗ୍ରେସର ସଭାନେତ୍ରୀ ମଧ୍ୟ ଥିଲେ । ରାଜନୀତି ଛାଡ଼ି ସେବାକୁ ଜୀବନର ବ୍ରତ କରିନେଲା ପରେ ବି ସେ ୧୯୭୭ରେ ଢେଙ୍କାନାଳ ବିଧାନସଭା ନିର୍ବାଚନମଣ୍ଡଳୀରୁ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେତେବେଳେ ନନ୍ଦିନୀଦେବୀ ଥିଲେ ଜନତା ଦଳର ପ୍ରାର୍ଥୀ "ନନ୍ଦିନୀଦେବୀ ଜନତା ଦଳର ଟିକେଟ ପାଇ ନଥିଲେ ତ ମୋର ଠିଆ ହବାର ଆବଶ୍ୟକତା ନଥିଲା । ଯୋଉ ନନ୍ଦିନୀଦେବୀ ଜରୁରୀ ପରିସ୍ଥିତି ସମୟରେ ମୁଖ୍ୟମନ୍ତ୍ରୀ ଥାଇ ମିଳିତ ଜନତା ଦଳର କର୍ମୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ, ଢେଙ୍କାନାଳରେ ଜୟପ୍ରକାଶ ନାରାୟଣଙ୍କୁ ଗୋଡ ଖୋଲି ପକେଇଦବା ଓ ମାରିଦବାର ଚକ୍ରାନ୍ତ କରିଥିଲେ, ତାଙ୍କୁ ଜନତା ଦଳ ପ୍ରାର୍ଥୀ କଲା କେମିତି ? ସେତେବେଳେ ବାପି (ନବବାବୁ) ଯାଇ ବିଜୁବାବୁଙ୍କୁ ଖୁବ୍ ବୁଝେଇଲେ । ଯୁକ୍ତିତର୍କ ହେଲା । କିନ୍ତୁ ବିଜୁବାବୁ ଲୋକଙ୍କ ନାଁରେ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ କିଛି ଦୁର୍ନୀତି ଗ୍ରସ୍ତ କଳାବଜାରୀ, ଶୋଷଣକାରୀ ଓ ଜୟପ୍ରକାଶ ନାରାୟଣଙ୍କ ଆନ୍ଦୋଳନକୁ ବିରୋଧ କରିଥିବା ସୁବିଧାବାଦୀ ଦଳାଲଙ୍କୁ ପ୍ରାର୍ଥୀ କଲେ । ସେଇଠୁ ନବବାବୁ କହିଲେ, ତମେ ଯଦି ନନ୍ଦିନୀଦେବୀଙ୍କୁ ଟିକେଟ ଦିଅ, ତେବେ ମୁଁ ନିଶ୍ଚୟ ମାଳତୀଦେବୀଙ୍କୁ ତାଙ୍କ ବିରୋଧରେ ଠିଆ କରେଇବି । ସେଇ ଜିଦାଜିଦ୍‌ରେ ମୁଁ ଠିଆ ହେଲି, ଖାଲି ଏଇ ଅନୈତିକତାର ପ୍ରତିବାଦ କରି ।"

କିନ୍ତୁ, ମାଳତୀଦେବୀ ହାରିଗଲେ । "ଆମ ପାଖରେ ତ ଅର୍ଥବଳ ନଥିଲା । ଥିଲେ ବି ଆମେ ଲୋକମାନଙ୍କୁ ଟଙ୍କା ଦେଇ ଭୋଟ କିଣିଥାନ୍ତୁ କାହିଁକି ? ଇଏ କି ନିର୍ବାଚନ ! ନନ୍ଦିନୀଦେବୀ ପଇସା ଖର୍ଚ୍ଚ କଲେ । ନାନା ପ୍ରକାରର ଛଳ, ବଳ, କୌଶଳ ଖଟେଇଲେ ବିନୋବା ବାବେ ମତେ

ସେତେବେଳେ କହୁଥିଲେ—ଲୋକଙ୍କର ମତାମତ ଯାହା, ମୁଁ ବି ଯଦି ନିର୍ବାଚନ ଲଢ଼େ, ଲୋକେ ମୋତେ ଭୋଟ ଦେବେ ନାହିଁ । ମୋର ମନ ଦୁଃଖ କରିବାର କିଛି ନଥିଲା ।” ନନ୍ଦିନୀଦେବୀ ନିର୍ବାଚନ ଜିତିବା ପରେ ମାଳତୀଦେବୀ ସୌଜନ୍ୟ ଦୃଷ୍ଟିରୁ ତାଙ୍କୁ ଅଭିନନ୍ଦନ ଜଣେଇ ନଥିଲେ । “କାହିଁକି ଅଭିନନ୍ଦନ ଜଣେଇଥାନ୍ତି ? ଲୋକେ ବୁଝିଲେ ନାହିଁ ବୋଲି ମୁଁ କ’ଣ ଏମିତି ଅନ୍ୟାୟ ଓ ଅବିବେକିତାକୁ ମାନି ନେଇଥାଆନ୍ତି ?”—ମାଳତୀଦେବୀଙ୍କ ଯୁକ୍ତି ।

ନକ୍ସଲାଇଟ୍ ନେତା ଶ୍ରୀ ନାଗଭୂଷଣ ପଟ୍ଟନାୟକଙ୍କ ସହ ନୂମାଙ୍କ ସମ୍ପର୍କ ପ୍ରାୟ ମା—ପୁଅର ସମ୍ପର୍କ ଭଳି ।

ନାଗଭୂଷଣ ପଟ୍ଟନାୟକଙ୍କୁ ଯେତେବେଳେ ପ୍ରାଣଦଣ୍ଡ ହେଇଯିବାର ଥିଲା, ସେତେବେଳେ ମାଳତୀଦେବୀ ତାଙ୍କୁ ରାଜନୈତିକ କ୍ଷମା ଦିଆଯିବା ପାଇଁ ବିଭିନ୍ନ ମହଲରୁ ସରକାରଙ୍କ ଉପରେ ଚାପ ପକାଇଥିଲେ । ଜେଲ ଭିତରେ ଥିଲାବେଳେ ସେ ବହୁ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହେଇ ପଡ଼ିଥିଲେ । ନୂମା ତାଙ୍କୁ ନୂଆ ଜୀବନ ଦେଇଛନ୍ତି କହିଲେ ଚଳେ । ଏବେ ମଧ୍ୟ ସମୟ ସମୟରେ ଶ୍ରୀ ପଟ୍ଟନାୟକ ଅନୁଗୁଳ ଅଫି ଆଶ୍ରମରେ ରହନ୍ତି । ନୂମାଙ୍କର ଏତେ ଶ୍ରଦ୍ଧା କାହିଁକି ତାଙ୍କ ପ୍ରତି ? ନୂମା କହନ୍ତି—“ତାଙ୍କ ପାଟି କ’ଣ ଚାହୁଁଥିଲ ? ଚାହୁଁଥିଲା ଏଇ ଯୋଉ ଦଳ ଅତ୍ୟାଚାର କରୁଚ; ତାହାକୁ ମାରୁ ନାହିଁ, ସେଥିରୁ ଗୋଟେ ଦି’ଟାକୁ ଖୋଲାଖୋଲି ହତ୍ୟା କରିଦେଲେ ସେମାନେ ଦବିଯିବେ । ଶାନ୍ତି ଆସିବ । ଏବେ ବି ତ ସେ ମୋ ପାଖକୁ ଆସୁଛି । ମୋତେ ଜବରଦସ୍ତି କରୁଛି—ମତେ ଏତେ ଟଙ୍କା ଦିଅ, ଏସ୍ତା ଦିଅ ସେସ୍ତା ଦିଅ । ମୁଁ କହିଲି—ତୁ ଆଉ ମୋ ପଛରେ ଲାଗ ନାହିଁ । ମୁଁ କିଛି କରିପାରିବି ନାହିଁ । ମୋ ସ୍କୁଲଟା (ଚମ୍ପତିମୁଣ୍ଡା ସ୍ଥାପିତ ଆଦର୍ଶ ବିଦ୍ୟାଳୟ) ତ ନଷ୍ଟ ହେଇ ଯାଉଛି । ମୁଁ ରକ୍ଷାକରି ପାରୁ ନାହିଁ । ମୁଁ ତୋ ପାଇଁ କ’ଣ କରିବି ।”

ନୂମାଙ୍କ ଭିତରେ ଏବେ ବହୁ ଦୁଃଖ, ମୃତ୍ୟୁଶଯ୍ୟାରେ ପଡ଼ିଥିବା ପୁଅର ମୁଣ୍ଡ ଉପରେ ବସି ଝାଉଁଥିବା ମାଆ ପରି । ଅସହାୟ ଭାବରେ ସେ ଚାହିଁ ରହିଛନ୍ତି ଓ ଏତେ ଦିନ ଧରି ସେ ବଞ୍ଚେଇ ଆଣିଥିବା ସେବା ଅନୁଷ୍ଠାନ ଗୁଡ଼ିକ ଦିନକୁ ଦିନ ଅର୍ଥ ଓ କର୍ମୀ ଅଭାବରୁ ଦୁର୍ବଳ ହେଇ ପଡ଼ୁଛି । ନବଜୀବନ ମଣ୍ଡଳ, ଚମ୍ପତିମୁଣ୍ଡା ଆଦର୍ଶ ବିଦ୍ୟାଳୟ, ବାଜି ରାଉତ ଛାତ୍ରାବାସ ସବୁ କ୍ରମଶଃ ନିଷ୍କ୍ରିୟ ଓ ନିସ୍ତେଜ ହେଇ ପଡ଼ୁଛି । “ଏପଟେ ବେସରକାରୀ ସେବା ସଂସ୍ଥା ଗୁଡ଼ିକ ପ୍ରଭାବ ବିସ୍ତାର କରନ୍ତୁ, ଏକଥା ସରକାର ଚାହୁଁ ନାହାନ୍ତି । ରାଜନୈତିକ ସ୍ୱାର୍ଥ ଅଛି ସେଥିରେ । ଜାନକୀବାବୁଙ୍କର ମୋ ପ୍ରତି କିଛି ଶ୍ରଦ୍ଧା ଅଛି ବୋଲି ସେ ସେମିତି କିଛି ବାଧା ସୃଷ୍ଟି କରୁନାହାନ୍ତି । ନ ହେଲେ ଆଉ ସବୁଠି ଚାଲିଛି । ସରକାରୀ ଅନୁଦାନ ତ ନବଜୀବନ ମଣ୍ଡଳର ସେବା କାର୍ଯ୍ୟ ପାଇଁ ବହୁତ କମିଯାଇଛି । ସେପଟେ ଆଉ ଭଲ କର୍ମୀ ନାହାନ୍ତି ? ଆମେ କେତେଜଣ ଚାଲିଗଲେ ଇଏ ଆଉ ରହିବନି । ମୁଁ କ’ଣ କରିବି ? ଗାନ୍ଧୀଜୀ ଏତେ କଲେ, କିଛି ଗୋଟେ ସ୍ଥାୟୀ କରିପାରିଲେ ନାହିଁ । କାହାରିକୁ ଜଣକୁ ପଛକୁ ତିଆରି କରିପାରିଲେ ନାହିଁ, ଯିଏ ସବୁ ସମ୍ଭାଳିବ; ସେବାଗ୍ରାମ ଅବସ୍ଥା କ’ଣ ହେଲା !” କି ଅସହାୟତା, କି ବ୍ୟାକୁଳତା !

ନୂମା ଏବେ ଅବଶୋଷରେ ସଢ଼ୁଛନ୍ତି ବୋଧହୁଏ । “ଅବଶୋଷ ତ ସବୁ ରହିଗଲା । ହେଲା କୋଉଟା ? କିଛି ତ ପୂର୍ଣ୍ଣ ହେଲା ନାହିଁ । ଅବଶୋଷ ହିଁ ଅବଶୋଷ । ମତେ ଏବେ ନିଶା ନିବାରଣ କଥା ବହୁତ ଘାରୁଛି । ଏଇଟା ଏକଦମ୍ ଲୋକଙ୍କ ଭିତରେ ବଢ଼ିଯାଇଛି । ଏଇଟା ନ ଛାଡ଼ିଲେ କିଛି ହବନି । ମୋର ତ ସମୟ ସରି ଆସୁଛି । କୁଆଡ଼ିକି ଯାଇ ପାରୁନି । କ’ଣ କରିବି ?”

ସ୍ୱାଧୀନତା ଆନ୍ଦୋଳନ ସମୟରେ ନୂମା ଇଞ୍ଚୁଡ଼ି ଓ କୁଜଙ୍ଗଠାରେ ଲବଣ ସତ୍ୟାଗ୍ରହ କରିଛନ୍ତି । ବହୁବାର ଜେଲ ଯାଇଛନ୍ତି । ଗାନ୍ଧୀଜୀଙ୍କ ସହ ମିଶି ନୂଆଖାଲିରେ ସାଂପ୍ରଦାୟିକ ଦଙ୍ଗା ସମୟରେ ସେବା କରିଛନ୍ତି । ବିନୋବାଜୀଙ୍କ ସହିତ ଓଡ଼ିଶାରେ ଭୂଦାନ ପଦଯାତ୍ରା କରିଛନ୍ତି । ସେ ସମ୍ବିଧାନ ପ୍ରଣୟନ କମିଟିର ସଦସ୍ୟା ଥିଲେ । ରାଜ୍ୟ ସମାଜ ମଙ୍ଗଳ ଉପଦେଷ୍ଟା ବୋର୍ଡର ସେ ପ୍ରଥମ ଅଧ୍ୟକ୍ଷା । ଉତ୍କଳ ଗାନ୍ଧୀ ସ୍ମାରକ ନିଧିର ମଧ୍ୟ ସେ ସମ୍ପାଦିକା ଓ ସଭାନେତ୍ରୀ ଥିଲେ । ନବଜୀବନ ମଣ୍ଡଳର ସଭାନେତ୍ରୀ ଥିଲେ । ନବଜୀବନ ମଣ୍ଡଳକୁ ସେ ତ ମାଆ ପରି ଗଢ଼ିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତ୍ର, ସେ ସ୍ୱାଧୀନତା ସଂଗ୍ରାମୀ ଭତ୍ତା, ସମ୍ବିଧାନ ପ୍ରଣୟନ କମିଟୀ ସଦସ୍ୟା ହିସାବରେ ଭତ୍ତା ଓ ଅନ୍ୟାନ୍ୟ ପୁରସ୍କାର ଯାଚନାକୁ ସବୁବେଳେ ଏଡ଼ାଇ ଦେଇ ଆସିଛନ୍ତି ।…“ଆମେ କ’ଣ ସେବା କରୁଛୁ ପୁରସ୍କାର ପାଇଁ ? ମୁଁ କ’ଣ ସେବା କରୁଛି ପୁରସ୍କାର ପାଇଁ ? ମୁଁ କ’ଣ କରିଛି ? କିଛି ତ କରିନି ।” —ମାଳତୀ ଦେବୀଙ୍କର ମୁହଁରୁ ।

(ଦୈନିକ ‘ସମ୍ବାଦ’ର ପ୍ରତିନିଧିଙ୍କୁ ପ୍ରଦତ୍ତ ସାକ୍ଷାତ୍କାର ଜୁଲାଇ, ୧୯୮୮ )

---

# ପ୍ରଶ୍ନ ଉତ୍ତର

ପ୍ରଶ୍ନ—ଆଜିର ଏ ସାମ୍ପ୍ରତିକ ସମାଜରେ ଯୌତୁକ ସମସ୍ୟା ଏକ ମୁଖ୍ୟ ସମସ୍ୟାଭାବେ ଦେଖାଦେଇଛି । ଅନେକ ନବବଧୂ ଯୌତୁକ ନିର୍ଯ୍ୟାତନାର ଶିକାର ହୋଇ ମୃତ୍ୟୁମୁଖରେ ପଡ଼ୁଥିବାବେଳେ କେତେକ ଝିଅ ଯୌତୁକ ପାଇଁ ବିବାହ କରିପାରୁ ନାହାନ୍ତି । ଆପଣଙ୍କ ମତରେ ଏହି ଯୌତୁକ ସମସ୍ୟାଟିକୁ କିଭଳି ଭାବେ ସମାଧାନ କରାଯାଇ ପାରିବ ?

ମାଳତୀ ଚୌଧୁରୀ—ନାରୀ ଯଦି ନିଜ ଗୋଡ଼ରେ ନିଜେ ଠିଆ ହୋଇପାରିବ, ତେବେ ଯୌତୁକ ଭଳି ଏକ କଳଙ୍କିତ ସମସ୍ୟାର ସମାଧାନ ନିଶ୍ଚିତ ଭାବେ ହୋଇପାରିବ । ଭାରତବର୍ଷରେ ନାରୀର କୌଣସି ସ୍ୱାଧୀନତା ରହୁ ନାହିଁ । ସବୁଠୁ ଦୁଃଖର ବିଷୟ ଏହି ଯେ ଆମ ସମାଜର ଆଜନ୍ମରୁ ଝିଅଟି ପରାଧୀନ ହୋଇଯାଉଥିବାରୁ ତା ଜୀବନରେ ସେ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେଉଛି । ନିଜେ ଯଦି ନାରୀଟି ପାଠଶାଠ ପଢ଼ି ଉପାର୍ଜ୍ଜନକ୍ଷମ ହୋଇପାରିବ ତେବେ ଯୌତୁକ ଭଳି ଏକ ବୃହତ ସମସ୍ୟାର ସମାଧାନ ହୋଇ ପାରିବ । ଏଥିପାଇଁ ନାରୀ ସଚେତନତା ନିତାନ୍ତ ଆବଶ୍ୟକ ।

ପ୍ରଶ୍ନ—ଆପଣ ତ ଆପଣଙ୍କର ସାରା ଜୀବନଟା ସ୍ୱାଧୀନତା ସଂଗ୍ରାମ ତଥା ସମାଜ ସେବାରେ ନିୟୋଜିତ କରି ଆସିଛନ୍ତି । ଆପଣଙ୍କର ଏପରି ଏକ ସମସ୍ୟାବହୁଳ ଜୀବନରେ ଆପଣଙ୍କର ପୁଅଝିଅ, ସ୍ୱାମୀ ତଥା ଅନ୍ୟାନ୍ୟ ପରିବାରବର୍ଗଙ୍କୁ କିଭଳି ଭାବେ ଦେଖନ୍ତି ?

ମାଳତୀ ଚୌଧୁରୀ—ମୋର ପରିବାର ବୋଲି କ'ଣ ଅଛି ? ସମସ୍ତେ ମୋର ପରିବାର । ଜଙ୍ଗଲର ଆଦିବାସୀଟି ଯେମିତି ମୋର ପରିବାର, ତୁମେ ମଧ୍ୟ ମୋର ଜଣେ ପରିବାର ।

ପ୍ରଶ୍ନ—ଆପଣଙ୍କ ସମୟରେ (୧୯୨୭ ମସିହା ବେଳକୁ) ସମାଜରେ ଜାତିଆଣ ଭେଦଭାବ ଉତ୍କଟ ଥିଲା । ଏପରି ଏକ ପରିସ୍ଥିତିରେ ଆପଣ ଜଣେ ବଙ୍ଗୀୟ ପରିବାରର କନ୍ୟା ହୋଇ ଜଣେ ଖାଣ୍ଟି ଓଡ଼ିଆ ଯୁବକଙ୍କୁ ବିବାହ କଲେ । ଆପଣ କ'ଣ ଶାଶୁଘରେ କୌଣସି ସମସ୍ୟାର ସମ୍ମୁଖୀନ ହୋଇ ନାହାନ୍ତି ?

ମାଳତୀ ଚୌଧୁରୀ—ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । ମୁଁ ଶାଶୁ ଘରକୁ ଆସିବାମାତ୍ରେ ମୋର ଶାଶୁ ଘର ଛାଡ଼ି ପଳାଇଯାଇଥିଲେ ଏବଂ ପୁରୀରେ ଯାଇ ରହିଲେ । କିନ୍ତୁ ବହୁ ପ୍ରତିବନ୍ଧକ ଓ ସମସ୍ୟାର ସମ୍ମୁଖୀନ ହୋଇଥିଲେ ମଧ୍ୟ ମୁଁ ସେ ପରିବାରରେ ନିଜକୁ ମିଶାଇ ପାରିଥିଲି । ଆପଣ ଯେ ଅତୀତ କଥାଗୁଡ଼ାକ ଆଉ କାହିଁକି ମନେପକାଉଛନ୍ତି···

ପ୍ରଶ୍ନ—କେଉଁ ମହାପୁରୁଷଙ୍କ ଆଦର୍ଶକୁ ପସନ୍ଦ କରନ୍ତି ?

ମାଳତୀ ଚୌଧୁରୀ—ମୁଁ ମହାତ୍ମା ଗାନ୍ଧୀଙ୍କ ଜଣେ ଶ୍ରେଷ୍ଠ ଭକ୍ତ ।

ପ୍ରଶ୍ନ—ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ୧୮ ବର୍ଷ ବୟସ୍କ ଯୁବକ ଯୁବତୀମାନଙ୍କୁ ଭୋଟଦାନ ଅଧିକାର ଦେଇଛନ୍ତି । ଏ ସମ୍ପର୍କରେ ଆପଣଙ୍କର ମତାମତ ?

ମାଳତୀ ଚୌଧୁରୀ—୧୮ ବର୍ଷ ଯୁବକ ଯୁବତୀଙ୍କୁ ଭୋଟଦାନ ଅଧିକାର ଦେଇ ରାଜୀବ ସବୁଠୁ ବଡ଼ ଭୁଲ୍ କରିଛନ୍ତି । ୧୮ ବର୍ଷ ଯୁବକମାନେ ଅପରିପକ୍ୱ । ସେମାନେ ଦେଶ ସମ୍ପର୍କରେ କ'ଣ ଜାଣନ୍ତି ଯେ ଭୋଟ ଦେଇ ସରକାର ଗଢ଼ିବେ । ରାଜୀବ ଗାନ୍ଧୀ ଭୋଟ ପାଇଁ ଏପରି କରିଥିଲେ ।

ପ୍ରଶ୍ନ—ବର୍ତ୍ତମାନର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ-ସିଂହଙ୍କ ସମ୍ପର୍କରେ ଆପଣଙ୍କର ମତାମତ କଅଣ ?

ମାଳତୀ ଚୌଧୁରୀ—ମୁଁ ଭାବୁଛି ରାଜୀବ ଗାନ୍ଧୀ ଅପେକ୍ଷା ଭି. ପି. ସିଂହ ଭଲ ଶାସନ କରି ପାରିବେ । କିନ୍ତୁ ଦେବୀ ଲାଲ୍‌ଙ୍କୁ ମୁଁ ଚରଣ ସିଂହ ସହିତ ତୁଳନା କରୁଛି । ଚରଣ

ସିଂହ ମାତ୍ର କେତୋଟି ଦିନ ପ୍ରଧାନମନ୍ତ୍ରୀ ହେବା ଲାଳସାରେ ସରକାରଙ୍କୁ ଭାଙ୍ଗିଦେଲେ, ଦେବୀଲାଲଙ୍କଠୁ ମୁଁ ସେହିପ୍ରକାର ଆଚରଣର ଆଶଙ୍କା କରୁଛି ।

ପ୍ରଶ୍ନ—ବର୍ତ୍ତମାନ ଦେଶରେ ରାମ ଜନ୍ମଭୂମି ଓ ବାବ୍‌ରି ମସ୍‌ଜିଦ୍ ସମସ୍ୟା ଆଜି ଏକ ମୁଖ୍ୟ ସମସ୍ୟା ଭାବେ ଦେଖା ଦେଇଛି । ଏହା କିଭଳି ଭାବେ ସମାଧାନ ହୋଇ ପାରିବ ବୋଲି ଆପଣ ଭାବୁଛନ୍ତି ?

ମାଳତୀ ଚୌଧୁରୀ—ବି. ଜେ. ପି. ଦେଶରେ ଏକ ସାମ୍ପ୍ରଦାୟିକତା ସୃଷ୍ଟି କରୁଛି । ଆମକୁ ଦେଶରେ ଖୁବ୍ ସାବଧାନତାର ସହିତ କାମ କରିବାକୁ ପଡ଼ିବ । ଗାନ୍ଧୀଜୀ ସବୁବେଳେ ସବୁ ଧର୍ମ ସମାନ ବୋଲି କହି ଆସିଥିଲେ । ହିନ୍ଦୁ ଓ ମୁସଲମାନ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିବାର କ'ଣ ଆବଶ୍ୟକତା ରହିଛି । ହିନ୍ଦୁ ଓ ମୁସଲମାନ ମଧ୍ୟରେ କୌଣସି ବିଦ୍ୱେଷ ମନୋଭାବ ସୃଷ୍ଟି କରିବା ଆଦୌ ଉଚିତ ନୁହେଁ ।

ପ୍ରଶ୍ନ—ଆପଣ ତ କ୍ଷମତାରୁ ଦୂରରେ ରହି ସମାଜ ସେବା କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ୧୯୭୭ ମସିହା ନିର୍ବାଚନରେ ଆପଣ କାହିଁକି ରାଜ୍ୟ ବିଧାନସଭା ପାଇଁ ପ୍ରାର୍ଥୀ ହୋଇ ପ୍ରତିଦ୍ୱନ୍ଦ୍ୱିତା କରି ରାଜନୀତି କ୍ଷେତ୍ରକୁ ଯିବାକୁ ଚାହିଁଲେ ?

ମାଳତୀ ଚୌଧୁରୀ— ପ୍ରତ୍ୟେକ ମଣିଷର ଜୀବନଟା ଏକ ରାଜନୀତିର କ୍ଷେତ୍ର । ମୁଁ ରାଜନୀତି-କିମ୍ବା କ୍ଷମତାର ଲାଳସା ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ନଥିଲି । ମୁଁ କେବଳ ନନ୍ଦିନୀ ଶତପଥୀଙ୍କ ବିରୋଧରେ ଲଢ଼େଇ କରିଥିଲି । ୧୯୭୫ ମସିହା ଇନ୍ଦିରାଙ୍କ ଜରୁରୀ ପରିସ୍ଥିତିକୁ ବିରୋଧ କରି ମୁଁ କେବଳ ଛିଡ଼ା ହୋଇଥିଲି ।

ପ୍ରଶ୍ନ—ଆଜିର ଯୁବ ସମାଜ ପ୍ରତି କିଛି ପରାମର୍ଶ···

ମାଳତୀ ଚୌଧୁରୀ—ପ୍ରତ୍ୟେକଟି ଯୁବକ ବୈପ୍ଳବିକ ଚେତନାବାଦୀ ହେବା ଉଚିତ । ଚାକିରିଟିଏ ଦେବା ପାଇଁ ଆଜି ଯାହା ଦୁର୍ନୀତି ଚାଲିଛି ସେ ସମ୍ପର୍କରେ ସେମାନେ ସ୍ୱର ଉତ୍ତୋଳନ କରିବା ଦରକାର । ଆପଣମାନେ (ସାମ୍ବାଦିକଙ୍କୁ) ଏ ସମ୍ପର୍କରେ ଖବରକାଗଜରେ କାହିଁକି ଲେଖୁ ନାହାନ୍ତି । ମୋତେ ପ୍ରଶ୍ନ ପଚାରି ଲାଭ କ'ଣ ? ସେ ସମ୍ପର୍କରେ ଲେଖିଲେ କ'ଣ ହେବ ? ମୋ ମତରେ ଆପଣଙ୍କର ଖବର କାଗଜବାଲାଏ ଦେଶକୁ ନଷ୍ଟ କରୁଛନ୍ତି । ସମ୍ବାଦପତ୍ରର ପ୍ରକୃତ ଭୂମିକା ଆପଣମାନେ ଗ୍ରହଣ କରୁ ନାହାନ୍ତି ।

( ରବିବାର 'ସମ୍ବାଦ', ୨୮ ଜାନୁଆରୀ-୩ ଫେବୃଆରୀ, ୧୯୯୦ ସୌଜନ୍ୟରୁ )

———

"ଯେଉଁମାନେ ପରମାଣୁ ବୋମାକୁ ହାତରେ ରଖି ଦୁନିଆକୁ ଡରେଇବାକୁ ବସିଛନ୍ତି, ସେମାନେ ମଧ୍ୟ ବୁଝିପାରୁଛନ୍ତି ଯେ ଲୋକଶକ୍ତି ଆଗରେ ପରମାଣୁ ବୋମାପରି ଶକ୍ତିଶାଳୀ ଅସ୍ତ୍ର ମଧ୍ୟ କିଛି ନୁହେଁ ।"

—ମାଳତୀଦେବୀ

ଜୀବନ ସଂଗ୍ରାମ—

# ବରେଣ୍ୟ ବିପ୍ଳବୀ

ସେଦିନ ପଶ୍ଚିମ ବଙ୍ଗର ଚବିଶ ପରଗଣା ଜିଲ୍ଲାର ଆମଡ଼ାଙ୍ଗାଠାରେ ଅଖିଳ ଭାରତ ଶାନ୍ତିସେନା ଦ୍ୱାରା ପରିଚାଳିତ ଯୁବ ଶିବିରରେ ପଶ୍ଚିମବଙ୍ଗ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ସମ୍ପାଦକ ଶ୍ରୀ କ୍ଷୀତିଶ ରାୟଚୌଧୁରୀଙ୍କର ଭାଷଣ ଚାଲିଥାଏ । ଶୁଣିବାର ସୁଯୋଗ ଏବଂ ସୌଭାଗ୍ୟ ମିଳିଲା । ବିପ୍ଳବୀ କିଶୋର କ୍ଷୁଦିରାମ ବୋଷଙ୍କ ଠାରୁ ଆରମ୍ଭ କରି ଚଟ୍ଟଗ୍ରାମର ପ୍ରିୟ ମାଷ୍ଟାରଦା (ବୀର ସୂର୍ଯ୍ୟସେନ)ଙ୍କର ଅପରିସୀମ ତ୍ୟାଗ, ଦେଶ-ପ୍ରେମ ଏବଂ ଅପୂର୍ବ ବୀରତ୍ୱର କାହାଣୀ ଅତି ଭାବପୂର୍ଣ୍ଣ ହୃଦୟରେ ଆବେଗର ସହିତ କହିଯାଉଥାନ୍ତି । ତାଙ୍କର ସେ ତେଜସ୍ୱୀ ଭାଷଣ ଶୁଣି ଶିବିରର ପ୍ରତ୍ୟେକ ଯୁବକ ଏବଂ ଯୁବତୀଙ୍କର ମନ ଉଦ୍‌ବେଳିତ କରି ପକାଉଥାଏ । ସେମାନେ ସେହି ମୁହୂର୍ତ୍ତିକ ସକାଶେ ବାଂଲା ଦେଶର ସ୍ୱାଧୀନତା ସଂଗ୍ରାମ ପାଇଁ ସର୍ବସ୍ୱ ତ୍ୟାଗ କରିଦେବା ସକାଶେ ଯେପରି ବ୍ୟାକୁଳ ହୋଇ ଉଠୁଥାନ୍ତି । ମୋ ଚିନ୍ତା ମଧ୍ୟ ଭାରତର ସ୍ୱାଧୀନତାକାମୀ ସେହି ବିପ୍ଳବୀ ବୀରମାନଙ୍କର ଅଭୂତ ସାହସିକତାର ସ୍ମରଣରେ ନିମଜ୍ଜିତ ହୋଇଯାଇଥାଏ । ହଠାତ୍ ଅତୀତରୁ ଚିନ୍ତା ଆସି ବର୍ତ୍ତମାନର ଆନ୍ଧ୍ର ବିପ୍ଳବୀ ନେମ୍ପାଟା ସତ୍ୟନାରାୟଣ ଭେମପାଟ୍ନମ ସତ୍ୟମଙ୍କର ଅଭୂତ ତ୍ୟାଗ ଏବଂ ବୀରତ୍ୱର କାହାଣୀ ମୋର ଆଖି ସାମନାରେ ଜଳ ଜଳ ହୋଇ ଜଳି ଉଠିଲା ।

୧୯୭୦ ସାଲର ୮ ତାରିଖ ଜୁଲାଇ, ଗାନ୍ଧୀଜୀଙ୍କର ମୌଳିକ ଶିକ୍ଷାର ଅଗ୍ରଦୂତ ସ୍ୱନାମଧନ୍ୟା ଶ୍ରୀମତୀ ଆଶାଦେବୀ ଆର୍ଯ୍ୟନାୟକମ୍‌ଙ୍କର ଅସ୍ଥି ଏବଂ ଚିତାଭସ୍ମ ସେବାଗ୍ରାମର ପ୍ରସିଦ୍ଧ ସମାଧି ସ୍ଥାନ 'ଟେକଡ଼ି'ରେ ବିସର୍ଜ୍ଜନ କରାଯିବ । ସମଗ୍ର ଆଶ୍ରମବାସୀ ଏବଂ ୱାର୍ଦ୍ଧା ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ସମାବେଶରେ ଅସ୍ଥି ଶୋଭାଯାତ୍ରା ସହ 'ଟେକଡ଼ି' ଆଡ଼କୁ ନିଆଯାଉଛି । ହଠାତ୍ ଗୋବିନ୍ଦ ରେଡ୍‌ଡ଼ୀଙ୍କ ଖୁବ୍ ଉତ୍ତେଜିତ ଭାବରେ ଆସି ରେଡ଼ିଓ ସମ୍ବାଦ ଶୁଣେଇ କହିଲେ—କାଲି ଶ୍ରୀକାକୁଲମ୍‌ର କୁରୁପମ ପାଙ୍କର ଏକ ଜଙ୍ଗଲ ଭିତରେ ବିଶ୍ରାମ ନେଉଥିବା ଅବସ୍ଥାରେ ନକ୍ସଲପନ୍ଥୀ ବୀର ଖ୍ୟାତନାମା ସତ୍ୟମ୍ ଏବଂ ତାଙ୍କର ସାଥୀ କୈଳାସମ୍‌ଙ୍କୁ ପୋଲିସ ଗୁଳି ବ୍ଲେଟରେ ହତ୍ୟା କରି ଦେଇଛି । ଆଜ ସରକାର ଘୋଷଣା କରିଥିଲେ । ସତ୍ୟମ୍‌କୁ ଜୀବିତ ବା ମୃତ ଅବସ୍ଥାରେ ଯିଏ ଆଣିଦେବେ ତାଙ୍କୁ ପାଞ୍ଚ ହଜାର ଟଙ୍କା ପୁରସ୍କାର ମିଳିବ । ମନେପଡ଼ିଗଲା ଏହିପରି ଏକ ଘୋଷଣା ବ୍ରିଟିଶ ଅମଳରେ ଚଟ୍ଟଗ୍ରାମର ମାଷ୍ଟରଦାଙ୍କୁ ନେଇ ମଧ୍ୟ କରାଯାଇଥିଲା । ଗୋବିନ୍ଦ ରେଡ୍‌ଡ଼ୀଙ୍କ କୁରୁପମର ଅନତିଦୂର କୋରାପୁଟ ଜିଲ୍ଲାର ଗରଣ୍ଡା ଗାଁ ଠାରେ ପ୍ରାୟ ୩୦ ବର୍ଷ କାଳ ଧରି ଉନ୍ନତ ଧରଣର କୃଷିକାମ ପରୀକ୍ଷାରେ ଲାଗି ରହିଥାନ୍ତି । ସତ୍ୟମର ତ୍ୟାଗ, ନିଷ୍ଠା ଏବଂ ସଙ୍ଗଠନ ଶକ୍ତି ପ୍ରତି ତାଙ୍କର ଶ୍ରଦ୍ଧା ଅପରିସୀମ । ସତ୍ୟମ୍‌ର ହତ୍ୟା କଥା ବିଶ୍ୱାସ କରିବାକୁ ମୋର ମନ ବହିଲା ନାହିଁ । ସେ ଅଞ୍ଚଳର ଆନ୍ଧ୍ର ଏବଂ ଓଡ଼ିଆ ଆଦିବାସୀଙ୍କ ପାଖରେ 'କୋଣ୍ଡାମାଷ୍ଟାର' ନାମରେ ପରିଚିତ ସତ୍ୟମ୍ ରବୀନହୁଡ଼ ପରି ଏକ ପୁରାକାଳର 'ଲେଜେଣ୍ଡାରି' ବୀର ପୁରୁଷ, ତାଙ୍କର ବୀରତ୍ୱର କାହାଣୀ ଏବଂ ଅଲ୍ଲୁରୁ ସୀତାରାମ ରାଜୁ ପରି ତାଙ୍କର ଅସାଧାରଣ ମାୟାବୀ ଶକ୍ତିର କାହାଣୀ ଲୋକ ମୁହଁରେ ଗଳ୍ପ ଆକାରରେ କୋରାପୁଟ ଓ ଶ୍ରୀକାକୁଲମ୍‌ର ବଣ ଜଙ୍ଗଲ ପାହାଡ଼ ପର୍ବତ ଭିତରେ ଧ୍ୱନିତ ହେଉଛି । ସତ୍ୟମ୍ ତ ଏକା ନୁହଁନ୍ତି, ତାଙ୍କ ସହିତ ତାଙ୍କର ଝିଅ ଭାରତୀ ମଧ୍ୟ ବୀର ବେଶରେ ବୁଲୁଥିବାର ନାନା କାହାଣୀ କେବଳ ଗାଁ ଗହଳର ଆଦିବାସୀଙ୍କ ମୁହଁରେ ନୁହେଁ, ମାତ୍ର ଏହି ତଥାକଥିତ ସମାଜକୁ ବିରୋଧ କରୁଥିବା ବିପ୍ଳବୀମାନଙ୍କୁ ଜବତ୍ କରିବା ପାଇଁ ଶାସକ ଗୋଷ୍ଠୀ ଯେଉଁ ପୋଲିସ ଦଳକୁ ମୁତୟନ କରି ରଖିଛନ୍ତି, ଯେଉଁ ପୋଲିସ-ଗୋଷ୍ଠୀ ଦୋଷୀ ନିର୍ଦ୍ଦୋଷୀ ସମସ୍ତଙ୍କ ଉପରେ ବେଆଇନ ଭାବରେ ଏବଂ ବିନା କାରଣରେ ଅକଥ୍ୟ ଅତ୍ୟାଚାର ଚଳେଇଛନ୍ତି, ସେମାନଙ୍କ ମୁହଁରେ ମଧ୍ୟ ସତ୍ୟମ୍‌ଙ୍କ ପ୍ରତି ଭକ୍ତି ଏବଂ ତାଙ୍କର ତ୍ୟାଗ ଓ ସାହସର ଅସଂଖ୍ୟ କାହାଣୀ ଶୁଣିବାକୁ ମିଳେ । ଏପରି ଏକ ବୀର ତ୍ୟାଗୀ ପୁରୁଷଙ୍କ ସହ ପରିଚିତ ହେବା ପୂର୍ବରୁ ସେ ଇହଜଗତ ଛାଡ଼ି ଚାଲିଯିବେ ତାହା ବିଶ୍ୱାସ କରିବାକୁ ଇଚ୍ଛା ହେବ କିପରି ? ପୂଜ୍ୟା ଆଶାଦେବୀଙ୍କର ସମାଧି ଉପରେ ଫୁଲ ଚଢ଼େଇବା ବେଳେ କେବଳ ମନେହେଉଥାଏ— ଯେଉଁ ବୀର ସତ୍ୟମ୍ ସଂସାରର ସବୁ ସୁଖ ସୁବିଧା କୁ ତ୍ୟାଗ କରି ଏକମାତ୍ର ବାଳିକା ଝିଅକୁ ଧରି ଅଗମ୍ୟ ପାହାଡ଼ ପର୍ବତ ବଣ ଜଙ୍ଗଲ ବୁଲି ଶୋଷଣହୀନ ନୂଆ ସମାଜ ଗଢ଼ିବା

ସଭିଲରେ ଜୀବନ ଉତ୍ସର୍ଗ କରି ଏହି ତଥାକଥିତ ସମାଜ ବିରୋଧରେ ସଂଗ୍ରାମ ଚଳେଇ ଆସିଲେ । ଆଜି ବୁରୁପମ୍‌ର କେଉଁ ବଣରେ ତାଙ୍କର ମରଣଶରୀର ଧୂଳିଧୂସରିତ ଅବସ୍ଥାରେ ଗଡ଼ୁଥିବ ପରା ! ତାଙ୍କର ମୃତ-ଶରୀରରେ ଫୁଲ ଚଢ଼େଇବା ପାଇଁ ଆଜି କେହି ନ ଥିବ ପରା ? ମନ ହେଉଥାଏ, ପକ୍ଷୀ ଲଗେଇ ଉଡ଼ିଯାଇ ତାଙ୍କର ଦେହ ଉପରେ ଫୁଲ ଚଢ଼େଇ ଆସେ, ତାଙ୍କର ଅମର ଆତ୍ମାକୁ ସ୍ମରଣ କରି ପୁଷ୍ପବୃଷ୍ଟି କରି ଦେଇ ଆସେ । ପୂଜ୍ୟା ଆଶାଦେବୀଙ୍କ ସମାଧିରେ କେବଳ ମୁଁ ଏ ପୁଷ୍ପ ଚଢ଼ାଇ ନାହିଁ । ମନେ ମନେ ସତ୍ୟମ୍‌ର ଅମର ଆତ୍ମାକୁ ମଧ୍ୟ ମୋର ଏ ପୁଷ୍ପାଞ୍ଜଳି ।

ଜାଣେ ଶୋଷଣହୀନ ସମାଜ ଗଢ଼ା ହେଲା ପରେ ଐତିହାସିକମାନେ ସତ୍ୟମ୍‌ର ଜୀବନ ଖୋଜି ବୁଲୁଥିବେ ଏବଂ ତାଙ୍କର ଜୀବନୀ ଲେଖି ନିଜକୁ ଧନ୍ୟ ମଣିବେ । 'ମାଷ୍ଟାରଦାସୂର୍ଯ୍ୟସେନ' ବା ଖୁଦିରାମର ଜୀବନୀ ଯେପରି ସ୍ୱାଧୀନତାର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇଛି, ସେହିପରି ମାତ୍ର ଆଜିକାର ଏହି ଅପ୍ରାକୃତିକ ଧନୀକ ସମାଜରେ ସତ୍ୟମ୍ ତସ୍କର, ଖୁନି ଆସାମୀ ମାତ୍ର ।

ଗରଣ୍ଡାରେ ଥିବା କର୍ମୀ ଶ୍ରୀ ବୈକୁଣ୍ଠଙ୍କ ଠାରୁ ପତ୍ର ପାଇ ମନ କିଛିଟା ପରିମାଣରେ ଆଶ୍ୱସ୍ତ ହେଲା । ସତ୍ୟମ୍ ଏବଂ ଶ୍ରୀ କୈଳାସମ୍‌ଙ୍କୁ ପୋଲିସ ପୋଷ୍ଟ-ମର୍ଟମ୍ ପାଇଁ ପାର୍ବତୀପୁରମ୍ ବୋହି ନେଇଛନ୍ତି । ସତ୍ୟମ୍‌ର ହତ୍ୟାର ସମ୍ବାଦ ଦୂରଦୂରାନ୍ତ ଗାଁ'ଗହଳରେ ବ୍ୟାପି ଯାଇଛି । ଖବର ପାଇ ଦୂରଦୂରାନ୍ତରୁ ଆଦିବାସୀ ଲୋକେ ଧାଇଁ ଆସିଛନ୍ତି ତାଙ୍କର ବୀର ସାଥୀ ଦ୍ୱୟଙ୍କର ଶେଷ ଦର୍ଶନ ସକାଶେ, ୮ରୁ ୧୦ ହଜାର ଜନତା ସମବେତ ହୋଇ ନୀରବରେ ଶ୍ରୀ ସତ୍ୟମ୍ ଏବଂ କୈଳାସମ୍‌ଙ୍କ ପ୍ରତି ତାଙ୍କର ଶେଷ ଶ୍ରଦ୍ଧା ନିବେଦନ କରିଗଲେ, ଗରଣ୍ଡାର କର୍ମୀ ଶ୍ରୀ ବୈକୁଣ୍ଠ କୋରାପୁଟର ସର୍ବଜନବିଦିତ ସର୍ବୋଦୟ ନେତା ଶ୍ରୀ ରତନ ଦାସଙ୍କ ସହ ମିଶି ପାର୍ବତୀପୁରମ୍ ଠାରେ ଯାଇ ଏହି ବୀର ପୁରୁଷଙ୍କୁ ତାଙ୍କର ନୀରବ ଶ୍ରଦ୍ଧା ଜଣେଇ ଆସିଲେ, ଏହା ଜାଣି ମୋର ମନ ଖୁବ୍ ଆଶ୍ୱସ୍ତ ହେଲା ।

ପୂଜ୍ୟା ଆଶାଦେବୀଙ୍କର ସମାଧି କାର୍ଯ୍ୟ ସମାପ୍ତ ହେବା ପରେ ମହାଦେବ ଦେଶାଇ ଭବନରେ ପୂଜ୍ୟ ବିନୋବାଜୀଙ୍କର ଭାଷଣ ହେଲା । ସେ ତାଙ୍କ ଭାଷଣରେ କହିଲେ ଯେ— ନକ୍ସଲବାଦୀମାନେ ଦରିଦ୍ର ଜନତା ପ୍ରତି ଶୋଷଣ ଏବଂ ତାଙ୍କର ଦୁଃଖ ସହି ନ ପାରି କରୁଣା ପ୍ରଣୋଦିତ ହୋଇ ସମତା ଆଣିବା ପାଇଁ ଉଦ୍ୟମ ଚଳେଇଛନ୍ତି । ଆମେ ମଧ୍ୟ ଖଟି ଖାଉଥିବା ଜନତାର ରାଜ୍ୟ ପ୍ରତିଷ୍ଠିତ ହେଉ ଚାହୁଁଛୁ । ମାତ୍ର ତାଙ୍କର ବାଟ ହିଂସାର ବାଟ, ଆମର ବାଟ ଅହିଂସାର, ତଫାତ୍ ସେହିଠାରେ । ପୂଜ୍ୟ ବିନୋବାଜୀଙ୍କର ଏ କଥା ଶୁଣି ଅତୀତର ହରିଜନ ପତ୍ରିକାରେ ଗାନ୍ଧୀଜୀଙ୍କର ଲିଖିତ ଆଲୁରି ସୀତାରାମ ରାଜୁଙ୍କ ପ୍ରତି ଶ୍ରଦ୍ଧା ନିବେଦନ କଥା ମନେପଡ଼ିଗଲା । ଆଲୁରି ସୀତାରାମ ରାଜୁ ସତ୍ୟମ୍‌ଙ୍କ ପରି ଜଣେ ସଙ୍ଗଠନ ଶକ୍ତିସମ୍ପନ୍ନ ତ୍ୟାଗୀ ପୁରୁଷ ଥିଲେ । ତାଙ୍କର ସଙ୍ଗଠନ ଶକ୍ତି, ତ୍ୟାଗ ଏବଂ ନିଷ୍ଠାର ଭୂୟସୀ ପ୍ରଶଂସା କରି ସେ ହିଂସାର ବାଟ ଛାଡ଼ିଲେ ତାଙ୍କର ଶକ୍ତି ଦ୍ୱିଗୁଣିତ ହେବ ବୋଲି ଗାନ୍ଧୀଜୀ ଲେଖିଥିଲେ, ତାଙ୍କ ପ୍ରତି ଗାନ୍ଧୀଜୀଙ୍କର ଶ୍ରଦ୍ଧା ସର୍ବଜନବିଦିତ ଥିଲା ।

ମୋର ମନ ଭିତରେ ଏହିପରି ହିଂସା ଅହିଂସାର ଦ୍ୱନ୍ଦ୍ୱ ଧରି ନୂଆ ସମାଜ ଗଢ଼ିବାର ଯେଉଁ ବାଟ ଖୋଜି ବୁଲୁଛି ତାହା କିଷଣ ବାବୁଙ୍କର ହିଂସାର ବାଟ ଧରି ଚାଲିଥିବା ବିପ୍ଳବୀ ନେତାମାନଙ୍କ ପ୍ରତି ଶ୍ରଦ୍ଧା ନିବେଦନ ଅକୁଣ୍ଠିତ ଚିତ୍ତରେ । ବିନୋବାଜୀଙ୍କର ନକ୍ସଲବାଦୀଙ୍କର କରୁଣା ପ୍ରଣୋଦିତ ହୋଇ ଦରିଦ୍ର ଜନତା ପାଇଁ ବିପ୍ଳବର ବାଟ ଧରିବାର ଉଲ୍ଲେଖ ଏବଂ ସର୍ବଶେଷରେ ଗତ ମାସରେ ଗୋପାଳଠାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ପୂଜ୍ୟ ଦାଦା ଧର୍ମାଧିକାରୀଙ୍କର "ହିଂସା ଏବଂ ଶ୍ରେଣୀ-ସଂଘର୍ଷକୁ ଭସ୍ମ କରିବା ଗୁରୁତ୍ୱ" ଆହ୍ୱାନ ମନର ଦ୍ୱନ୍ଦ୍ୱକୁ କିଛିଟା ପରିମାଣରେ ଲାଘବ କରିଦେଲା । ଜୀବନରେ ବଞ୍ଚି ରହିବାର ସଂଗ୍ରାମରେ ହିଂସା ଅହିଂସାର ଭେଦକୁ ବାଢ଼ି ବସିଲେ ଦରିଦ୍ର ଜନତାର ତିଷ୍ଠି ରହିବା ଅସମ୍ଭବ ହୋଇଉଠିବ । ଭାରତର ନିଷ୍ପେଷିତ ଜନତା ଯୁଗ ଯୁଗ ଧରି ନାନା ବାଟରେ ଆଘାତ ସହି ପଡ଼ି ରହିଛନ୍ତି । ଯେଉଁଦିନ ଆଘାତ ଆଉ ନ ସହି ଆଘାତ କରିବାର ଶକ୍ତି ଅର୍ଜନ କରିପାରିବେ, ସେହିଦିନ ସେମାନଙ୍କର ମୁକ୍ତି ହେବ ତା' ପୂର୍ବେ ନୁହେଁ ଏଠାରେ Alma Cessireଙ୍କର ଲେଖାରୁ ଦୁଇଧାଡ଼ି ଉଦ୍ଧୃତ କରିଲେ ଅପ୍ରାସଙ୍ଗିକ ହେବ ନାହିଁ । ଗୋଟିଏ ଯୁଗ ଧରି ଦାସତ୍ୱ ପ୍ରଥାରେ ବନ୍ଧା ପଡ଼ିଥିବା ଦାସମାନେ ହଠାତ୍ ବିଦ୍ରୋହୀ ହୋଇ ଉଠିଲେ, ତାଙ୍କ ଭିତରେ ଜଣେ କହୁଛନ୍ତି—

"We attacked, we the slaves, we the dung, underfoot, we the animals with patient hooves, we are running like madmen, shouts ran out. We were starting × × ଏବଂ ସର୍ବଶେଷରେ ଏହାର ଉକ୍ତି That is the only baptism the I remember to-day."

---

ସର୍ବୋଦୟ : ୩୦ ନଭେମ୍ବର, ୧୯୭୧

ଜୀବନ ସଂଗ୍ରାମ—

# ନାରୀ ଚେତନା

ଲୋକେ କୁହନ୍ତି ନିର୍ଜନ କାରାବାସଠାରୁ ଦୁଃଖଦାୟକ ଅସହ୍ୟ ଏବଂ କଷ୍ଟଦାୟକ ଆଉ କିଛି ହୋଇ ନ ପାରେ । ଏପରି ନିର୍ଜନ କାରାବାସ ମୋର ଜୀବନରେ ଥରେ ଅଧେ ଭୋଗିବାକୁ ପଡ଼ିଥିଲା । ମାତ୍ର ଗାନ୍ଧିଜୀଙ୍କର ଗୋଟିଏ ବାଣୀ ସ୍ମରଣରେ ଆଣି ସେ ନିର୍ଜନ କାରାବାସ ଦୁଃଖଦାୟକ ନ ହୋଇ ମୋ ପାଖରେ ସୁଖକର ଏବଂ ମଧୁମୟ ହୋଇ ପାରିଥିଲା । ଗାନ୍ଧିଜୀ ଥରେ ତାଙ୍କର ଏକ ଭକ୍ତକୁ କହିଲେ ମୁଁ ତୁମକୁ ଗୋଟିଏ ପରଶ ପଥର ଦେବି—I will give you a talisman. ସେ ପରଶ ପଥରଟି ହେଉଛି ଯେତେବେଳେ ତମେ ଖୁବ୍ ଦୁଃଖରେ ପଡ଼ିଛ ବୋଲି ଭାବୁଥିବ ସେତେବେଳେ ତୁମଠାରୁ ଆହୁରି ଦୁଃଖ କାତର କାହାରି ଚିତ୍ର ମନ ସାମନାରେ ରଖିବାର ଚେଷ୍ଟା କରିବ । ସେପରି କଲେ ତୁମ ନିଜର ଦୁଃଖ ଦେଖିବା ବହୁ ପରିମାଣରେ ଲାଘବ ହୋଇଯିବ । ସ୍ୱାଧୀନତା ଆନ୍ଦୋଳନ ନାମରେ କଟକ ଜିଲ୍ଲାର ଗାଁ ଗହଳରେ ବୁଲୁଥିବା ବେଳେ ଘର କୋଣରେ ଓଢ଼ଣା ପକେଇ ବସିଥିବା ଶହ ଶହ ବୋହୂମାନଙ୍କର ଯେଉଁ ଚିତ୍ର ମୁଁ ଦେଖିଛି ନିର୍ଜନ କାରାବାସରେ ବସି ସେମାନଙ୍କର ସେହି ଦୁର୍ଦ୍ଦଶାର ଚିତ୍ର ମୋ ଆଖି ଆଗରେ ଝଲସିଉଠିଲା ମାତ୍ରକେ ମୋର ନିର୍ଜନ କାରାବାସର ଦୁଃଖ ମୋ ପାଖରେ ତୁଚ୍ଛ ହୋଇଉଠିଛି । ବୋହୂଟିମାନ କାହାରି ସାଙ୍ଗରେ କଥା ହେଲାବେଳେ ଯେପରି ଅନ୍ୟ କାହାକୁ ନ ଶୁଭିବ ଏପରି ସ୍ୱରରେ କଥା କହିବେ । କାହାରିକି ଡାକିବାକୁ ହେଲେ ପାଟିରେ ଚୁ ଚୁ ଶବ୍ଦ ଦେବେ । ଏପରିକି ପ୍ରକୃତିର ଡାକରାରେ ଝାଡ଼ା ପରିସ୍ରା ଦେଖେଇଲେ ବହୁ ସମୟ ଧରି ତାହା ରୋକିବାକୁ ପଡ଼ିବ । କାରଣ ବାଟରେ ଘାଟରେ ଗଣ୍ୟମାନ୍ୟ ବ୍ୟକ୍ତି କେହି ବସିଥିଲେ ବା ଠିଆ ହୋଇଥିଲେ ବାହାରିବାର ଉପାୟ ନ ଥିବ । ଏ କାରଣରେ ବୋହୂମାନଙ୍କର ସ୍ୱାସ୍ଥ୍ୟ ମଧ୍ୟ ବହୁସ୍ଥାନରେ ଖରାପ ହେବାର ଦେଖିଛି । ମୋର ଏହି ନିର୍ଜନ କାରାବାସ ତ ଅଳ୍ପ ଦିନରେ ଫିଟିବ, ମାତ୍ର ସମାଜର କୁସଂସ୍କାର ଦୂର ନ ହେବା ଯାଏ ବା ଶାଶୁ ଶ୍ୱଶୁର ବସୁଥିବା ଯାଏ ଅଥବା ଦଶବାରଟି ସନ୍ତାନର ମାଆ ନ ହେବା ଯାଏ ବୋହୂମାନଙ୍କର ଏ ଦୁର୍ଦ୍ଦଶାର ଅବସାନ ଘଟିବ ନାହିଁ । ଆଜି ହୁଏ ତ କୌଣସି କୌଣସିଠାରେ ଏ ଦୁର୍ଦ୍ଦଶାର ଅବସାନ ଘଟିଛି । ମାତ୍ର ଆମ ଦେଶରେ ସ୍ୱାଧୀନତା ଲାଭର ଦୀର୍ଘ ଦିନ ବିତଗଲେ ସୁଦ୍ଧା ଗାଁ ଗହଳର ଭଉଣୀମାନଙ୍କର ଏ ଅବସ୍ଥାର ପରିବର୍ତ୍ତନ ହୋଇ ପାରିଛି କି ?

ଅତି ଧନୀ ଓ ଖଟି ଖାଉଥିବା ଶ୍ରମିକ ଶ୍ରେଣୀ ସମାଜର ଭଉଣୀମାନଙ୍କୁ ଏ ଦୁର୍ଦ୍ଦଶାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ । ଧନୀକ ସମାଜର ଭଉଣୀମାନଙ୍କର କିଛିତ ପରିମାଣରେ ଅର୍ଥନୈତିକ ସ୍ୱାଧୀନତା ଥିବା ଦୃଷ୍ଟେ ସେମାନେ ଭିନ୍ନ ପ୍ରକାରର ସମାଜ ରଚନା ଭିତରେ ରହିଥାନ୍ତି । ଏଣେ ଶ୍ରମିକ ଶ୍ରେଣୀର ଭଉଣୀମାନେ ତାଙ୍କର ଶ୍ରମ ବଳରେ ଅର୍ଥନୈତିକ ସ୍ୱାଧୀନତା ଅର୍ଜନ କରିଥିବାରୁ ସେ ତଦନୁଯାୟୀ ଏକ ସମାଜ ରଚନା ଭିତରେ ରହିଥାନ୍ତି । ସେ ଶ୍ରମିକ ସମାଜର ଭଉଣୀମାନଙ୍କର ସମାଜରେ ସ୍ଥାନ ସମ୍ପୂର୍ଣ୍ଣ ଭିନ୍ନ । ସେମାନେ ନିରଳସ, ବଳିଷ୍ଠ, ଶ୍ରମନିଷ୍ଠ, ଅବଗୁଣ୍ଠନ ହୀନ, ଅବିଳତାହୀନ, ତେଜସ୍ୱୀ ଏବଂ ଅହଙ୍କାର ଶୂନ୍ୟ । ସେମାନଙ୍କଠାରେ ଈଶ୍ୱର ଦତ୍ତ, ସ୍ୱାଭାବିକ ଭାବରେ ଫୁଟିଉଠୁଥିବା ନାନା ଗୁଣାବଳୀ ବିଦ୍ୟମାନ ଯାହାକି ତଥାକଥିତ ଶିକ୍ଷିତ ସମାଜରେ ଏ ପର୍ଯ୍ୟନ୍ତ ଆଦୃତ ହୋଇ ପାରି ନାହିଁ । ଅଧିକନ୍ତୁ ଅବହେଳିତ ହୋଇ ଧ୍ୱଂସ ପାଇ ଯାଉଛି । ନୃତ୍ୟ, ଗୀତ, କାରୁ ଚିତ୍ରକଳା ଇତ୍ୟାଦି କଳା ବିକାଶର ସୁଯୋଗ ପାଇଲେ ଏମାନଙ୍କ ଭିତରୁ କେତେ ଯେ କୁଶଳ ଶିଳ୍ପୀ ବାହାରି ପାରନ୍ତେ ତାହା କିଏ କହି ପାରିବ ? ଏମାନେ ନିଃସ୍ୱ ! ତେଣୁ ନିର୍ଯାତ ଏବଂ ସବୁ ପ୍ରକାରର ଅଧିକାରହୀନ । ଶ୍ରମ ବଳରେ ଅର୍ଥନୈତିକ ସ୍ୱାଧୀନତା ହାସଲ କରିଥିବାରୁ ପରିବାର ଭିତରେ ତାଙ୍କର ଶ୍ରଦ୍ଧାପୂର୍ଣ୍ଣ ଉଚ୍ଚ ସ୍ଥାନ ମଧ୍ୟ ରହିଛି । ଯାହାକି ମଧ୍ୟବିତ୍ତ ପରିବାରର ସ୍ତ୍ରୀ ଲୋକଙ୍କ ଭାଗ୍ୟରେ କଦାଚିତ ଜୁଟେ ।

ଆଜିକାଲି ଅବଶ୍ୟ ମଧ୍ୟବିତ୍ତ ଶିକ୍ଷିତ ପରିବାରର ଭଉଣୀମାନେ ବହୁ ସ୍ଥାନରେ ଚାକିରି କରି ପରିବାରକୁ ପୋଷଣ କରିବାର ଦେଖାଯାଉଛି । ତେଣୁ ସମାଜରେ ଏବଂ ପରିବାରରେ ଏମାନଙ୍କର ଅବସ୍ଥାର ଏବଂ ପରିସ୍ଥିତିର ପରିବର୍ତ୍ତନ ଘଟୁଛି ! ଏହା ଖୁବ୍ ସୁଖକର ଏବଂ ଆଶାପ୍ରଦ ।

ଆମେ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଭଉଣୀମାନେ ବା ଧନୀକ ଶ୍ରେଣୀର ଭଉଣୀମାନେ ସଭାସମିତିମାନ କରି ଏବଂ ଶୃଙ୍ଖଳିତ ଦାବିମାନ ଉତ୍ଥାପନ କରି ସମଗ୍ର ନାରୀ ସମାଜର କଲ୍ୟାଣସାଧନ କରିପାରିବା ଏହା ଭାବିବା ଭୁଲ୍ ଆମକୁ ଦରିଦ୍ର ଶ୍ରମିକ ଭଉଣୀମାନଙ୍କ ପାଖକୁ ଯିବାକୁ ପଡ଼ିବ । ସେମାନଙ୍କ ପାଖରୁ ବହୁତ କଥା ଆମର ଶିଖିବାର ଅଛି । ତାହା ଗ୍ରହଣ କରିବାକୁ ପଡ଼ିବ ଏବଂ ଆମର ବହିପଢ଼ା ଲବ୍ଧଜ୍ଞାନର ଅଂଶ ସେମାନଙ୍କୁ ଦବାକୁ ପଡ଼ିବ । ନିଜର ଅହମ୍ଭାବ ଧରି ତାଙ୍କ ପାଖକୁ ଗଲେ ତାଙ୍କଠାରୁ ଯାହା ଗ୍ରହଣ କରିବା କଥା କିଛି ହେବ ନାହିଁ ବା ତାଙ୍କୁ କିଛି ଦେବା ଏହି ଉଭୟ ଦିଆନିଆ କାମ ପଣ୍ଡ ହୋଇଯିବାର ଆଶଙ୍କା ରହିବ ।

ମଧ୍ୟବିତ୍ତ ପରିବାରର ଶିକ୍ଷିତ ଭଉଣୀମାନେ ପାଠ ପଢ଼ିବାର ସୁଯୋଗ ଲାଭ କରି ନାନାଦି କୁସଂସ୍କାର ଏବଂ ସମାଜ ପକ୍ଷରେ ଅକଲ୍ୟାଣକ ଅଶୁଭ କାର୍ଯ୍ୟ ଯାହା ଶିକ୍ଷାଦ୍ୱାରା ଦ୍ରୁତହ୍ରାସ ପାଇବା ଉଚିତ ଥିଲା ତାହା ଉତ୍ତରୋତ୍ତର ବଢ଼ିବାରେ ଲାଗିଛି । ପ୍ରଥମ ଉଲ୍ଲେଖଯୋଗ୍ୟ ହେଉଛି ଯୌତୁକ ପ୍ରଥା । ଆଜି ଶିକ୍ଷିତ ମଧ୍ୟବିତ୍ତ ସମାଜରେ ଧନୀକ ସମାଜର ଅନୁକରଣରେ ଯୌତୁକ ପ୍ରଥା ପ୍ରତିଯୋଗିତା-ମୂଳକ ଭାବରେ ଦ୍ରୁତ ଗତିରେ ବଢ଼ିବାର ଦେଖାଯାଉଛି । ମଧ୍ୟବିତ୍ତ ସମାଜର ମହିଳାମାନଙ୍କୁ ଏହି ଯୌତୁକ ପ୍ରଥାର ମୂଳରେ ସଜୋରେ କୁଠାରଘାତ କରିବାକୁ ପଡ଼ିବ । ନଚେତ୍ ଏହି ସମାଜ ସେ କେଉଁଠାରେ ଯାଇ ପହଞ୍ଚିବ ତାହା ଚିନ୍ତାକରି ବସିଲେ ଦେହ ଶିହରି ଉଠୁଛି । ଝିଅଟିକୁ ପର ଘରକୁ ପଠେଇଦବା ବାପ ମା ପକ୍ଷରେ ଏକ କମ୍ ସମ୍ପଦ ହରେଇବା ନୁହଁ । ଝିଅ ଘରର ରତ୍ନ ସଦୃଶ । ସେ ରତ୍ନଟିକୁ ନିଜ ଘରକୁ ସାଦରରେ ଉଠେଇ ନେଇ ଯେଉଁ ଘର ଇଚ୍ଛା କରୁଛନ୍ତି ବାହାରର ଆଉରି ଧନରତ୍ନ ଝିଅଘରୁ ନିଜ ଘରେ ନେଇ ପୂରେଇବାକୁ ସେପରି ଘରେ କୌଣସି ଶିକ୍ଷିତ ଝିଅ ଯିବାକୁ ଇଚ୍ଛା ବା କାହିଁକି କରିବ ? ଆଜି ଯୌତୁକ ପ୍ରଥା ବିରୋଧରେ ସାରା ମହିଳା ସମାଜକୁ ସ୍ୱର ଉଠେଇବାକୁ ପଡ଼ିବ । କେବଳ ସ୍ୱର ଉଠେଇ କ୍ଷାନ୍ତ ହେଲେ ଚଳିବ ନାହିଁ । ଏହାକୁ କାର୍ଯ୍ୟକାରୀ କରିବାକୁ ସଚେଷ୍ଟ ହେବାକୁ ପଡ଼ିବ । ଆଇନ ମୁହଁକୁ ଚାହିଁ ଯେଉଁ ଜାତି ସମାଜ ପରିବର୍ତ୍ତନର ଆଶା ରଖନ୍ତି ସେ ଜାତି ପକ୍ଷରେ ଉପର ଉଚ୍ଚ ସ୍ତରକୁ ଉଠିବା ସମ୍ଭବ ନୁହଁ । ଶିକ୍ଷିତ ଗୋଷ୍ଠୀଙ୍କ ଭିତରେ ଅସ୍ପୃଶ୍ୟତା ଦୋଷ ପୂରାପୂରି ଭାବରେ ଏ ପର୍ଯ୍ୟନ୍ତ ବିଦ୍ୟମାନ ରହିଛି । କେବଳ ସଭାସମିତି ଗଠନରେ ଆମ କାମ ସୀମିତ ରହିଯାଇଛି । ଘରେ ଘରେ ପଶି ଅସ୍ପୃଶ୍ୟତା-ରୂପୀ କଳଙ୍କକୁ ଦୂର କରିବା ପାଇଁ ନାରୀ ସମାଜର ପ୍ରଚେଷ୍ଟା ଚାଲୁ ରହିବା ଦରକାର । ନିଶା ତ ଭଉଣୀ ସମାଜର ଏକ ବଡ଼ ଶତ୍ରୁ । ନିଶାର ପ୍ରକୋପରେ ପୁରୁଷମାନେ ସ୍ତ୍ରୀମାନଙ୍କୁ କେବଳ ଯେ ମାଡ଼ ମାରୁଛନ୍ତି ତାହା ନୁହଁ ନାନାଦି ଅପମାନସୂଚକ ବାକ୍ୟ ମଧ୍ୟ କହୁଛନ୍ତି । ଶ୍ରମିକ ସମାଜରେ ତ ଏହା ସବୁଠାରୁ ଅନିଷ୍ଟକାରୀ ଏକ ସମସ୍ୟା । ବହୁ ସଂଖ୍ୟାରେ ଭଉଣୀମାନେ ବାହାରି ଯଦି ଜୋରସୋରରେ ନିଶା ପ୍ରଚଳନ ବିରୋଧରେ ସ୍ୱର ଉଠେଇବେ ତେବେ ସେ କୌଣସି ସରକାର ତାହା ରୋକିବାକୁ ବାଧ୍ୟ ହେବେ । ମଦ ପିଇବାକୁ ଲୋକେ ଚାହୁଁଛନ୍ତି ତେଣୁ ଆମେ ଆଣି ଜୁଟଉଛୁ ବୋଲି ଯେଉଁ ସରକାର ଯୁକ୍ତି ବାଢ଼ୁଛନ୍ତି ସେ ସରକାର ଜାଣିଶୁଣି ମୂର୍ଖଙ୍କ ପରି କଥା କହୁଛନ୍ତି । ଶ୍ରମିକମାନଙ୍କ ସାମନାରେ ନିଶା ବଜାର ଖୋଲି ଦେଇ ଯେଉଁ ସରକାର "ଗରିବି ହଟେଇବା"ର ଦାବି ରଖୁଛନ୍ତି ସେ ସରକାର ଲୋକଙ୍କୁ ପ୍ରତାରଣା କରୁଛନ୍ତି ମାତ୍ର ନିଶା ଦରିଦ୍ରଙ୍କୁ ଆହୁରି ଦରିଦ୍ର କରୁଛି । ଶ୍ରମିକର ଶ୍ରମ ଲବ୍ଧଧନ ଯାଇ ସରକାର ଏବଂ ଧନୀଙ୍କ ଘରେ ଜମା ହେଉଛି । ପୀଡ଼ିତ ସନ୍ତାନ ମୁହଁରେ ଅପଥ୍ୟ ଯୋଗେଇବା ଯେପରି ଦୋଷାବହ ମଦ ଖାଉଥିବା ମଣିଷଙ୍କୁ ମଦ ଯୋଗେଇବା ସେହିପରି ଦୋଷାବହ ଏବଂ ଅମଣିଷ ପଣିଆ ।

( ସର୍ବୋଦୟ : ୧୫ ଅଗଷ୍ଟ, ୧୯୭୬ )

---

## ଜୀବନ ସଂଗ୍ରାମ—

# ଇତିହାସର ମିଛ-ସତ

ଛାତ୍ର ଜୀବନରେ ପାଠ୍ୟପୁସ୍ତକ ଭାବରେ ଯେଉଁ ଇତିହାସ ବହି ଆମକୁ ପଢ଼ିବାକୁ ମିଳୁଥିଲା ସେ ଇତିହାସ ବହି କଥା ଭାବିବସିଲେ ମନରେ କ୍ରୋଧ ଜାତ ହୁଏ, ହସ ମଧ୍ୟ ମାଡ଼େ । ଖଣ୍ଡେ ଇତିହାସ ବହି ପଢ଼ିବାକୁ ଆମେ ବାଧ୍ୟ ଥିଲୁ । ବହିଟି ମୋ ପରି ସେ କାଳର ବହୁ ଛାତ୍ର ପଢ଼ିଥିବେ ନିଶ୍ଚୟ । ଇତିହାସ ବହିଟିର ନାଁ ଥିଲା "England's work in India" ( ଭାରତରେ ଇଂଲଣ୍ଡବାସୀଙ୍କର କାର୍ଯ୍ୟ) ଏହି ବହି ଛଡ଼ା 'ଭାରତ ବର୍ଷର ଇତିହାସ' ଏକ ବହି ମଧ୍ୟ ପଢୁଥିଲୁ । ତାହା ଭାରତକୁ ବାହାରୁ ଆସିଥିବା ନାନା ଭିନ୍ନ ସଂପ୍ରଦାୟର ସାମ୍ରାଜ୍ୟ ବିସ୍ତାରର ଇତିହାସ ଭାତୃଦ୍ରୋହ, ପିତୃଦ୍ରୋହ, ରାଜଦ୍ରୋହ, ହଣାକଟା ଲଢ଼େଇର କାହାଣୀ, ରାଜା ରାଜୁଡ଼ାମାନଙ୍କର ବ୍ୟକ୍ତିଗତ ସୁଖ ଦୁଃଖ, ବହୁ ବିବାହ ଏବଂ ଏହି ବିବାହ ସଂକ୍ରାନ୍ତ ମନୋମାଳିନ୍ୟ ଲଢ଼େଇ କଥାମାନ ବହୁ ଆଡ଼ମ୍ବରରେ ଲିଖିତ ହୋଇଥାଏ । ସେଥିରେ ସାଧାରଣ ଲୋକଙ୍କର ଆର୍ଥିକ, ସାମାଜିକ ବା ମାନସିକ ବିକାଶ ବା ଅବସ୍ଥା କଥା ଜାଣିବାକୁ ଇଚ୍ଛା କଲେ, ଖୋଜିଲେ ସୁଦ୍ଧା ମିଳୁ ନ ଥିଲା, England's work in India ବହିଖଣ୍ଡ ପଢ଼ିଲା ବେଳେ ସମୟେ ସମୟେ ଇଚ୍ଛା ହେଉଥାଏ ବହିଖଣ୍ଡ ନିଆଁରେ ପକେଇ ଦିଅନ୍ତି କି ? ସେଥିରେ ବ୍ରିଟିଶ ଜାତିର ଗାରିମା ଏବଂ ଭାରତକୁ ହୀନ କରି ଦେଖାଇବାଟା ହିଁ ପ୍ରଧାନ ଓ ପ୍ରଥମ ଉଦ୍ଦେଶ୍ୟ ଥାଏ ।

ବ୍ରିଟିଶ ଭାରତକୁ ବ୍ୟବସାୟ ଛଳରେ ଆସି ସାମ୍ରାଜ୍ୟ ବିସ୍ତାର ସକାଶେ ଯେଉଁ ଉପାୟ ଅବଲମ୍ବନ କଲେ ସେହି ଶୋଷଣ ଏବଂ ଉତ୍ପୀଡ଼ନ ଫଳରେ କୃଷକ, ଶ୍ରମିକ ଏବଂ କାରିଗରମାନେ ତାହାର ଯେଉଁ ସମୂହ ପ୍ରତିରୋଧ କଲେ ସେ ବିଦ୍ରୋହର ଇତିହାସ ପାଠ୍ୟ ପୁସ୍ତକରେ ସମାବିଷ୍ଟ ନଥିଲା ଏବଂ ଏହା ଦୁଃଖର ବିଷୟ ଯେ, ଆଜି ମଧ୍ୟ ତାହା ହୋଇ ନାହିଁ । ବ୍ରିଟିଶ ଏବଂ ବ୍ରିଟିଶକୁ ଏହି ଶୋଷଣ ଏବଂ ଉତ୍ପୀଡ଼ନରେ ସଙ୍କୋଚ ଭାବରେ ପ୍ରଶ୍ରୟ ଏବଂ ସହାୟତା ଦେଉଥିବା ମହାଜନ, ଜମିମାଲିକ ଏବଂ ଧନୀକ ସଂପ୍ରଦାୟଙ୍କ ବିରୋଧରେ ଏ ସଂଗ୍ରାମ ଥରେ ନୁହେଁ, କ୍ରମାନ୍ୱୟ ଭାବରେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ଶେଷଭାଗ ଯାଏ ଚାଲିଥିଲା । ସାଧାରଣ ଶୋଷିତ ଜନତାର ଥରକୁ ଥର ଏହି ଯେଉଁ ବିଦ୍ରୋହ ତାହା ଆଜି ଯାଏ ଧନୀ, ଶିକ୍ଷିତ ସାମନ୍ତବାଦୀ ଉପର ସ୍ତରର ଲୋକଙ୍କ ପାଖରେ ଯେପରି ଏକ ଅସହଣୀୟ ଘଟଣା ପାଇଁ ଆଜିଯାଏ ସହିବା ଏମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରି ନାହିଁ । ତେଣୁ ସେ ସବୁ ବୀରତ୍ୱ-କାହାଣୀ ସ୍କୁଲ ପାଠ ବହିରେ ଅଳ୍ପ ସୁଦ୍ଧା ସ୍ଥାନ ପାଇ ପାରି ନାହିଁ !

ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀର ଏହି କୃଷକ-ଜନତାର ବିଦ୍ରୋହର ଇତିହାସ ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦ ଏବଂ ପରାଶ୍ରୟପୁଷ୍ଟ ଧନୀ, ଭୂମି ମାଲିକ ଏବଂ ମହାଜନମାନଙ୍କର ଶୋଷଣ ଏବଂ ଉତ୍ପୀଡ଼ନର ହିଁ ଇତିହାସ ମାତ୍ର । ଅଷ୍ଟାଦଶ ଶତାବ୍ଦୀର ''କୃଷକ ସଂଗ୍ରାମର ପୃଷ୍ଠଭୂମିକୁ ଛାଡ଼ି ମୋର ଏହି 'ଜୀବନ ସଂଗ୍ରାମ' ଲେଖାରେ ସୁପ୍ରସିଦ୍ଧ ଐତିହାସିକ ଶ୍ରୀ ସୁପ୍ରକାଶ ରାୟଙ୍କର 'ଭାରତ କୃଷକ ବିଦ୍ରୋହ ଓ ଗଣତାନ୍ତ୍ରିକ ସଂଗ୍ରାମ' ପୁସ୍ତକର 'ଊନବିଂଶ ଶତାବ୍ଦୀର ସାନ୍ତାଳ-ବିଦ୍ରୋହ' ଅଧ୍ୟାୟଟିର କେବଳ ପର୍ଯ୍ୟାଲୋଚନା କରିବି । ଅବଶ୍ୟ ଅଷ୍ଟାଦଶ ଶତାବ୍ଦୀର 'ସନ୍ନ୍ୟାସୀ ବିଦ୍ରୋହ' ଅଧ୍ୟାୟଟି ମଧ୍ୟ ପ୍ରଣିଧାନ ଯୋଗ୍ୟ । ତାହାର ନେତୃତ୍ୱ କରିଥିଲେ ଫକୀର ମଜନୁସାହା । ଏହି ମଜନୁସାହା ଜଣେ ସାଧାରଣ ଫକୀର ଥାଇ ତାଙ୍କର ସଂଗଠନ ଶକ୍ତି ବଳରେ ପ୍ରତାପଶାଳୀ ବ୍ରିଟିଶକୁ କମ୍ ହଇରାଣ କରି ନ ଥିଲେ । ମଜନୁସାହାଙ୍କ ଜୀବନୀ ଏକ ବୀରର ଅତି ଉଲ୍ଲେଖ-ଯୋଗ୍ୟ ଜୀବନ କାହାଣୀ ଏବଂ ସ୍ୱାଧୀନ ଭାରତର ପାଠ୍ୟପୁସ୍ତକରେ ସ୍ଥାନ ପାଇବାରେ ଯୋଗ୍ୟ । କିନ୍ତୁ ତାହା ମଧ୍ୟ କୌଣସି ପାଠ୍ୟ ପୁସ୍ତକରେ ଆଜି ସୁଦ୍ଧା ଦେଖିବାକୁ ମିଳେ ନାହିଁ ।

୧୮୫୫ ସାଲରୁ ୧୮୫୭ ସାଲ ଭିତରେ ଘଟିଥିବା 'ସାନ୍ତାଳ ବିଦ୍ରୋହ' ପ୍ରସଙ୍ଗରେ ପ୍ରସିଦ୍ଧ ଐତିହାସିକ ସୁପ୍ରକାଶ ରାୟ ତାଙ୍କର ଉପର ଉଲ୍ଲେଖିତ ପୁସ୍ତକରେ ବହୁ ଇଂରେଜ ଲେଖକ, ତତ୍କାଳୀନ ବଙ୍ଗଳାର ସାନ୍ତାଳ ପ୍ରଗଣା ଜିଲ୍ଲା ଗେଜେଟିଅର, କଲିକତା ରିଭ୍ୟୁ (Calcutta review) ଏବଂ ବହୁ ଐତିହାସିକମାନଙ୍କର ଯଥା— W. W. Hunterଙ୍କର annals of rural Bengal, E. J. Main'sଙ୍କର Santhalia of the Santhals, K. K. Duttଙ୍କର The Santhal insurreation ପ୍ରଭୃତି ପୁସ୍ତକରୁ ଉଦ୍ଧୃତ କରି ଏକ ହୃଦୟସ୍ପର୍ଶୀ ଏବଂ ଅତି ପ୍ରେରଣା ଦାୟକ ପ୍ରବନ୍ଧର ଅବତାରଣା କରିଛନ୍ତି । କେବଳ 'ସାନ୍ତାଳ-ବିଦ୍ରୋହ' ନୁହେଁ, ତାଙ୍କର ଏହି ବହିରେ ଶୋଷଣ ଏବଂ ଉତ୍ପୀଡ଼ନ କ୍ଲିଷ୍ଟ ସାଧାରଣ କୃଷକ କାରିଗରଙ୍କର ସାମଗ୍ରିକ ବିଦ୍ରୋହର ପ୍ରାୟ ସବୁ ଘଟଣାଗୁଡ଼ିକ ଧାରାବାହିକ ଭାବରେ ଅଧ୍ୟାୟ ପରେ ଅଧ୍ୟାୟର ଲୋକ ଚକ୍ଷୁ ସାମନାରେ ସୁନ୍ଦର ଛବିପରି ଭାଷାରେ ରଖିଛନ୍ତି ।

"ସାନ୍ତାଳ-ବିଦ୍ରୋହ" ନାମକ ଅଧ୍ୟାୟରେ ଶ୍ରୀ ସୁପ୍ରକାଶ ରାୟ ତାଙ୍କ ବହିରେ ଲେଖିଛନ୍ତି "୧୮୫୫ରୁ ୧୮୫୭ ଖ୍ରୀଷ୍ଟାବ୍ଦର ସାନ୍ତାଳ ବିଦ୍ରୋହ ଭାରତର କୃଷକ ବିଦ୍ରୋହର ଇତିହାସରେ ଅତୁଳନୀୟ କେବଳ ମାତ୍ର ୧୮୫୭ ସାଲର 'ମହା ବିଦ୍ରୋହ' ସହିତ ଏହାକୁ ଆଂଶିକ ଭାବରେ ତୁଳନା କରାଯାଇ ପାରେ ।" × × × × "ସାନ୍ତାଳ ଉପ-ଜାତିର ଏହି ବିଦ୍ରୋହ ସାନ୍ତାଳ ପ୍ରଗଣାର ପାର୍ଶ୍ୱବର୍ତ୍ତୀ କତିପୟ ଜିଲ୍ଲାର କର୍ମକାର, ତେଲି, ଡମ, ଚର୍ମକାର ଏବଂ ଶୋଷିତ ସମ୍ପ୍ରଦାୟର ଦରିଦ୍ର ମୁସଲମାନମାନଙ୍କର ସହଯୋଗୀତାରେ ସାନ୍ତାଳ ଅଞ୍ଚଳରୁ ବୈଦେଶିକ ଶାସନ ଓ ଦେଶୀୟ ସାମନ୍ତ ତାନ୍ତ୍ରିକ ଶୋଷଣର ମୂଳୋତ୍ପାଟନ କରିବା ପାଇଁ ହିଁ ପରିଚାଳିତ ହୋଇଥିଲା ।"

ଅନ୍ୟ ଏକ ସ୍ଥାନରେ ସେ ଲେଖିଛନ୍ତି—"ସାନ୍ତାଳ ଭାଷାରେ ବିଦ୍ରୋହକୁ 'ହୁଲ' ବୁଝାଯାଏ । ତେଣୁକରି ସାନ୍ତାଳ ବିଦ୍ରୋହ 'ସାନ୍ତାଳ ହୁଲ' ନାମରେ ମଧ୍ୟ ଅଭିହିତ ହୁଏ । ୧୮୫୫ ଖ୍ରୀଷ୍ଟାବ୍ଦରେ ଏହି ବିଦ୍ରୋହ ପରିପୂର୍ଣ୍ଣ ରୂପରେ ଆତ୍ମପ୍ରକାଶ କରି ଦାବାଗ୍ନିପରି ଚତୁର୍ଦ୍ଦିଗରେ ବିସ୍ତୃତ ହୋଇଥିଲେ ସୁଦ୍ଧା ୧୮୫୪ ଖ୍ରୀଷ୍ଟାବ୍ଦରେ ହିଁ ଏହି ବିଦ୍ରୋହର ଅଗ୍ନି ସ୍ଫୁଲିଙ୍ଗ ଉଠିବାକୁ ଆରମ୍ଭ କରିଥିଲା । ସୁପ୍ରକାଶ ରାୟଙ୍କ ମତରେ ଏହି ସାନ୍ତାଳ ବିଦ୍ରୋହ ୧୮୫୭ ସାଲର ମହାବିଦ୍ରୋହକୁ ବହୁ ପରିମାଣରେ ପ୍ରେରଣା ଯୋଗାଇ-ଥିଲା ।

"ଅସହନୀୟ ଶୋଷଣ-ଉତ୍ପୀଡ଼ନର ପ୍ରତିକାରର କୌଣସି ସମ୍ଭାବନା ନାହିଁ ଦେଖି ସାନ୍ତାଳମାନଙ୍କ ଭିତରେ ପ୍ରତିହିଂସାର ମନୋଭାବ ଜାଗ୍ରତ ହେଲା । କେହି କେହି ମହାଜନମାନଙ୍କ ଘରେ ଡକେଇତ କେଉଁଠି ବା ସ୍ୱେଚ୍ଛ କରି ସେମାନଙ୍କର ଅର୍ଥ ଆତ୍ମସାତ୍ କରି ପ୍ରତିହିଂସା ଗ୍ରହଣରେ ପ୍ରୟାସୀ ହେଲେ ।"

"କ୍ୟାଲ୍‌କାଟା ରିଭ୍ୟୁ ପତ୍ରିକା" ଏହା ମହାଜନ-ମାନଙ୍କର ଅହେତୁକ ନିଷ୍ଠୁରତାର ଉପଯୁକ୍ତ ଶାସ୍ତି ବୋଲି ଲେଖିଥିଲେ ।

ଜଣେ ଇଂରେଜ ଲେଖକଙ୍କ ମତରେ ବିଦ୍ରୋହର କାରଣ ଥିଲା ନିମ୍ନ ପ୍ରକାରର—ପ୍ରଥମତଃ—ଏହି ଉପଜାତି ସହିତ ବ୍ୟବସାୟ ଚଳେଇବାକୁ ଯାଇ ମହାଜନମାନଙ୍କର ଲୋଭ ଏବଂ ଲୁଣ୍ଠନର ପ୍ରବୃତ୍ତି ।

ଦ୍ୱିତୀୟତଃ—ଋଣ ସକାଶେ ବ୍ୟକ୍ତିଗତ ଓ ବଂଶଗତ ଦାସତ୍ୱର ପ୍ରଥାଜନିତ କ୍ରମବର୍ଦ୍ଧମାନ ଦୁର୍ଦ୍ଦଶା ଏବଂ ଦୁର୍ଗତି ।

ତୃତୀୟତଃ—ପୋଲିସ୍‌ର ସୀମାହୀନ ଦୁର୍ନୀତି ଏବଂ ଉତ୍ପୀଡ଼ନ ଏବଂ ପୋଲିସ ଦ୍ୱାରା ମହାଜନମାନଙ୍କର ଦୁଷ୍କାର୍ଯ୍ୟରେ ସହାୟତା ।

ଚତୁର୍ଥତଃ—ଅଦାଲତମାନଙ୍କରେ ସୁବିଚାର ପାଇବା ସାନ୍ତାଳମାନଙ୍କ ପକ୍ଷରେ ଅସମ୍ଭବ ଥିବା । ସର୍ବଶେଷରେ ସାନ୍ତାଳମାନଙ୍କର ଅମିତବ୍ୟୟିତା ।

୧୮୫୫ ସାଲର ଏହି ଯେଉଁ ଅବସ୍ଥା ତଥା E. J. Mains ସାହେବ ତାଙ୍କର ଲେଖାରେ ପ୍ରକାଶ କରିଛନ୍ତି ଏହି ଅବସ୍ଥା ଆଜି ମଧ୍ୟ ସ୍ୱାଧୀନ ଗଣତାନ୍ତ୍ରିକ ଭାରତର ସମଗ୍ର ଆଦିବାସୀ କ୍ଷେତ୍ରର ଅବସ୍ଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଆଜି ସମଗ୍ର ଆଦିବାସୀ କ୍ଷେତ୍ରର ଦୁର୍ଦ୍ଦଶାର କାରଣ ହୋଇ ମଧ୍ୟ ରହିଛି ।

ବିଦ୍ରୋହର ବିସ୍ତାର ସମ୍ପର୍କରେ ସୁପ୍ରକାଶ ରାୟ ଲେଖିଛନ୍ତି:...

"ମହାଜନମାନଙ୍କର ଉତ୍ପୀଡ଼ନରେ ଅତିଷ୍ଠ ହୋଇ ପରେ ସାନ୍ତାଳ ପ୍ରତିହିଂସା ନେବା ଉଦ୍ଦେଶ୍ୟରେ ବୀରସିଂ ମାଝି ନାମକ ଜଣେ ସାନ୍ତାଳଙ୍କ ଅଧୀନରେ ଡକାଏତ ଦଳ ଗଠନ କଲେ । ଡିକୁ ବା (ଦିକୁ) ଅର୍ଥାତ୍ ବଙ୍ଗାଳୀ ମହାଜନ ଓ ପଶ୍ଚିମ ଭାରତୀୟ ମହାଜନମାନଙ୍କ ଘରେ ଡକେଇତି କରି ପ୍ରତିହିଂସା ଗ୍ରହଣ କରିବା ଥିଲା ଏମାନଙ୍କର ଉଦ୍ଦେଶ୍ୟ । × × ସାନ୍ତାଳ ମହଲରେ ଗୋକ୍କୋ ନାମରେ ଜଣେ ଧନୀ ସାନ୍ତାଳ ବାସ କରୁଥିଲେ । ମହାଜନମାନେ ବହୁ ଚେଷ୍ଟା କରି ମଧ୍ୟ ତାହାର ଧନ ସମ୍ପଦ ହସ୍ତଗତ କରି ପାରି ନ ଥିଲେ । ବର୍ତ୍ତମାନ ମହାଜନମାନେ ଦାରୋଗା ସହିତ ପରାମର୍ଶ କରି ଗୋକ୍କୋ ସାନ୍ତାଳଙ୍କୁ ଚୋରି ଅଭିଯୋଗରେ ଅଭିଯୁକ୍ତ କରି ଗ୍ରେପ୍ତାର କରାଇଲେ । ଦାରୋଗା ଗୋକ୍କୋଙ୍କୁ ଲାଞ୍ଛିତ ଓ ଅପମାନିତ କଲାବେଳେ ଗୋକ୍କୋ ଚିତ୍କାର କରି କହିଥିଲେ "ଆମେମାନେ ଦେଖିବାକୁ ଚାହୁଁ, ଏହି ସବୁଡାକ ଦାରୋଗା ସାନ୍ତାଳ ପ୍ରଗଣାର ସମସ୍ତ ଶାନ୍ତିକାମୀ ସାନ୍ତାଳଙ୍କୁ ବାନ୍ଧିବା ଭଳି ଦଉଡ଼ି କେଉଁଠାରୁ ଆଣିବ ।"

ଏହି ଘଟଣା ପରେ ସାନ୍ତାଳ ମହଲ ଦୁଇଟି ପୁର୍ବ ଲକ୍ଷଣପରି ସ୍ତବ୍ଧଭାବ ଧାରଣ କରି ରହିଲେ । ଶତାବ୍ଦୀ କାଳର ସଞ୍ଚିତ ବିକ୍ଷୋଭ ଆଗ୍ନେୟଗିରିର ଅଗ୍ନିଶିଖା ଅଗ୍ନ୍ୟୁତ୍ପାତ ପରି ଫାଟି ପଡ଼ିବାର ପୂର୍ବକ୍ଷଣରେ ସମସ୍ତ ସାନ୍ତାଳ ଅଞ୍ଚଳର ଅଭ୍ୟନ୍ତରରେ ଆଲୋଡ଼ନ ସୃଷ୍ଟି କଲା ।

୧। ମଜକୁସାହାଙ୍କର ବୀରତ୍ୱର କାହାଣୀ ଜୀବନ ସଂଗ୍ରାମରେ ଲେଖିବାର ବାସନା ଅଛି ।

୨। ଏହି ସାନ୍ତାଳ ବିଦ୍ରୋହ କଥା ଆସନ୍ତା ସଂଖ୍ୟାରେ ସମାପ୍ତ ହେବ ।

(ସର୍ବୋଦୟ, ଫେବୃୟାରୀ ୧, ୧୯୭୮)

(ମାଳତୀଦେବୀଙ୍କର ବହୁଗୁଣ ମହତ୍ତ୍ୱପୂର୍ଣ୍ଣ ରଚନା 'ଜୀବନ ସଂଗ୍ରାମ' ଶୀର୍ଷକରେ ସର୍ବୋଦୟରେ ପ୍ରକାଶ ପାଉଥିଲା । ଏଠାରେ ଉଦ୍ଧୃତ ଜୀବନ ସଂଗ୍ରାମରେ ଦୁଇଗୋଟି ବିଷୟର ନାମ ଯଥା—ବରେଣ୍ୟ ବିପ୍ଳବୀ ଓ ମିଛ ସଚ ଇତିହାସ ସଙ୍କଳକଙ୍କ ଦ୍ୱାରା ପ୍ରଦତ୍ତ ।)

---

# 'ବାପି'ଙ୍କର 'ଓଟେଗା'

## ମୋର ବିନମ୍ର ପ୍ରତିବେଦନ



ସୁଦୂର ଗୁଜରାଟରୁ ଲେଖୁଛି, ଏଠି ଝିଅ ଜ୍ୱାଇଁ ସାଙ୍ଗରେ ଚାଲିଆସିବା ପୂର୍ବେ ଅନୁଗୋଳଠାରେ ପ୍ରତିଦିନ ବହୁସଂଖ୍ୟାରେ ସହାନୁଭୂତିପୂର୍ଣ୍ଣ ଆନ୍ତରିକତାଭରା ପତ୍ରମାନ ଏବଂ ଟେଲିଗ୍ରାମମାନ ପାଇଛି । ଏବେ ମଧ୍ୟ ଅନୁଗୋଳଠାରେ କେତେକ ପତ୍ର ପଡ଼ିଥିବ, ଯାହା କି ଏପର୍ଯ୍ୟନ୍ତ ମୋର ହସ୍ତଗତ ହୋଇ ନାହିଁ । ଗୋଟିଏ ଗୋଟିଏ ପତ୍ର ଏପରି ମର୍ମସ୍ପର୍ଶୀ ଏବଂ ଆନ୍ତରିକତାପୂର୍ଣ୍ଣ ଯେ, ବ୍ୟକ୍ତିଗତଭାବେ ଜବାବ ଦେବା ପାଇଁ ମୋର ଅନ୍ତର ବ୍ୟାକୁଳ ହୋଇ ଉଠୁଥାଏ, ମାତ୍ର କୋହ ଉଠିବାରୁ ଲେଖିହୁଏ ନାହିଁ । ତାଛଡ଼ା ବ୍ୟକ୍ତିଗତଭାବେ ପତ୍ରର ଉତ୍ତର ଦେବାର ଶକ୍ତି ବା ମନୋବଳ ମୋର ବର୍ତ୍ତମାନ ନାହିଁ । ସେଥିପାଇଁ ଶୁଭାନୁଧ୍ୟାୟୀ ବନ୍ଧୁମାନଙ୍କ ପାଖରେ କ୍ଷମା ଭିକ୍ଷା କରୁଛି । ପ୍ରାୟ ଦୀର୍ଘ ଷାଠିଏ ବର୍ଷ କାଳ ଏକ ମହାନ୍ ବ୍ୟକ୍ତିଙ୍କ ସହ କାଳଯାପନ କରିବାର ଏକ ମହତ ସୁଯୋଗ ମୋତେ ମିଳିଥିଲା, ସେଥିପାଇଁ ଆଜି ନିଜକୁ ଧନ୍ୟ ମନେକରୁଛି । ମୃତ୍ୟୁ ତ ଅବଶ୍ୟମ୍ଭାବୀ । ଦୁଃଖରେ କାତର ହେବା ଅନୁଚିତ । ପରିଣତ ବୟସରେ କୌଣସି ବିଶେଷ ଦୈହିକ କଷ୍ଟ ନସହି ତାଙ୍କର ଆଦରର ନାତି ନାତୁଣୀଙ୍କଦ୍ୱାରା ପରିବୃତ ହୋଇ ସଜ୍ଞାନରେ ସେ ଚାଲିଯାଇଛନ୍ତି । ଏପରି ସୁଖ ମୃତ୍ୟୁ ହିଁ ତାଙ୍କର କାମ୍ୟ ଥିଲା । ମୋର ଗୋଟିଏ ମାତ୍ର ସାନ୍ତ୍ୱନା ଯେ, ଆମେ ଦୁହେଁ ପରସ୍ପରର ଅତି ଘନିଷ୍ଠ ବନ୍ଧୁ ଥିଲୁ । ମୋର ଜୀବନର କୌଣସି ମନୋଭାବ ତାଙ୍କଠାରୁ ଲୁଚେଇ ନାହିଁ ବା ସେ ମଧ୍ୟ ମୋ'ଠାରୁ ତାଙ୍କ ଜୀବନର କୌଣସି କଥା ଲୁଚେଇ ରଖି ନଥିଲେ । ବୋଧେ ସେଥିପାଇଁ ସମସ୍ତ ପଡ଼ିଲେ ଘୋର ଦାରିଦ୍ର୍ୟ ଭିତରେ ଏବଂ ସଂସାରର ବହୁତ ଆଘାତ ସହି ଆମେ ଦୁହେଁ ଅତି ଆନନ୍ଦରେ ଦିନ କଟେଇଛୁ । ମତଭେଦ ନେଇ ଅବଶ୍ୟ ବଚସା ବହୁତ ହୋଇଛି । ରାଗ, ଅଭିମାନ ମଧ୍ୟ ବହୁତ ହୋଇଛି, ମାତ୍ର ସେ ସବୁତ ଦାମ୍ପତ୍ୟ ଜୀବନରେ ସଚରାଚର ଘଟିବା ଘଟଣା । ସେ ଯେ ମୋ' ଆଗରୁ ଚାଲିଯିବେ ଏକଥା କେବେହେଲେ କଳ୍ପନାରେ ନଥିଲା । ଜୀବନରେ ବହୁତ ସଂଗ୍ରାମ କରିବାକୁ ପଡ଼ିଛି । ଅନ୍ୟାୟର ପ୍ରତିରୋଧରେ ବହୁତ ବିଦ୍ରୋହ କରିଛି ମାତ୍ର ଆଜି ମୃତ୍ୟୁ ପାଖରେ ମୁଁ ପରାଜିତ । ମୃତ୍ୟୁ ସାମନାରେ ମୋର ସଂଗ୍ରାମ ବା ବିଦ୍ରୋହ କାମ ଦେଲା ନାହିଁ । ଜାଣେ ଅଶୀତିତମ ବୟସରେ ଶକ୍ତି ମୋର କମିଯାଇଛି । ମୃତ୍ୟୁ ପରି ଶକ୍ତିଶାଳୀ ଶତ୍ରୁର ମୁକାବିଲା କରିବାର ଶକ୍ତି କାହିଁ ? ଆପଣମାନଙ୍କ ପରି ଶୁଭାନୁଧ୍ୟାୟୀ ବନ୍ଧୁମାନେ ପ୍ରାର୍ଥନା କରନ୍ତୁ ବଞ୍ଚିଥିବାଯାଏ ଯେପରି ଦରିଦ୍ରତମ ଆଦିବାସୀ ହରିଜନମାନଙ୍କ ଯତ୍ସାମାନ୍ୟ ସେବାରେ ଲାଗି ରହିପାରେ ।

ପତ୍ର ପଠେଇବା ବନ୍ଧୁମାନଙ୍କ ବ୍ୟତୀତ ବହୁ ସ୍ନେହ ଶ୍ରଦ୍ଧାଳୁ ବନ୍ଧୁମାନେ କଟକରୁ, କୋରାପୁଟରୁ, ସମ୍ବଲପୁରରୁ, ପୁରୀରୁ, ଫୁଲବାଣୀରୁ, ଗଞ୍ଜାମରୁ ନିତାନ୍ତ ସ୍ନେହ ଶ୍ରଦ୍ଧାର ପରବଶ ହୋଇ ଦୌଡ଼ି ଆସୁଛନ୍ତି ଅନୁଗୋଳକୁ । ତାଙ୍କର ସେ ସ୍ନେହ ଶ୍ରଦ୍ଧା ପାଖରେ ମୋର ମୁଣ୍ଡ ସ୍ୱତଃ ନଇଁପଡ଼ୁଛି । କର୍ମୀ ଭାଇଭଉଣୀମାନେ ଦୌଡ଼ି ଆସିଛନ୍ତି ତାଙ୍କର ପ୍ରିୟ 'ବାପି"ଙ୍କର ଶୂନ୍ୟ ଘରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ । ଏସବୁ ବିରାଟ ଏବଂ ବିଶାଳ ଆନ୍ତରିକତା ପୂର୍ଣ୍ଣ ଶ୍ରଦ୍ଧାର ପ୍ରତିଦାନ ଯିଏ ଦେଇ ପାରିଥାନ୍ତେ ସେ ଆଜି ବହୁଦୂରରେ ।

ଶ୍ରଦ୍ଧାବନତ

ବେରଛୀ, ୧୦-୬-୮୪ ମାଳତୀ ଚୌଧୁରୀ

( ସର୍ବୋଦୟ—ନବକୃଷ୍ଣ ଚୌଧୁରୀ ସ୍ମୃତି ବିଶେଷାଙ୍କ ୧୬ ଅଗଷ୍ଟ ୧୯୮୪ )

ମିନୁ, * ୧୧-୮-୭୫

ତୋର ୪-୮ର କାର୍ଡ଼ ଅନୁଗୁଳରୁ ଆଜ ପାଇ କେତେ ନିଶ୍ଚିନ୍ତ ବୋଧ କରୁଛୁ ଅନୁମାନ କରିବୁ । ବୁନ୍ନି'ର ଜ୍ୱର ହେବା ଚିଠି ପାଇ ତ ମୋ ବୁଦ୍ଧି ବଣା ହୋଇଥିଲା । ମାନବିକତା ଦୃଷ୍ଟିରୁ ଅମ ଦୁହିଁଙ୍କୁ କୋଉଠି ଏକାଠି ବନ୍ଦୀ କରି ରଖିବା ପାଇଁ ବହୁତ ବ୍ୟସ୍ତହୋଇ ନନ୍ଦମାଙ୍କୁ ଖଣ୍ଡେ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଚିଠି ଲେଖିଥିଲି । ଅମ ସହିତ ତାର ଯେଉଁ ବ୍ୟକ୍ତିଗତ ସମ୍ବନ୍ଧ ତାଙ୍କୁ କିଛି ନ ଜଣାଇଥିଲେ ପରେ ସେ ମତେ ଦୋଷଦେବେ ଭାବି ଚିଠି ଲେଖିଲି । ତୁଳନୁ ଅନୁଗୁଳ ମୁଁ ଯେଉଁ ଚିଠି ଦେଇଥିଲି ସେ କ'ଣ ପାଇଲା ନାହିଁ କି ? ମୋର ପୂର୍ବ ଚିଠି (ଅନ୍ତର୍ଦ୍ଦେଶୀୟ) ରୁ ପାଇଲୁ । ରୁ ତ ୪-୮ ଚିଠିରେ କିଛି ଲେଖିନୁ ? ପ୍ରମିଳା ବାହାଘର ପାଇଁ ତାକୁ ୨୦୦ଟଙ୍କା ଧାର ଦେବାକୁ ଲେଖିଥିଲି । ମୋ ସେଭିଂସ ବ୍ୟାଙ୍କ ଟଙ୍କାରୁ ମୁଁ ପରେ ସୁଝି ଦେବି, ତା' ଛଡ଼ା ଆମ ଫୋନ ଘରେ ଓ ପିଣ୍ଡାରେ ମୋର ଯେଉଁ ବହି ସବୁ ଅଛି ତା' କଥା ବୁଝିବାକୁ ଭାରି ବ୍ୟସ୍ତ ହୋଇ ତାକୁ ଲେଖିଥିଲି । ଭାଇ ଖାଇଥିଲେ ରୁ ଆସି ଅନୁଗୁଳରେ ଶୁଣିଥାନ୍ତୁ । ଆଶାକରେ ଭାଇସ୍ତ ଭାଇ ଓ ବଂଶୀ ଭାଇ ସେ ବହିପତ୍ରଗୁଡ଼ିକର ଦାୟିତ୍ୱ ନେଇଛନ୍ତି । ମୋ ଗ୍ରେଟ ବହି ଆଲମାରିରେ ମଧ୍ୟ ଭାଇ ଲାଗି ପାରନ୍ତି । ମୋର ଦେହ ଖୁବ୍ ଭଲ ଅଛି । B P ମଝିରେ ଥରେ ୯୦ ଉପରକୁ ଯାଇଥିଲା ନଚେତ୍ ୯୦ତଳେ ବରାବର ରହୁଛି । ଦୁଇଦିନ ତଳେ ୮୪ ଥିଲା । ପରୀକ୍ଷାରେ Sugar nil, ମୁଁ ଲୁଣ ଜମା ଖାଉ ନାହିଁ—ଖୁବ୍ ଖେଳ ଥିବା ଯୋଗୁ ଅଲଣା ଶାଗ ଓ ସିଝା ବେଶ୍ ଭଲ ଲାଗୁଛି । ଅସଲ କଥା ଏଠା ଜେଲ କର୍ତ୍ତୃପକ୍ଷ ସମସ୍ତେ ମୋ ସ୍ୱାସ୍ଥ୍ୟ କଥା ଖୁବ୍ ବୁଝୁଛନ୍ତି । ଏ ଋଣ ତ ମୁଁ କେବେ ସୁଝି ପାରିବ ନାହିଁ । ଗୋଟିଏ Chess mate ପାଇଛି ବହି ଦେଖି ଦେଖି ନିଜେ ନିଜେ ଖୁବ୍ ଖେଳୁଛି ପଢ଼ୁଛି ମଧ୍ୟ ଘଣ୍ଟାଏ ଘଣ୍ଟାଏ ରାତିରେ କିଛି ନ ପଢ଼ି ବଙ୍ଗଳା ହିନ୍ଦୀ ଦୂରଦର୍ଶ ଖବର ରାତି ୯ଟା ପର୍ଯ୍ୟନ୍ତ ଶୁଣୁଛି ତାର ଭିତରେ ଖାଇ ଦେଇ ଠିକ୍ ୯ଟା ବେଳକୁ ବିଛଣାରେ ଶୋଇପଡ଼ୁଛି । ସକାଳ ୫ଟା ୫-୩୦ଟା ଯାଏ । ଅସଲ ଗୋଟାଏ ଭୟ ମୋ ରେଡ଼ିଓଟାକୁ ଦୁଇଥର ବାହାରେ ଥିବାବେଳେ ମରାମତି କରିଥିଲେ ମଧ୍ୟ ଅନେକ ସମୟରେ ବନ୍ଦ୍ ହୋଇଯାଉଛି । ତନୁ, ବଲ୍ଲୁଠ ଦେଖାକରିବାକୁ ଆସିଲେ ସଙ୍କୋଚ ନକରି ଏ କଥା କହିବ । ରେଡ଼ିଓ ଆଉ କରି ତ ଏକାଟିଆ ଜୀବନ ଦୁର୍ବିସହ ହେଉଛି—ନାନା ଚିନ୍ତାରେ ମନ ଏକଦମ୍ ଖରାପ ହୋଇଯାଉଛି । ତୋ'ର କଥା ତ ବେଶି । ଏଠି ରେଡ଼ିଓ ନଥିଲେ ସମ୍ପୂର୍ଣ୍ଣ ପାଗଳ ହୋଇଯିବି । ···ତୋ ଚିଠିରୁ ଓ୍ୱାସ୍ଥ, ପ୍ରଫୁଲ୍ଲ ଓ ସ୍ୱାଧୀନ ଅସିଥିବା କଥା ଶୁଣି ଭାରି ଖୁସି ହେଉଛି । ନିଶ୍ଚୟ ଚମତ୍କାର ମୁଣ୍ଡା ସ୍କୁଲ ବିଷୟରେ କଥାବାର୍ତ୍ତା ହୋଇଥିବ । ତୁମ୍ଭ ମତେ ଲେଖିଥିଲା ସ୍ୱାଧୀନ ବନ୍ଧା ହେଲାଣି ! ସ୍କୁଲ ବିଷୟରେ ଆଉ କଏ ବୁଝିବ ଚିନ୍ତାରେ ଅତି ବ୍ୟସ୍ତହୋଇ ତୁମ୍ଭକୁ ଖବର ଦେଇଥିଲି ଭୁବନେଶ୍ୱରରେ ଭୁବନାନନ୍ଦ ବାବୁଙ୍କ ସାଙ୍ଗରେ କଥାବାର୍ତ୍ତା କରିବେ । କେବଳ ଶିକ୍ଷା ବିଷୟରେ ଯେଉଁମାନେ କାମ କରୁଛନ୍ତି ସେଇମାନେ ସ୍କୁଲଟିକୁ ଚଳାନ୍ତୁ । ଅମେ ତ ଏଣେ ତେଣେ ଟାଣି ହୋଇଯାଉଛୁ । ତୋ' ଚିଠିରେ ରୁ ଚମ୍ପତି-ମୁଣ୍ଡା କଥା କିଛି ଲେଖି ନାହୁଁ । No news is good news ! ଭାବୁଛି । ଅମ ଦୁର୍ବାନନ୍ଦ ପାଗଳା ଅଉ କିଛି ସମସ୍ୟା ସେଠି ସୃଷ୍ଟି କରୁନାହିଁ ଆଶାକରେ । ଗୁହାବାପ ଖବର ରୁ ତ କିଛି ଲେଖିନୁ ? ଲକ୍ଷ୍ମୀ ଝିଅ, ପାପ୍ କଣ ? ସେ ଆଉ ରାଜୁ ଆଦି ପିଲାମାନେ କ'ଣ କଲେ ? ଝୁନାର ଅଲ୍ପ ଅରେ କାଗଜ ଦେଖିବା ପାଇଁ ବୋଡ଼ଙ୍କୁ ଅସନ୍ତି ଅନୁରୋଧ କରିବା କଥା ବଂଶୀକୁ କହିବ । ସମସ୍ତଙ୍କ ଖବର ବଡ଼ ଚିଠିରେ ଲେଖିବୁ । ନୂଆ ପିଲା କଏ ସବୁ ଆସିଛନ୍ତି କେଉଁଠୁ କେଉଁଠୁ ?···ଅଜ ତୋ' କାର୍ଡ଼ ସାଙ୍ଗରେ ନାନାର ଓ ବାବୁଲିର ଚିଠି ଆସିଲା । ବାବୁଲି ଲେଖିଛି ସୁମିତା ସ୍ତ୍ରୋପାଳ ଯାଇଛି । ନାନା ଲେଖିଛି ଆରଗ ୧-୮ରେ ତା' ବାପଘରକୁ ଗଲା । ଦୁଇଭାଇଙ୍କୁ ରୁ ଖଣ୍ଡେ ଖଣ୍ଡେ କାର୍ଡ଼ ଲେଖି ଦବୁ ମୋର ବହୁତ ବହୁତ ଆଦର ଲେଖିଦବୁ । ସପ୍ତାହରେ ମାତ୍ର ୨ଖଣ୍ଡ ଚିଠି ଲେଖି ସମସ୍ତଙ୍କୁ ଅଲଗା ଚିଠି ଲେଖିବା ଅସମ୍ଭବ । ତାଙ୍କୁ କହିବୁ ବହି ବାହାରୁ ପାଇବା ମୁସ୍କିଲ । ମୋର ଯାହା ବହି ଅଛି ଚଳିଯାଉଛି । ବଲ୍ଲୁଠ ଧାନବାଦ ବାଟେ ଶଣୀ ସାଙ୍ଗରେ ଫେରିବ ବୋଲି ଲେଖିଥିଲା । କଟକ କଲେକ୍ଟରଙ୍କ ଅନୁମତି ଅଗ ପାଇଲେ ଏଠି ମତେ ଦେଖା କରିହେବ । ତୋ' ଦେହକଥା ସେମାନେ ଜାଣିଥିଲେ ନିଶ୍ଚେ ଅଗ ତତେ ଦେଖିବାକୁ ଯିବେ । ବଲ୍ଲୁଠକୁ କହିବୁ ତ ର ବ ଚିଠି ମୁଁ ପାଉଛି West Africa ଯାଉନାହିଁ । ଭଲ ହେଲା । ତନୁଟା ଆମ ପାଇଁ ଓ ପିଲାମାନଙ୍କ ପାଇଁ ଭୀଷଣ ବ୍ୟସ୍ତ ହୋଇଥାନ୍ତା । ଦେଖାଯାଉ Asiaରେ କୋଉ ଦେଶରେ କାମ ପାଉଛି Iraq ହେଲେ ଚମତ୍କାର ହୁଅନ୍ତା, ଅଚ୍ଛା ରବି ଖବର ତମେ କିଛି ପାଉଛ ? ଗୋପାଳଙ୍କ କଥା ମୁଁ ବଜକୁ ଲେଖିଥିଲି । ରୁ ନିଶ୍ଚୟ ଲଡଣମ୍ ଓ ତା' ମା'ଙ୍କୁ

* ମିନୁ—ମାଳତୀ ଚୌଧୁରୀ

ଚିଠି ଦବୁ—ସ୍ୱଗୁବାବୁଙ୍କ ପାଇଁ ଅମିତାଭକୁ ଚିଠି ଦେବୁ—ଓକିଲ, ତଳ ତେଲିଙ୍ଗା ବଜାର, କଟକ ଠିକଣାରେ । ଆଉ ବେଶି ଦିନ ବଞ୍ଚି ପାରିବେ ନାହାନ୍ତି ରତ୍ନା । ପ୍ରମିଳା ଠିକଣା କ'ଣ ? ନାମ କ'ଣ ରଖିବ ? ତୋ—ନୂଆଁ—ନାତି କଷ୍ଟ ରସୁଣ ଖାଉଛି B.P ପାଇଁ Great grand son ହେଲା ! ରତ୍ନାମୁନ୍ନାକୁ ଚିଠି ଦବୁ । ଭାର ପାଉଛି ।

———

ବାରିପଦା

ତା ୩-୯-୭୫

ଓଗୋ, *

ତୁମେମାନେ ଆସିବ ଆସିବ ବୋଲି କେତେଦିନ ବସି expect କରେ ହେଲେ ଯେମିତି ହଠାତ୍ ଅସିଗଲ ଲାଗିଲା । ତା' ପରେ ବିଭୂତ ଅନୁମତି ପାଇଲା କି ନାହିଁ କି ରୁ ବୁଲା ସାଙ୍ଗରେ ଦେଖା କରି ପାରିଲୁ ନାହିଁ ଏ ସବୁର ସ୍ୱାଭାବିକ ପ୍ରତିକ୍ରିୟା କି ଲୁଚାଇବାର ଚେଷ୍ଟା କଲି ତା'ପରେ ଛନୁ ପୁସିଟା ମୋ କୋଳରେ ମୁହଁ ପୁରେଇ କାନ୍ଦ କାନ୍ଦ ଯେମିତି ହେଲା ସତେ ଯେମିତି ମୁଁ ଭାରି କଷ୍ଟରେ ଅଛି । ତା'ର ଦୋଷ କ'ଣ ସେ ଦୁଇ ଭଉଣୀଙ୍କୁ ମୁଁ ଜନ୍ମ ପାଇଁ ବ୍ୟସ୍ତ ହୋଇ ଯେପରି ଚିଠି ଲେଖିଥିଲି ସେହି ଛାପଟା ତା' ମନରେ ରହିଥିବ । ତୋର ଚିଠିପତ୍ର ପାଇବା ପରେ ମୋର ମାନସିକ ଅବସ୍ଥା ଯେ ସୁଧୁରି ଯାଉଛି ସେଇଟା ସେ ବିଷୟର ଭାବି ପାରି ନାହିଁ । ଯାହାହେଉ । ମୁଁ ସେଦିନ ନିଜର ଅନୁଶାସନ ବଳିଷ୍ଠତା ଦେଖାଇବା ପାଇଁ ଯେମିତି ସତେ ଲୁହାଗଲି ମୁଁ ବାହାରିଆସିଲି ବିଭୂତ ସାଙ୍ଗରେ ଠିଆ ଠିଆ ପଦେ କଥା ସୁଦ୍ଧା କହିଲି ନାହିଁ । ସତେ ଭାରି ଖରାପ ଲାଗୁଥାଏ । ବିଭୂତକୁ ମୋ ସାଙ୍ଗରେ ଦେଖା କରିବାକୁ ମିଳିଲା ନାହିଁ ନୂଆ ନିୟମ ଅନୁସାରେ ବୋଧହୁଏ ମଧ୍ୟ ଅନୁମତି ପାଇବ ନାହିଁ । ତୁମ, ନାନୀ ହେଉଛି ମଧ୍ୟ ନୁହେଁ । ମୁଁ ଭାବିଥିଲି ଚିଫ୍ ସେକ୍ରେଟାରୀଙ୍କ ପାଖକୁ ଏ ନିୟମ ବିରୋଧରେ ପ୍ରତିବାଦ କରି ଲେଖିବି । ପରେ ଓଡ଼ିଶା ବନ୍ୟା ପରିସ୍ଥିତି ଯୋଗୁଁ ଆମର ହଜାର ହଜାର ଲୋକ ଓ ସରକାର ଯେପରି ବ୍ୟତିବ୍ୟସ୍ତ ସେଥିରେ ମୋର ଆଉ ଏଇ କଥାନେଇ ଚିଠି ଲେଖିବାକୁ ମନ ବଳିଲା ନାହିଁ । ଅସଲ କଥା ସମସ୍ତ ବ୍ୟାପାରଟାକୁ 'ହଯବରଲ'ର କାହାଣୀ ଭଳି ସତେ ମୂଳରୁ ମନେହେଉଛି ।

କାଲି ଖବର କାଗଜରେ ପଢ଼ିଲି ପୌନାର ବାବା ଆଉ କିଛି ଲେଖିବା ସୁଦ୍ଧା ନାହିଁ—ସେ ତ 'ରାମହରି' ଛଡ଼ା ଲୁଥାନ୍ତେ ଅନ୍ୟ କିଛି ଲେଖି ନ ଥିଲେ । ଯାହାହେଉ ଆଉ କିଛି ଲେଖିବେ ନାହିଁ । କିନ୍ତୁ ଠାରୁ ବନ୍ଦ ହେବ କି ନାହିଁ ? ଚେଲାମାନେ ସେଇ ଠାରକୁ ତ ମନଇଚ୍ଛା ଅର୍ଥ କରନ୍ତି । ମଣିଷ ମରିଗଲା ପରେ planchet ରେ ତାକୁ ଡକାଇ ଏ ଦେଶର ଲୋକେ ତା' କଥା ଶୁଣାଉଛନ୍ତି ।

ହଁ ତୋ ସଙ୍ଗେ ଦେଖା ହେବା ଦିନେ ଦୁଇଦିନ ମଧ୍ୟରେ ତୋର ଦୁଇଖଣ୍ଡ ପୁରୁଣା ଚିଠି ପହଞ୍ଚିଥିଲା—ଖଣ୍ଡେ ଅନ୍ତର୍ଦେଶୀୟ ବୃଜକୁ ମୋ' ଚିଠି ପାଇବା ପରେ ସେଇଟା ଲେଖିଥିଲୁ ।

ରାଧାମଣି ଅପାଙ୍କର ଗୋଟାଏ ପରିପତ୍ର ଆସିଛି । ମୁଁ ଏଠୁ କିଛି ଲେଖିବି ନାହିଁ । ଆମେ କଣ ଛୁଟି ପାଇବା ନାହିଁ । ବିଶ୍ୱନାଥ, ରାଧାମଣିଅପା ପ୍ରଭୃତି ଯେଉଁମାନେ କାମ କରୁଛନ୍ତି ଓ ଭବିଷ୍ୟତରେ କରିବେ ସେମାନେ ନିଜେ ବିଚାର କରି ଠିକ୍ କରନ୍ତୁ । ୨୦ । ୨୫ ବର୍ଷ ହେଲା ଶାସନରେ ଥାଇ ଯେତେ ଅଇନ୍ କାନୁନ କରିଥିଲୁ ବଖାଣ କରୁଥିଲୁ ଆମେ ଗରିବ ଲୋକ, ହରିଜନ, ଆଦିବାସୀ ଯେଉଁ ତିମିରେ ସେଇ ତିମିରେ ରହିଥିଲେ—ଅମଲା ତନ୍ତ୍ର ତ ଆଇନ ତନ୍ତ୍ରକୁ କେହି ବାଟକୁ ଆଣି ପାରୁ ନ ଥିଲେ—ରୁ ତ କେତେଥର ଏକଥା ସତେ କହିଛୁ ବର୍ତ୍ତମାନ ଯୋଉ କାରଣରୁ ହେଉ, ଯଦି ସେ ଦୁଇତନ୍ତ୍ରକୁ ହଲାଇ ଦିଆ ଯାଇଥାଏ ଓ ଗରିବ ଲୋକଙ୍କ ପାଖରେ କିଛି ପହଞ୍ଚୁଥାଏ ସବୁଠାରୁ ବେଶୀ ଖୁସି ଆମେମାନେ ବା ତୁମେମାନେ ଯେ ଆଦିବାସୀଙ୍କ ଭିତରେ କାମ କରୁଛ ସେମାନେ ଖୁସି ହେବାର କଥା । ଦଣ୍ଡଭୟରୁ ଲୋକେ ଯଦି କାମରେ ହୁଅଥାଏ କମ୍ କଥା ନୁହଁ । ଆମ ସଂସ୍କୃତିରେ ଏବେ ବି ସାଧାରଣ ଲୋକଙ୍କ ଭିତରେ ସେହି ପ୍ରାଚୀନ ସାମନ୍ତବାଦୀ ସଂସ୍କୃତି ରହିଛି । ଭୀଷ୍ମ, ଦ୍ରୋଣ, ରାଜା ଦୁର୍ଯ୍ୟୋଧନର ଖୋସାମଦ କରୁଥିଲେ ଆଜି ବି ଆର୍ଯ୍ୟମାନେ ସେହିପରି କରୁଛନ୍ତି-ମଧ୍ୟବିତ୍ତ ଶ୍ରେଣୀ ବିଷୟରେ ଲୋହିଆ ଯାହା ଲେଖିଛି କହୁଥିଲା । ତା ବହିଗୁଡ଼ା ଆମର ଅଛି ପଢ଼ିବୁ । ଆଖି ଆଗରେ ତ ଦେଖିଲୁ । ……ବଙ୍ଗଳା ଦେଶ ଘଟଣା ପରେ ଆଉ ସବୁ କଥା ପଛରେ ପକାଇ ଉପମହାଦେଶକୁ

* ବାରିପଦା ଜେଲରୁ ଅନ୍ତରୀଣବନ୍ଦୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ତାଙ୍କ ପତ୍ନୀ ଶ୍ରୀମତୀ ମାଲତୀ ଚୌଧୁରୀଙ୍କୁ ପତ୍ର ।

(ଭାରତ ମହାସାଗରକୁ ମଧ୍ୟ ) ବଡ଼ ଶତ୍ରୁମାନଙ୍କ କୁରୁକ୍ଷେତ୍ର କରାଇ ନ ଦେଖିବାକୁ କପାଳ ହେବ । × × ×

ସବୁ ସେବା ଫସଲରୁ ମୋର ୪୩୦ (M.O ଟା ଏଠାକୁ ନ ପଠାଇ ତୁ ସେଇଠି ରଖିଥିବୁ । ମୋ ପାଖରେ ଯଥେଷ୍ଟ ପଇସା ଏଠି ଅଛି । ତୁକୁକୁ ଲେଖିଛି ତା' ନାଗା ଫଟୋ ମୁଁ ଦେଖିଲି ନାହିଁ—ଛିଃ ଏତେ ଗ୍ରେଟ ତୁଅଳକୁ କ'ଣ ଦେଖିବ । ଟିକିଏ ବଡ଼ ହେଲେ ଶୀତଦିନେ ଓଢ଼ଣା ଆସିଲେ ଏଠାକୁ ନେଇ କରି ଆସିବ । ରତ୍ନା ତ ନାରୁଣୀ ବୋହୂ, ସେ ଆସି ପାରିବ ନାହିଁ !! ତୁ ଦେଇଥିବା ଛତୁ ରୋଜ breakfast ଅମୃତ ଭୁଣ୍ଡରେ ପକାଇ ଖାଉଛି । ଏଠୁ ଗଲେ ତମମାନଙ୍କୁ ଖାଇବାକୁ ଦେବ । ତନୁକୁ ଚଠି ଦବୁ ମୋ କଥା ଲେଖିବୁ । ବହୁତ ବହୁତ ଆଦର ।

——

ସିକ୍ୟୁରିଟୀ ବନ୍ଦୀ, ବାରିପଦା ଜେଲ୍

ଓଗୋ, * ତା ୨୦।୮।୭୫

ତୋର ତା ୧୮।୮ର କାର୍ଡ଼ କାଲି ସନ୍ଧ୍ୟାରେ ପାଇଲି ।

× × ×

ବୁଲୁ ସଙ୍ଗରେ ଏପର୍ଯ୍ୟନ୍ତ କିଏସ୍ ଦେଖାଦେଖା କରିଥିବେ । ସୁମିତା କାହିଁକି ଦେଖା କରି ପାରିଲା ନାହିଁ ? ବଡ଼ ଆଶ୍ଚର୍ଯ୍ୟ ଓ ଦୁଃଖର କଥା । କାହାର ଅନୁମତି ନେବାକୁ ହେବ—କଅଣ ସବୁ ନିୟମ କରାଯାଇଛି—କେହିଜଣେ ଚିଫ୍ ସେକ୍ରେଟାରୀ ଦେବେ କିମ୍ବା ମୁଖ୍ୟମନ୍ତ୍ରୀଙ୍କଠାରୁ ଭଲକରି ନିର୍ଦ୍ଦିଷ୍ଟ ଭାବରେ ବୁଝିଆସୁ ନାହାନ୍ତି କାହିଁକି ? ମୋ ପାଖକୁ ବାରିପଦା ଜେଲ୍କୁ ସିଧା କହି ପଠାଇଦେଲେ ଏମାନେ ସ୍ଥାନୀୟ ଜିଲ୍ଲା ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ବହିଗୁଡ଼ିକ ପଠାଇ ଯାଞ୍ଚ କରାଇ ଆଣିବେ । ଚିଠିପତ୍ର ଯେପରି ୩।୪।୭ ଦିନରେ ମିଳି ଯାଉଛି ବହି ମଧ୍ୟ ମିଳିଯିବ ୮।୧୦ ଦିନ ମଧ୍ୟରେ ବୋଲି ଆଶା କରୁଛି । ତୋର ସେଇ 'Sociologist Contemporary Review' Broad Sheet ମ୍ୟାଗାଜିନ୍ ଅସୁଛି ସେଗୁଡ଼ିକୁ ତୁ ବା ଅନ୍ୟ କେହି ତନୁ ପ୍ରଭୃତି ମୋ ସଙ୍ଗରେ ଦେଖାକରିବାକୁ ଆସିଲେ ଆଣିବ ଓ ଜେଲ୍‌ରେ ମୋ ନାଁରେ ଜମା କରିଦେବ । ସେ ସବୁଥିରେ କେହି କିଛି ଯେପରି ଲେଖାଲେଖି ନ କରନ୍ତି ଦୃଷ୍ଟିଅର ରହିବ । Fansben' Fire in the talee କିଣିସ୍ ଦବୁ ।

× × ×

ଗ୍ରେଟ ଓ ପଙ୍କଜା ଭୁଟି କରିବାରେ ସାହାଯ୍ୟ କରିବାକୁ ବର୍ତ୍ତମାନ ମୁଁ ଗ୍ରେଟେସ ଘରକୁ ଯାଉଥିଲି । ମୋ ଖ[illegible]ା ଭିତରେ ଜଣେ (ଡାଅ୍ନ ?) ଯାବଜ୍ଜୀବନ ସଜ ସକାହ୍ମ ସ[illegible] ଯାଏ ମୋର ସାଥୀ-ଏତେ ସରଳ ସାଧୁ ଲୋକ । ଏଠି ଅଜକାଲି ସମସ୍ତଙ୍କ ଅଟା ମିଳେ । ମୋର ଭାତ ଟିକିଏ ପିତା ସାଙ୍ଗରେ ଖାଇବା ହୋଇ ପାରୁ ନାହିଁ । ଅଲଣା କଲରା ଭଜା ଭାତ ସାଙ୍ଗରେ ଭଲ ଲାଗିବ ନାହିଁ । ସେମିତ ବେଶ୍ ଭଲ ଲାଗୁଛି । ବାଇଗଣ, ପୋଟଳ, ଭେଣ୍ଡି, କୁନ୍ଦୁରି, ଅମୃତଭଣ୍ଡା, କଅଁଳିଆ ଝୁଡ଼ଙ୍ଗ, କାଙ୍କଡ଼, ନାନା ପ୍ରକାର ଶାଗ ଓ ଲୁବୁସଙ୍ଗ, ତେଲୁଲିବଟା ସବୁ ଅଲଣା । ତା ଛଡ଼ା ସକାଳ ଓଳି ମୁଗ ବା ମସୁର ଡାଲି କରେ । ପ୍ରାୟ ୪।୫ ରକମ ହୁଏ । ରାତରେ ଗରମ ଦୁଧ ପଉବର୍ଣ୍ଣି ସନ୍ଧ୍ୟାବେଳେ ୭ଟା ପୂର୍ବରୁ ଇସବଗୁଲ ଭୁଷ ପକାଇ ଅଣ୍ଡାଦୁଧ କପେ ପିଏ । ରାତ ଆଠରୁ ସାଢ଼େଆଠଟାରେ ଛେନା ଓ ପାଟଳ କଦଳୀଖାଏ କଲ୍ଲାରୁଟି ଓ ୬ଟା କଞ୍ଚା ସବୁଜ ସାଙ୍ଗରେ । ସବୁଠାରୁ ଉତ୍କୃଷ୍ଟ ଓ ପୁଷ୍ଟିକର ଖାଇବା ସକାଳ ସାଢ଼େସାତଟା ବେଳେ । ଚୂଡ଼ା, ଦହି, ଛେନା କଦଳୀ ଚକଟା; ଦିନେଦିନେ ତା ସାଙ୍ଗରେ ବୁଟ ଛତୁ ପକାଏ । ଏଠି ଏମାନେ ମୋ ପାଇଁ ଭଲ ଛତୁ କରିଦେଉଛନ୍ତି । ତୁ ଆଉ ମୋ ପାଇଁ ଛତୁ ଦେବୁ ନାହିଁ ଭଜ ବେଶନ କରି ପାଇଲେ ଗୋଟାଏ ହରଲିକସ୍ ଟିଣରେ ଦବୁ । ଏଠ ଭଲ ବନ୍ଦ ହେଉଥିବା ବୋତଲ ଓ ଡବା ପ୍ରଭୃତି ନ ମିଳିଲେ କିଛି ରଖିହେବ ନାହିଁ, ପିମ୍ପୁଡ଼ି ଓ ବଳେଇ ଦାଉରୁ । ମୁଁ ଗୋପାଳିଆ ଭଲ ଅଛି, ଖାଇପିଇ ମୋଟା ହେଉଛି ଶୁଣି ଭାରି ଖୁସିହେଲି । ସୁଧାକରଟା ରାତରେ କଅଣ କରୁଛି ? ତନୁ ଶ୍ୱଶୁରତ ଏ ଜନ୍ମରେ ଆଉ ଭଲହେବେ ନାହିଁ, ନଇଲେ ତାଙ୍କ ଘରେ ଯାଇ ବେଶ ରହନ୍ତା । ଅଜକାଲିକ ହରିଜନ-ମାନଙ୍କୁ କେତେ କଅଣ ସୁବିଧା ଦିଆଯାଉଛି । ସେ ଗୋଟାଏ କିଛି ଧନ୍ଦା ବା ବ୍ୟବସାୟ କରୁ । ଅମ ଅନୁଗୁଳ ଡି. ଏ ଓ କୃଷି ଅଫିସରଙ୍କ ସାଙ୍ଗରେ ଦେଖା କରୁ । ରଅ ଏସ. ଡ଼ି. ଓ ଥିଲେ ମଧ୍ୟ ସାହାଯ୍ୟ କରିବେ । ସେ ୬ମ ଯାଏ ସ୍କୁଲରେ ପଢ଼ିଛି । ତା ଛଡ଼ା ଜଟକରେ ରହି ନଜେ ନଜେ ବହୁତ ପଢ଼ିଛି ଓ ଜାଣିଛି ।

× × ×

ଅଫଲ୍ଲ ତୋତେ ଚଠି ଦଏ ? ମୋତେ ଗୋଟିଏ ସୁନ୍ଦର କାର୍ଡ଼ ଲେଖିଥିଲା ମୁଁ ବି ଜବାବ୍ ଦେଇଥିଲି । ଅଭ୍ର

* ବାରିପଦା ଜେଲରୁ ଅଟକ ବନ୍ଦୀ ଶ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କ ପତ୍ନୀ ଶ୍ରୀମତୀ ମାଲତୀ ଚୌଧୁରୀଙ୍କୁ ପତ୍ର ।

ସେ ବଡ଼ ଡାହିକ ବେବୀ, ଟୁନୁ, ପାପା ବଡ଼ ନାହାନ୍ତି । ତୁ ନିଶ୍ଚୟ ସେମାନଙ୍କୁ ସ୍ମରଣରେ ଗୋଟାଏ ଚିଠି ଲେଖିବୁ । ମୁଁ ସବୁବେଳେ ସେମାନଙ୍କୁ ମନେପକାଏ, କେଶିତବୁ ଓ ମୋ ପାଇଁ ଅନେକ ଅନେକ ଆଦର ଜଣାଇବୁ । ମୁନୁକୁ ଏବେ ଖବର ଦେଲି ସେ ଜମା ଗୋଟାଏ ହେଲେ ଚିଠି ଦେଲା ନାହିଁ । ତାର ପୁଅ ହୋଇଛି ସେଇ ଟେଲିଗ୍ରାମ ପଠାଇଲା । ସାପ ହୋଇଛି କି ବେଙ୍ଗ ହୋଇଛି କେତେ ପାଉଣ୍ଡ ଓଜନ, କେତେ ଲମ୍ବା ଇତ୍ୟାଦି ଲେଖିଲା । ତାର ଗୋଟାଏ ଛବି ପଠାନ୍ତା । ଏକି ବାପ୍ ! ତୁ ତ ଠାକୁର ମା ହବ ତାର କିଏ ସେ କହୁଥିବ ତାକୁ ପାଇ ! ସେ ତ ଗୋଟାଏ ସାନପିଲା । ତେବେ ସେ ନିଶ୍ଚୟ ଚିଠି ଦେଇଥିବ । ମନେକରି ମତେ ଲେଖିବୁ ।

ମୁଜିବଟାକୁ ତା ନିଜ ଲୋକମାନେ କପଟ ମାରି ପକାଇଲେ—ଭାବିଲାବେଳକୁ ମନଟା ଏକଦମ୍ ଖରାପ ହୋଇଯାଉଛି । ଯେଉଁମାନେ ଶାସନ କ୍ଷମତା ହାତକୁ ନେଲେ ସେମାନେ ତ ସମସ୍ତେ ପ୍ରାୟ ତାର ମନ୍ତ୍ରୀ ସଭାରେ ଥିଲେ । (ମିଲିଟାରୀ ନାଁ କିଛି ପଦାକୁ ବାହାରୁ ନାହିଁ ।) ଏମାନେ ମୁଜିବର ଅତି ରୁଷ ପ୍ରେମକୁ ନାପସନ୍ଦ କରି ପାଶ୍ଚାତ୍ୟ ଶକ୍ତି (ଆମେରିକା ଇଂଲଣ୍ଡ ପ୍ରଭୃତି)ଙ୍କ ସମର୍ଥନ କରୁଛନ୍ତି ବା ବାସ୍ତବିକ Nonaliened ହେବାକୁ ଚାହାନ୍ତି । ପାକିସ୍ତାନ ଯେପରି ଚୀନ ଆମେରିକା ରୁଷ ସମସ୍ତଙ୍କ ସାଙ୍ଗରେ ବନ୍ଧୁତ୍ୱ ରକ୍ଷା କରିବାକୁ ଚେଷ୍ଟାକରୁଛି । ରୁଷ ଆମେରିକା ବଳ କଷାକଷିରେ ତ ଇଣ୍ଡୋଚୀନ୍ (ଭିଏତନାମ, କାମ୍ବୋଡ଼ିଆ ପ୍ରଭୃତି) ଧ୍ୱଂସ ପାଇବା ଅବସ୍ଥା ହୋଇଥିଲା । ସକାଳ ୨୧।୮।୭୫ ଭାରତୀୟ ଉପମହାଦେଶ ଆମେରିକା ଓ ରୁଷ ଏହି ଦୁଇ ମହାଶକ୍ତିଙ୍କର କୁରୁକ୍ଷେତ୍ରରେ ପରିଣତ ହେଲେ ଆମ ସମସ୍ତଙ୍କ ହୀନାବସ୍ଥାରେ ଅନ୍ତ ରହିବ ନାହିଁ । ବଙ୍ଗଳା ଦେଶର ଘଟଣା ଉପମହାଦେଶର ପରିସ୍ଥିତିକୁ ପଦାରେ ପକାଇ ଦେଇଛି । ଏ ଭୟଙ୍କର ପରିସ୍ଥିତିର ସାମନାରେ ଆମ ଭାରତରେ ଯେଉଁସବୁ କଥାନେଇ ରାଜନୀତିକ ବିବାଦ ବିସମ୍ବାଦ ହେଉଛି ସେ ସବୁ ତୁଚ୍ଛ ବୋଲି ଜଣା ପଡୁଛି । ମୋର ଆଶା ଓ ବିଶ୍ୱାସ ଏଇ ମୁହୂର୍ତ୍ତରେ ଜୟପ୍ରକାଶ ଅତି ସବୁ କଥାକୁ ଗଣ୍ଠିରେ ପକାଇ ସମସ୍ତେ ମିଳିମିଶି ବିଚାର କରନ୍ତୁ ଏ ଉପମହାଦେଶକୁ ଏହି ଘୋର ସଙ୍କଟରୁ କିପରି ରକ୍ଷା କରିବାକୁ ହେବ । ସବୁ କଥା ଭୁଲି ସେ ଜେଲରେ ଥାଇ ଏ ବିଷୟ ଇନ୍ଦିରାକୁ ଲେଖନ୍ତୁ । ମୋର ପୂର୍ବ ବିଶ୍ୱାସ ଇନ୍ଦିରା ଓ ସେ ମିଶି ଭାରତ ପାକିସ୍ତାନ ଓ ବାଙ୍ଗଲାଦେଶର ତିନି ନେତାମାନଙ୍କର ଗୋଟାଏ ତିନି ସମ୍ମିଳନୀ ଡକାନ୍ତୁ । ଏ ସବୁ କଥା ଜେଲରେ ନିର୍ଜନ କୋଠରୀରେ ବସି ବସି ମୋ ମନରେ ଯେତେବେଳେ ଉଠୁଛି ତାଙ୍କ ମନରେ ନିଶ୍ଚୟ ଉଠୁଥିବ । ଆଗରୁ ଆମେମାନେ ଏ ସମସ୍ୟା କଥା ବିଚାର କରି ନାହୁଁ, ତା ନୁହେଁ । ସେତେବେଳେ ଯେଉଁଟା ଅନୁମାନ ବା ଦୂର-ଦୃଷ୍ଟିର ବିଷୟ ଥିଲା ବର୍ତ୍ତମାନ ତା ନଗ୍ନ ବାସ୍ତବ ରୂପରେ ସାମନାରେ ଉପସ୍ଥିତ, ବଙ୍ଗଳା ଦେଶର ଘଟଣା ପରେ । ତୁ ହସିବୁ, ଯେ ପଢ଼ୁଥିବ ସେ ହସିବ, ମୋର ଏ ଅରଣ୍ୟ ରୋଦନ କରି ଲାଭ କଅଣ ? ବିବେକାନନ୍ଦ କହୁଥିଲେ "ଆମର ଚିନ୍ତା (Thought) ମଧ୍ୟ ଗୋଟାଏ ଶକ୍ତି" ମୋର B.P. ୮୦ ହୋଇଗଲାଣି । ବର୍ତ୍ତମାନ ଡାକ୍ତରବାବୁ ଦେଖିକରି ଗଲେ ।

ମୁଁ କିନ୍ତୁ ଏଠୁ ବାହାରିଲା ବେଳକୁ ବେଶ୍ ସିଧା ସଳଖ ହୋଇ ବାହାରିବି । ମନର ଯେତିକି କଷ୍ଟ ଓ ଯନ୍ତ୍ରଣା ଦେହଟାକୁ ସେତିକି ନିୟମରେ ପକାଉଛି ।

ବ୍ୟାୟାମ କେତେ ବର୍ଷ ହେଲା ଛାଡ଼ି ଦେଇଥିଲି ବାହିକନା ବାହାରେ ବୁଲାଚଲା, ସାଇକଲ ମଧ୍ୟ କରୁଥିଲି । ଏଠି କିନ୍ତୁ ଖାଲି ୨୦।୨୫ ମିଟର ବାଟ ବୋକାଙ୍କ ପରି ଏ ପାଖ ସେପାଖ ବୁଲିବା ଦ୍ୱାରା ଯଥେଷ୍ଟ ବ୍ୟାୟାମ ହେଉ ନାହିଁ । ସେଥିପାଇଁ ସକାଳେ ବେଶ୍ ଟିକିଏ ବ୍ୟାୟାମ କରୁଛି ।

× × ×

ସମସ୍ତଙ୍କୁ ମୋର ବହୁତ ବହୁତ । ତୋତେ ବହୁତ ବହୁତ ଆଦର ।

ଇତି
ବାପି

ବାରିପଦା ଜେଲ
ତା ୩୧-୭-୭୫

ଓଗୋ, *

ତୋର ୨୩-୭ର ଚିଠି କାଲି ସଂଧ୍ୟା ୫ଟାରେ ପାଇଲି । ପିଣ୍ଡାରେ ଗ୍ରେଟ୍ ଟେବୁଲ୍ ପକାଇ ବସି ସୁ ଖାଉଥିଲି । ଏ ଭିତରେ ୩।୪ଥର ପଢି ସାରିଲିଣି । ତୁ ଇନ୍‌ଫ୍ଲାମ କରୁଛୁ, ଖୁସିରେ ଅଛୁ ଜାଣି ମୋ ମନଟା ଆପାତତଃ ଶାନ୍ତ ଅଛି । ଚିଠି ଲେଖିବା ବାହାରେ ମୋ ପକ୍ଷରେ କେତେ କଠିନକର କିନ୍ତୁ ଏଠାକାର ନିଃସଙ୍ଗ ଜୀବନରେ ସେଇଟାକୁ ସବୁଠାରୁ ଭଲ ଲାଗୁଛି । ଆଉ ଜଣଙ୍କ ସଙ୍ଗରେ ମନଖୋଲି କଥାବାର୍ତ୍ତା କଲାପରି ମନେହେଉଛି । ଏଠି ତ ନିଜ କ୍ଲାସର ବନ୍ଦୀ ଛଡ଼ା ଅନ୍ୟ ସାଧାରଣ ବନ୍ଦୀ ଯେଉଁମାନେ କେତେ ସୁନ୍ଦର କରି ମୋର ସବୁ କାମ କରିଦେଉଛନ୍ତି କିମ୍ବା ପ୍ରହରୀ ବା କର୍ମଚାରୀମାନେ ସମସ୍ତେ ମୋ ପ୍ରତି ଅତି ଭଲ ବ୍ୟବହାର କରୁଛନ୍ତି । ସେମାନଙ୍କ ସଙ୍ଗରେ ବେଶ୍ କଥାବାର୍ତ୍ତା କରିବା, ବନ୍ଧୁତ୍ୱ କରିବା, ନିୟମ ନୁହେଁ, ଆଉ ମୁଁ ତ ଜେଲ୍ ନିୟମକୁ ମାନି ଚାଲିବା ଲୋକ । ମୁଁ ସେଥିପାଇଁ ଦୁସି କରି ଖୁସି ହେଲେ ସମସ୍ତଙ୍କୁ ଅନାଇ ଯାହା ଦରକାରୀ ପଦେ ଦୁଇପଦ କଥା କହେ । ଅନ୍ୟ ଯାଗା ହୋଇଥିଲେ ମୁଁ ସ୍ୱାଭାବିକରେ ଏମାନଙ୍କ ସାଙ୍ଗରେ କେତେ ବନ୍ଧୁତ୍ୱ କରି ନେଇଥାନ୍ତି । ବିଦେଶୀ ସରକାରଙ୍କ ଅମଳରେ ଜେଲ୍ ଗଲେ ବୁ ସ୍ତ୍ରୀଲୋକ ବୋଲି ଅନେକ ସମୟରେ ଏକୁଟିଆ ଜୀବନ କଟାଉ ଥିଲି । ପୁରୁଷ ତ ବେଶି ଜେଲ୍ ଯାଉଥିଲେ ତେଣୁ ମୋତେ କେବେ ହେଲେ ଏକୁଟିଆ ରହିବାକୁ ପଡୁ ନ ଥିଲା । ପଡ଼ିଥିଲେ ବି ସେତେବେଳେ ଏତେ ଖରାପ ବୋଧହୁଏ ମୋତେ ଲାଗୁ ନଥିଲା ଛାଡ଼ହୁ ଅସଲ କଥା ଆମେ ଦୁହେଁ ୭୦ ଟପି ସାରିଲୁଣି, ବୟସ ତୁଳନାରେ ଆମେ ଦେହକୁ ସୁସ୍ଥ ସବଳ କରି ରଖିଛୁ ସତ କିନ୍ତୁ ମନ ବୁଢ଼ା ହୁଛି ଏ ବୟସରେ ଆଉ ଯେତେଦିନ ବଞ୍ଚିବୁ ଏକାଠି ରହିବା । ଗ୍ରେଟ୍ ପିଲାମାନଙ୍କ ସଙ୍ଗରେ ଦିନ କଟାଇବା । କେତେ ବର୍ଷହେଲା ମୋ ମନଟା ଏଇପରି ହୋଇଯାଇଛି । ଅନ୍ୟମାନେ ସେଇଟା ବୁଝିପାରନ୍ତି ନାହିଁ । ତୋର ମନେଅଛି ନା ମୁଁ ଏଥର କଟକ ଆସି ଗିରଫ ହେବା ପୂର୍ବରୁ ଅନୁଗୁଳରେ ଥିବାବେଳେ ବାରବାର କହୁଥିଲି ମୋତେ କିଛି ଭଲଲାଗୁ ନାହିଁ । ପରାମର୍ଶ କରିବା ପାଇଁ ଦିଲ୍ଲୀ ଡାକଛନ୍ତି ମୁଁ ଏଥର ସାଫ୍‌ସାଫ୍ କହିଦେଇ ଆସିବି, ସମ୍ପର୍କ କାଟିଦେବ । କିନ୍ତୁ ପରାମର୍ଶ କରିବାକୁ ଡାକି ଆମକୁ ଅପେକ୍ଷା ନ କରି ଗୋଟାଏ ନିତାନ୍ତ ବାଜେ ସୁଅରେ ଭସି ଗୋଟାଏ ଅସ୍ୱାସ୍ଥ୍ୟ ପରିସ୍ଥିତି ନେଲେ···୧-୮-୭୫ ତାରିଖ ଜ୍ୱରୁଆ ହୋଇଆସିଲି । ଆଜିକାଲି ଆଖିଦୁଇଟା ଟିକିଏ ଖରାପ ହୋଇ ଗଲାପରି ଲାଗୁଛି । ସେଥିପାଇଁ ରାତିରେ ପଢ଼ା-ଲେଖା କିଛି ନକର ୭ରୁ ୮।୪୫ ଯାଏ ରେଡ଼ିଓରେ ବଙ୍ଗଳା, ହିନ୍ଦୀ ଦୁଇଟା ଶୁଣେ । ତାପରେ ମଶାରି ଭିତରେ ପଶି ଶୋଇପଡ଼େ । ରାତିରେ ବେଶି ଶୋଉଛି B.P. କମୁଛି ବୋଲି ୮୦ରୁ ୯୦ ପର୍ଯ୍ୟନ୍ତ ଚାଲିଟା ହେଉଛି । ଲବଣ ନିୟମିତ ଖାଉଥିଲି, ହୋମିଓ ଔଷଧ ପାଇଁ ୪ । ୭ ଦିନ ବନ୍ଦ୍ କରିଛି । ଫେର ଖାଇବ କାଲିଠାରୁ, ଏଠି ପ୍ରତିଦିନ ସେରେ ହେବ ଭଲ ଦୁଧ ପାଉଛି, ତେଣୁ ମନଇଚ୍ଛା ଦହି ଓ ଛେନା ଖାଉଛି, ଦୁଧ ମଧ ଇସବଗୁଲ ଭୁସି ମିଶାଇ ରାତିରେ ପିଉଛି । ସ୍ୱାସ୍ଥ୍ୟ ଦେହ ଖୁବ୍ ଭଲ ଅଛି । B.P.ଟା ମନ ପାଇଁ ଗୋଳମାଳ ହେଉଥିବ । ଗୋଟାଏ ଖୁବ୍ ବଡ଼ ଓ ଭଲ ଟୀକାଥିବା "ପାତଞ୍ଜଳ ଯୋଗ ଦର୍ଶନ" କାଶିରୁ ଆଣିଥିଲି । ବଡାଣ ଲୁଇ କିଣିଦେଇ ଥଲେ । ସେଇଟା ଖୁବ୍ ମନଦେଇ ଅଧ୍ୟୟନ କରୁଛି । ପାତଞ୍ଜଳିଙ୍କର ବସ୍ତୁନିଷ୍ଠ ତର୍କସିଦ୍ଧ ବୈଜ୍ଞାନିକ ଆଲୋଚନା ଭଙ୍ଗୀ ମୋତେ ଭଲ ଲାଗେ । ମୋ ନିଜର ଦର୍ଶନ ସାଙ୍ଗରେ ଯୋଗ ଦର୍ଶନର ଦ୍ୱନ୍ଦ୍ୱ ଇଚ୍ଛା କରି ଚାଲେଇଛି । ଗୋଟିଏ ମନଗଢ଼ା ଆଧାରର ସୃଷ୍ଟି କରି ଆମ ଜୀବନର ଅତି ବାସ୍ତବ ସୁଖ ଦୁଃଖକୁ ଉଡ଼ାଇ ଦେବା ବା ବୁଡ଼େଇ ଦବାର ମୁଁ ଘୋର ବିରୋଧୀ । ତା ଛଡ଼ା ରବୀନ୍ଦ୍ରନାଥଙ୍କ "ଲଭିବ ମୁକ୍ତିରସ୍ୱାଦ—ଅଶେଷ ବନ୍ଧନ ମାଝେ" ମୋ ମନ ଉପରେ ପିଲାଦିନୁ ଗାର ପକାଇ ଦେଇଛି । ବେଶି ବହିପତ୍ର ତ ସାଙ୍ଗରେ ଆଣି ନାହିଁ । ତେମେ ସମସ୍ତେ ସରକାରଙ୍କ ସାଙ୍ଗରେ ଲଢ଼ି ନକ୍ସଲ ବନ୍ଦୀମାନଙ୍କୁ ବହିପତ୍ର ଦେବାର ଓ ସେମାନେ ଆଣିବାର ଯେଉଁ ଅଧିକାର ହାସଲ କରାଇଥିଲ ସିକୁରିଟୀ ବନ୍ଦୀମାନଙ୍କର ସେ ସୁବିଧା ନାହିଁ । ଅନେକ କଟକଣା ହେଉଛି କ'ଣ କଟକଣା ହେଉଛି କାହା ବା କେଉଁ ପୁଲିସ ଅଧିକାରୀଙ୍କ ଅଫିସ ଜରିଆରେ ବହିପତ୍ର ପଠାଇବାକୁ ହେବ ସବୁ ଭଲରକମ ବୁଝିବାକୁ ଚୁନି ହେଉଛାକୁ ଲେଖିଛି । "ମୁଲାକାତ" ବିଷୟରେ ସେହିପରି ନୂଆ କଟକଣା କରାଯାଇଛି । ନାନୀଦେଈ ଶାଶୁଘର ଓ ରାସ୍ତାରୁ ଫେରିଥିଲେ ମଧ୍ୟ ମୋ ସଙ୍ଗରେ ଦେଖାକରି ପାରିନାହିଁ । ମୋ ପାଇଁ ମୁଢ଼ି ଓ ବିସ୍କୁଟ ପଠାଇ ଦେଇଛି ମୁଁ ଖୁସି ହୋଇଯାଇଛି । ତନୁକୁ ମୁଁ ଖବର ପଠାଇଛି, ଅଗଷ୍ଟ ଜରିଆରେ ସେ କାଶିରୁ ସିଧା ଏଠାକୁ ନ ଆସି କଟକ ବାଟେ ଆସିବ ସେଠୁ ଅବଶ୍ୟକ

* ଶ୍ରୀମତୀ ମାଳତୀ ଚୌଧୁରୀ

ଅନୁମତି ନେଇ । ଅପ୍‌ଲୁ, ବେବୀ, ଝୁନୁ, ପାପା, ମୋ ପାଖକୁ ଅଲଗା ଅଲଗା ସୁନ୍ଦର ଚିଠି ଲେଖିଥିଲେ । ମୁଁ ଅପ୍‌ଲୁକୁ ଉତ୍ତର ଦେଇଛି । ସେଥିର ଫୁଲୁକୁ ମଧ୍ୟ ଦକ୍ଷୀ ଠିକଣାରେ ଚିଠି ଦେଲି ସେଥିପାଇଁ ବେବୀ, ଝୁନୁ, ପାପାକୁ ଏବେ ପୃଥକ୍ ଚିଠି ଲେଖି ନାହିଁ । ଝୁନୁ ରୁରୁକୁ ଲେଖିଥିବା ଚିଠିରେ ସେମାନଙ୍କୁ ମୋର ଆଦର ପଠାଇଛି । ସପ୍ତାହରେ ମୁଁ ଦୁଇଖଣ୍ଡ ଚିଠି ଦେଇପାରେ ୪ଖଣ୍ଡ ପାଇପାରେ । ନାନା ଆଉ ଆରତୀକୁ ଏପର୍ଯ୍ୟନ୍ତ ଲେଖିପାରିନି ଚିଠି ଦେଇପାରି ନାହିଁ ନାନା ପୁଷ୍ପିଟା ଯା Sensitive ମନଖରାପ କରୁଥିବ । ବାବୁଲି ଓ ବନ୍ଦୁ ଚୁନୀ ପାଖରୁ ମୋ ଖବର ପାଉଥିବେ । କାରଣକୁ ଚିଠି ଦେବାକୁ ହେବ । ଜନ୍ମୀ କଥା ମୋତେ କେହି ଲେଖି ନ ଥିଲେ । ରବି ସାହୁ କଥା ସ୍ୱାଧୀନ ଲେଖିଥିଲ, ମୋର ବିଶ୍ୱାସ ହେଉନାହିଁ Gramsscିଙ୍କର The modern prince ବହିଟା ମନରଞ୍ଜନ ମୋ ପାଇଁ ଆଣିଥିଲେ— ଜେଲକୁ ଦେଇଯାଇଥିଲ । ସେ ବହି ପାଇବାର ଆଶା ଅପାତତଃ ଗଲା । Fanshen ବହିଟା ମୁଁ ଆଜଯାଏ ପଢ଼ି ପାରିନାହିଁ । ମୋ ବହିଟା କୁଆଡ଼େ ଗଲା କେଜାଣି ? ବୋଧହୁଏ ଚମ୍ପତମୁଣ୍ଡାରେ ଅଛି । Fire in the lake ବହିଟା ଭୋର ଥିଲା । ସେଇଟା ଏଠି ପାଇଲେ ପଢ଼ିପକାନ୍ତି । କଥା ହେଉଛି କିଏ ମୋ ପାଇଁ ଏତେ ହାଙ୍ଗାମା କରିବ । ଅଧିକାର ପ୍ରାପ୍ତ ପୁଲିସ କର୍ମଚାରୀଙ୍କ ଅଫିସରେ ମୋ ପାଇଁ ବହିଗୁଡ଼ିକ ଜମା ଦେବାକୁ ହେବ । ସେମାନେ ତାକୁ ଜେଲକୁ ପଠାଇବେ । ଏସବୁ ଠିକ୍ ଭାବରେ ବୁଝି ବହି-ଗୁଡ଼ିକ ରସିଦ୍ ନେଇ ଜମା ଦେବାକୁ ହେବ । ଚୁନୀ କମ୍ବା ଝୁନୁ, ବଙ୍କୁଡ ସେ ପୁଲିସ ଅଫିସରଙ୍କୁ ଦେଖାକରି ଯାହା କରିବାର କରିପାରନ୍ତି । ଚୁନୀକୁ ମୁଁ ଏତେ ବୁଝାଇ ଲେଖିଲି ବୁଲୁକଥା କଣ୍ଟୁପକ୍ଷଙ୍କଠାରୁ ବୁଝିବ, ସେ କେଉଁଠି ଅଛି । ତାର ପରିବାରର ଆମେ କେହି ଏପର୍ଯ୍ୟନ୍ତ ଜାଣି ପାରିଲୁ ନାହିଁ ଅଥଚ ସେ ଆମ ପରିବାରର ଭଲମନ୍ଦ ବୁଝିବା ଲୋକ —ପରିସ୍ଥିତି ଆମେ ସବୁ ତା ଉପରେ ଡିପେଣ୍ଡେଣ୍ଟ । ସବୁ ଜନସର ଗୋଟିଏ ମାନସିକ ଅଛି । ଆଇନ୍ ଓ ରାଜନୀତି ବାହାରେ ପ୍ରତ୍ୟେକ ମନୁଷ୍ୟର କେତେଗୁଡ଼ିଏ ମାନବିକ ଅଧିକାର ଅଛି । ନିଜର ପରିବାର ଲୋକଙ୍କ ଖବର ପାଇବା ସେମାନଙ୍କ ସହିତ ଦେଖାସାକ୍ଷାତ ଚିଠିପତ୍ର ଦିଆନିଆ ଏହିପରି ଗୋଟିଏ ସର୍ବସ୍ୱୀକୃତ ମାନବିକ ଅଧିକାର । ମାସେ ହୋଇଗଲା ବୁଲୁକଥା ମୁଁ ଜାଣି ନ ପାରିବା ମୋ ପକ୍ଷରେ କେତେ କଷ୍ଟକର ସହଜରେ ଅନୁମାନ କରି ହେବ । ଆମ ଦେଶରେ ଲୋକେ କ'ଣ ଦିନକୁ ଦିନ ବେଶି ନିର୍ଦ୍ଦୟ ହୋଇଯାଉଛନ୍ତି ।

ଆମ ଦୁଇଜଣଙ୍କୁ ଖୁବ ଭଲ ପାଉଥିଲେ ସବୁବେଳେ ପଛରୁ ଥିଲେ, ଦେଖାହେଲେ ପିଲାଙ୍କ ଭଳି ଖୁସି ହେଉଥିଲେ ହୋତା ମହାଶୟ । ସେ ମରିଗଲେ । ଯାହା ହେଉ ଖୁବ୍ ବେଶିଦିନ କଷ୍ଟ ପାଇ ନାହାନ୍ତି । ଆଶ୍ଚର୍ଯ୍ୟ ମହାଶୟଙ୍କ ପରି ମଲା ଶରୀରଟାକୁ ନେଇ ଏତେ କାଣ୍ଡ କରିବା—ଫଟୋ ଉଠାଇବାଠାରୁ ଆରମ୍ଭ କରି ଶହ ଶହ ମାଇଲ ଏପରିକି ହଜାର ହଜାର ମାଇଲ ଦୂରକୁ ନେଇ ପୋଡ଼ାପୋଡ଼ି କରିବା ବା ସମାଧିଦେବା—ହୋତା ମହାଶୟ ଖୁବ ବିରୋଧ କରୁଥିଲେ, ତଥାପି ତାଙ୍କୁ ସମସ୍ତେ ମିଶି କାନ୍ଧେଇ ନେଇଗଲେ ସେ ମରିଗଲା ପରେ ତାଙ୍କୁ ନେଲେ ନାହିଁ ତାଙ୍କ ମଲା ଶବକୁ ନେଲେ । ଦିନକୁ ଦିନ ଏ କୁସଂସ୍କାର ବଢ଼ି ଚାଲିଛି । ତାଙ୍କ ମଲା ଶରୀରର ଗୋଟାଏ ବଡ଼ଛବି "ସମାଜ"ରେ ବାହାରିଥିଲା । କେଡ଼େ ସୁନ୍ଦର ଓ ପ୍ରଶାନ୍ତ ହୋଇଥାନ୍ତା ଯଦି ମରିବାର ପୂର୍ବଦିନ ସେ ସଜ୍ଞା ନ ଥିଲା-ବେଳେ ତାଙ୍କର ଗୋଟିଏ ଶେଷ ଛବି ନେଇଥାନ୍ତେ ! ରୁ ଚିଠି ଲେଖିଲେ ବହିନଙ୍କୁ ମୋର ସମବେଦନା ଜଣାଇ ଦେବୁ । ହୋତା ମହାଶୟଙ୍କ ପାଇଁ ତ ଆନନ୍ଦ ଓ ସନ୍ତୋଷ । ବେଦନା ବହିନ୍‌ଙ୍କ ଓ ଆମ ସମସ୍ତଙ୍କ ପାଇଁ ଯାହାକୁ ସେ ଛାଡ଼ିଗଲେ ।

ତୋର, ବାପି

———

(ସେବାକ୍ଷେତ୍ରରେ ବିଶେଷ ଅବଦାନ ଯୋଗୁ ମାଳତୀଦେବୀଙ୍କୁ ମିଳିଥିବା ଜମନାଲାଲବଜାଜ ପୁରସ୍କାରର ପ୍ରଶସ୍ତି ପତ୍ରର ଓଡ଼ିଆ ଅନୁବାଦ)

# ଜମନାଲାଲ ବଜାଜ ପୁରସ୍କାର, ୧୯୮୮ *

## ମହିଳା ଓ ଶିଶୁକଲ୍ୟାଣ କ୍ଷେତ୍ରରେ ପ୍ରଶଂସନୀୟ କାର୍ଯ୍ୟ ନିମନ୍ତେ ଶ୍ରୀମତୀ ମାଳତୀଦେବୀ ଚୌଧୁରୀ

## ପ୍ରଶସ୍ତି ପତ୍ର

ଧନ ଓ କ୍ଷମତା ପ୍ରଦାନ କରୁଥିବା ରାଜନୀତିକ ଜୀବନର ପାହାଚ ଉପରେ ପାଦ ପକାଇବାକୁ ଅସ୍ୱୀକାର କରି, ନିଃସ୍ୱାର୍ଥ ସେବାର ଜୀବନ ବାଛିବାକୁ ହେଲେ ଦୁର୍ଲଭ ବୈଶିଷ୍ଟ୍ୟ ସାହସର ଆବଶ୍ୟକତା ହୋଇଥାଏ। ମାଳତୀଦେବୀ ଚୌଧୁରୀ ଯେତେବେଳେ ସମ୍ବିଧାନ ସଭା ଓ ଅନ୍ୟ ରାଜନୈତିକ ସଂସ୍ଥାଗୁଡ଼ିକର ସଦସ୍ୟତାରୁ ନିଜର ତ୍ୟାଗପତ୍ର ଦେଲେ ଓ ଏକ ଅନୁନ୍ନତ ଅଞ୍ଚଳର ମହିଳା ଏବଂ ଶିଶୁମାନଙ୍କର ଉତ୍ଥାନ ଓ କଲ୍ୟାଣ ନିମନ୍ତେ କାର୍ଯ୍ୟ କରିବା ପାଇଁ ଓଡ଼ିଶାର ଏକ ସୁଦୂରକ୍ଷେତ୍ରକୁ ଚାଲିଗଲେ। ସେଥିରୁ ହିଁ ସେ ନିଜର ସେହି ସାହସର ପରିଚୟ ଦେଇଥିଲେ।

ତାଙ୍କଠି ସଦା ରାଷ୍ଟ୍ରୀୟ ଭାବନାର ପ୍ରମାଣ ଏଥିରୁ ମିଳେ ଯେ, ସେ ସରକାରୀ କଲେଜ ପରିବର୍ତ୍ତେ ଶାନ୍ତି-ନିକେତନରେ ପଢ଼ିବାକୁ ଗଲେ ଓ ସେଠାରେ ରବୀନ୍ଦ୍ରନାଥ ଠାକୁର ଏବଂ ସି. ଏଫ୍. ଏଣ୍ଡ୍ରୁଜ୍‌ଙ୍କ ତତ୍ତ୍ୱାବଧାନରେ ନିଜର ଉଚ୍ଚଶିକ୍ଷା ସମାପ୍ତ କରିଥିଲେ। ବିବାହ ପରେ ଅନ୍ୟ କୌଣସି ଯୁବତୀ ପତ୍ନୀଙ୍କ ଭଳି ସେ ନିଜ ଶ୍ୱଶୁର ଘର ପ୍ରାସାଦରେ ରହିବାକୁ ନ ଯାଇ ଏକ କୁଡ଼ିଆ ଘରେ ରହି ନିର୍ଦ୍ଧନ ଲୋକମାନଙ୍କ ପାଇଁ କାମ କରିବାକୁ ହିଁ ସେ ନିଜ ଜୀବନର ଆଦର୍ଶ ବୋଲି ବୁଝିଥିଲେ।

ବିଗତ ୪୦ ବର୍ଷ ଧରି ସେ ଗାନ୍ଧୀଜୀଙ୍କର ମୌଳିକ ତାଲିମ ଓ ନାରୀ-ମୁକ୍ତି ସମ୍ବନ୍ଧିତ ବିଚାରଗୁଡ଼ିକୁ ବ୍ୟବହାରିକ ରୂପଦେବା କାର୍ଯ୍ୟରେ ଲାଗିଛନ୍ତି। ଏହି ଉଦ୍ଦେଶ୍ୟ ପୂରଣ ପାଇଁ ସେ ଆବଶ୍ୟକ ସଂସ୍ଥାଗତ ଢାଞ୍ଚା ଗଢ଼ିଲେ ଓ ଏଥିନିମନ୍ତେ ଏକ ପ୍ରାଥମିକ ବିଦ୍ୟାଳୟ ଖୋଲିଲେ ଯେଉଁଠି ସରଳ ବୃତ୍ତିଗତ କାମ ଉପରେ ଗୁରୁତ୍ୱ ଦିଆଯାଏ, ଏକ ମୌଳିକ ଉଚ୍ଚବିଦ୍ୟାଳୟ ମଧ୍ୟ ସ୍ଥାପନ କଲେ ଯେଉଁଠାରେ ଶିକ୍ଷାର୍ଥୀମାନଙ୍କୁ ହାତକାମ ଓ କାରୁକାର୍ଯ୍ୟର ଉଚ୍ଚସ୍ତର ପ୍ରଶିକ୍ଷଣ ଦିଆଯାଉଛି। ଶ୍ରୀମତୀ ଚୌଧୁରୀ ମହିଳାମାନଙ୍କ ନିମନ୍ତେ ମଧ୍ୟ ଏହିଭଳି ଶିକ୍ଷଣୀୟ ବ୍ୟବସାୟିକ ପ୍ରଶିକ୍ଷଣ ଓ ରୋଜଗାର ସମ୍ବନ୍ଧିତ ସୁବିଧା ଉପଲବ୍ଧ କରାଇଲେ। ମାଳତୀଦେବୀ ଉତ୍କଳନବଜୀବନ ମଣ୍ଡଳ ମାଧ୍ୟମରେ ସମର୍ପିତ ସମାଜସେବୀଙ୍କର ଏକ ବିଶାଳ ଦଳ ଗଠନ କରିଛନ୍ତି ଓ ସେମାନେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ସମାଜ ସେବାକେନ୍ଦ୍ରମାନ ଖୋଲି ନିଜର କାର୍ଯ୍ୟକୁ ଅତ୍ୟନ୍ତ ବ୍ୟାପକ ଆଧାର ପ୍ରଦାନ କରି ପାରିଛନ୍ତି। ଏହି କେନ୍ଦ୍ର ମହିଳା ଓ ଶିଶୁମାନଙ୍କ ପାଇଁ ଯେଉଁସବୁ କାର୍ଯ୍ୟକ୍ରମ ଅତି ବ୍ୟାପକ ରୂପେ କରିଥାନ୍ତି ସେ ସବୁ କାର୍ଯ୍ୟଗୁଡ଼ିକ ମଧ୍ୟରେ ମା ଓ ଶିଶୁର ରକ୍ଷଣାବେକ୍ଷଣ, ଶିଶୁ ଗୃହଗୁଡ଼ିକର ପରିଚାଳନା, ଓ ମାଗଣା ଚିକିତ୍ସାସେବା ଯୋଗାଉଥିବା ଏକ ଡାକ୍ତରଖାନା ଏବଂ ଔଷଧାଳୟ ଅନ୍ତର୍ଭୁକ୍ତ।

ସମାଜରେ ସଂସ୍କାର ଆଣିବାକୁ ହେଲେ ପ୍ରୌଢ଼ଶିକ୍ଷା ଯେ ମହତ୍ତ୍ୱପୂର୍ଣ୍ଣ ଏହା ଅନୁଭବ କରି ଅଜ୍ଞାନତା ଓ ଅନ୍ଧବିଶ୍ୱାସ ବିରୋଧରେ ଲଢ଼ିବାକୁ ଶ୍ରୀମତୀ ଚୌଧୁରୀ ଲୋକମାନଙ୍କୁ ସଚେତନ କରିଥିଲେ। ପ୍ରୌଢ଼ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନକୁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ସ୍ୱୀକାର କରିଛନ୍ତି।

ସମାଜସେବୀ ବ୍ୟକ୍ତି ମାଳତୀଦେବୀ ଆଉ ଦୁଇଗୋଟି କାର୍ଯ୍ୟକ୍ରମ ଉପରେ ଜୋର ଦେଇଥିଲେ : (୧) ମଦ ନିଷେଧ ଓ (୨) ଭୂମିସୁଧାର। ସେ ତାଳଗଛ ଲଗାଉଥିବା ଲୋକମାନଙ୍କୁ ନିଜର ସମବାୟ ସଂସ୍ଥାଗଢ଼ି ତାଳରସରୁ ତାଡ଼ି ପରିବର୍ତ୍ତେ ଗୁଡ଼ ତିଆରି କରିବା ପାଇଁ ପ୍ରୋତ୍ସାହନ ଯୋଗାଉଥିଲେ। ତାଙ୍କର ଅକ୍ଳାନ୍ତ ପ୍ରୟାସ ଫଳରେ ଓଡ଼ିଶାରେ ବହୁକାଳରୁ ଚାଲିଆସୁଥିବା ଦମନକାରୀ ମୁଠାଦାରୀ ପ୍ରଥାର ସମାପ୍ତି ଘଟିଥିଲା।

ମହିଳା ଓ ଶିଶୁକଲ୍ୟାଣ କ୍ଷେତ୍ରରେ ପ୍ରଶଂସନୀୟ ଅବଦାନ ପାଇଁ ଜମନାଲାଲ ବଜାଜ ପୁରସ୍କାର ନିମନ୍ତେ ଶ୍ରୀମତୀ ମାଳତୀଦେବୀ ଚୌଧୁରୀଙ୍କର ଚୟନ କରି ପ୍ରତିଷ୍ଠାନର ଟ୍ରଷ୍ଟିମାନେ ଓଡ଼ିଶାର ମହିଳା ଓ ଶିଶୁମାନଙ୍କର ହିତପାଇଁ ତାଙ୍କଦ୍ୱାରା ହୋଇଥିବା ନିଃସ୍ୱାର୍ଥ ସେବା, ତ୍ୟାଗ ଓ ବଳିଦାନକୁ ସମ୍ମାନିତ କରି ନିଜକୁ ଧନ୍ୟ ଅନୁଭବ କରୁଛନ୍ତି।

ସ୍ୱାକ୍ଷର

| | | |
|---|---|---|
| ମୁ. ହିଦାୟତୁଲ୍ଲା, ଅଧ୍ୟକ୍ଷ, ପରାମର୍ଶଦାତା ପରିଷଦ<br>ଜମନାଲାଲ ବଜାଜ ପ୍ରତିଷ୍ଠାନ | ମା.ସ.ଗୋରେ, ଅଧ୍ୟକ୍ଷ<br>ପୁରସ୍କାର ଚୟନ ସମିତି | ରାମକୃଷ୍ଣ ବଜାଜ, ଅଧ୍ୟକ୍ଷ, ନ୍ୟାସ ମଣ୍ଡଳ<br>ଜମନାଲାଲ ବଜାଜ ପ୍ରତିଷ୍ଠାନ |

———

# ମାଳତୀଦେବୀଙ୍କ ଜୀବନର କେତୋଟି ମାଇଲ୍ ଖୁଣ୍ଟ

୧୯୦୪, ଜୁଲାଇ ୨୬—ଜନ୍ମ-ଅଜା ଶ୍ରୀ ବିହାରୀଲାଲ ଗୁପ୍ତ (ଆଇ. ସି. ଏସ୍)ଙ୍କ କଲିକତା ବାସଭବନରେ । (ପୈତୃକ ଆଦି ନିବାସ ପୂର୍ବବଙ୍ଗର ବିକ୍ରମପୁର ଅନ୍ତର୍ଗତ କାମାରଖାଣ୍ଡା । ବର୍ତ୍ତମାନର ବାଙ୍ଗଲାଦେଶ ।)

୧୯୦୭—ମିନୁ (ମାଳତୀ) ସେନ୍‌ଙ୍କର ମାତ୍ର ୩ ବର୍ଷ ବୟସରେ ତାଙ୍କର ପିତା ବାରିଷ୍ଟର କୁମୁଦନାଥ ସେନ୍‌ଙ୍କର ଅକାଳ ବିୟୋଗ । ମାତା ସ୍ନେହଲତାଙ୍କର ତତ୍ତ୍ୱାବଧାନରେ ବାଲ୍ୟକାଳରୁ ଲାଳିତପାଳିତ ।

୧୯୨୦—କଲିକତାର ବେଥୁନ୍ ସ୍କୁଲ୍‌ରୁ ମାଟ୍ରିକ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ । (ଏହି ସ୍କୁଲରେ ମାତା ସ୍ନେହଲତା ଥିଲେ ଶିକ୍ଷୟିତ୍ରୀ ।)

୧୯୧୧-୨୭—ଗାନ୍ଧୀଜୀଙ୍କ ଅସହଯୋଗ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସରକାରୀ କଲେଜରେ ନପଢ଼ି କବିଗୁରୁ ରବୀନ୍ଦ୍ରନାଥଙ୍କର ଜାତୀୟ ବିଦ୍ୟାଳୟ ଶାନ୍ତିନିକେତନରେ ଅନ୍ତେବାସିନୀଭାବେ ଶିକ୍ଷା ଗ୍ରହଣ । (ମାତା ସ୍ନେହଲତାଙ୍କର ଶାନ୍ତିନିକେତନ ଛାତ୍ରୀ ନିବାସର ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ଗ୍ରହଣ) ।

୧୯୨୭, ଜୁଲାଇ—ବିବାହ । ସ୍ୱାମୀଙ୍କ ସହ ଅଣଖିଆ ଗ୍ରାମରେ ରହି କୃଷିରେ ନୂତନ ପ୍ରୟୋଗ । ନୈଶ ବିଦ୍ୟାଳୟ, ଅସ୍ପୃଶ୍ୟତା ନିବାରଣ ଆଦି କାର୍ଯ୍ୟରେ ପ୍ରବୃତ୍ତ ।

୧୯୨୮, ଜୁନ ୮—ଜ୍ୟେଷ୍ଠାକନ୍ୟା ଉତ୍ତରାଙ୍କର ଜନ୍ମ ।

୧୯୩୦—ଲବଣ ଆଇନ ଭଙ୍ଗ—ଇଞ୍ଚୁଡ଼ି, ଶ୍ରୀଜଙ୍ଗ, ରସୁଲପୁର ଓ କୁଜଙ୍ଗ ଅଞ୍ଚଳରେ ଲବଣ ସତ୍ୟାଗ୍ରହ ସଂଗଠନ । ବିଲାତି ଲୁଗା ଦୋକାନରେ ଏବଂ ମଦ, ଅଫିମ ଓ ଗଞ୍ଜେଇ ଦୋକାନରେ ପିକେଟିଂ ।

୧୯୩୦, ସେପ୍ଟେମ୍ବର ୨୦—ଟିରଙ୍ଗ ଏବଂ ଛଅମାସ ଜେଲଦଣ୍ଡ । ପ୍ରଥମେ କଟକ ଜେଲରେ ଏବଂ ପରେ ଭାଗଲପୁର କେନ୍ଦ୍ର ଜେଲ୍‌ରେ ୨ ବର୍ଷର ଶିଶୁକନ୍ୟା ଉତ୍ତରା ସହ ବନ୍ଦୀ ।

୧୯୩୧—କରାଚୀ କଂଗ୍ରେସରେ ପ୍ରତିନିଧିତ୍ୱ । ଓଡ଼ିଶାରେ କଂଗ୍ରେସ ଅଧିବେଶନ ପାଇଁ ପ୍ରସ୍ତୁତି । ହିନ୍ଦୁସ୍ଥାନ ସେବାଦଳର ତାଲିମ ଗ୍ରହଣ । ସ୍ୱେଚ୍ଛାସେବିକା ଏବଂ ଅର୍ଥ ସଂଗ୍ରହ ଅଭିଯାନ ।

୧୯୩୧, ଅକ୍ଟୋବର ୩୧—ପୁତ୍ର ବିନାୟକର ଜନ୍ମ ।

୧୯୩୨—ପୁନଶ୍ଚ ଜେଲଦଣ୍ଡ । ଶିଶୁପୁତ୍ର ବିନାୟକ ସହ ହାଜାରିବାଗ୍ କେନ୍ଦ୍ର ଜେଲ୍‌ରେ ବନ୍ଦୀ ।

୧୯୩୩-୩୪—କୃଷୀ ସଂଗଠନ, ପ୍ରଜାସ୍ୱତ୍ୱ ଆଇନର ପରିବର୍ତ୍ତନ ପାଇଁ ଏବଂ ବେଠି, ଭେଟି ବନ୍ଦପାଇଁ ଆନ୍ଦୋଳନ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରତିଷ୍ଠାତା ସଦସ୍ୟାଭାବେ ଏଥିରେ ପ୍ରମୁଖ ଅଂଶ ଗ୍ରହଣ । 'ସାରଥୀ' ପତ୍ରିକା ପାଇଁ ନିଜର ସମସ୍ତ ଅଳଙ୍କାର ପ୍ରଦାନ ଏବଂ ସମ୍ପାଦନା ଦାୟିତ୍ୱ ଗ୍ରହଣ । ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରାରେ ଯୋଗଦାନ ।

୧୯୩୭-୩୮—ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନ, ବିଶେଷକରି ଢେଙ୍କାନାଳ, ତାଳଚେର ଓ ନୀଳଗିରି ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ ।

୧୯୩୯, ଜାନୁଆରୀ ୨୯—ଏକମାତ୍ର କନ୍ୟା କୃଷ୍ଣାର ଜନ୍ମ ।

୧୯୪୨—ନିଖିଳଭାରତ କଂଗ୍ରେସ କମିଟିର ସଦସ୍ୟାଭାବେ ଐତିହାସିକ ବମ୍ବେ ଅଧିବେଶନରେ ଯୋଗଦାନ । ଭାରତ ଛାଡ଼ ଆନ୍ଦୋଳନରେ ୧୯୪୨ରୁ ୧୯୪୪ ଯାଏ କଟକ ଜେଲ୍‌ରେ ଅଟକବନ୍ଦୀ ।

୧୯୪୪, ଏପ୍ରିଲ୍ ୧—କାରାମୁକ୍ତ ।

୧୯୪୬—ଶାସନ ବିଧାନସଭା ପରିଷଦର ସଦସ୍ୟାଭାବେ ନିର୍ବାଚିତ । ଗାନ୍ଧୀଜୀଙ୍କ ସହ ନୂଆଖାଲିରେ ସାଂପ୍ରଦାୟିକ ଶାନ୍ତି ସ୍ଥାପନା କାର୍ଯ୍ୟ—ଶାସନ ବିଧାନସଭା ପରିଷଦରୁ ଇସ୍ତଫା ଏବଂ ଠକ୍କର ବାପାଙ୍କଠାରୁ ପ୍ରେରଣାପାଇ ଆଦିବାସୀ ଉନ୍ନୟନ କାର୍ଯ୍ୟରେ ଆତ୍ମନିୟୋଗ । ବାଜିରାଉତ ଛାତ୍ରାବାସର ପ୍ରତିଷ୍ଠା ।

୧୯୪୬—ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଅଧ୍ୟକ୍ଷା ।

୧୯୪୮, ମାର୍ଚ୍ଚ ୧୨—ପୁତ୍ର ବିନାୟକର ସ୍ୱେଚ୍ଛା ମୃତ୍ୟୁ ।

୧୯୪୮, ଅକ୍ଟୋବର ୨୪—ଆଦିବାସୀଙ୍କ ସେବାକାର୍ଯ୍ୟ ପାଇଁ 'ଉତ୍କଳ ନବଜୀବନ ମଣ୍ଡଳ'ର ପ୍ରତିଷ୍ଠା ।

୧୯୪୮-୭୫—ଅନୁଗୋଳଠାରେ ମହିଳାକର୍ମୀ ତାଲିମ ଶିବିର ସ୍ଥାପନ । ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନବଜୀବନ ମଣ୍ଡଳର ସମାଜସେବା କେନ୍ଦ୍ରମାନ ପ୍ରତିଷ୍ଠା ଏବଂ ଏହା ମାଧ୍ୟମରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ସମାଜ ସଂସ୍କାର ଆଦି କାର୍ଯ୍ୟ, ଯଥା—ନିଶାନିବାରଣ, ମୂଠାଦାଣ୍ଡି ପ୍ରଥା ଓ ଗୋତିପ୍ରଥାର ଉଚ୍ଛେଦ ପାଇଁ ଆନ୍ଦୋଳନ, ଯକ୍ଷ୍ମା ଓ କୁଷ୍ଠ ରୋଗର ନିରାକରଣ, ସ୍ତ୍ରୀ-ଶକ୍ତି ଜାଗରଣ, ଖଦି-ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ, ଭୂଦାନ ଗ୍ରାମଦାନ କାର୍ଯ୍ୟମାନ ସମ୍ପନ୍ନ; ଶଳନ୍ଧି ମୌଳିକ ବିଦ୍ୟାଳୟ ଏବଂ ଚମ୍ପତିମୁଣ୍ଡା ଉଚ୍ଚ ମୌଳିକ ବିଦ୍ୟାଳୟ (ଜୀବନ ବିଦ୍ୟାଳୟ)ର ପ୍ରତିଷ୍ଠା; ବାଳଗୃହ ସମିତି ପ୍ରତିଷ୍ଠା, ନିଶାନିବାରଣ ପରିଷଦର ସଦସ୍ୟା, ଭାରତୀୟ ଆଦିମ ଜାତି ସେବକ ସଂଘର ଆଜୀବନ ସଦସ୍ୟାରୂପେ ଏବଂ ଏହି ଅନୁଷ୍ଠାନମାନଙ୍କର କାର୍ଯ୍ୟ ପରିଚାଳନା; ନିଜେ ସୂତାକାଟି, ଲୁଗାବୁଣି ବସ୍ତ୍ର ସ୍ୱାବଲମ୍ବୀ ହେବାର ସାଧନା । ୧୯୭୧—ମସିହାରେ ବାଂଲାଦେଶରୁ ଆସିଥିବା ଶରଣାର୍ଥୀ ଶିବିରମାନଙ୍କରେ ସେବାକାର୍ଯ୍ୟ । ବିନୋବାଜୀଙ୍କର ଭୂଦାନ ପଦଯାତ୍ରାରେ ଯୋଗଦାନ ।

୧୯୭୫-୭୭—ଜରୁରୀକାଳୀନ ପରିସ୍ଥିତିର ଦୃଢ଼ ବିରୋଧକରି ପ୍ରଚାର । ଗୁପ୍ତ ସଂଗଠନ ମାଧ୍ୟମରେ 'ସଂଗ୍ରାମ' ଶୀର୍ଷକ ଏକ ସାଇକ୍ଲୋଷ୍ଟାଇଲ୍ ପତ୍ରିକାର ପ୍ରକାଶନ ଓ ବିତରଣ ।

୧୯୭୬, ଫେବୃଆରୀ ୩—ଭାରତ ରକ୍ଷା ଆଇନ ବଳରେ ଗିରଫ ଓ କାରାଦଣ୍ଡରେ ଦଣ୍ଡିତ ।

୧୯୭୭—ଜରୁରୀ କାଳୀନ ପରିସ୍ଥିତିବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ 'ମେଷତନ୍ତ୍ର' ଶାସନ ଚଳାଇଥିବା ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ନିର୍ବାଚନରେ ଜନତାଦଳ ଟିକେଟ ଦେବାରୁ ତାର ପ୍ରତିବାଦରେ ନନ୍ଦିନୀଙ୍କ ବିରୋଧରେ ଢେଙ୍କାନାଳ ବିଧାନସଭା ଆସନରୁ ପ୍ରାର୍ଥୀ ଏବଂ ଜୟ-ପରାଜୟକୁ ଭ୍ରୂକ୍ଷେପ ନ କରି ଜନତା ସମ୍ମୁଖରେ ନିଜର ବକ୍ତବ୍ୟ ଉପସ୍ଥାପନ ।

୧୯୮୩, ଅଗଷ୍ଟ ୨୨—ଜ୍ୟେଷ୍ଠା କନ୍ୟା କୃଷ୍ଣାର ଜ୍ୟେଷ୍ଠପୁତ୍ର ଅସୀମର ସଡ଼କ ଦୁର୍ଘଟଣାରେ ଦେହାନ୍ତ ।

୧୯୮୩, ଅକ୍ଟୋବର ୧୭—ପୁତ୍ର ମନମୋହନଙ୍କ ଏକମାତ୍ର ପୁତ୍ର କୁମାରର ସଡ଼କ ଦୁର୍ଘଟଣାରେ ଦେହାନ୍ତ ।

୧୯୮୪, ଜୁନ୍ ୨୪—ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଦେହାବସାନ ।

୧୯୮୭, ନଭେମ୍ବର ୨୩—ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ୮୭ ତମ ଜୟନ୍ତୀ ଅବସରରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଉତ୍କଳ ନବଜୀବନ ମଣ୍ଡଳ ବାର୍ଷିକ ସମାବେଶରେ ମଣ୍ଡଳର କର୍ମୀ ଓ ଶୁଭେଚ୍ଛୁମାନଙ୍କ ଦ୍ୱାରା ସଂଗୃହୀତ ଟ. ୧,୧୧,୮୦୭-୭୫ପଇସାର ଅଭିନନ୍ଦନ ଗ୍ରହଣ ।
ଶିଶୁକଲ୍ୟାଣ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଜାତୀୟ ପୁରସ୍କାର ଗ୍ରହଣ ।

୧୯୮୮, ଅକ୍ଟୋବର ୧୦—ଜ୍ୟେଷ୍ଠା କନ୍ୟା ଉତ୍ସବଙ୍କର ଦେହାନ୍ତ ।

୧୯୮୯, ମାର୍ଚ୍ଚ ୨୯—ମହିଳା ଓ ଶିଶୁକଲ୍ୟାଣ ତଥା ଉନ୍ନୟନ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ତାଙ୍କୁ ମିଳିଥିବା ୧୯୮୮ର ବଜାଜ ପୁରସ୍କାର ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀଙ୍କ ହାତରୁ ନେବାକୁ ମନାକରି ଦେବାରୁ ଏହି ପୁରସ୍କାର ଅନୁଗୋଳ ବାଜିରାଉତ ଛାତ୍ରାବାସ ଠାରେ ଏକ ଘରୋଇ ଉତ୍ସବରେ ବଜାଜ ଫାଉଣ୍ଡେସନ୍‌ର ସମ୍ପାଦକଙ୍କ ଦ୍ୱାରା ପ୍ରଦାନ ।

୧୯୮୯, ମାର୍ଚ୍ଚ ୨୯—ଅଭିନନ୍ଦନ ଏବଂ ବଜାଜ ପୁରସ୍କାରରୁ ମିଳିଥିବା ସମସ୍ତ ଅର୍ଥକୁ ମୂଳପାଣ୍ଠି କରି ମାଳତୀଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନ ।

୧୯୯୫, ଅକ୍ଟୋବର ୨—ଉତ୍କଳ ସମ୍ମାନ ପୁରସ୍କାର, ରବୀନ୍ଦ୍ର ସାକ୍ଷରତା ପୁରସ୍କାର ।

୧୯୯୮, ଫେବୃୟାରୀ ୨୭—ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ସମ୍ମାନ 'ଦେଶିକୋତ୍ତମ' ସମ୍ମାନ ଗ୍ରହଣ ।

୧୯୯୮, ମାର୍ଚ୍ଚ ୧୫—ଦେହାବସାନ ଏବଂ ରାଷ୍ଟ୍ରୀୟ ମର୍ଯ୍ୟାଦାସହ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ ।

*With best wishes :*

# THE KALINGA STEAMSHIP AGENTS ASSOCIATION

**REG. NO : 1496/126/82-83, Dt. 15. 6. 1982**

**Trade Centre, Paradip Port - 754142**
**Dist - Jagatsinghpur, Orissa**



**ନୁମା କୁଟୀର**

"ଭାରତର ନିଷ୍ପେଷିତ ଜନତା ଯୁଗ ଯୁଗ ଧରି ନାନା ବାଟରେ ଆଘାତ ସହି ପଡ଼ି ରହିଛନ୍ତି। ଯେଉଁଦିନ ଆଘାତ ଆଉ ନ ସହି ଆଘାତ କରିବାର ଶକ୍ତି ଅର୍ଜନ କରିପାରିବେ, ସେହିଦିନ ସେମାନଙ୍କର ମୁକ୍ତି ହେବ। ତା' ପୂର୍ବରୁ ନୁହେଁ।"

**— ମାଳତୀ ଦେବୀ**

(ନୁମା : ଏକ ସଂକଳନ, ୧୯୯୮, ପୃ. ୧୫୦)

ମୂଲ୍ୟ - ୫ ଟଙ୍କା